# ଜୟ ସୋମନାଥ

କେ. ଏମ୍. ମୁନ୍‌ସୀ

ଅନୁବାଦକ
ଶ୍ରୀ ସଚ୍ଚିଦାନନ୍ଦ କାନୁନ୍‌ଗୋ




ଗ୍ରନ୍ଥମନ୍ଦିର
କଟକ-୨ : ବ୍ରହ୍ମପୁର

ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ
C/O ଡକ୍ଟର କିଶନ୍ କାନୁନ୍‌ଗୋ
୫ ବି. ଇରଉଇନ, ନୂଆଦିଲ୍ଲୀ

ମାନନୀୟ ବାପା,

ଆପଣଙ୍କ ସଙ୍ଗେ ବନ୍ଧୁ ଅଞ୍ଚଳ ବୁଲିବାର ସୌଭାଗ୍ୟ ଲାଭ କରିଛି । ମୁଁ ଯେ ସବୁବେଳେ ଖୁସିରେ ବୁଲିଛି, ତାହା ନୁହେଁ । ମୁଁ ଅକର୍ତ୍ତବ୍ୟ ହୋଇଥିବାରୁ ବୋଉ ଓ ଆପଣଙ୍କ ଉପରେ ପ୍ରାୟ ୫୦ ବର୍ଷ ହେଲି ଗୋଟିଏ ବୋଝ ହୋଇ ରହିଆସିଛି । ଆପଣମାନେ ସ୍ନେହର ନିଦର୍ଶନ ସ୍ୱରୂପ ମୋତେ ଅନ୍ୟ କାହା ପାଖେ ବା କେଉଁଠାରେ ରହିବାକୁ ନ ଦେଇ ଯେଉଁଠାକୁ ଯାଇଛନ୍ତି ସଙ୍ଗରେ ବରାବର ରଖିଛନ୍ତି । ତଥାପି ମୁଁ ଭାବେ, ମୁଁ ସବୁବେଳେ ଆପଣମାନଙ୍କ ଉପରେ ବୋଝରୂପେ ରହିଆସିଛି ଏବଂ ଜୀବନର ଶେଷ ପର୍ଯ୍ୟନ୍ତ ରହିଥିବ ।

ଏପରି ବୋଝ ହୋଇ ନ ଥିଲେ ହୁଏତ ମୋ ଜୀବନର ଗତି ଅନ୍ୟ ପ୍ରକାର ହୋଇଥାନ୍ତା ଏବଂ ମୁନ୍‌ସୀଜୀଙ୍କ ବିଖ୍ୟାତ ଉପନ୍ୟାସ 'ଜୟ ସୋମନାଥ' ଅନୁବାଦ କରିବାର ସୌଭାଗ୍ୟ ପାଇ ନ ଥାନ୍ତି । ନିଜର ଗଭୀରତମ କୃତଜ୍ଞତାର ନିଦର୍ଶନ ସ୍ୱରୂପ ଏ ପୁସ୍ତକଟି ଆପଣଙ୍କ ହସ୍ତରେ ଅର୍ପଣ କରୁଛି ।

୨୮-୧୦-୭୧

ସ୍ନେହାଧୀନ
ସଚ୍ଚି

# ନିଜ କଥା

୧୯୬୫ ସେପ୍‌ଟେମ୍ବର ୧୦ ତାରିଖ ଦିନ ବାପାଙ୍କ ସଙ୍ଗେ ଯାଇ ଅହମଦାବାଦସ୍ଥ ଗୁଜୁରାଟ ରାଜଭବନରେ ପହଞ୍ଚିଲି । କାହିଁକି କେଜାଣି, ବୋଧହୁଏ ସର୍‌ଦାର୍‌ଜୀଙ୍କ ପ୍ରତି ମୋର ଗୋଟିଏ ସ୍ୱତପ୍ରବଣତା-ସମ୍ଭୂତ ସମ୍ମାନ ଥିବାରୁ ଗୁଜୁରାଟ ପ୍ରତି ମଧ୍ୟ ଥିଲା । ମୁଁ 'ଭବନ୍‌ସ ଜର୍ଣ୍ଣାଲ୍'ର ଜଣେ ନିୟମିତ ପାଠକ । ଗୋଟିଏ ସଂଖ୍ୟାରେ ଦେଖିଲି ଯେ ଭାରତର ଜଣେ କୃତୀ ସନ୍ତାନ ଶ୍ରୀ ଏଚ୍. ଏମ୍. ପଟେଲଙ୍କ ଦ୍ୱାରା ଅନୂଦିତ ହୋଇ ପରବର୍ତ୍ତୀ ସଂଖ୍ୟା-ଠାରୁ ମୁନ୍‌ସିଜୀଙ୍କର ବିଖ୍ୟାତ ଗୁଜୁରାଟୀ ଉପନ୍ୟାସ 'ଜୟ ସୋମନାଥ' ଇଂରାଜୀରେ ପ୍ରକାଶ ପାଇବ । ଏହା ଯେ ମୁଁ ଓଡ଼ିଆରେ ଅନୁବାଦ କରିବି ତାହା ସେତେବେଳେ ମୋର ମନକୁ ଆସି ନ ଥିଲା । ଏହାର ପ୍ରକାଶନ ୧୯୬୫ ଡିସେମ୍ବର ୫ ତାରିଖରେ ପ୍ରକାଶିତ ଭବନ୍‌ସ ଜର୍ଣ୍ଣାଲରୁ ଆରମ୍ଭ ହେଲା ।

ପ୍ରଥମ ସଂଖ୍ୟାଟି ପଢ଼ି ମୋ ହୃଦୟକୁ ଏହା ସ୍ପର୍ଶ କରିବାରୁ ଏହାକୁ ଓଡ଼ିଆରେ ଅନୁବାଦ କଲେ କିପରି ହୁଅନ୍ତା ଭାବି କାମ ଆରମ୍ଭ କଲି । ଭଗବାନଙ୍କ ଦୟାରୁ ଏହାର ପ୍ରକାଶନ ୫୪ଟି ସଂଖ୍ୟାରେ ଶେଷ ହେଲା ଏବଂ ମୋର ଓଡ଼ିଆ ଅନୁବାଦ ମଧ୍ୟ ତାହା ସଙ୍ଗେ ସଙ୍ଗେ ଶେଷ ହେଲା ।

ତାହାପରେ ସମସ୍ୟା ହେଲା ବହିଟିର ପ୍ରକାଶନ । କଟକର ଜଣେ ପ୍ରକାଶକ ସ୍ୱତଃ-ପ୍ରବୃତ୍ତ ହୋଇ ବହିଟି ପ୍ରକାଶ କରିବାକୁ ରାଜି ହେଲେ । ବହୁତ ଡେରିରେ ସେ ମାତ୍ର ୫ଟି ଫର୍ମା ଛପାଇଲେ । ତେଣୁ ତାଙ୍କଠାରୁ ପାଣ୍ଡୁଲିପି ଫେରସ୍ତ ଆଣିବାକୁ ବାଧ୍ୟ ହେଲି । ମୁଁ ମୋର ବନ୍ଧୁ ଗ୍ରନ୍ଥମନ୍ଦିରର ପରିଚାଳକ ଅଭିରାମ ମହାପାତ୍ରଙ୍କ ନିକଟରେ ମୋର ତିକ୍ତ ଅନୁଭୂତି ବର୍ଣ୍ଣନା କରିବାରୁ ସେ ଏହି ଗୁରୁଦାୟିତ୍ୱ ନିଜ ହାତକୁ ନେଲେ । ଶ୍ରୀମାନ୍ ଅଭିରାମ ଯେ କେବଳ ପ୍ରକାଶକଭାବେ କାର୍ଯ୍ୟ କରିଛନ୍ତି ସେତିକି ନୁହେଁ, ପାଣ୍ଡୁଲିପିରେ ଥିବା ତ୍ରୁଟିମାନ ସଂଶୋଧନ କରି ଏହାକୁ ନୂତନ ରୂପ ଦେଇଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଗ୍ରନ୍ଥମନ୍ଦିରର ପ୍ରତିଷ୍ଠାତା ଶ୍ରୀ ଶ୍ରୀଧର ମହାପାତ୍ର, ଯେ କି ମୋର "ଗାନ୍ଧିଜୀଙ୍କ ପଦତଳେ" ପ୍ରକାଶ କରି ମୋତେ କୃତଜ୍ଞତା-ପାଶରେ ଆବଦ୍ଧ କରିଛନ୍ତି, ସେ ମଧ୍ୟ ଏହି ପାଣ୍ଡୁଲିପିଟି ମୂଳ ଇଂରାଜୀ ରଚନା ସହିତ ମିଳେଇ ପଢ଼ି ଏହାର ଶ୍ରୀବୃଦ୍ଧି ସାଧନରେ ଯଥେଷ୍ଟ ସହାୟତା କରିଛନ୍ତି । ତାହାଛଡ଼ା 'ଭାରତୀୟ ବିଦ୍ୟାଭବନ'ର କାର୍ଯ୍ୟକାରୀ ସଂପାଦକ ଶ୍ରୀ ଏସ୍. ରାମକୃଷ୍ଣନ୍ ଏ କାର୍ଯ୍ୟରେ ମୋତେ ବହୁତ ସାହାଯ୍ୟ କରିଛନ୍ତି । ଏହି ଉପକାରୀ ବନ୍ଧୁମାନଙ୍କ ପ୍ରତି ମୋର ଗଭୀର କୃତଜ୍ଞତା ଜଣାଉଛି ।

ଏ ସଂପର୍କରେ ଆଉ ଜଣଙ୍କ ବିଷୟରେ ନ ଲେଖିଲେ ଅନ୍ୟାୟ ହେବ । ପୂର୍ବରୁ ଉଲ୍ଲେଖ କରିଛି ଯେ ଉପନ୍ୟାସଟି ଗୁଜରାଟୀ ଭାଷାରେ ଲେଖା ହୋଇଥିଲେ ସୁଦ୍ଧା ମୁଁ ଇଂରାଜୀରୁ ଅନୁବାଦ କରିଛି । କେତେକ ପ୍ରତିଷ୍ଠାବାନ୍ ଲେଖକ ସେ ଲେଖିଥିବା ଭାଷା ଛଡ଼ା ଅନ୍ୟ ଭାଷାରୁ ଅନୁବାଦ କରିବାକୁ ପସନ୍ଦ କରନ୍ତି ନାହିଁ । ତେଣୁ ମୁଁ ଗୁଜରାଟ ବିଶ୍ୱବିଦ୍ୟାଳୟର ଭୂତପୂର୍ବ କୁଳପତି ତଥା ଭାରତର ଜଣେ ବିଶିଷ୍ଟ ସାହିତ୍ୟିକ ଶ୍ରୀ ଉମାଶଙ୍କର ଯୋଷୀଙ୍କୁ ମୋର ସମସ୍ୟା ଜଣାଇବାରୁ ସେ ଶ୍ରୀ ମୁନ୍‌ସୀଜୀଙ୍କୁ ଚିଠି ଲେଖିଲେ । ଶ୍ରୀ ମୁନ୍‌ସୀଜୀ ଏହାର ଉତ୍ତରରେ ମୋ ପାଖକୁ ଲେଖିଥିବା ଉତ୍ସାହପ୍ରଦ ଚିଠିଟି ଏହା ସହିତ ପ୍ରକାଶ କରାଗଲା । ଶ୍ରୀ ଯୋଷୀଙ୍କର ଏହି ସାହାଯ୍ୟ ପାଇଁ ଋଣୀ ରହିଲି ।

ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ତଥା କେନ୍ଦ୍ର ସାହିତ୍ୟ ଏକାଡ଼େମୀର ଫେଲୋ ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ ଅନୁଗ୍ରହପୂର୍ବକ ବହିଟି ପାଇଁ ମୁଖବନ୍ଧ ଲେଖିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ଶେଷରେ ମୋର ବନ୍ଧୁ ସାମ୍ବାଦିକ ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର, ଦିଲ୍ଲୀରେ ଶ୍ରୀ ଚିନ୍ତାମଣି ମିଶ୍ର ଓ ଶ୍ରୀ ନନ୍ଦସୁଆବିହାରୀ ମହାନ୍ତି ମୋତେ ବହୁଭାବରେ ସାହାଯ୍ୟ କରି ଅନୁଗୃହୀତ କରିଛନ୍ତି । ସେମାନଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ସ୍ୱର୍ଗୀୟ କାହ୍ନେୟାଲାଲ ମୁନ୍‌ସୀ ରାଜନୀତିଜ୍ଞ ଓ ଆଇନଜୀବୀ ହିସାବରେ ଯେତେ କୃତିତ୍ୱର ଅଧିକାରୀ ହୋଇଛନ୍ତି, ସେ ତତୋଽଧିକ ସମ୍ମାନର ଅଧିକାରୀ ହୋଇଛନ୍ତି ଗୁଜରାଟୀ ସାହିତ୍ୟର ଜଣେ କୃତୀ ଲେଖକରୂପେ । ସେ ଯେ କେବଳ ଲୋକପ୍ରିୟ ଉପନ୍ୟାସମାନ ଲେଖିଛନ୍ତି ସେତିକି ନୁହେଁ; ସେ ଭାରତୀୟ ସଂସ୍କୃତିର, ବିଶେଷତଃ ଗୁଜରାଟ ଐତିହ୍ୟର, ଜଣେ ନୀରବ ପୂଜାରୀଭାବେ ଭାରତର ମହାନ୍ ପରମ୍ପରାଯୁକ୍ତ ଐତିହାସିକ ବିଷୟବସ୍ତୁକୁ ଆଧାରିତ କରି ଉପନ୍ୟାସମାନ ରଚନା କରି ସେଗୁଡ଼ିକୁ ଯେପରି ରସାଳ କରିପାରିଛନ୍ତି, ତାହାର ମୂଲ୍ୟାୟନ ଅସମ୍ଭବ । ଏହି ପୁସ୍ତକ ପାଠକମାନଙ୍କଦ୍ୱାରା ଆଦୃତ ହେଲେ ତାଙ୍କର ଅନ୍ୟାନ୍ୟ ଉପନ୍ୟାସ ଓଡ଼ିଆରେ ଅନୁବାଦ କରିବା ବାସନା ମଧ୍ୟ ମୋର ରହିଛି ।

'ଜୟ ସୋମନାଥ' ମୋ ଦେଶର ପାଠକଙ୍କୁ କିଞ୍ଚିତ୍ ଆନନ୍ଦ ଦାନ କରିପାରିଲେ ନିଜକୁ ଧନ୍ୟ ମଣିବ ।

ଫିରିଙ୍ଗିବଜାର
କଟକ, ୨୮-୧୦-୭୧

ସଚ୍ଚିଦାନନ୍ଦ କାନୁନ୍‌ଗୋ

# ମୁଖବନ୍ଧ

ଭାରତୀୟ ସ୍ୱାଧୀନତା ପରବର୍ତ୍ତୀ ସାହିତ୍ୟ ପ୍ରକାଶ କ୍ଷେତ୍ରରେ ଯେଉଁ କେତେଗୋଟି ନୂତନ ଅନୁଷ୍ଠାନ ଉଲ୍ଲେଖଯୋଗ୍ୟ, ତାହା ମଧ୍ୟରେ ବମ୍ବେର "ଭାରତୀୟ ବିଦ୍ୟାଭବନ" ଅନ୍ୟତମ । ଶ୍ରୀ ରାଜଗୋପାଳାଚାରୀ ଓ ସ୍ୱର୍ଗତ କାହ୍ନେୟାଲାଲ ମୁନ୍‌ସି ପ୍ରମୁଖ କୃତବିଦ୍ୟ ପୁରୁଷମାନେ ଏହାର ପ୍ରତିଷ୍ଠାତା । ଏଇ ଅନୁଷ୍ଠାନରୁ ତାର ଇଂରାଜୀ ମୁଖପତ୍ର "ଭବନ୍‌ସ୍ ଜର୍ଣ୍ଣାଲ" ସମେତ ଶ୍ରୀ ରାଜଗୋପାଳାଚାରୀଙ୍କ ଇଂରାଜୀ ମହାଭାରତ ଓ ମୁନ୍‌ସିଙ୍କର "ତପସ୍ୱିନୀ" ଉପନ୍ୟାସ ପ୍ରମୁଖ ଏକାଧିକ ରଚନାର ଇଂରାଜୀ ଅନୁବାଦ ପ୍ରକାଶିତ ହୋଇଛି ।

ମୁନ୍‌ସିଙ୍କ "ଜୟ ସୋମନାଥ" ଐତିହାସିକ ଉପନ୍ୟାସର ଇଂରାଜୀ ଅନୁବାଦ ମଧ୍ୟ ଧାରାବାହିକ ଭାବରେ "ଭବନ୍‌ସ ଜର୍ଣ୍ଣାଲ୍"ରେ ପ୍ରକାଶିତ ହୁଏ । ଶ୍ରୀ ସଚ୍ଚିଦାନନ୍ଦ କାନୁନ୍‌ଗୋ ପାଠକ ଭାବରେ ସେଥିପ୍ରତି ଆକୃଷ୍ଟ ହୋଇ ତାହାର ଓଡ଼ିଆ ଅନୁବାଦ କରିବାକୁ ଉତ୍ସାହିତ ହୁଅନ୍ତି; ଫଳରେ ଆଜି "ଜୟ ସୋମନାଥ" ବିଖ୍ୟାତ ଉପନ୍ୟାସର ଓଡ଼ିଆ ରୂପାନ୍ତର ପାଠକମାନଙ୍କ ସମକ୍ଷରେ ଉପସ୍ଥାପିତ ହୋଇପାରିଛି ।

ଦୂର ଅତୀତରେ ଆମେ ସବୁ ସ୍କୁଲ କଲେଜର ଛାତ୍ର ଥିବାବେଳେ ଭାରତ ଇତିହାସର ଗୋଟିଏ ପ୍ରଧାନ ବିଷୟ ଥିଲା "ସୋମନାଥ ମନ୍ଦିର ଲୁଣ୍ଠନ" । କାରଣ ପରୀକ୍ଷାରେ ତାହା ଥିଲା ପ୍ରାୟ ଅବଶ୍ୟମ୍ଭାବୀ ପ୍ରଶ୍ନ । ଅତଏବ ସେ ବିଷୟଟି ଭଲରୂପେ ପଢ଼ିବା ପାଇଁ ଇତିହାସ-ଶିକ୍ଷକ ପରାମର୍ଶ ଦିଅନ୍ତି । ଅନେକ ସମୟରେ ଅବଶ୍ୟ ଶିକ୍ଷକଙ୍କ ପରାମର୍ଶ ଗ୍ରହଣ ନ କରିବା ହିଁ କେତେକ ଛାତ୍ରଙ୍କର ଅଭ୍ୟାସ ହୋଇପଡ଼ିଥାଏ । ପୁଣି ଇତିହାସ ଏକ ନୀରସ ବିଷୟରୂପେ ପରିଗଣିତ ହୁଏ । ତଥାପି ତାହା ବାଧ୍ୟତାମୂଳକ ।

ସେତେବେଳେ ଭାରତବର୍ଷ ଥାଏ ଇଂରେଜମାନଙ୍କ ଶାସନ ଅଧୀନରେ । ସେଇ ଇଂରେଜ ଶାସକମାନେ ମଧ୍ୟ ଭାରତ ଇତିହାସର ଲେଖକରୂପେ ପ୍ରସିଦ୍ଧ । ହଣ୍ଟର, ଭିନ୍‌ସେଣ୍ଟ ସ୍ମିଥ୍ ପ୍ରମୁଖ ଏହି କାରଣରୁ ସ୍ମରଣୀୟ । ହଣ୍ଟର ସାହେବଙ୍କ 'ଓଡ଼ିଶା ଇତିହାସ' ( History of Orissa ) ଏକ ପ୍ରାମାଣିକ ଗ୍ରନ୍ଥ । ଏହିରୂପେ ହଣ୍ଟରଙ୍କ ଲିଖିତ "Annals of Rural Bengal"ରେ ବର୍ଣ୍ଣିତ ସନ୍ନ୍ୟାସୀ ବିପ୍ଳବ ( History of the Sannyasi Rebellion ) କୁ ଭିତ୍ତି କରି ବଙ୍ଗର ପ୍ରଖ୍ୟାତ ସାହିତ୍ୟିକ କବି ବଙ୍କିମଚନ୍ଦ୍ରଙ୍କ "ଆନନ୍ଦ ମଠ" ଉପନ୍ୟାସ ଭିତ୍ତିରେ "ବନ୍ଦେ ମାତରଂ" ଅମର ସଙ୍ଗୀତର ସୃଷ୍ଟି ହୁଏ । ପୁଣି ସେଇ "ଆନନ୍ଦ ମଠ" ଉପନ୍ୟାସର ଆଂଶିକ ଇଂରାଜୀ ଅନୁବାଦ କରନ୍ତି ସ୍ୱୟଂ ଋଷି ଅରବିନ୍ଦ ।

ଭିନ୍‌ସେଣ୍ଟ ସ୍ମିଥ୍‌ଙ୍କ ଲିଖିତ ଆମ୍ଭମାନଙ୍କ ପାଠ୍ୟପୁସ୍ତକ ଭାରତ-ଇତିହାସରେ ବର୍ଣ୍ଣିତ ଗୋଟିଏ କଥା ଆଜି ବି ମୋର ମନେଅଛି । ସେ ଯାହା ଲେଖିଥିଲେ, ତାହାର ମର୍ମ ହେଲା— ଭାରତର ଭୌଗୋଳିକ ପରିସ୍ଥିତି ଓ ଜଳବାୟୁର ବିଚିତ୍ର ବୈଷମ୍ୟ ବିଷୟରୁ, ପୁଣି

ସେଠାରେ ଏତେ ପ୍ରକାର ଭାଷାଭାଷୀ ରହିଛନ୍ତି ଆଉ ଏତେ ସଂଖ୍ୟକ ଜାତି, ଧର୍ମ, ସଂପ୍ରଦାୟ ତଥା ରାଜୁଡ଼ା ଓ ଜମିଦାର ଶାସନ ଯୁଗ ଯୁଗ ଧରି ପ୍ରତିଷ୍ଠିତ ଯେ, କସ୍ମିନ୍‌କାଳେ ତାହା ଗୋଟିଏ ଅଖଣ୍ଡ ଦେଶ ଓ ଅଖଣ୍ଡ ଜାତି ହୋଇ ତିଷ୍ଠି ନ ପାରେ । ସେଇ ଦୃଷ୍ଟିଭଙ୍ଗିରୁ ହିଁ "ସୋମନାଥ ମନ୍ଦିର ଲୁଣ୍ଠନ" ଘଟଣାକୁ ଭିତ୍ତି କରି ଦେଶରେ ସାଂପ୍ରଦାୟିକତାର ତିକ୍ତଭାବକୁ ଉଜ୍ଜୀବିତ କରିବା ଥିଲା ଇଂରେଜ ଐତିହାସିକମାନଙ୍କର ମୌଳିକ ଅଭିସନ୍ଧି । ସ୍ୱାଧୀନ ଧର୍ମନିରପେକ୍ଷ ଭାରତୀୟ ରାଷ୍ଟ୍ରରେ ଅବଶ୍ୟ ସୋମନାଥ ମନ୍ଦିର ପୁନଃ ନିର୍ମିତ ହୋଇଛି ।

"ଜୟ ସୋମନାଥ" ଉପନ୍ୟାସଟି ଐତିହାସିକ ତଥ୍ୟ ଉପରେ ପରିକଳ୍ପିତ ହେଲେହେଁ ତାହା ସାଂପ୍ରଦାୟିକତାକୁ ଉଚ୍ଚ ସ୍ଥାନ ଦେଇନାହିଁ । ଅନୁବାଦର ଭାଷା ଓ ଅଭିବ୍ୟକ୍ତି ଯେପରି ସହଜ, ସରଳ, ସେ ବିଗ୍ଭରରୁ ତାହା ମୌଳିକ ରଚନା ଭଳି ସୁଖପାଠ୍ୟ ହୋଇପାରିଛି । ଓଡ଼ିଆ ପାଠକ ସମାଜରେ "ଜୟ ସୋମନାଥ" ସମାଦୃତ ହେବ ବୋଲି ମୋର ଦୃଢ଼ ବିଶ୍ୱାସ । ଶ୍ରୀଜଗନ୍ନାଥ ମନ୍ଦିର, କୋଣାର୍କ, ସାକ୍ଷିଗୋପାଳ, ଅନନ୍ତବାସୁଦେବ କିମ୍ବା କେଦାରଗୌରୀ ମନ୍ଦିର ସହିତ ଅପୂର୍ବ ପ୍ରେମକାହାଣୀମାନ ଜଡ଼ିତ । ମାତ୍ର ସେଗୁଡ଼ିକ ପ୍ରାୟ କାଳ୍ପନିକ ବା ପୌରାଣିକ । ଅଥଚ "ଜୟ ସୋମନାଥ" ଏକ ଐତିହାସିକ ତଥ୍ୟ ଉପରେ ପ୍ରତିଷ୍ଠିତ । ଶ୍ରୀମାନ୍ ସଚ୍ଚିଦାନନ୍ଦ କେବଳ ଅନୁବାଦ ବିଗ୍ଭରରୁ ଯେ "ଜୟ ସୋମନାଥ"ର ଭାଷାନ୍ତର କରିନାହାନ୍ତି, ତାହା ପାଠକମାନେ ହୃଦୟଙ୍ଗମ କରିପାରିବେ ବୋଲି ମୋର ବିଶ୍ୱାସ । ଅନୁବାଦ ଯେଉଁଠାରେ ଅନୁବାଦ ବୋଲି ଜଣାପଡ଼େ, ସେଠାରେ ତାହା ନିଜର ସାର୍ଥକତା ହରାଇଥାଏ । ପାଠକର ଆଦର ଲଭିବାରେ ମଧ୍ୟ ତାହା ଅସମର୍ଥ ହୁଏ ସେଇ କାରଣରୁ । ବର୍ତ୍ତମାନ ଅନୁବାଦଟି ମୌଳିକ ରଚନା ଭଳି ସୁଖପାଠ୍ୟ ହୋଇ ପାରିଛି ଏହି କାରଣରୁ ଯେ ଅନୁବାଦକ ଏହାର ଇଂରାଜୀ ଅନୁବାଦ ପଢ଼ି ସ୍ୱତଃ ଅନୁପ୍ରାଣିତ ହୁଅନ୍ତି ଓ ସଙ୍ଗେ ସଙ୍ଗେ "ଭବନସ୍ ଜର୍ଣ୍ଣାଲ"ର ପ୍ରତି ସଂଖ୍ୟାର ଇଂରାଜୀ ରୂପାନ୍ତର ପଢ଼ି ଓଡ଼ିଆରେ ତାହାର ଅନୁବାଦ ଲାଗି ପ୍ରେରଣା ଲାଭ କରନ୍ତି । ସେଥିଲାଗି ତାଙ୍କର ଏହି ସଫଳ ପ୍ରଚେଷ୍ଟା ସର୍ବଥା ଅଭିନନ୍ଦନୀୟ ।

ସ୍ୱପ୍ନପୁରୀ
କଟକ, ୧୦-୯-୧୯୭୧

କାଳନ୍ଦୀଚରଣ ପାଣିଗ୍ରାହୀ

BHARATIYA VIDYA BHAVAN
CHOWPATTY ROAD,
November 20, 1967, Bombay-7

Dear Sri Sachidanand Kanungo,

I am in due receipt of your letter of 16th November regarding "Jaya Somanath".

The English translation of "Jaya Somanath" being published in the Bhavan's Journal is finally revised by me and so it will serve you as a satisfactory English translation.

The copyright of all my works vests in the Bhavan and they permit the publication of my works in regional languages only when a well-known publisher comes forward to publish the book. If you can interest an Oriya publisher to undertake its publication, kindly ask him to communicate with the Bharatiya Vidya Bhavan.

Yours sincerely,
Sd/-K. M. Munshi

Sri Sachidanand Kanungo,
C/O Sri Nityanand Kanungo,
Governor of Gujarat,
Raj Bhavan,
Ahmedabad-4.

# ୧

## ଯାତ୍ରୀବୃନ୍ଦ

ବିକ୍ରମ ଅବ୍ଦ ୧୦୮୨, ଖ୍ରୀଷ୍ଟାବ୍ଦ ୧୦୨୪, କାର୍ତ୍ତିକ ଶୁକ୍ଳ ଏକାଦଶୀ । ବର୍ଷ ମଧ୍ୟରେ ପବିତ୍ରତମ ଦିବସ । ପ୍ରଭାସ କ୍ଷେତ୍ରସ୍ଥ ତ୍ରିଜଗତର ନାଥ ସୋମନାଥଙ୍କ ନିକଟକୁ ନଦୀର ବନ୍ୟାପରି ମୁଗ୍ଧ ଯାତ୍ରୀବୃନ୍ଦ ଅବିରାମ ଗତିରେ ଚାଲିଛନ୍ତି ।

କେତେକ ଦେଲଓ୍ବାଡ଼ା, ଆଉ କେତେକ ଭେରାଭଲ ଏବଂ ଅନ୍ୟମାନେ ଜୁନାଗଡ଼ରୁ ଆସିଛନ୍ତି । କେତେକ ଭାରି ଖୁସୀ, ଆଉ କେତେକ ଦୁଃଖୀ । ଅନେକ ଅଛନ୍ତି ହୃଷ୍ଟପୁଷ୍ଟ ଏବଂ ଅନ୍ୟ କେତେକ ଦୁର୍ବଳ ଓ ରୁଗ୍ଣ । କେତେକ ସ୍ତ୍ରୀଲୋକ ମଧ୍ୟ ଆସିଛନ୍ତି । କିଏ ଘୋଡ଼ା ଚଢ଼ି, କିଏ ଚାଲିକରି, ଆଉ କିଏ ବା ରଥ ଓ ବଳଦ ଗାଡ଼ିରେ, କେହି ଓଟ ଉପରେ ଏବଂ ଅଳ୍ପ କେତେକ ହାତୀ ଉପରେ ଚଢ଼ି ଆସୁଛନ୍ତି । କେହି କେହି ଗାଉଛନ୍ତି ଭଜନ, ଆଉ କିଏ ବା ବଜାଉଛନ୍ତି ସାରଙ୍ଗୀ ବା ଅନ୍ୟାନ୍ୟ ବାଦ୍ୟଯନ୍ତ୍ର । ନାନାପ୍ରକାର ମଉଜ ମଜ୍‌ଲିସ ଗୀତ ମଧ୍ୟ ଚାଲିଛି ।

ସେମାନଙ୍କ ମଧ୍ୟରୁ ଧନୀମାନେ ଆପଣାର ଦେହରକ୍ଷୀ ତଥା ଅନ୍ୟ ଲୋକଙ୍କୁ ସାଙ୍ଗରେ ନେଇ ଆସିଛନ୍ତି । କେତେକ ପ୍ରଭୁ ସୋମନାଥଙ୍କ ଦର୍ଶନ ପାଇବା ଅଭିଳାଷରେ ଜୀବନସାରାର ସଞ୍ଚୟ ଖର୍ଚ୍ଚ କରୁଛନ୍ତି । କେତେକ ଏପରି ଗରିବ ଯେ ଭିକ ମାଗି ମାଗି ଆସୁଛନ୍ତି । ଅନେକ ଆସିଛନ୍ତି ସେମାନଙ୍କର ମନୋବାଞ୍ଛା ପୂରଣ ହୋଇଥିବାରୁ ଦେବତାଙ୍କୁ ଧନ୍ୟବାଦ ଦେବାପାଇଁ । କେହି କେହି ସାଂସାରିକ ଜଞ୍ଜାଳରୁ ଉଦ୍ଧାର ପାଇବା ଉଦ୍ଦେଶ୍ୟରେ, ଆଉ କିଏ ବା ନିଜର ବ୍ୟବସାୟ ଓ ସମ୍ପଦର ବିକାଶ ପାଇଁ ଦେବପୂଜା କରିବା ମାନସରେ ଆସିଛନ୍ତି ।

କେତେକ ମଧ୍ୟ ସୋମନାଥଙ୍କ ପାଖରେ ନିଜର ଅଜ୍ଞାତ ପାପର ପ୍ରାୟଶ୍ଚିତ୍ତ କରିବା ଉଦ୍ଦେଶ୍ୟରେ ଆସିଛନ୍ତି ।

ଏକମାତ୍ର ପ୍ରଭୁ ସୋମନାଥଙ୍କ ନିକଟରେ ନିଜ ଭକ୍ତି ଓ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ଉଦ୍ଦେଶ୍ୟରେ ଆସିଥିବା ଯାତ୍ରୀଙ୍କ ସଂଖ୍ୟା ହଜାର ହଜାର । ସେମାନେ ପ୍ରଭାସ ତୀର୍ଥର ପାଚେରୀ ବାହାରେ କିଏ ଗଛ ମୂଳରେ, କିଏ ଘରେ ବା କିଏ ଧର୍ମଶାଳାରେ ରହିବା ବ୍ୟବସ୍ଥା କରିବା ପାଇଁ ନିଜ ନିଜର ସ୍ଥାନ ଠିକ୍ କରିଛନ୍ତି । ସବୁ ଯାତ୍ରୀ ଏହି ଦେବାଳୟକୁ ପ୍ରଭୁ ଶଙ୍କରଙ୍କ ସ୍ଥଳୀ ବୋଲି ବିଶ୍ୱାସ କରନ୍ତି । ମନ୍ଦିର ଉପରେ ଉଡ଼ୁଥିବା ହଜାର ହଜାର ପତାକା ସେମାନଙ୍କ ମନରେ ଅପୂର୍ବ ଆନନ୍ଦ ଦେଉଛି । ମନ୍ଦିରର ଶିଖର ଦେଶର ସୁନାର ଗମ୍ବୁଜ ଦେଖି ନିଜେ ମୋକ୍ଷ ପଥରେ ପଥିକ ହେବାକୁ ଯାଉଥିଲାଭଳି ସେମାନଙ୍କ ମନରେ ଭାବ ଉଦୟ ହେଉଛି । ଯାତ୍ରୀମାନେ ଦଳ ଦଳ ହୋଇ ମନ୍ଦିରର ଦ୍ୱାରଦେଶରେ "ଜୟ ସୋମନାଥ" ଧ୍ୱନି ଦେଇ ସେମାନଙ୍କ ଆଗମନର ସଙ୍କେତ ଜଣାଉଛନ୍ତି ।

ସୋମନାଥଙ୍କ ପୁଣ୍ୟପୀଠ କୌଣସି ଜନବସତି, ସହର ବା ନିର୍ଦ୍ଦିଷ୍ଟ ଦେଶରେ ସୀମାବଦ୍ଧ ନ ଥିଲା । ତାହା ସତ୍ତ୍ୱେ ଶତାବ୍ଦୀ ଶତାବ୍ଦୀର ଶ୍ରଦ୍ଧା ଏହାକୁ ଦେବଭୂମି ପରି ସମୃଦ୍ଧ ଓ ମୋକ୍ଷପ୍ରଦ ସ୍ଥଳୀରେ ପରିଣତ କରିଥିଲା ।

ପ୍ରଭାସ ସହର ଦୁର୍ଗର ଦ୍ୱାରଦେଶରେ ଏକ ଶ୍ମଶାନ । ଦୀର୍ଘକାୟ, ହୃଷ୍ଟପୁଷ୍ଟ ଏବଂ ଭୟଙ୍କର ଆକୃତି ବିଶିଷ୍ଟ କାପାଳିକମାନଙ୍କର ଏହା ଲୀଳାଭୂମି । ସେମାନଙ୍କ ଶରୀର ଭସ୍ମାବୃତ, ଗଳାରେ ମଣିଷ ହାଡ଼ର ମାଳ ; ମଣିଷ ମାଂସ ଓ ମଦ ହେଉଛି ସେମାନଙ୍କ ଖାଦ୍ୟ ।

ପ୍ରଭାସ ଦୁର୍ଗର ରାସ୍ତାର ଦୁଇ ପାର୍ଶ୍ୱରେ ଥିବା ବସାଘର ଓ ଧର୍ମଶାଳାମାନ ଯାତ୍ରୀମାନଙ୍କର ଆଶ୍ରୟ ସ୍ଥଳ ।

ପ୍ରଧାନ ରାସ୍ତାର ବାମ ପାଖରେ ବାସ କରନ୍ତି ମନ୍ଦିରର ସେବକବୃନ୍ଦ ଏବଂ ଡାହାଣ ପାଖରେ ଦୁର୍ଗପାଳ ପ୍ରଭୃତି । ମନ୍ଦିର ଆଡ଼କୁ ଅଗ୍ରସର ହେଲେ ରାସ୍ତା କଡ଼ରେ ଯାତ୍ରୀମାନଙ୍କୁ ପାଣି ଯୋଗାଇବା ପାଇଁ ରହିଛି କୂଅ ଓ ବାମ୍ପୀ, ତାହା ପରେ ବଜାର । ଏହିଠାରେ ଗୁଜରାଟୀ ଦେବଦାସୀମାନେ

ବିଭିନ୍ନ ଅଞ୍ଚଳର କଂସା ଓ ତମ୍ବା ବାସନ, ରେଶମ ତଥା ଅନ୍ୟାନ୍ୟ ଭଲ ବସ୍ତ୍ର ଓ ବିଭିନ୍ନ ପ୍ରକାରର ଅଳଙ୍କାର ଦୋକାନରେ ସଜାଇ ରଖିଛନ୍ତି । ଗୁଜରାଟି ମହାଜନମାନେ ଚଟା ପକାଇ ନିଜ ନିଜ ପେଟି ଆଗରେ ଅଧିକ ସୁଧରେ କରଜ ଦେବା ଲାଗି ଟଙ୍କା ଧରି ବସିଛନ୍ତି । ବଜାରର ଦୁଇ ପାଖରେ ଉଚ୍ଚ ଜାତି ଲୋକଙ୍କର ଘର । ଟିକିଏ ଆଗକୁ ଗଲେ ଅନ୍ତର୍ଦୁର୍ଗ ଓ ତା' ପାଖକୁ ବ୍ରାହ୍ମଣ ସାହି । ଏଠାରେ ପ୍ରାୟ ଦୁଇ ହଜାର ବ୍ରାହ୍ମଣ-ବାଳକ ନିଜର ମୁକ୍ତି ଉଦ୍ଦେଶ୍ୟରେ ବେଦ ଓ ଶାସ୍ତ୍ରମାନ ଅଧ୍ୟୟନ କରନ୍ତି ଏବଂ ବିଭିନ୍ନ କର୍ମକର୍ମାଣି ଶିକ୍ଷା କରନ୍ତି ।

ଦୁର୍ଗର କାନ୍ଥ ୨୦ ହାତ ଉଚ୍ଚ ଏବଂ ୬ ହାତ ଚଉଡ଼ା । ଏହି ଦୁର୍ଗର ଦୁଇ ପାଖର ଦୋକାନମାନଙ୍କରେ ମନ୍ଦିରର ସମସ୍ତ ପୂଜା ଉପକରଣ ମିଳେ । ମଝିରେ ଶୁଭଦାତା ଗଣେଶଙ୍କର ମନ୍ଦିର । ଏହି ମନ୍ଦିରକୁ ରାଜା ଯଯାତି ସ୍ଥାପନ କରିଥିଲେ ବୋଲି ଶୁଣାଯାଏ ।

ମନ୍ଦିରର ଦୁଇ ପାଖରେ ସୁନ୍ଦର ଉଦ୍ୟାନ । ଏହି ଉଦ୍ୟାନକୁ ପାଣି ଯୋଗାଇବା ପାଇଁ ହିରଣ୍ୟା ନଦୀରୁ ଦୁଇଟି ନାଳ ଆସିଛି ।

ଆଉ ଟିକିଏ ଆଗକୁ ଗଲେ ଡାହାଣ ପାଖରେ ପଡ଼େ ଭୈରବ ମନ୍ଦିର । ଏହି ମନ୍ଦିରରେ କାପାଳିକ ଏବଂ ଅନ୍ୟ ସାଧକମାନେ ମାଂସ ଓ ମଦ୍ୟ ଭୋଗ ଦେଇ ଈଶ୍ୱରଙ୍କୁ ଆରାଧନା କରନ୍ତି । ଆଶ୍ୱିନ କୃଷ୍ଣ ଚତୁର୍ଦ୍ଦଶୀ ରାତିରେ ଏଠାରେ ନରବଳି ଦିଆଯାଏ ବୋଲି ଶୁଣାଯାଏ । ତେଣୁ କୌଣସି ଯାତ୍ରୀ ଏ ମନ୍ଦିର ନିକଟକୁ ଯିବା ପାଇଁ ସାହସ କରେ ନାହିଁ । କାଳେ ଦେବତା ଅସନ୍ତୁଷ୍ଟ ହେବେ ସେଥିପାଇଁ ଦୂରରୁ ପ୍ରଣାମ କରି ଫେରିଯାଏ ।

ବଗିଚା ଭିତରକୁ ଗଲେ ବାଁ ପାଖକୁ ପଡ଼େ ତ୍ରିପୁରସୁନ୍ଦରୀ ମନ୍ଦିର । ଏହି ମନ୍ଦିରର ଚାରିପାଖରେ କାଳୀ, କୁମାରୀ, କପାଳୀ, ଚାମୁଣ୍ଡା ଏବଂ ଅନ୍ୟାନ୍ୟ ଦେବୀମାନଙ୍କର ବିଭିନ୍ନ ମନ୍ଦିର ରହିଛି ।

ତ୍ରିପୁରସୁନ୍ଦରୀ ମନ୍ଦିର ଅତ୍ୟନ୍ତ ପ୍ରସିଦ୍ଧ । ଦେବୀ କେବଳ ସ୍ତ୍ରୀ ଲୋକମାନଙ୍କୁ ମୁକ୍ତି ଦିଅନ୍ତି, ଏହି ବିଶ୍ୱାସରେ ବହୁ ଭକ୍ତ ସ୍ତ୍ରୀଲୋକଙ୍କ ଭଳି ବେଶ ପକାଇ ଠାକୁରାଣୀଙ୍କୁ ପୂଜା କରନ୍ତି ।

ଆଶ୍ୱିନ ମାସର ପ୍ରଥମ ଦଶଦିନ ଠାକୁରାଣୀ ତ୍ରିପୁରସୁନ୍ଦରୀଙ୍କର ସବୁଠାରୁ ବଡ଼ ପର୍ବ । ମୁକ୍ତିପିପାସୁ ହଜାର ହଜାର ଭକ୍ତ ଜାତି, ବର୍ଣ୍ଣ ନିର୍ବିଶେଷରେ ଏହି ସମୟରେ ଦେବୀଙ୍କ ନିକଟକୁ ଆସନ୍ତି ।

ଗଣେଶ ମନ୍ଦିର ସାମନାରେ ପ୍ରଧାନ ମନ୍ଦିରକୁ ରାସ୍ତା ପଡ଼ିଛି । ରାସ୍ତାର ଦୁଇପଟେ ସୁନ୍ଦର ଆଲୋକମାଳା । ପ୍ରତି ଖୁଣ୍ଟରେ ଗୋଟିଏ ଲେଖାଏଁ ବୃଷଭ । ମନ୍ଦିର ସମ୍ମୁଖରେ ବାଦ୍ୟକାରମାନେ ବସି ଦିନରାତି ପ୍ରତି ପ୍ରହରର ସଙ୍କେତ ବାଦ୍ୟ ସାହାଯ୍ୟରେ ଦିଅନ୍ତି ।

ଏହି ଖୁଣ୍ଟମାନଙ୍କର ଦକ୍ଷିଣ ପାର୍ଶ୍ୱରେ ଟିକିଏ ଆଗକୁ ଗଲେ ଚନ୍ଦ୍ରକୁଣ୍ଡ । ଏହି କୁଣ୍ଡରେ ସ୍ନାନ କଲେ ସମସ୍ତ ପ୍ରକାର ରୋଗ ଦୂର ହୋଇଯାଏ ବୋଲି ଲୋକଙ୍କର ବିଶ୍ୱାସ ।

ଏହା ପରେ ଟିକିଏ ଆଗକୁ ପଡ଼ିବ ନୃତ୍ୟ ମଣ୍ଡପ । ଏହି ବାଟ ଦେଇ ଗର୍ଭଗୃହ ଭିତରକୁ ଯିବାକୁ ହୁଏ ।

ଏହି ମଣ୍ଡପର ଦୁଇ କଡ଼ରେ କଳା ମୁଗୁନି ପଥରରେ ତିଆରି କାରୁକାର୍ଯ୍ୟ ବିଶିଷ୍ଟ ଦୁଇଟି ହାତୀର ମୂର୍ତ୍ତି । ସତେ ଯେପରି ପ୍ରଭୁ ସୋମନାଥଙ୍କୁ ପୂଜା କରିବା ନିମନ୍ତେ ଇନ୍ଦ୍ର ଆସୁଛନ୍ତି—ଠିକ୍ ସେହି ପ୍ରକାରର ପରିବେଶ ।

ନୃତ୍ୟ ମଣ୍ଡପଟି ଅତି ବିରାଟ ଏବଂ ମନୋମୁଗ୍ଧକର । ଏକ ସମୟରେ ପାଞ୍ଚ ହଜାର ଭକ୍ତ ଏଥିରେ ଆରାଧନା କରିପାରନ୍ତି । ଏହାର ୫୮ଟି ଶଙ୍ଖମଲମଲ ସ୍ତମ୍ଭ । ପୃଥିବୀର ବିଭିନ୍ନ ଦେଶରୁ ଆସିଥିବା ଶିଳ୍ପୀମାନେ ଏହି ମଣ୍ଡପ ନିର୍ମାଣ କରି ତଳୁ ଶିଖର ପର୍ଯ୍ୟନ୍ତ କାରୁକାର୍ଯ୍ୟରେ ମଣ୍ଡିଦେଇଛନ୍ତି ।

ମନ୍ଦିର ଭିତରକୁ ଯିବା ପ୍ରବେଶଦ୍ୱାରରେ ପିତଳ ନିର୍ମିତ ଗୋଟିଏ ବିରାଟ ବୃଷଭ ମୂର୍ତ୍ତି । ଭକ୍ତମାନେ ପ୍ରଥମେ ଏହି ଶିବବାହନକୁ ଛୁଇଁ ନିଜର ଭକ୍ତି ଜଣାନ୍ତି ।

ଭିତରେ ବିଜଗତର ନାଥ ପ୍ରଭୁ ସୋମନାଥ ବିରାଜମାନ ।

୨

# ମନ୍ଦିରର ନର୍ତ୍ତକୀ

ପ୍ରଭାସ ତୀର୍ଥରେ ପ୍ରଭୁ ସୋମନାଥଙ୍କର କିପରି ଆବିର୍ଭାବ ହେଲା ତାହା ବର୍ଣ୍ଣନା କରି ମନ୍ଦିରର ସେବକମାନେ ଏହିପରି କାହାଣୀ ଯାତ୍ରୀମାନଙ୍କୁ କହିଥାନ୍ତି ।

ସୃଷ୍ଟି ପ୍ରାରମ୍ଭରେ ଆଦିପୁରୁଷ ନାରାୟଣ ଓ ଆଦିପ୍ରକୃତି ନାରାୟଣୀଙ୍କର ପ୍ରଥମ ଆବିର୍ଭାବ ହେଲା । ନାରାୟଣୀଙ୍କର ନାଭିସ୍ଥଳରୁ ସହସ୍ର-ଦଳବିଶିଷ୍ଟ ଗୋଟିଏ ପଦ୍ମଫୁଲର ଉତ୍ପତ୍ତି ହେଲା ଏବଂ ତାହାର ପ୍ରତ୍ୟେକ ଦଳରୁ ଠିକ୍ ସୂର୍ଯ୍ୟଙ୍କ କିରଣ ଭଳି ଉଜ୍ଜ୍ୱଳ କିରଣ ବିଚ୍ଛୁରିତ ହେଲା ।

ଏହି ଆଲୋକରୁ ସୃଷ୍ଟି ହେଲେ ହିରଣ୍ୟଗର୍ଭ ବ୍ରହ୍ମା । ସୃଷ୍ଟି ପରେ ପରେ ସେ ନିଜକୁ ପ୍ରଶ୍ନ ପଚାରିଲେ, "ମୁଁ କାହାର ପୁଅ ?" ଏହି ପ୍ରଶ୍ନର ଉତ୍ତର ପାଇବା ପାଇଁ ସେ ଯୁଗ ଯୁଗ ଧରି କମଳଦଣ୍ଡର ଚତୁର୍ଦ୍ଦିଗରେ ପରିକ୍ରମା କରିବାକୁ ଲାଗିଲେ । ତେବେ ସୁଦ୍ଧା ସେ କୌଣସି ଉତ୍ତର ନ ପାଇବାରୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ତପସ୍ୟା ଆରମ୍ଭ କଲେ । ଶେଷକୁ ବିଷ୍ଣୁ ଦର୍ଶନ ଦେଇ କହିଲେ, "ମୁଁ ଏହି ସଂସାରକୁ ସୃଷ୍ଟି କରିଛି ଏବଂ ମୁଁ ତୁମକୁ ଜନ୍ମ ଦେଇଛି ।"

ବ୍ରହ୍ମା ଏହି ଅପମାନ ସହ୍ୟ କରି ପାରିଲେ ନାହିଁ । ବିଷ୍ଣୁଙ୍କ ସହିତ ଘୋର ଯୁଦ୍ଧ ଆରମ୍ଭ କଲେ । ଏହି ଯୁଦ୍ଧରୁ ଉତ୍ପତ୍ତି ହେଲେ ଜ୍ୟୋତିର୍ଲିଙ୍ଗ ।

ପରେ ବିଷ୍ଣୁ ବରାହ ଓ ବ୍ରହ୍ମା ହଂସରୂପ ଗ୍ରହଣ କରି ଜ୍ୟୋତିର୍ଲିଙ୍ଗଙ୍କର ଅବସ୍ଥିତି ନିରୂପଣ କରିବା ଉଦ୍ଦେଶ୍ୟରେ ସ୍ୱର୍ଗ ଓ ପାତାଳ ଉଭୟ ଦିଗକୁ ଗତି କଲେ ।

ଶେଷରେ ସତ୍ୟଯୁଗରେ ପ୍ରଭାସ କ୍ଷେତ୍ରରେ ଗୋଟିଏ ସ୍ୱର୍ଣ୍ଣ ମନ୍ଦିର ନିର୍ମାଣ କରି ସେହିଠାରେ ଜ୍ୟୋତିର୍ଲିଙ୍ଗଙ୍କର ସଂସ୍ଥାପନ ପାଇଁ ସ୍ଥାନ ନିରୂପଣ କରାଗଲା ।

ସୃଷ୍ଟିର ପ୍ରଥମ ଅବସ୍ଥାରେ ଚନ୍ଦ୍ର ବର୍ଷର ପ୍ରତ୍ୟେକ ରାତିରେ ଆଲୋକ ଦେଉଥିଲେ । କିନ୍ତୁ ସେ ତାଙ୍କର ସତେଇଶଟି ସ୍ତ୍ରୀଙ୍କ ପ୍ରତି ସମାନ ବ୍ୟବହାର ନ କରି ରୋହିଣୀଙ୍କୁ ଅତିମାତ୍ରାରେ ଭଲପାଉଥିଲେ ।

ଅନ୍ୟ ସ୍ତ୍ରୀମାନେ ଅନାଦୃତା ହୋଇ ସେମାନଙ୍କ ବାପା ଦକ୍ଷପ୍ରଜାପତିଙ୍କ ନିକଟରେ ଚନ୍ଦ୍ରଙ୍କ ବିରୁଦ୍ଧରେ ଅଭିଯୋଗ କଲେ । ଦକ୍ଷ ଏଥିରେ କ୍ରୁଦ୍ଧ ହୋଇ ଚନ୍ଦ୍ରଙ୍କୁ ଅଭିଶାପ ଦେଲେ, "ତୁ କ୍ଷୟରୋଗଗ୍ରସ୍ତ ହୁଅ ।" ଏହି ଅଭିଶାପ ଯୋଗୁଁ ସର୍ବତ୍ର ହାହାକାର ପଡ଼ିଗଲା ।

ଶ୍ୱଶୁରଙ୍କ ଅଭିଶାପରେ ଚନ୍ଦ୍ର ଆସ୍ତେ ଆସ୍ତେ କ୍ଷୟ ହେବାକୁ ଲାଗିଲେ । ସେ ଅନ୍ୟ କିଛି ଉପାୟ ନ ଦେଖି ପ୍ରଭାସ ତୀର୍ଥରେ ପ୍ରତିଷ୍ଠିତ ଜ୍ୟୋତିର୍ଲିଙ୍ଗଙ୍କ ନିକଟକୁ ଆସି ଶଙ୍କରଙ୍କୁ ସନ୍ତୁଷ୍ଟ କରିବା ପାଇଁ ଆରାଧନା କଲେ । ଆରାଧନାରେ ଶଙ୍କର ସନ୍ତୁଷ୍ଟ ହେଲେ । ଚନ୍ଦ୍ରଙ୍କର କ୍ଷୟ ନିବାରଣ କରି ମାସକ ମଧ୍ୟରୁ ପନ୍ଦର ଦିନ କ୍ଷୟ ହୋଇ ଅନ୍ୟ ପନ୍ଦର ଦିନ ବୃଦ୍ଧି ପାଇବେ ବୋଲି ସେ ବର ଦେଲେ । ଶଙ୍କରଙ୍କ ବରରେ ଦେବତା ଏବଂ ଋଷି ବୃନ୍ଦ ସନ୍ତୋଷ ଲାଭ କଲେ ଏବଂ ଚନ୍ଦ୍ର କୃତଜ୍ଞତା ପ୍ରକାଶ କରି ଶଙ୍କରଙ୍କ ନିମନ୍ତେ ଚନ୍ଦ୍ରକୁଣ୍ଡ ଓ ଗୋଟିଏ ସୁନାର ମନ୍ଦିର ତିଆରି କରିଦେଲେ । ସେହି ଦିନୁ ଜ୍ୟୋତିର୍ଲିଙ୍ଗଙ୍କର ନାମ ହେଲା 'ସୋମନାଥ' ବା ଚନ୍ଦ୍ରଙ୍କର ଦେବତା ।

ଏହା ପରେ ହଜାର ହଜାର ବର୍ଷ ବିତିଗଲା । ଲଙ୍କାର ରାଜା ଦଶଶିର ରାବଣ ସମଗ୍ର ପୃଥିବୀକୁ ନିଜ ଅଧିକାରରେ ଆଣିବା ମାନସରେ ସୋମନାଥଙ୍କର ଆରାଧନା କଲେ । ସେ ପଦ୍ମଫୁଲରେ ପୂଜା ନ କରି ଗୋଟିକ ପରେ ଗୋଟିଏ ନିଜର ମୁଣ୍ଡ କାଟି ପ୍ରଭୁଙ୍କୁ ଅର୍ପଣ କଲେ । ରାବଣ ଶେଷ ମୁଣ୍ଡକୁ କାଟିବାକୁ ଯିବା ସମୟରେ ପ୍ରଭୁ ସନ୍ତୋଷ ଲାଭ କରି ତାଙ୍କର ନଅଟି ଯାକ କଟା ମୁଣ୍ଡକୁ ଫେରାଇ ଦେଲେ ଏବଂ ଅଭିଳାଷ ପୂର୍ଣ୍ଣ କରି ବର ଦେଲେ । ଏହା ଫଳରେ ସେ ପୃଥିବୀ ଅଧିକାର କଲେ । କୃତଜ୍ଞତା ସ୍ୱରୂପ ରାବଣ ସୋମନାଥଙ୍କ ନିମିତ୍ତ ଗୋଟିଏ ରୂପାର ମନ୍ଦିର ତିଆରି କରିଦେଲେ ।

ପୁଣି ବହୁ ବର୍ଷ ଚାଲିଗଲା । ଯାଦବଶ୍ରେଷ୍ଠ ଶ୍ରୀକୃଷ୍ଣ ଥରେ ତାଙ୍କ ସ୍ତ୍ରୀମାନଙ୍କ ସହ ସୋମନାଥଙ୍କୁ ପୂଜା କରିବା ଉଦ୍ଦେଶ୍ୟରେ ଆସିଥିଲେ । ସୋମନାଥ ତାଙ୍କ ପୂଜାରେ ସନ୍ତୋଷ ଲାଭ କରି, "ପୁରୁଷୋତ୍ତମ ହୁଅ" ବୋଲି ତାଙ୍କୁ ବର ଦେଲେ । ଶ୍ରୀକୃଷ୍ଣ ନିଜର କୃତଜ୍ଞତା ସ୍ୱରୂପ ଚନ୍ଦନ କାଠର ମନ୍ଦିର ତିଆରି କରି ଦେଲେ ।

ପୁଣି ବହୁ କାଳ ପରେ—ବଲ୍ଲଭୀପୁରର ମାହେଶ୍ୱରୀ ରାଜା ତିଆରି କରିଦେଲେ ପଥରର ମନ୍ଦିର । ପ୍ରବାଦ ଅଛି, ଏହି ମନ୍ଦିର ତିଆରି ବେଳେ

ତ୍ରିଜଗତର ନାଥ ନିଜେ ଦର୍ଶନ ଦେଉଥିଲେ ଏବଂ ତାଙ୍କ ଆଗରେ ସ୍ୱର୍ଗର ନର୍ତ୍ତକୀମାନେ ନୃତ୍ୟ କରୁଥିଲେ ।

× × × ×

ଶିବଙ୍କ ଆଗରେ ନୃତ୍ୟମଣ୍ଡପରେ ମନ୍ଦିରର ନର୍ତ୍ତକୀମାନେ ବରାବର ନୃତ୍ୟ କରନ୍ତି । ମନ୍ଦିରର ଚାରିପାଖରେ ପ୍ରଦକ୍ଷିଣ ମାର୍ଗ ବୋଲି ଗୋଟିଏ ରାସ୍ତା ଅଛି । ସେ ବାଟେ ଯାତ୍ରୀମାନେ ବେଢ଼ା ପରିକ୍ରମା କରନ୍ତି । ଏହି ରାସ୍ତାରୁ ବାହାରକୁ ଯିବା ପାଇଁ ତିନିଗୋଟି ଦ୍ୱାର । ଗୋଟିଏ ଦ୍ୱାର ଦେଇ ପାଶୁପତ ମଠକୁ ଯିବାକୁ ହୁଏ । ସେଠାରେ ଗଙ୍ଗ ସର୍ବଜ୍ଞ ତାଙ୍କ ଶିଷ୍ୟମାନଙ୍କ ସହ ରହନ୍ତି ।

ପ୍ରଭୁ ଶଙ୍କରଙ୍କ ସାକ୍ଷାତ ଅବତାର ଲକୁଲେଶଙ୍କଦ୍ୱାରା ପ୍ରତିଷ୍ଠିତ ପାଶୁପତ ସଂପ୍ରଦାୟର ଗୁରୁ ହେଉଛନ୍ତି ଗଙ୍ଗ ସର୍ବଜ୍ଞ ।

ଅଗାଧ ପାଣ୍ଡିତ୍ୟ ଯୋଗୁଁ ତାଙ୍କୁ ସମସ୍ତେ 'ସର୍ବଜ୍ଞ' ବୋଲି କହନ୍ତି । ତାଙ୍କର ସୁନାମ ପୃଥିବୀବ୍ୟାପୀ । ଭକ୍ତମାନେ କାଶ୍ମୀରଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ତାଙ୍କର ଗୁଣ କୀର୍ତ୍ତନ କରନ୍ତି । ପୃଥିବୀର ବିଭିନ୍ନ ଦେଶରୁ ଭକ୍ତଗଣ ତାଙ୍କ ଦର୍ଶନପାଇଁ ଆସନ୍ତି । ପ୍ରଭୁ ସୋମନାଥଙ୍କର ଆଜ୍ଞା ଭଳି ତାଙ୍କର ପ୍ରତ୍ୟେକ ଇଚ୍ଛା ପୂରଣ ହୁଏ । ଦେଶର ଧର୍ମ ଜୀବନରେ ସେ ଏପରି ଏକ ସ୍ଥାନ ଅଧିକାର କରିଥିଲେ, ଯାହାକି ଦେବତା ପକ୍ଷରେ ମଧ୍ୟ ଅସମ୍ଭବ ।

ଦ୍ୱିତୀୟ ଦ୍ୱାରରେ ଗଲେ ଗୋଟିଏ ଛକ ଏବଂ ସେଠାରୁ ଆଉ ଗୋଟିଏ ଦ୍ୱାରରେ ଗଲେ ସମୁଦ୍ର କୂଳରେ ପହଞ୍ଚିବାକୁ ହୁଏ ।

ପଶ୍ଚିମକୁ ଏହି ମାର୍ଗର ମଝିରେ ପ୍ରଭୁ ସୋମନାଥଙ୍କ ମନ୍ଦିର । ସେଠାରେ ଆଉ ଗୋଟିଏ ଦ୍ୱାର ଅଛି । ସେ ବାଟେ ଗଲେ ଚାରିପାଖରେ ପାଚେରି ଥିବା ଗୋଟିଏ ଅଗଣା । ସେହି ଅଗଣା ଚାରିପାଖ ବସ୍ତିରେ ପ୍ରାୟ ଚାରିଶତ ପର୍ଯ୍ୟନ୍ତ ମନ୍ଦିରର ନର୍ତ୍ତକୀ ବାସ କରନ୍ତି ।

ସେମାନଙ୍କ ମଧ୍ୟରୁ ଯେଉଁମାନେ ଗୁଜରାଟର ସେମାନେ ଭାବପ୍ରବଣ ହୋଇ ଯେଉଁ ଗୀତ ଗାଇ ଦେବତାଙ୍କୁ ପୂଜା କରନ୍ତି ତାହା ଅତି ମର୍ମସ୍ପର୍ଶୀ । ଆଉ କେତେକ ଉତ୍ତରାଞ୍ଚଳର—ସେମାନଙ୍କ ଭାଷା ଅଧିକାଂଶ ଲୋକ ବୁଝି ପାରନ୍ତି ନାହିଁ । ସେମାନେ ପ୍ରଭୁଙ୍କର ସନ୍ତୋଷ ପାଇଁ ନିଜ ଅଞ୍ଚଳର ସୁଲଳିତ ସଙ୍ଗୀତ ଗାନ କରନ୍ତି ।

ଅନ୍ୟ କେତେକ ଆନ୍ଧ୍ରର ଉତ୍ତରାଞ୍ଚଳର । ସେମାନେ ଉଚ୍ଚ, ଗୌରାଙ୍ଗୀ ଓ ଉଜ୍ଜ୍ୱଳ । କିନ୍ତୁ ସେମାନଙ୍କ ସ୍ୱର କର୍କଶ । ସେମାନଙ୍କ ଗାନରେ ଅନ୍ୟମାନଙ୍କ ଭଳି ଲାଳିତ୍ୟ ନ ଥାଏ । ଅନ୍ୟମାନେ ଦାକ୍ଷିଣାତ୍ୟର । ସେମାନଙ୍କ ରଙ୍ଗ ଟିକିଏ ମଳିନ ଓ ନାକ ଶ୍ରେଷ୍ଠ । ସେମାନେ ଅତି ସୁନ୍ଦର ନାଚନ୍ତି ଓ ସେମାନଙ୍କ ଗୀତ ଅଧିକାଂଶ ବୁଝି ନ ଥିଲେ ମଧ୍ୟ ଶ୍ରୁତି ମଧୁର ।

ଏହି ନାରୀମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଦେବସମର୍ପିତା । ନୃତ୍ୟଗୀତ ଦ୍ୱାରା ଦେବତାଙ୍କର ଆରାଧନା କରିବା ସେମାନଙ୍କ ଜୀବନର ଧ୍ୟେୟ ।

ଦିନରାତି ସେମାନଙ୍କ କାର୍ଯ୍ୟ, ନିଜକୁ ସଜାଇ ଗୀତ ଓ ନାଚ ଶିଖାଇବା ଏବଂ ନିଜେ ଶିଖିବା । ସେମାନେ କେତେକ ପୁରୁଷମାନଙ୍କୁ ମଧ୍ୟ ବିଳାସ କଳା ଶିଖାଇଥାନ୍ତି ।

ଅଗଣାରେ ଗୋଟିଏ ଅଲଗା ଘର । ଘରଟି ଶ୍ରେଷ୍ଠ ହୋଇଥିଲେ ସୁଦ୍ଧା ଅନ୍ୟ ଘରମାନଙ୍କଠାରୁ ସ୍ୱତନ୍ତ୍ର ବୋଲି ବାରି ହୁଏ ।

ଏହି ଘରର ସାମନା ଅଗଣାରେ ଯୁବତୀଟିଏ ଗଛତଳେ ଖଟ ଉପରେ ଶୋଇଛି ମୁଣ୍ଡ ତଳେ ହାତ ରଖି, ଖଟ ଉପରେ ଗୋଡ଼ ଲମ୍ବାଇ । ମଧ୍ୟାହ୍ନ ନିଦ୍ରା ପରେ ସେ ଉଠିଛି ।

ତାହାର ଆଲୁଳାୟିତ କୃଷ୍ଣ କେଶ ତଳକୁ ଲମ୍ବି ପ୍ରାୟ ଆଣ୍ଠୁ ପର୍ଯ୍ୟନ୍ତ ପଡ଼ିଛି । ତା'ର ମୁଖମଣ୍ଡଳ ଓ ଗ୍ରୀବା ଏପରି ସୁନ୍ଦର ଯେ, ଦେଖିଲାକ୍ଷଣି ଲୋକେ ଆତ୍ମହରା ହେଉଛନ୍ତି ।

ପ୍ରକୃତରେ ତା'ର ବୟସ ଅଠର ବର୍ଷ । କିନ୍ତୁ ଠିକ୍ ପନ୍ଦର ବର୍ଷର ତନ୍ୱୀ ତରୁଣୀ ଭଳି ଦେଖାଯାଉଛି ସେ ।

କପାଳରେ ତାର ଚିନ୍ତାରେଖା ଦେଖା ଦେଇ ସଙ୍ଗେ ସଙ୍ଗେ ଉଭେଇ ଯାଉଛି । ତା' ମାଆ ଏପର୍ଯ୍ୟନ୍ତ କାହିଁକି ଆସିଲା ନାହିଁ ? ସର୍ବଜ୍ଞ ତା' ମାଆକୁ କାହିଁକି ଏପର୍ଯ୍ୟନ୍ତ ଅଟକାଇ ରଖିଛନ୍ତି ?

ସେ ମୁହଁ ବୁଲାଇ ଅସ୍ତଗାମୀ ସୂର୍ଯ୍ୟଙ୍କ ଆଡ଼କୁ ଚାହିଁଲା ।

ଅସ୍ତଗାମୀ ସୂର୍ଯ୍ୟଙ୍କ କରିଣ ମନ୍ଦରର ସୁନାକଳସ ଉପରେ ପଡ଼ି ଚକ୍ ଚକ୍ ଦେଖାଯାଉଛି—ଠିକ୍ ତରଳ ସୁନା ଭଳି । ଏହି ମନ୍ଦରର ଚୂଡ଼ା ତିଆରି କରିବା ପାଇଁ ଶିଳ୍ପୀ ତାହାର ସମସ୍ତ ଶିଳ୍ପକୌଶଳ ପ୍ରୟୋଗ କରି ସର୍ବଶ୍ରେଷ୍ଠ କରି ତୋଳିଛି । ଏହା ଏତେ ଉଚ୍ଚ ହୋଇଛି ଯେ, ସତେ ଯେପରି ଆକାଶକୁ ଲାଗିଥିବା ପରି ଦିଶୁଛି ।

ଏହି ଯୁବତୀର ନାମ ଚୌଳି । ଧ୍ୟାନମଗ୍ନ ଭଳି ସେ ମୁହଁ ଟେକି ମନ୍ଦରର ଚୂଡ଼ାରେ ଦୃଷ୍ଟି ନିବଦ୍ଧ କଲା । ତା ପକ୍ଷରେ ଏହା ହେଉଛି ପ୍ରଭୁ ସୋମନାଥଙ୍କର ବାସସ୍ଥାନ କୈଳାସ । ପିଲାଦିନରୁ ସେ ମନ୍ଦରର ବେଢ଼ା ପର୍ଯ୍ୟନ୍ତ ଯାଇଛି । ସମୁଦ୍ରର ଲହରୀରୁ ଆସୁଥିବା ସଙ୍ଗୀତ ସହିତ ନିଜକୁ ମିଳାଇ ଦେଇ ନାଚି ଆସୁଛି ।

ଚୌଳି ଭାବୁଛି—ଆଉ କିଛିଏ ପରେ ସୂର୍ଯ୍ୟ ଅସ୍ତ ହେବେ । ଦେବ-ମନ୍ଦରରେ ଆରମ୍ଭ ହେବ ଆରତି । ତାହା ପରେ ଆସିବ ତାର ସେହି ଆକାଂକ୍ଷିତ ମୁହୂର୍ତ୍ତ ଯାହା ପାଇଁ ସେ ପିଲାଦିନୁଁ ଅପେକ୍ଷା କରି ଆସିଛି । ତା'ର ମାଆ ତଥା ଗୋସେଇଁ ମାଆ ତାକୁ ପ୍ରସ୍ତୁତ କରି ଆଣିଛନ୍ତି ସେଇଥି ପାଇଁ ।

ସେ ଆବାଲ୍ୟରୁ ଦିନ ରାତି ଅକ୍ଳାନ୍ତ ପରିଶ୍ରମ କରି ଆସିଛି ଯେପରି ବଡ଼ ହେଲେ ସେ ନିଜ ନୈପୁଣ୍ୟର ପୂର୍ଣ୍ଣ ପରିଚୟ ଦେଇ ପାରିବ । ସେହି ଉଦ୍ଦେଶ୍ୟରେ ହିଁ ସେ ବଞ୍ଚି ଆସିଛି ।

ପ୍ରଭୁ ସୋମନାଥଙ୍କୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ ତା' ମାଆ ସମେତ ତିନିଶହ ମନ୍ଦର ନର୍ତ୍ତକୀ ଅହରହ ଚେଷ୍ଟା କରନ୍ତି । ଚୌଳି ଭାବୁଛି, ସେ ସୋମନାଥଙ୍କ ସମ୍ମୁଖରେ ଯେଉଁ ନୃତ୍ୟ କରିବ, ତାହା ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର । ତାହାର କଟି ଓ ଚରଣ ଯେପରି ସୁଠାମ ଅନ୍ୟ କାହାର ସେପରି ନୁହଁ । ପାଶୁପତ ସମ୍ପ୍ରଦାୟର ଗୁରୁ ଗଙ୍ଗ ସର୍ବଜ୍ଞ ନିଜେ ତାକୁ ଶିଖାଇଛନ୍ତି । ବହୁଥର ସେ ନାଚିବା ଅବସ୍ଥାରେ ତା' ଗୋଡ଼ ଥକିଯିବା ବେଳେ ପ୍ରଭୁ ସୋମନାଥ ସତେ ଯେପରି ତାକୁ ନାଚିବାକୁ ଶକ୍ତି ଦେଇଛନ୍ତି, ତାହା ସେ ଅନୁଭବ କରିଛି ।

ବହୁବାର ପ୍ରଭୁ ସୋମନାଥ ତାହାକୁ ସ୍ୱପ୍ନରେ ଦେଖା ଦେଇ । 'ତୁ ମୋର ନର୍ତ୍ତକୀ" ବୋଲି କହିଥିବାର ସେ ଅନୁଭବ କରିଛି । ପ୍ରତି ମୁହୂର୍ତ୍ତରେ ସେ ତାଙ୍କ ସେବାରେ ମନ ପ୍ରାଣ ଢାଳି ଦେଇଛି ; ଜୀବନଟାଯାକ ତାଙ୍କ

ସମ୍ମୁଖରେ ପ୍ରତିଦିନ ନୃତ୍ୟ କରି ଏବଂ ତାଙ୍କ ଆଗରେ "ଜୟ ସୋମନାଥ" କହି ନାଚି ନାଚି ସୁ-ମୃତ୍ୟୁ ବରଣ ବ୍ୟତୀତ ଜୀବନରେ ତାହାର ଆଉ କୌଣସି ଅଭିଳାଷ ନାହିଁ। ଏହା ବ୍ୟତୀତ ସେ ଅନ୍ୟ କିଛି ଭାବିବାକୁ ମଧ୍ୟ ଅକ୍ଷମ।

× × ×

ବହୁ ଦିନୁ ମନ୍ଦିର ନୃତ୍ୟଶାଳାର ପ୍ରଥାନୁଯାୟୀ ଅଠର ବର୍ଷ ବୟସ୍କା ନର୍ତ୍ତକୀମାନଙ୍କ ମଧ୍ୟରୁ ଯେ ଅଷ୍ଟାଦଶ ନୃତ୍ୟ, ଦ୍ୱାଦଶ ଭଙ୍ଗୀ ଏବଂ ସପ୍ତସ୍ୱରରେ ସର୍ବଶ୍ରେଷ୍ଠ ବିବେଚିତ ହେବ, ସେ କାର୍ତ୍ତିକ ଏକାଦଶୀ ଦିନ ପ୍ରଭୁଙ୍କ ନିକଟରେ ନୃତ୍ୟ ପରିବେଷଣର ସୁଯୋଗ ପାଇବ। ସେହି ଶୁଭ ଦିନରେ କନ୍ଦ ପ୍ରସ୍ଫୁଟିତ ହୋଇ ଫୁଲରେ ପରିଣତ ହେବା ପରେ ଦେବତାଙ୍କ ନିଯୋଗରେ ଲାଗିବ।

ସେହି ଶୁଭ ମୁହୂର୍ତ୍ତ ପରେ ତାର ଅବସ୍ଥା କଣ ହେବ ସେ କଥା ଚୌଲ ଭାବୁ ନାହିଁ ବା ସେଥିପ୍ରତି ତାର ଭ୍ରୂକ୍ଷେପ ନାହିଁ। ହୁଏତ ତାର ଭବିଷ୍ୟତ ହୋଇପାରେ ଅନ୍ଧକାରମୟ, କିନ୍ତୁ ଆଜି ସେ ନୃତ୍ୟ କରିବ ଏବଂ ତା ନୃତ୍ୟରେ ପ୍ରଭୁ ସୋମନାଥ ସନ୍ତୁଷ୍ଟ ହେବେ। ତାଙ୍କର ସନ୍ତୋଷ ଲାଭ ପାଇଁ ସେ ତା ଜୀବନଯାକ କେତେ ମନେ ମନେ ପୂଜା କରିଛି।

ତାଙ୍କର ସେ ଯେପରି ପ୍ରିୟପାତ୍ରୀ ହୋଇ ପାରିବ, ଯାହା ତାହାର ଏକମାତ୍ର ଆକାଂକ୍ଷା, ସେଥିପାଇଁ ତାର ଅଙ୍ଗପ୍ରତ୍ୟଙ୍ଗ ପ୍ରତ୍ୟେକଟିକୁ ସେ ନିଜର ଆୟତ୍ତାଧୀନ କରିଛି। ସେ ତାର ଖାଦ୍ୟ ଓ ଶୟନକୁ ଠିକ୍‌ଭାବେ ନିଜର ଆୟତ୍ତ କରିଛି। ତାକୁ ଯେପରି ଅନ୍ୟ କେହି ପୁରୁଷ ସ୍ପର୍ଶ ନ କରେ ସେଥିପାଇଁ ସଜାଗ ରହି ଆସିଛି। ନିଜ ମନରେ ସେ ନିଶ୍ଚିତ, ତା ନୃତ୍ୟରେ ପ୍ରଭୁ ଏତେ ଖୁସୀ ହେବେ ଯେ, ସେ ଶିବରାତ୍ରି ଏକାଦଶୀରେ ଆଉ କାହାରି ନୃତ୍ୟ ନ ଦେଖି ତାହାର ନୃତ୍ୟହିଁ ଦେଖିବାକୁ ଚାହିଁବେ।

ପୂର୍ବରୁ ସେ ଭଗବାନଙ୍କୁ ପୂଜା କରିବା ପାଇଁ ନିର୍ଜନ ନୃତ୍ୟ ମଣ୍ଡପକୁ କେତେଥର ନ ଯାଇଛି। ପ୍ରତ୍ୟେକ ଥର ସେ ଏକମାତ୍ର ଗୁହାରି କରି ଆସିଛି ଯେ ତାହା କଳାରେ ସେ ଏପରି ଶ୍ରେଷ୍ଠତା ଲାଭ କରୁ ଯାହା ଅନ୍ୟ କେହି ଇତିପୂର୍ବରୁ ଲାଭ କରି ପାରି ନାହାନ୍ତି।

ଭଗବାନ ଯେ ତାର ମନୋବାଞ୍ଛା ପୂର୍ଣ୍ଣ କରିବେ ଏଥିରେ ଅବଶ୍ୟ ସେ ନିଶ୍ଚିତ। ଆଜି ରାତିରେ ନୃତ୍ୟ ସେ ପରିବେଷଣ କରିବ। ସେତେବେଳେ ତାର ସ୍ୱପ୍ନ ବାସ୍ତବରେ ପରିଣତ ହେବ। ତାର ପ୍ରଭୁ ଭୋଳା ଶଙ୍କର ତା ନୃତ୍ୟରେ ସନ୍ତୋଷ ଲାଭ କରିବେ।

ପୁଣି ଥରେ ସେ ଅନାଇଲା ମନ୍ଦରର ଚୂଡ଼ାକୁ । ବହୁ ସମୟ ଧରି ସେ ପତାକାକୁ ଚାହିଁ ଆସିଅଛି । ମନ୍ଦର ଶିଖରରେ ଏହି ପତାକାକୁ ସେ ଯେତେ ଦେଖୁଛି ତା'ର ମନରେ ସେତେ ଆନନ୍ଦର ଲହରୀ ଖେଳି ଉଠୁଛି ।

ସେ କୌଣସି ନାଚୁଥିବା ଜିନିଷ ଦେଖିଲେ ତାର ହୃଦୟ ନାଚି ଉଠେ । ଉଡୁଥିବା ପତାକା, ତରଙ୍ଗାୟିତ ଲହରୀ, ମନ୍ଦ ସମୀର ଏବଂ ଇତସ୍ତତଃ ହେଉଥିବା ବୃକ୍ଷର ଶାଖାସମୂହ, ପ୍ରତ୍ୟେକ ଜିନିଷ ତା ମନରେ ଆନନ୍ଦ ଆଣିଦେଇଛି । ସେ ନିଜକୁ ସେମାନଙ୍କ ମଧ୍ୟରେ ଜଣେ ବୋଲି ଭାବୁଛି । ପ୍ରତ୍ୟେକ ଅଙ୍ଗଭଙ୍ଗୀ ଓ ନୃତ୍ୟ ତା ପକ୍ଷରେ ଭଗବତ୍ ନୃତ୍ୟ ସ୍ୱରୂପ । ସେ ଏହି ସବୁକୁ ଭଗବତ୍ ସୃଷ୍ଟି ଓ ଧ୍ୱଂସ ବୋଲି ଭାବୁଛି ।

ଚୌଳି ଏହି ଦୁନିଆରେ ଦୁଇଜଣଙ୍କୁ ଜାଣେ । ଜଣେ ହେଉଛନ୍ତି ନର୍ତ୍ତକ ଶ୍ରେଷ୍ଠ ନଟରାଜ ଏବଂ ଆଉ ଜଣେ ସେ ନିଜେ, ତାଙ୍କର ବାଳନର୍ତ୍ତକୀ । ଦୁନିଆରେ ଆଉ କେହି ଅଛନ୍ତି ବୋଲି ସେ ପ୍ରାୟ ଜାଣି ନାହିଁ । ଯେବେ କିଛି ଥାଏ ତାହା ହେଲେ ସେ ଅବାସ୍ତବ ।

"ଚୌଳି, ଉଠ୍ । ଏ ପର୍ଯ୍ୟନ୍ତ କାହିଁକି ଶୋଇଛୁ ?" ତା' ମା ଆ ଗଙ୍ଗାର ସ୍ୱର ଶୁଣାଗଲା ।

ଉଜ୍ଜ୍ୱଳ ହୋଇଗଲା ତାର ମୁହଁ । ସେ ମୁହଁ ବୁଲାଇ ଚାହିଁଲା । ତା' ବେକ ଓ ହାତ ହଲନରେ ବୈଶିଷ୍ଟ୍ୟ ସ୍ପଷ୍ଟ ହୋଇ ଉଠିଲା ।

ପୁଣି ଗଙ୍ଗା କହିଲା, "ଆ, ଉଠ । ତୋ ନୃତ୍ୟ ଦେଖିବାକୁ ଆଜି କିଏ ଆସିଛନ୍ତି ଜାଣିଛୁ ?"

"ତୁ ମୋ ଲୁଗା ଆଣିଛୁ ନା ?"—ପଚାରିଲା ଚୌଳି ।

ଗଙ୍ଗା ହସି ହସି ଉତ୍ତର ଦେଲା, "ଦେଖ ।"

ଗଙ୍ଗାର ବୟସ ପଚାଶ ବର୍ଷ ପୂରି ଗଲାଣି । କେଶ ଗୋଟିଏ ଗୋଟିଏ ଧଳା ହୋଇଥିବାରୁ ବୟସ ସ୍ପଷ୍ଟ ଜଣା ପଡ଼ୁଛି । ଏତେ ବୟସ ହୋଇଥିଲେ ସୁଦ୍ଧା ତା'ର ଗତିରେ ଏବଂ ସ୍ୱରରେ ଲାଳିତ୍ୟ ରହିଛି । ମନ୍ଦରର ନର୍ତ୍ତକୀଗଣଙ୍କ ମଧ୍ୟରେ ମୁଖ୍ୟ ହୋଇଥିବାରୁ ତାହାର ଚେହେରାରୁ ନିଜର କର୍ତ୍ତୃତ୍ୱର ଯଥେଷ୍ଟ ସଙ୍କେତ ମିଳୁଛି ।

ଚୌଳିର ଆଖି ପରି ତା' ଆଖିରେ ତେଜ ନ ଥିଲେ ସୁଦ୍ଧା ସେ ଆଖି ଦୁଇଟି ସୁନ୍ଦର ଏବଂ ଗାମ୍ଭୀର୍ଯ୍ୟପୂର୍ଣ୍ଣ । ଏ ବୟସରେ ମଧ୍ୟ ତା ଆଖିରୁ ଆହ୍ଲାଦର ସଙ୍କେତ ମିଳେ ଏବଂ ଭାବପ୍ରବଣତା ପ୍ରତୀୟମାନ ହୁଏ ।

ମା ହାତରେ ଲୁଗା ଏବଂ ଗହଣା ଦେଖି ଚୌଲା ପାଖକୁ ଦୌଡ଼ି ଗଲା— ସତେ ଯେପରି ତା'ର ଜୀବନ ସେଗୁଡ଼ିକ ଉପରେ ନିର୍ଭର କରେ । "ଏସବୁ କଣ ମୋ ଲାଗି ଆଣିଛୁ ?" ଚୌଲା ପଚାରିଲା ।

ଗଙ୍ଗା କହିଲା, "ହଁ, ଏ ସବୁକୁ ତୋ ପାଇଁ 'ସେ' ବିଭିନ୍ନ ଦେଶରୁ ଆଣିଛନ୍ତି ।"

ତା ମାଆ ବରାବର ଗଙ୍ଗସର୍ବଜ୍ଞଙ୍କୁ ନାଁ ଧରି ନ ଡାକି ସ୍ତ୍ରୀମାନେ ସ୍ୱାମୀଙ୍କୁ ଯେପରି ତୃତୀୟପୁରୁଷରେ ସମ୍ବୋଧନ କରନ୍ତି ସେହିପରି ସମ୍ବୋଧନ କରେ । ଚୌଲା ତା'ର ମାଆର ଏହି ଅଭ୍ୟାସରେ ଆନନ୍ଦ ଅନୁଭବ କରେ ।

ଚୌଲା ଗମ୍ଭୀର ହୋଇ ପଚାରିଲା, "ସତେ ?"

"ହଁ, କିନ୍ତୁ ତୁ ଜାଣିଛୁ ଆଜି କିଏ ଆସିଛନ୍ତି ?"

"ନାଁ ତ, କିଏ ?" କହିଲା ଚୌଲା ।

"ଗୁଜରାଟର ରାଜା ଭୀମଦେବ ।"

ବିଶେଷ କିଛି ଧ୍ୟାନ ନ ଦେଇ ହାର ପିନ୍ଧିଥାଏ ଚୌଲା । ଏହି ଅବସ୍ଥାରେ ସେ ଉପରଠାଉରିଆ ଭାବେ କହିଲା, "ସେ ଆସିଲେ ତ କଣ ହେଲା ?"

ମା ଗେଲ ଗେଲ ସ୍ୱରରେ କହିଲା, "ଗୁଜରାଟର ରାଜା ତୋ ଆଖି ଆଗରେ ତୁଚ୍ଛ ଜଣା ପଡ଼ୁଛନ୍ତି, ନାଁ ?"

ଚୌଲା ଉତ୍ତର ଦେଲା, "ପ୍ରଭୁ ସୋମନାଥଙ୍କ ଛଡ଼ା ମୋ ପକ୍ଷରେ କେହି ବଡ଼ ନୁହେଁ ।"

ମାଆ ତା' ଗାଲ ଚିପି କହିଲା, "ଆଉ ମୁଁ ବି କେହି ନୁହେଁ ।"

ଚୌଲା ମାଆ ହାତକୁ ଯାବୁଡ଼ି ଧରି କହିଲା, "ମା, ତୋ ଛଡ଼ା ମୁଁ ଆଉ ବଞ୍ଚିବି କିପରି ?"

ଚୌଲାର ଗୋସିମା ଯେପରି ନର୍ତ୍ତକୀମାନଙ୍କ ମଧ୍ୟରେ ଥିଲା ମୁଖ୍ୟ, ମାଆ ମଧ୍ୟ ସେହିପରି ସ୍ଥାନ ଅଧିକାର କରିଛି ।

ଗଙ୍ଗା ଆଗରେ ନର୍ତ୍ତକୀମାନେ ସନ୍ତ୍ରମରେ ଠିଆ ହୁଅନ୍ତି । ଗୀତ ଏବଂ ନୃତ୍ୟ ବିଷୟରେ ଏପରି କିଛି ନାହିଁ ଯାହାକି ତାକୁ ଅଜଣା । ଗାଇବା ସମୟରେ କେହି ଟିକିଏ ଭୁଲ କଲେ ସେ ଧରିପାରେ ଏବଂ ଯେ କେହି ଭୁଲ କଲେ ବି ସେ ତାକୁ ଦଣ୍ଡ ଦେବାକୁ ପଛାଏ ନାହିଁ । ନର୍ତ୍ତକୀ ବସ୍ତିର ଘର ବିଭିନ୍ନ ନର୍ତ୍ତକୀଙ୍କ ମଧ୍ୟରେ ବାଣ୍ଟିବା, ଗହଣା ଓ ଲୁଗା ସେମାନଙ୍କୁ ଦେବା, ଏବଂ

ସେମାନଙ୍କୁ ବସ୍ତି ବାହାରକୁ ଯିବା ପାଇଁ ଅନୁମତି ଦେବା—ସବୁ ତା'ର ଦାୟିତ୍ୱ । ସଂକ୍ଷେପରେ କହିବାକୁ ଗଲେ ନର୍ତ୍ତକୀମାନଙ୍କ ଜୀବନଯାପନ ସମ୍ବନ୍ଧୀୟ ସବୁ ବିଷୟ ତାହାର ନିୟନ୍ତ୍ରଣାଧୀନ ।

ଏହି ବୟସରେ ମଧ୍ୟ ଗଙ୍ଗା ପଚିଶ ବର୍ଷ ବୟସ୍କାଙ୍କ ଭଳି ନିଜର ଇଚ୍ଛାନୁସାରେ ଚଳବୁଲ ଓ ସବୁ କାର୍ଯ୍ୟ କରିବାକୁ ସକ୍ଷମ । ସେ ଏପର୍ଯ୍ୟନ୍ତ ମଧ୍ୟ ନାଚେ ଓ ଏଭଳି ଭଲ ନାଚେ ଯେ, ତା' ନାଚ ଦେଖି ଦର୍ଶକମାନେ ପ୍ରଶଂସାରେ ବାକ୍‌ଶକ୍ତି ହରାଇ ବସନ୍ତି ।

ପ୍ରବାଦ ଅଛି—ତା ନାଚରେ ପ୍ରଭୁ ସୋମନାଥ ଏପରି ପ୍ରସନ୍ନ ହୋଇଥିଲେ ଯେ, ତାକୁ ସଶରୀରରେ ଦେଖା ଦେଇଥିଲେ । କିନ୍ତୁ ଏକଥା ଅନ୍ୟ ନର୍ତ୍ତକୀମାନେ ବିଶ୍ୱାସ କରନ୍ତି ନାହିଁ । ନୃତ୍ୟବିଦ୍ୟାରେ ତା' ବୈଶିଷ୍ଟ୍ୟର କାରଣ ସମ୍ପର୍କରେ ଅପବାଦକାରୀମାନେ ନାନା ପ୍ରକାର କଥା କହନ୍ତି ।

ନର୍ତ୍ତକୀମାନଙ୍କ ମଧ୍ୟରୁ କେବଳ ତାହାରି ଗଙ୍ଗ ସର୍ବଜ୍ଞଙ୍କ ସହିତ କଥାବାର୍ତ୍ତା କରି ନିଜ ଇଚ୍ଛାନୁସାରେ ତାଙ୍କଠାରୁ କାର୍ଯ୍ୟ ହାସଲ କରାଇବାର ଶକ୍ତି ଅଛି । ଏହି ଦୁଇଜଣ ଯେତେବେଳେ ଯୁବକ ଯୁବତୀ ଥିଲେ ସେମାନଙ୍କ ମଧ୍ୟରେ ସମ୍ପର୍କ ବିଷୟରେ ବୟସ୍କ ଲୋକେ ନାନା କଥା କହନ୍ତି । ଅବଶ୍ୟ ଏହାସବୁ ମନଗଢ଼ା କଥା । ଏଥିରେ କେତେଦୂର ସତ୍ୟତା ଅଛି ତାହା କେହି କହି ପାରନ୍ତି ନାହିଁ ।

କିନ୍ତୁ ଗୋଟିଏ ବିଷୟରେ କୌଣସି ସନ୍ଦେହ ନାହିଁ । ତାହା ହେଉଛି ପ୍ରତି ସୋମବାର ରାତିରେ ଗଙ୍ଗା ଯେତେବେଳେ ଦେବତାଙ୍କ ଆଗରେ ନାଚେ, ସମ୍ମାନାସ୍ପଦ ଗଙ୍ଗ-ସର୍ବଜ୍ଞ ବରାବର ସେଠାରେ ଉପସ୍ଥିତ ରହନ୍ତି । ଚୌଲର ଚେହେରାରେ ଗଙ୍ଗ-ସର୍ବଜ୍ଞଙ୍କ ଚେହେରାର କେତେଦୂର ସାମଞ୍ଜସ୍ୟ ଅଛି ତାହା ଖୋଜି ବାହାର କରିବା ପାଇଁ କୁତ୍ସାରଟନାକାରୀମାନେ ବର୍ଷ ବର୍ଷ ଧରି ଚେଷ୍ଟା କରି ଆସିଥିଲେ ହେଁ ତାହାର କୌଣସି ସଠିକ୍ ସଂକେତ ଏପର୍ଯ୍ୟନ୍ତ ପାଇନାହାନ୍ତି ।

ଗଙ୍ଗା ଯେପରି ଭଲ ନର୍ତ୍ତକୀ ହୋଇପାରିବ ସେଥିପାଇଁ ତା ମାଆ ତା ଉପରେ ପିଲାଦିନୁ ଆଖି ରଖି ଯତ୍ନ କରି ଆସିଥିଲା । ଗଙ୍ଗା ସେହିପରି ଚୌଲ ଉପରେ ପିଲାଦିନୁ ଆଖି ରଖିଛି । ସେ ଜାଣିଥିବା ଏପରି କୌଣସି ବିଷୟ ନାହିଁ,

ଯାହାକି ଚୌଲାକୁ ସେ ନ ଶିଖାଇଛନ୍ତି । କାରଣ ଚୌଲା ବୟସରେ ସେ ଯେତେ ସୁନ୍ଦରୀ ଥିଲା, ତା' ତୁଳନାରେ ଚୌଲା ହୋଇଛନ୍ତି ଅଧିକ ସୁନ୍ଦରୀ ।

ଗଙ୍ଗ-ସର୍ବଜ୍ଞଙ୍କର ପ୍ରଧାନ ଶିଷ୍ୟ ଶିବରାଶି ଯେପରି ଚୌଲାର ତାଲିମ୍‌ରେ ଅଧିକ ଧ୍ୟାନ ଦିଅନ୍ତି ସେଥିପାଇଁ ସେ ବ୍ୟବସ୍ଥା କରିଛନ୍ତି । ତା' ନଜର ଉଲନ୍ତା ସମୟକୁ ଚୌଲା ଉପରେ ନର୍ତ୍ତକୀ ବସ୍ତିର ଦାୟିତ୍ୱ ନେଇ ଶିବରାଶିଙ୍କ ହୃଦୟ ଜିଣିପାରେ ତାହାହିଁ ଥିଲା ତାର ଏକମାତ୍ର ଅଭିଳାଷ ।

ମାତ୍ର ଚୌଲାର ବାସ୍ତବଜ୍ଞାନ କମ୍ ବୋଲି ଜାଣି ଅନେକ ସମୟରେ ତାର ଅଭିଳାଷ ପୂର୍ତ୍ତି ହେବା ସମ୍ପର୍କରେ ସେ ନିଜ ମନରେ ଟିକିଏ ସନ୍ଦେହ କରେ । ଚୌଲା ଯେ ଖୁବ୍ ଭଲ ନାଚେ ଓ ଗାଏ ଏବଂ ପ୍ରଭୁ ସୋମନାଥଙ୍କ ପ୍ରତି ସେ ଯେ ଅତିଶୟ ଅନୁରକ୍ତା ଏ ସମ୍ପର୍କରେ କୌଣସି ସନ୍ଦେହ ନାହିଁ । ପ୍ରତ୍ୟେକ ଦେବନର୍ତ୍ତକୀ କେବଳ ପ୍ରଭୁ ସୋମନାଥଙ୍କର ହିଁ ଜୟଗାନ କରିବା ଉଚିତ, ଏ କଥା ଗଙ୍ଗା ସମସ୍ତଙ୍କୁ ବାରମ୍ବାର ଶିକ୍ଷା ଦେଇଛି । କିନ୍ତୁ ଅନ୍ୟମାନଙ୍କୁ ଶିକ୍ଷା ଦେଇ ଆସିଥିବା ଏହି ବିଷୟ ପ୍ରକୃତ କାର୍ଯ୍ୟରେ ପରିଣତ କରିବା କେତେଦୂର କଷ୍ଟକର ତାହା ସେ ନିଜେ ଜାଣେ । ଚୌଲା ବଡ଼ ହେଲେ ସଂସାରରେ ବାସ୍ତବବାଦୀ ହୋଇ ଚଳିପାରିବ କି ନାହିଁ ସେ ବିଷୟରେ ତାହାର ଯଥେଷ୍ଟ ସନ୍ଦେହ ଅଛି ।

ଚୌଲାର ରୁଚି କେତେକାଂଶରେ ଗଙ୍ଗାର ରୁଚିପରି । ଆଜି ସେ ପ୍ରଥମଥର ପାଇଁ ପ୍ରଧାନ ପୂଜା ସମୟରେ ଦେବତାଙ୍କ ନିକଟରେ ନାଚିବ । ଏହି ନାଚ ପାଇଁ ସେ ଆଜି ଯାଏ ତାକୁ ପ୍ରସ୍ତୁତ କରି ଆସିଛି ।

ଗତ ବର୍ଷ ଏହି ପୁଣ୍ୟ ଦିବସରେ ଚୌଲା ନାଚିବାକୁ ଗଙ୍ଗସର୍ବଜ୍ଞ ପ୍ରସ୍ତାବ କରିଥିଲେ । ଚୌଲା ଏବେ ପିଲା ଓ ତାହାର ଶିକ୍ଷା ଶେଷ ହୋଇ ନାହିଁ, ଏହି ଆଳ ଦେଖାଇ ଗଙ୍ଗା ତାହା ବନ୍ଦ କରାଇଦେଇଥିଲା ।

# ବ୍ରହ୍ମଚାରୀର ହୃଦୟ

ମନ୍ଦିରର ବାହାର କାନ୍ଥ ଓ ଦୁର୍ଗର କାନ୍ଥରେ ଥିବା ଦୀପସ୍ତମ୍ଭମାନଙ୍କରେ ଅସଂଖ୍ୟ ମାଟି ଦୀପ ଜଳି ମନ୍ଦିରକୁ ଆଲୋକିତ କରୁଥିଲା ।

ପ୍ରଭୁ ସୋମନାଥଙ୍କ ଆରତି ସମୟ ହୋଇ ଆସୁଥିବାରୁ ହଜାର ହଜାର ଯାତ୍ରୀ ନୃତ୍ୟମଣ୍ଡପରେ ଏକାଠି ହୋଇଥାନ୍ତି ।

ନୃତ୍ୟମଣ୍ଡପର ସ୍ତମ୍ଭମାନଙ୍କ ଠଣାରେ ଶହ ଶହ ମାଟିଦୀପ ଜଳି ମଣ୍ଡପଟି ଏପରି ଆଲୋକିତ ହୋଇଥିଲା ଯେ,କାନ୍ଥର କାରୁକାର୍ଯ୍ୟମାନ ସତେ ଯେପରି ସଜୀବ ହୋଇଉଠିଥାଏ । ଗ୍ଲଚରୁ ସୁନା ଜଞ୍ଜିରରେ ଓହଳିଥିବା ଘଣ୍ଟା ବାଜି ଆନନ୍ଦର ଧ୍ୱନି ଶୁଣାଉଥାଏ । ଦଳଦଳ ଯାତ୍ରୀ ହାତ ଯୋଡ଼ି "ଜୟ ସୋମନାଥ" ଧ୍ୱନି କରି ଆସି ଗର୍ଭଗୃହ ପାଖରେ ନତମସ୍ତକ ହେଉଥାନ୍ତି ।

ଗର୍ଭଗୃହରେ ବହୁ ଅଳଂକୃତ ସୋମନାଥଙ୍କ ମୂର୍ତ୍ତି, ଫୁଲ ଏବଂ ବେଲ-ପତ୍ରରେ ଆଚ୍ଛାଦିତ ହୋଇ ରହିଥାନ୍ତି । ଗ୍ଲତ ଉପରୁ ସୁନା ଜଞ୍ଜିରରେ ଟଙ୍ଗା ହୋଇଥିବା ଅଭିଷେକ ପାତ୍ରରୁ ନିରବଚ୍ଛିନ୍ନ ଜଳଧାର ପଡ଼ୁଥାଏ । ଚତୁର୍ବେଦୀ ବ୍ରାହ୍ମଣମାନେ ମନ୍ତ୍ର ପାଠ କରୁଥାନ୍ତି ।

ହଠାତ୍ ନାଟ ମନ୍ଦିରର ପ୍ରଧାନ ଦ୍ୱାରଦେଶରୁ ବିଭିନ୍ନ ବାଦ୍ୟଯନ୍ତ୍ର ସହ ସଙ୍ଗୀତର ଧ୍ୱନି ଶୁଣାଗଲା । ଏହି ଶବ୍ଦ ଶୁଣି ମଣ୍ଡପର ସମବେତ ଯାତ୍ରୀଗଣ ଉତ୍‌କର୍ଣ୍ଣ ହୋଇ ଉଠିଲେ ଏବଂ ପରେ ଜଣେ ହୃଷ୍ଟପୁଷ୍ଟ ସାଧୁ ନାଟ ମନ୍ଦିରକୁ ଆସି ଗର୍ଭଗୃହ ନିକଟକୁ ସିଧା ଗ୍ଲଲିଗଲେ ।

ଏହି ସମବେତ ଜନତାକୁ ନୀରବ କରିବା ପାଇଁ ଜଣେ ସାଧୁ ଉଚ୍ଚ-ସ୍ୱରରେ ଶଙ୍ଖ ବଜାଇଲେ । ଏହି ଧ୍ୱନିରେ ସାରା ନୃତ୍ୟମଣ୍ଡପ ପ୍ରକମ୍ପିତ ହେଲା । ପ୍ରତ୍ୟେକ ବ୍ୟକ୍ତି ନୀରବରେ ପ୍ରବେଶଦ୍ୱାର ଆଡ଼କୁ ଆଖି ପକାଇ ଅପେକ୍ଷାରେ ରହିଲେ ।

ବ୍ୟାଘ୍ରଚର୍ମ ପରିହିତ ବିଭୂତି ଭୂଷିତ ଉଚ୍ଚ ଗୌର ବର୍ଣ୍ଣର ଜଣେ ବୃଦ୍ଧ ନୃତ୍ୟମଣ୍ଡପରେ ପ୍ରବେଶ କଲେ । ତାଙ୍କର ଈଷତ୍ ଶୁଭ୍ର ଦାଢ଼ି ବନ୍ଧା ହୋଇଥାଏ । ଶୁଭ୍ର ଉପବୀତ ପଡ଼ିଥାଏ ବାମ କାନ୍ଧରେ । ସେ ଆସିବା ସଙ୍ଗେ ସଙ୍ଗେ ସମସ୍ତେ ଠିଆହୋଇପଡ଼ିଲେ । କେତେକ ତାଙ୍କ ପାଦ ଛୁଇଁ ପ୍ରଣତି କଲେ । ସର୍ବଜ୍ଞ ଗଙ୍ଗଙ୍କର ଜୟଧ୍ୱନି ଶୁଣାଗଲା ।

ବୃଦ୍ଧଙ୍କର ଉଚ୍ଚ କପାଳରୁ ତାଙ୍କ ପାଣ୍ଡିତ୍ୟର ସଙ୍କେତ ମିଳିଥାଏ ଏବଂ ଚନ୍ଦନର ତିନିଧାର କପାଳରେ ପଡ଼ିଥାଏ । ତାଙ୍କର ସଜଳ ଆଖି ଦୁଇଟି ସ୍ୱଚ୍ଛ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ । ସେ ଚନ୍ଦ୍ରଜ୍ୟୋତିକଣ୍ଟିବାଷଣୀ ଗୃହଆଡ଼କୁ ଦୃଷ୍ଟି ନିକ୍ଷେପ କଲେ, ସତେ ଯେପରି ସେ କାହାକୁ ଖୋଜୁଛନ୍ତି ।

ପ୍ରଧାନ ସେବକ ଆସିବାକ୍ଷଣି ସମସ୍ତେ ଅନୁଭବ କଲେ ଯେପରି କି ଏହି ମଣ୍ଡପରେ ଏପରି ଜଣେ କେହି ଅଛନ୍ତି, ଯାହାଙ୍କର ଜୀବନ ପ୍ରଭୁ ସୋମନାଥଙ୍କର ସେବା ପାଇଁ ଉତ୍ସର୍ଗୀକୃତ ଏବଂ ପ୍ରଭୁ ଶଙ୍କରଙ୍କର ଅବତାର ଲକୁଲେଶଙ୍କ ବାଣୀ ପ୍ରଚାର ପାଇଁ ସେ ଅବତୀର୍ଣ୍ଣ ହୋଇଛନ୍ତି ।

ସତେଇଶବର୍ଷ ପୂର୍ବେ ଯେତେବେଳେ ଗଙ୍ଗସର୍ବଜ୍ଞ ଏହି ସଂପ୍ରଦାୟର ମୁଖ୍ୟ ପଦ ଗ୍ରହଣ କଲେ, ତାହା ଥିଲା ପାଶୁପତ ସଂପ୍ରଦାୟର ଅବନତିର ସମୟ । ଆଜି ଦେଶର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ପ୍ରତ୍ୟେକ ଶିକ୍ଷିତ, ଧର୍ମୀ ଓ ଶାସକ ତାଙ୍କୁ ଏହି ସଂପ୍ରଦାୟର ମୁଖ୍ୟ ବୋଲି ଗ୍ରହଣ କରିବା ପାଇଁ ପରସ୍ପର ମଧ୍ୟରେ ପ୍ରତିଯୋଗିତା କରିବା ପରି ଅବସ୍ଥା ଦେଖାଦେଇଛି । ତାଙ୍କ ପ୍ରଭାବ ଫଳରେ ଦୁନିଆ ସାରା ଲୋକଙ୍କର ସୋମନାଥଙ୍କ ଉପରେ ପୁନର୍ବାର ବିଶ୍ୱାସ ସ୍ଥାପିତ ହୋଇପାରିଛି ।

ଗଙ୍ଗସର୍ବଜ୍ଞଙ୍କ ସହିତ ତିନିଜଣ ବ୍ୟକ୍ତି ଆସିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ତାଙ୍କର ମୁଖ୍ୟ ଶିଷ୍ୟ ଶିବରାଶି । ସେ ଠିକ୍ ଗୁରୁଙ୍କ ପରି ବେଶ ପରିଧାନ କରୁଥିଲେ ସୁଦ୍ଧା ତାଙ୍କ ମୁଖରେ ପାଣ୍ଡିତ୍ୟ ଅପେକ୍ଷା ସାଂସାରିକତାର ଭାବ ବେଶି ସ୍ପଷ୍ଟ ହେଉଥିଲା ।

ଦ୍ୱିତୀୟ ବ୍ୟକ୍ତି ଖୁବ୍ ହୃଷ୍ଟପୁଷ୍ଟ, ଉଚ୍ଚ ଓ ତାଙ୍କର ବଡ଼ ବଡ଼ କଳା ଆଖିର ତେଜରେ ଦୀପଗୁଡ଼ିକ ଯେପରି ଅଧିକ ଆଲୋକିତ ହେଉଛି । ତାଙ୍କର ମୁଖମଣ୍ଡଳରେ ସରଳତା, ନିର୍ଭୀକତା ଏବଂ ଶରଣବତ୍ସଳତା ପ୍ରକାଶ ପାଉଥିଲା । ସେ ଅତ୍ୟନ୍ତ କ୍ଳାନ୍ତ ଜଣାପଡ଼ୁଥିଲେ ସୁଦ୍ଧା ତାଙ୍କ ରୂପରୁ ସେ ଜଣେ ରାଜପରିବାରର ଲୋକ ବୋଲି ଧାରଣା ହୁଏ । ତାଙ୍କର ପଗଡ଼ି, ଝୁଲୁଥିବା ଲମ୍ବା ତରବାରି ଏବଂ ବାମ ପାଖ କାନ୍ଧରେ ଧନୁ, ଏହି ଧାରଣାକୁ ଅଧିକ ନିଶ୍ଚିତ କରି-ଦେଉଥାଏ । ତାଙ୍କୁ ଦେଖିଲେ ଗୋଟିଏ ସିଂହ କୁଦାମାରିବା ଅବସ୍ଥାରେ ଥିବା ଭଳି ଜଣାଯାଏ ।

ତୃତୀୟ ଜଣକ ଅଳ୍ପବୟସ୍କ ହେଲେ ସୁଦ୍ଧା ଯଥେଷ୍ଟ ପ୍ରଭାବଶାଳୀ । ତାଙ୍କର ଚିକ୍କଣ ଚର୍ମ, ଉଜ୍ଜ୍ୱଳ ଆଖି ଏବଂ ଶ୍ରେଷ୍ଠ ସୁଗଠିତ ଅଙ୍ଗ ଠିରୁ ସେ ଉଚ୍ଚବଂଶୀୟ

ବୋଲି ଧାରଣା ହୁଏ । କିନ୍ତୁ କଥାବାର୍ତ୍ତାରେ ଯେପରି ଶକ୍ତି ପ୍ରକଟିତ ହେଉଥାଏ, ତହିଁରେ ଉକ୍ତ ଧାରଣା ଭୁଲ ମନେହୁଏ । ତାଙ୍କ କମରବନ୍ଧରେ ତଲବାର ଝୁଲୁଥାଏ ସତ, କିନ୍ତୁ ତାଙ୍କରୁ ଜଣାଯାଉଥାଏ ଯେପରି ଅସ୍ତ୍ରଶସ୍ତ୍ର ଧାରଣ କରିବାକୁ ତାଙ୍କର ଆଗ୍ରହର ଅଭାବ ।

ଗଙ୍ଗସର୍ବଜ୍ଞ ଆସ୍ତେ ଆସ୍ତେ ଗର୍ଭଗୃହର ଦ୍ୱାରଦେଶକୁ ଗଲେ । ସମସ୍ତଙ୍କ ପ୍ରଣତିର ବନମଧ୍ୟରେ ସେ "ନମଃ ଶିବାୟ" କହି ଚାଲିଥାନ୍ତି । ସେ ଗର୍ଭଗୃହ ନିକଟରେ ପହଞ୍ଚି ଦେବତାଙ୍କ ସମ୍ମୁଖରେ ଠିଆହୋଇ ଅର୍ଚ୍ଚନା କଲେ ।

ଯେଉଁ ଗଙ୍ଗସର୍ବଜ୍ଞଙ୍କୁ ପୂଜା କରିବା ସୁଯୋଗ ପାଇଲେ ରାଜାମାନେ ମଧ୍ୟ ନିଜକୁ ଭାଗ୍ୟଶାଳୀ ମନେକରନ୍ତି, ସେ ନିଜେ ପ୍ରଭୁଙ୍କ ଆଗରେ ନତମସ୍ତକ ହୋଇ ନୀରବରେ ଆରାଧନା କଲେ । ତାଙ୍କ ଆରାଧନା ସମୟରେ ଜଣାଯାଉଥାଏ ଯେପରି ତାଙ୍କ ହୃଦୟ ଭକ୍ତିରେ ପୂରିଯାଇଛି ଏବଂ ପାରିପାର୍ଶ୍ୱିକ ଅବସ୍ଥା ଭୁଲିଯାଇ ସେ କେବଳ ଭଗବତ୍ ଉପସ୍ଥିତି ହିଁ ଉପଲବ୍ଧି କରୁଛନ୍ତି । ତା'ପରେ ସେ ପାଖରେ ଠିଆହୋଇଥିବା ଜଣେ ବ୍ରାହ୍ମଣଙ୍କ ହାତରୁ ଆରତି ପାଇଁ ପ୍ରସ୍ତୁତ ଥିବା ଗୋଟିଏ ଥାଳି ନେଲେ ।

ଗତ ଚଉଦ ବର୍ଷ ଧରି ପ୍ରତିଦିନ ସନ୍ଧ୍ୟାବେଳେ ପ୍ରଭାସର ଏହି ତୀର୍ଥରେ ହଜାର ହଜାର ଭକ୍ତଙ୍କର ଘଣ୍ଟା ଏବଂ ମର୍ଦ୍ଦଳ ଧ୍ୱନି ମଧ୍ୟରେ ସେ ଦେବତାଙ୍କର ପୂଜା ଓ ଆଳତି ଏହିପରି କରିଆସିଛନ୍ତି ।

ଆରତି ଶେଷ କରିବା ପରେ ସେ "ଜୟ ପ୍ରଭୁ ସୋମନାଥଙ୍କର ଜୟ" ଧ୍ୱନି କଲେ । ତାଙ୍କ ଧ୍ୱନି ଅନୁସରଣରେ ସମବେତ ଯାତ୍ରୀମାନେ ପ୍ରତିଧ୍ୱନି କଲେ । ସଙ୍ଗେ ସଙ୍ଗେ ମଣ୍ଡପ ଭିତରେ ଓ ବାହାରେ ଯାତ୍ରୀବୃନ୍ଦ ମଧ୍ୟ ତାହାର ପୁନରାବୃତ୍ତି କଲେ । ମୁହୂର୍ତ୍ତକ ପାଇଁ ପ୍ରଭାସ ସହରଟି ଭକ୍ତ ମୁଖର "ପ୍ରଭୁ ସୋମନାଥଙ୍କର ଜୟ"···ଏହି ଧ୍ୱନିରେ ମୁଖରିତ ହୋଇଗଲା ।

ଆରତି ଶେଷ ହେବା ପରେ ଗଙ୍ଗସର୍ବଜ୍ଞ ଗର୍ଭଗୃହରୁ ଆସି ସ୍ୱର୍ଣ୍ଣସିଂହାସନରେ ବସିଲେ । ପାଖରେ ବସିଲେ ଶିବରାଶି । ସାଙ୍ଗରେ ଆସିଥିବା ଅନ୍ୟ ଦୁଇଜଣ ବ୍ୟକ୍ତି ସୁନାଜରିର ସତରଞ୍ଜିରେ ବସିଲେ ।

ଗଙ୍ଗସର୍ବଜ୍ଞ ତାଙ୍କ ସାଙ୍ଗରେ ଆସିଥିବା ରାଜକୀୟ ପୋଷାକଧାରୀ ବ୍ୟକ୍ତିଙ୍କୁ ଲକ୍ଷ୍ୟ କରି କହିଲେ, "ବାପ ଭୀମଦେବ ! ଶେଷରେ ଧାରାଧୀଶ ଗ୍ରାମ ଦାନ କଲେ ତ ?"

ଭୀମଦେବ ଗଙ୍ଗସର୍ବଜ୍ଞଙ୍କ ନିକଟକୁ ଯାଇ କହିଲେ, "କିନ୍ତୁ ମହାରାଜ ! ମନ୍ଦିରର ଜୀର୍ଣ୍ଣୋଦ୍ଧାର ମୁଁ କରିବି ।"

ଗଙ୍ଗସର୍ବଜ୍ଞ ଏହା ଶୁଣି ହସିକରି କହିଲେ, "ତମର ଯେପରି ଇଚ୍ଛା । ପ୍ରଭୁ ସୋମନାଥଙ୍କର କୃପା ଯାହା, ତାହା ହିଁ ହେବ । ହଁ ବାପ, ପୁଣି କେବେ ଆସିବ ?"

ଭୀମଦେବ ଉତ୍ତର ଦେଲେ, "ଆସନ୍ତାବର୍ଷ ।" ନିଜର ପ୍ରଧାନମନ୍ତ୍ରୀଙ୍କୁ ଲକ୍ଷ୍ୟ କରି କହିଲେ, "କଣ ବିମଳ ?"

ରାଜାଙ୍କ ସାଙ୍ଗରେ ଆସିଥିବା ସୁପୁରୁଷ ଟିକିଏ ହସି କହିଲେ, "ଅବଶ୍ୟ ! ସେ ସମୟକୁ ଆଚାର୍ଯ୍ୟଶ୍ୱରଙ୍କର ଯଦି ଇଚ୍ଛା ପୂର୍ଣ୍ଣ ହୁଏ, ତେବେ ମହାରାଜ ମାଳବ ଅଧିକାର କରିଥିବେ ।"

କିଛିକ୍ଷଣ ପାଇଁ ଗଙ୍ଗସର୍ବଜ୍ଞ ନୀରବ ହୋଇଗଲେ । ବିମଳ ଜୈନଧର୍ମର ଲୋକ । ସେହି ଧର୍ମର ଜଣେ ବିଶିଷ୍ଟ ମହାପୁରୁଷ ଆଚାର୍ଯ୍ୟଶ୍ୱରଙ୍କ ନାମ ଓ ମାଳବ ସମ୍ବନ୍ଧିତ ସଂଘର୍ଷର ଚର୍ଚ୍ଚା ବୋଧହୁଏ ତାଙ୍କୁ ଭଲ ଲାଗିଲା ନାହିଁ । ବିଷୟ ପରିବର୍ତ୍ତନ କରିବା ଲାଗି ସର୍ବଜ୍ଞ ଆଦେଶ ଦେଲେ, "ଏବେ ନୃତ୍ୟ ଆରମ୍ଭ ହେଉ ।"

ଚାରିଆଡ଼େ ନୀରବତା ଦେଖାଦେଲା । ଦକ୍ଷିଣଦ୍ୱାରରୁ ନୃତ୍ୟମଣ୍ଡପକୁ ଦଉଡ଼ି ବନ୍ଧା ହୋଇ ପଡ଼ିଥିବା ସ୍ୱତନ୍ତ୍ର ରାସ୍ତା ଆଡ଼କୁ ସମସ୍ତେ ଆଖି ପକାଇଲେ ।

ପ୍ରଥମେ ଦୁଇ ଜଣ ମଶାଲ ଧରି ଆସିଲେ ଏବଂ ତାଙ୍କ ପଛେ ପଛେ ମୂଲ୍ୟବାନ ପରିଧାନ ପିନ୍ଧି ବେଶଭୂଷା ହୋଇ ଆସିଲା ଗଙ୍ଗା । ତା ପଛରେ ଆସିଲା ଶୁଭ୍ରବସ୍ତ୍ର ପରିହିତା ଗୋଟିଏ ଯୁବତୀ । ତା ପଛେ ପଛେ ଆସିଲେ ଛ ଜଣ ନର୍ତ୍ତକୀ । ଶେଷକୁ ଆସିଲେ ସଙ୍ଗୀତମଣ୍ଡଳୀ । ସମସ୍ତେ ମଣ୍ଡପର ମଧ୍ୟବର୍ତ୍ତୀ ସ୍ଥାନକୁ ଯାଇ ପ୍ରଭୁଙ୍କ ଆଡ଼କୁ ମୁହଁ କରି ସସମ୍ଭ୍ରମେ ଠିଆହେଲେ ।

ଶୁଭ୍ରବସ୍ତ୍ର ପରିହିତା ଯୁବତୀ ଉପରେ ଗଙ୍ଗସର୍ବଜ୍ଞଙ୍କ ଆଖି ପଡ଼ିବା ମାତ୍ରେ ଭାବାତିଶଯ୍ୟରେ ତାଙ୍କର ଆଖି ବୁଜିହୋଇଗଲା ।

ଭୀମଦେବ ଚୁପ୍ ଚୁପ୍ କରି ଶିବରାଶିଙ୍କୁ ପଚାରିଲେ, "ଆଜି ନୂତନ ନର୍ତ୍ତକୀ ନାଚିବ ନାଁ ?" ଶିବରାଶି ସ୍ୱୀକୃତି ଜଣାଇଲେ ।

ମନ୍ତ୍ରୀ ବିମଳ ଆଗ୍ରହ ପ୍ରକାଶ କଲେ, "କିଏ ସେ ? ନାଁ । କଣ ?"

ଶିବରାଶି କୌଣସି ଜବାବ ଦେଲେ ନାହିଁ ।

ଗଙ୍ଗା ପ୍ରଭୁଙ୍କର ଯଶୋଗାନ କଲା । ତା'ର ବୟସ ଯଥେଷ୍ଟ, ତେବେ ବି ଏ ପର୍ଯ୍ୟନ୍ତ ସ୍ୱରର ମଧୁରତା ଅକ୍ଷୁଣ୍ଣ ରହିଛି । ଖାଲି ସେତିକ ନୁହେଁ, ସେହି ମଧୁରତା ଭିତରେ ଅଛି ପ୍ରକୃତ ଭକ୍ତର ଆନୁଗତ୍ୟ । ପ୍ରଭୁ ଶଙ୍କରଙ୍କ ସ୍ତୁତିଗାନ କଲାବେଳେ ଗଙ୍ଗସର୍ବଜ୍ଞଙ୍କୁ ମଧ୍ୟ ପ୍ରସନ୍ନ କରାଇବା ତାର ଉଦ୍ଦେଶ୍ୟ । ଗାଇଲାବେଳେ ତାର ଆଖି ପ୍ରଭୁଙ୍କ ଉପରେ ଯେତେ ନ ଥିଲା, ସେତେ ଥିଲା ଗଙ୍ଗସର୍ବଜ୍ଞଙ୍କ ଉପରେ । ସେ ପ୍ରକୃତ ହିଁ ତାଙ୍କର ଉଦ୍ଦେଶ୍ୟରେ ଗୀତ ବୋଲୁଥିବାରୁ ଗଙ୍ଗସର୍ବଜ୍ଞ ଆଖି ଦରବୁଜା କରି ତାହା ଶୁଣୁଥାନ୍ତି । ତାଙ୍କର ଅନ୍ୟାନ୍ୟ ଶାସ୍ତ୍ର ମଧ୍ୟରେ ସଙ୍ଗୀତଜ୍ଞାନ ଥିଲା ବେଶି । ଏ ପର୍ଯ୍ୟନ୍ତ ଯେତେ ଗାୟିକାଙ୍କ ମୁଖରେ ଗୀତ ସେ ଶୁଣିଛନ୍ତି, ଗଙ୍ଗା ଅପେକ୍ଷା କେହି ଅଧିକ ଭଲ ଭାବେ ଗାଇବାକୁ ସମର୍ଥ ନୁହନ୍ତି—ଏହା ତାଙ୍କର ଦୃଢ଼ବିଶ୍ୱାସ ।

ସଙ୍ଗୀତ ଶେଷ ହେଲା । ସର୍ବଜ୍ଞ ତୁଷ୍ଟ ହେଲେ କି ନ ହେଲେ ଜାଣିବା ପାଇଁ ଗଙ୍ଗାର ଦୃଷ୍ଟି ପ୍ରଥମେ ତାଙ୍କ ଉପରେ ପଡ଼ିଲା । ଆଖି ଟିକିଏ ଖୋଲି ପସନ୍ଦ କରିଥିବାର ସୂଚନା ଭଳି ଗଙ୍ଗସର୍ବଜ୍ଞ ସାମାନ୍ୟ ହସିଥିଲେ । ତା'ପରେ ଉଭୟଙ୍କ ଦୃଷ୍ଟି ଏକାସଙ୍ଗେ ପଡ଼ିଲା ସେହି ଯୁବତୀ ଉପରେ । ଗଙ୍ଗସର୍ବଜ୍ଞ ତାକୁ କ୍ଷୀଣ ସ୍ୱରରେ କହିଲେ, "ଏବେ ନୃତ୍ୟ ଆରମ୍ଭ କର ।"

ଏହା କହିବାକ୍ଷଣି ତାଙ୍କ ଆଖି ଆଗରେ ଭାସିଗଲା, ଊଣେଇଶବର୍ଷ ପୂର୍ବର ଗୋଟିଏ ସକାଳର ଘଟଣା । ସମୟର ବ୍ୟବଧାନ ଉଭେଇଗଲା । ଯେଉଁ ପୂଣ୍ୟ ଅର୍ବୁଦାଚଳ ପର୍ବତ ଶିଖରରେ ନିଜର ଆତ୍ମଶୁଦ୍ଧି ପାଇଁ ସେ ଛଅମାସ ଧରି କଠୋର ଉପାସନା କରିଥିଲେ, ତାହା ତାଙ୍କ ଆଖି ଆଗରେ ନାଚିଲା । ସେହି ଉପାସନା ପରେ ପ୍ରବାସକୁ ଫେରି ନିଜର ଶିଷ୍ୟମାନଙ୍କ ସହିତ ଯୋଗଦେଇ ସେ ଯେଉଁ ଆନନ୍ଦ ପାଇଥିଲେ, ତାହା ତାଙ୍କର ମନେପଡ଼ିଗଲା ।

ଅର୍ଦ୍ଧରାତ୍ରି ପରେ ସେ ଦିନ ଆଉ ତାଙ୍କୁ ନିଦ ଆସୁ ନ ଥାଏ । ତାଙ୍କୁ ଦୂରରୁ କେହି ଯେପରି ସତେ ଡାକୁଛି, ତାହା ହିଁ ସେ ଅନୁଭବ କଲେ । ନିଜର ଭକ୍ତମାନଙ୍କୁ ସାଙ୍ଗରେ ନେଇ ଗୁମ୍ଫାର ବାହାରକୁ ଗଲେ ।

ସେ ସମୁଦ୍ରକୂଳରେ ପହଞ୍ଚି ଦେଖିଲେ ଯେ, ଲହରୀ ଭିତରୁ ଗୋଟିଏ ସୁନ୍ଦରୀ ଦେବୀ ଉଠିଆସୁଛନ୍ତି । ତାଙ୍କୁ ବୋଧହେଲା ଯେପରି ଏ ନାରୀ ମୂର୍ତ୍ତି ଅପାର୍ଥିବ ।

ଏହି ମୁହୂର୍ତ୍ତ ସେ କେବେହେଲେ ଭୁଲି ପାରି ନାହାନ୍ତି । ସେ ପ୍ରଶ୍ନ କରିଥିଲେ, "ଏ କିଏ ?" ନାରୀ ଜଣକ ଉତ୍ତର ଦେଲେ, "ମୁଁ ପରୀ !"

ଗଙ୍ଗସର୍ବଜ୍ଞ ଚିହ୍ନି ପାରିଲେ । ନର୍ତ୍ତକୀମାନଙ୍କର କର୍ତ୍ତ୍ରୀର କନ୍ୟା— କୋକିଳକଣ୍ଠୀ କଣ୍ଠରେ ଶିବସ୍ତୁତିକୁ ଜ୍ୟୋତ୍ସ୍ନାମୟୀ ଅମୃତରେ ପରିଣତ କରିବାରେ ଦକ୍ଷା । ସେ ଜଣେ ମନ୍ଦିରର ନର୍ତ୍ତକୀ ମାତ୍ର, କିନ୍ତୁ ପ୍ରଭୁଙ୍କ ପାଖରେ ନୃତ୍ୟ କରିବା ତାର ଜୀବନର ପ୍ରଧାନ ଲକ୍ଷ୍ୟ ଓ ଶିବଭକ୍ତିରେ ଅଚଳ ।

ତାହା ଆଗରେ ଗଙ୍ଗସର୍ବଜ୍ଞ ନିଜର ଭାବାବେଗ ସମ୍ଭାଳି ନ ପାରି "ବେଳାଭୂମିରେ ଏତେବେଳେ ?" ବୋଲି କହି ଅଟକି ଗଲେ ।

ଉତ୍ତର ପାଇଲେ, "ବର୍ତ୍ତମାନ ସମୟ ନାହିଁ । ସ୍ନାନ ସାରି ପ୍ରଭୁଙ୍କ ଆଗରେ ନୃତ୍ୟ କରିବା ଲାଗି ପ୍ରସ୍ତୁତ ହେଉଛି ।"

ସର୍ବଜ୍ଞ ପଚାରିଲେ, "ଅସମୟରେ ଏକା ଦେବତାଙ୍କଠାରୁ କିଛି ବର ମାଗିବାକୁ ଇଚ୍ଛା ହୁଏ ନାଁ ?"

ଗଙ୍ଗା ଲଜ୍ଜାରେ ମୁହଁ ତଳକୁ ପୋତିଦେଲା । ଉଣେଇଶ ବର୍ଷ ପରେ ମଧ୍ୟ ସର୍ବଜ୍ଞ ଏହି ଘଟଣା ପୁରାପୁରି ମନେରଖିଛନ୍ତି । ସେତେବେଳେ ସେ ଉତ୍ତର ଦେଇଥିଲା, "କେବଳ ପ୍ରଭୁଙ୍କର ଓ ଆପଣଙ୍କର ସେବା ।"

ହଠାତ୍ ତାଙ୍କ ବ୍ରହ୍ମଚାରୀ ହୃଦୟରେ ଏଭଳି ଗୋଟିଏ ଭାବ ଦେଖାଦେଲା, ଯାହା କି ସେ ନିଜେ ବୁଝିପାରିଲେ ନାହିଁ । ସତେ ଯେପରି ଗଙ୍ଗାକୁ ତାଙ୍କୁ ଗ୍ରହଣ କରିବା ପାଇଁ ଭଗବାନ ଆଦେଶ ଦେଇଛନ୍ତି, ସେହିଭଳି ସେ ଅନୁଭବ କଲେ ।

ଆକାଶରେ ତାରକାମଣ୍ଡଳୀ ନିଷ୍ପ୍ରଭ ହୋଇ ଆସୁଥାନ୍ତି । ଲହରୀର ସୁମଧୁର ସଙ୍ଗୀତ ଅଧିକ ମାଦକ ହୋଇ ଆସୁଥାଏ ଓ ଊଷାର ମୃଦୁ ସମୀରଣ ଅଧିକ ଆମୋଦପ୍ରଦ ହୋଇଉଠିଥାଏ । ଠିକ୍ ଏହି ସମୟରେ ଉଭୟେ ପରସ୍ପରର ହାତ ଉପରେ ହାତ ରଖିଲେ । ଗଙ୍ଗସର୍ବଜ୍ଞଙ୍କ ସ୍ମୃତିପଟରେ ଅବିକଳ ସେହି ଛବି ଭାସିଉଠିଲା ।

ଗଙ୍ଗସର୍ବଜ୍ଞ ଏହି ଦିବାସ୍ୱପ୍ନରୁ ଉଠି ନିଜର ସ୍ୱାଭାବିକ ସ୍ୱରରେ କହିଲେ, "ନୃତ୍ୟର ସମୟ ହୋଇଗଲାଣି" । ଏହା କହିବା ପରେ ପରେ ତାଙ୍କର ଉଦ୍‌ବେଗ ବଢ଼ି ବଢ଼ି ଯାଉଥାଏ ।

ଯୁବତୀ ଚୌଳା ନିଜ ମୁହଁକୁ ଶୁଭ୍ର ପରିଧେୟରେ ଘୋଡ଼ାଇ ତଳକୁ ମୁହଁ ପୋତି ବସିଥାଏ । ସ୍ତୁତି ତାର ସ୍ପନ୍ଦିତ ହେଲା, ଯାହା ପୂର୍ବରୁ ସେ କେବେ ଅନୁଭବ କରି ନ ଥିଲା । ସ୍ତୁତିର ଶବ୍ଦ କାନରେ ମଧ୍ୟ ପ୍ରତିଧ୍ୱନିତ ହେଲା ।

ଗଙ୍ଗସର୍ବଜ୍ଞଙ୍କ ଆଦେଶ ଏବଂ ତାଙ୍କ ଆଦେଶ ପାଳନ କରିବା ଲାଗି ମା'ଆର ନିର୍ଦ୍ଦେଶ ଚୌଳିର ମନେପଡ଼ିଗଲା । ସେ ଠିଆହୋଇଯିବା ମାତ୍ରେ ତାର ପାଦ ଥରିଉଠିଲା । ପାଦ କେମିତି ପକାଇବ, ନୃତ୍ୟ ଓ ଅଭିନୟ କଳା ତା ମନ ଭିତରୁ ଉଭେଇ ଗଲା ଭଳି ଲାଗୁଥାଏ ।

୪

## ଦେବକନ୍ୟା

ଚୌଳିର ମନ କିନ୍ତୁ ଶ୍ରଦ୍ଧାପୂର୍ଣ୍ଣ । ବିଶ୍ୱାସରେ ତା ହୃଦୟ ପୂରି ରହିଛି । ପ୍ରଭୁ ସୋମନାଥ ତା ଆଗରେ ଠିଆ ହୋଇଛନ୍ତି; ସେ ତାଙ୍କର ଅବମାନନା କରିବ ନାହିଁ ।

ପ୍ରଭୁଙ୍କ ମୂର୍ତ୍ତି ଉପରେ ତା ଆଖି ଲାଖିରହିଛି । ସେ ହେଉଛନ୍ତି ତାର ପ୍ରଭୁ, ନାଥ ଓ ସର୍ବସ୍ୱ । ତାଙ୍କୁ ସେ ପ୍ରଣାମ କଲା ।

ସତେ ଯେପରି ଗଙ୍ଗସର୍ବଜ୍ଞଙ୍କଠାରୁ ଆଶୀର୍ବାଦ ଭିକ୍ଷା କରିବା ପାଇଁ ତା ମା ତାକୁ କହୁଛି, ସେହିପରି ତାକୁ ଲାଗିଲା ।

ତା ଗୋଡ଼ ଆଉ ଭୟରେ ଥରୁନାହିଁ । ସେ ଗଙ୍ଗସର୍ବଜ୍ଞଙ୍କ ନିକଟକୁ ଯାଇ ପ୍ରଣାମ କରି ତାଙ୍କର ଚରଣ ସ୍ପର୍ଶକଲା । ସେ ସାମାନ୍ୟ ହସିଦେଲେ । ଏହା ହିଁ ହେଉଛି ତାଙ୍କର ଆଶୀର୍ବାଦ ।

ଗଙ୍ଗସର୍ବଜ୍ଞଙ୍କ ପଛରେ ଶିବରାଶି ଓ ତାଙ୍କ କଡ଼ରେ ଦୁଇ ଜଣ ଅଜଣା ଯୁବକ ବସିଥିବାର ଦେଖିଲା ଚୌଳି । ତାକୁ ଦେଖି ସେ ଯୁବକ ଦୁଇ ଜଣ ଆକୃଷ୍ଟ ହେଲା ପରି ଚୌଳିକୁ ବୋଧହେଲା । ଶୁଭ୍ର ଉତ୍ତରୀୟ ଭିତରୁ, ସତେ ଯେପରି ଶ୍ୱେତପଦ୍ମରୁ ଦେଖା ଉଠୁଛନ୍ତି, ସେହିପରି ସେ ମୁହୂର୍ତ୍ତକ ପାଇଁ ଠିଆ ହେଲା । ଲୋକଚକ୍ଷୁ ମୁଗ୍ଧ ।

ତାର ଶ୍ରେଷ୍ଠ ପାଦ ଦୁଇଟି ଘଣ୍ଟା ଶବ୍ଦ ସାଙ୍ଗରେ ରୁଣୁଝୁଣୁ ହୋଇ ପଡ଼ିଲା । କାରୁକାର୍ଯ୍ୟ ପରିପୂର୍ଣ୍ଣ ମନ୍ଦିରର ଶିଖର ଭଳି ତାର କ୍ଷୀଣ କଟୀ, କ୍ଷୀଣ ତନୁ, ଈଷତ୍ ଲାଲ୍‌ରେଖାପୂର୍ଣ୍ଣ ଗ୍ରୀବା ଏବଂ ଉଜ୍ଜ୍ୱଳ ମୁଖମଣ୍ଡଳ ସବୁ ଏକ ତାଳରେ ନାଚିଉଠିଲା ।

ଚୌଲ—ତାର ମୁଖମଣ୍ଡଳରେ ନେତ୍ରୀର ଦୀପ୍ତି ନ ଥିଲେ ମଧ୍ୟ ବାଳିକାର ସୁକୁମାରତା ମଧ୍ୟ ନ ଥିଲା । ମୁହୂର୍ତ୍ତକ ପାଇଁ ସେ ନିଜକୁ ଭୁଲି ଯାଇଛି । ତା ନାଚ ଦେଖିବାକୁ ଯେ ଏତେ ବିରାଟ ଜନସମାବେଶ, ତାହା ମଧ୍ୟ ତାର ଧାରଣା ନାହିଁ । ଯେଉଁ ପ୍ରଭୁଙ୍କୁ ନିଜର କରିବା ପାଇଁ ସେ ଏକାଗ୍ର ଚିତ୍ତରେ ବର୍ଷ ବର୍ଷ ଧରି ସାଧନା କରିଆସିଛି, ତାଙ୍କ ଉପରେ ହିଁ ତାର ଆଖି । ସତେ ଯେପରି ପ୍ରଭୁ ତାର ନୃତ୍ୟ ଦେଖି ତାକୁ କୋଳାଗ୍ରତ କରିବା ପାଇଁ ଅପେକ୍ଷା କରି ବସିଛନ୍ତି—ତାର ଗଭୀର ବିଶ୍ୱାସ ଥିଲା । ଏହି କଥା ଭାବି ଭାବି ତାର ପାଦରେ ଶକ୍ତିର ସଞ୍ଚାର ହେଲା । ବାଦ୍ୟ ଓ ସଙ୍ଗୀତ ଆରମ୍ଭ ହେଲା । ନାଚି ନାଚି ସେ ଗଲା ଗର୍ଭଗୃହର ପ୍ରବେଶଦ୍ୱାରକୁ ।

ସେ ଆଜି ମନ୍ଦିରର ସାଧାରଣ ନର୍ତ୍ତକୀ ଚୌଲା ନୁହେଁ, ପ୍ରଭୁଙ୍କର ଅର୍ଦ୍ଧାଙ୍ଗିନୀ, ଏ ମନ୍ଦିର ଶୃଙ୍ଗ କୈଳାସ ଶିଖର । ଏହା ତାହାର ପ୍ରଭୁଙ୍କର ମୂର୍ତ୍ତି ନୁହେଁ, ପ୍ରଭୁ ନିଜେ । ଅର୍ଦ୍ଧାଙ୍ଗିନୀ ପାର୍ବତୀ ନିଜେ ଠିଆହୋଇଛନ୍ତି ପ୍ରଭୁଙ୍କର ପୂଜା କରିବାଲାଗି ।

ପ୍ରଭୁ ଶଙ୍କରଙ୍କ ସମ୍ମୁଖରେ ପାର୍ବତୀଙ୍କ ନୃତ୍ୟ ମୁଦ୍ରାରେ ତାର ହସ୍ତ, ପଦ, କଟି ଓ ଗ୍ରୀବାରେ ମଧୁର ସଙ୍ଗୀତର ସୃଷ୍ଟି ହେଲା । ତା'ର ମୁଖମଣ୍ଡଳ ଭକ୍ତିପୂର୍ଣ୍ଣ, ଆଖି ଦୁଇଟି ଉଜ୍ଜ୍ୱଳ । ପ୍ରଥମେ ଠିଆ ହୋଇ, ବକ୍ଷ ପାତି ଓ ସର୍ବଶେଷରେ ଆଣ୍ଠୁମାଡ଼ି ସେ ଆପଣାର ଶ୍ରଦ୍ଧାଞ୍ଜଳି ଅର୍ପଣ କଲା । ଧୀରସ୍ଥିର ଭାବେ ପ୍ରଭୁଙ୍କ ଉପରେ ସେ ଦେଲା ଫୁଲ । ତାର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗର ଭାବଭଙ୍ଗୀରୁ ପ୍ରଭୁଙ୍କ ସଙ୍ଗେ ମିଶିଯିବା ପାଇଁ ତାର ଉତ୍କଣ୍ଠା ପ୍ରକାଶ ପାଉଥାଏ ।

ତାପରେ ସେ ନିଜର ପୂଜାପଦ୍ଧତି ବଦଳାଇଲା । ତାର ହାତ ଓ ଗୋଡ଼ର ଗତିଳନା ସ୍ତବ୍ଧ ହୋଇ ଆସିଲା । ଆଖି ଓ ମୁହଁରେ ଅବସାଦ ଭାବ ଦେଖାଦେଲା । ସଙ୍ଗୀତ ଓ ଭାବଭଙ୍ଗୀ ନିସ୍ତେଜ ହୋଇ ଆସିଲା । ଗୁଡ଼ିକରୁ ଆଗ୍ରହ ଓ ଉତ୍ସାହ କୁଆଡ଼େ ଉଭେଇଗଲା । ସର୍ବ ଅବୟବରେ ଅସହାୟ ଭାବ ଦେଖା-ଦେଲା—ସତେ ଯେପରି ସେ ବିଷାଦର ପ୍ରତୀକ !

ଚୌଲା ଅଭିନୟ ବନ୍ଦ କଲା । ସେ ନିଜକୁ ପାର୍ବତୀ ବୋଲି କଳ୍ପନା କରି ପ୍ରଭୁଙ୍କୁ ନିଜର କରିବାକୁ ତପସ୍ୟାରେ ଆବିଷ୍ଟା । ଯଦି ପ୍ରଭୁ ପ୍ରସନ୍ନ ନ ହୁଅନ୍ତି, ତେବେ ପ୍ରଭୁ ତାକୁ ପ୍ରତ୍ୟାଖ୍ୟାନ କରିଛନ୍ତି ।

ହଠାତ୍ ପୂଜାରଣୀର ଭାବ ବଦଳିଲା । କାମଦେବର ଆବିର୍ଭାବ ତାର ଭାବ ଓ ମୁଦ୍ରାରେ ପ୍ରକାଶ ପାଇଲା । ତାର ଭାବଭଙ୍ଗୀ ଚଞ୍ଚଳ ହୋଇ ଉଠିଲା ଓ ଆଶାପ୍ଲୁତ ଚରଣ ଦୁଇଟି ଆଗକୁ ପଡ଼ିଲା ।

ବନ୍ଦଭଙ୍ଗୀରେ ଆଶାପୂର୍ଣ୍ଣ ନୟନ ନେଇ ସେ ଶୈଳ ମୂର୍ତ୍ତି ଉପରେ ଦୃଷ୍ଟି ପକାଇଲା । କିଛି ଦୂର ପଛକୁ ହଟି ଦେଖିଲା କାମଦେବଙ୍କ ବାଣ ପ୍ରଭୁଙ୍କୁ ସ୍ପର୍ଶ କଲା । ସେ ବିନମ୍ର ଭଙ୍ଗୀରେ ଆସ୍ତେ ଆସ୍ତେ ପ୍ରଭୁଙ୍କ ନିକଟକୁ ଗଲା, ଯେପରିକି ପ୍ରଭୁ ତାକୁ ଏଇ ମାତ୍ର ଗ୍ରହଣ କରିବେ ।

ପ୍ରଭୁଙ୍କଠାରୁ ବଞ୍ଚିତା, ବିରହ ବିହ୍ୱଳା ପାର୍ବତୀଙ୍କ ସମସ୍ତ ଭାବ ଭଙ୍ଗୀ ପ୍ରଦର୍ଶନ କରି ସେ କିଛି ପଛକୁ ହଟିଗଲା । ତାର ବଦନରେ ଈଷତ୍ ହାସ୍ୟ ଓ ସନ୍ଦିଗ୍ଧ ଭାବ ଦେଖାଦେଲା । ସେ ଉତ୍ତରୀୟରେ ନିଜର ବକ୍ଷମଣ୍ଡଳ ଲୁଚାଇବାକୁ ଚେଷ୍ଟା କରି ପଛକୁ ହଟିଗଲା । ଗର୍ବ ଓ ବିଜୟର ଭାବ ତାର ନୃତ୍ୟ ମଧ୍ୟରେ ଶରୀରରେ ଦେଖାଦେଲା ।

ହଠାତ୍ ସେ ଆତଙ୍କିତ ହୋଇ ନୃତ୍ୟ ବନ୍ଦ କରିଦେଲା ।

ତା ପଛରେ ଥିବା ନର୍ତ୍ତକୀମାନେ ପ୍ରଭୁଙ୍କର ମନର ଭାବକୁ ରୂପ ଦେଇ ଗୀତ ଗାଇବାକୁ ଆରମ୍ଭ କଲେ ।

"ମୁଁ ଶକ୍ତିମାନ୍ ଈଶ୍ୱର ! କିନ୍ତୁ କାହିଁ ମୋର ଶକ୍ତି ? ପ୍ରେମ ମୋତେ ଅନ୍ଧ କରିଛି ଓ ମୋର ବ୍ୟବହାରରେ ବିଲକ୍ଷଣତା ଦେଖାଦେଇଛି ।"

"ମୁଁ ସାମାନ୍ୟ ଜଣେ ସ୍ତ୍ରୀର ପ୍ରେମରେ ଯେବେ ଏପରି ହୁଏ, ତେବେ ସାଧାରଣ ଲୋକ ନିଜର ଦୁର୍ବଳ ମୁହୂର୍ତ୍ତରେ କୌଣସି ଭୁଲ କାର୍ଯ୍ୟ କଲେ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ଅଛିକି ?"

ଗଙ୍ଗସର୍ବଜ୍ଞ ନିଜକୁ ଭୁଲିଯାଇ ଏହି ଗୀତ ବୋଲିବାକୁ ଲାଗିଲେ—

"ଏହି ବିବେକବୁଦ୍ଧି ଜାଗ୍ରତ ହେବା ମାତ୍ରେ ଭଗବାନ ଶଙ୍କର ସୁନ୍ଦରୀକୁ ନିଜର ଜାନୁ ଆସନରେ ବସିବାରୁ କ୍ଷାନ୍ତ କଲେ । କାରଣ, ଈଶ୍ୱର ମୋହ ବଶବର୍ତ୍ତୀ ହେବା ଅସମ୍ଭବ ।"

ଭାବପ୍ରବଣତାର ଆବେଗବଶତଃରୁ ସେ ଥରି ଉଠିଲା । ତାର ମୁଖମଣ୍ଡଳରୁ ଭୟମିଶ୍ରିତ ସମ୍ଭ୍ରମ ପ୍ରକାଶ ପାଇବାକୁ ଲାଗିଲା ।

ସଙ୍ଗୀତ ବଢ଼ି ଚାଲିଲା । ପ୍ରଭୁଙ୍କ ତୃତୀୟ ନୟନରୁ ଅଗ୍ନି ବାହାରି କାମଦେବଙ୍କୁ ଭସ୍ମୀଭୂତ କରିଦେଲା ।

ଚୌଲ୍ ସ୍ତବ୍‌ଧ ହୋଇ ଆଖିରେ ହାତ ଦେଲ୍ ।

ତାର ସହାୟକ କାମଦେବର ଏ ଅବସ୍ଥା ଦେଖି ସେ ହେଲା ବିମର୍ଷ । ତାର ମୁଖ ଏବଂ ଗୁଳଚଳନରେ ଦୈନ୍ୟ ପ୍ରକାଶ ପାଇଲା । ତାଙ୍କ ପାଇଁ ଲୁହ ଗଡ଼ାଇଲେ ମଧ କିଛି ଫଳ ହେଲ୍ ନାହିଁ । ଆଉ ପ୍ରଭୁଙ୍କୁ ପାଇବ ନାହିଁ ବୋଲି ସେ ଜାଣିଲ୍ ।

ବାଜା ବାଜି ଉଠିଲ୍ । ଚୌଲର ଗୋଡ଼ ହଠାତ୍ ରହିଗଲ୍ । ହାତ ମଧ ନିସ୍ପନ୍ଦ ହୋଇଗଲ୍ । ଆଖିରେ ଢଳ ଢଳ ଲୁହ । ସେ ଅସ୍ୱସ୍ତି ବୋଧକଲ୍ ।

ଚୌଲରୂପୀ ପର୍ବତକନ୍ୟା ଧ୍ୟାନମଗ୍ନାହେଲ୍ । ତା ଭାବନା ନୃତ୍ୟଭଙ୍ଗୀରେ ପ୍ରକାଶ କରି ଏକଲୟରେ ପ୍ରଭୁଙ୍କ ଉପରେ ଆଖି ରଖିଲ୍ । ଆସ୍ତେ ଆସ୍ତେ ତାର ଭାବ ହେଲା ଶକ୍ତ, ପଦକ୍ଷେପ ହେଲା ଦୃଢ଼ । କଠୋରତାର ଭାବ ତା ନୃତ୍ୟରେ ଫୁଟିଉଠିଲା ।

ଯୋଗୀମାନେ ଯେପରି ଆସନରେ ବସନ୍ତି, ସେହିପରି ସେ ବସିଲା । ନାସାଗ୍ରରେ ଚକ୍ଷୁ ନିବଦ୍ଧ କରି ବାଦ୍ୟ ବାଜିବା ସଙ୍ଗେ ସଙ୍ଗେ ସେ ଧ୍ୟାନମଗ୍ନହେଲା ।

ହଠାତ୍ ଯେପରି ତାର ଧ୍ୟାନ କିଏ ଭାଙ୍ଗିଦେଲ୍, ସେହିପରି ଭାବ ତା ଠାରେ ଦେଖାଦେଲ୍ । ଜଣେ ବୃଦ୍ଧ ବ୍ରାହ୍ମଣ ତା ନିକଟକୁ ଆସିଲେ । ନୃତ୍ୟ ସାହାଯ୍ୟରେ ସେ ତାଙ୍କୁ କଲ୍ ସ୍ୱାଗତ । ମନେ ମନେ ତାଙ୍କର ଗୋଡ଼ ଧୋଇଦେଲ୍, ସାଷ୍ଟାଙ୍ଗ ପ୍ରଣିପାତ କରି ଅତିଥିଙ୍କୁ ସେ କଲ୍ ସ୍ୱାଗତ । ଏକ ଧ୍ୟାନରେ ସେ ତାଙ୍କ କଥା ଶୁଣିଲ୍ । ତା ପରେ ଗୁଳଲ୍ ସଙ୍ଗୀତର ଆବୃତ୍ତି—

"ପାର୍ବତି ! କେତେ ନିର୍ବୋଧ ତୁମେ ସତେ ! ଇନ୍ଦ୍ରଙ୍କ ପରି ଦେବତାଙ୍କୁ ଛାଡ଼ି ସଂସାର ବିଷୟରେ ଜ୍ଞାନ ନ ଥିବା ଜଣେ ଅଦ୍ଭୁତ ପୁରୁଷଙ୍କୁ ପ୍ରେମ କରୁଛ ?

"ତୁମ ପକ୍ଷରେ ଏପରି କରିବା ଉଚିତ କି ? କାହିଁ ତୁମର ପଦ୍ମପାଖୁଡ଼ା ପରି ସୁନ୍ଦର ନେତ୍ର ଓ ତାଙ୍କର ତିନୋଟି ବିରୂପ ଚକ୍ଷୁ !

"ତୁମ ମୁଖ ଏଡ଼େ ସୁନ୍ଦର ଯେ ଚନ୍ଦ୍ର ହିଂସା କରିବ; କିନ୍ତୁ ଶିବ ପଞ୍ଚମୁଖ ।

"ତୁମର କେଶ ବିନ୍ୟାସ ଏଡ଼େ ସୁନ୍ଦର, ସତେ ଯେପରି ଦିବ୍ୟ ନାଗୁଣୀ । ଶିବଙ୍କ କେଶ ଜଟାମଣ୍ଡିତ ।

"ତୁମ ଶରୀରରୁ ସୌରଭ ବିଚ୍ଛୁରିତ ହେଉଛି । ସେ ଶ୍ମଶାନର ଭସ୍ମ ବିଲେପିତ ।

"ତୁମେ ମୂଲ୍ୟବାନ୍ ପଟ୍ଟ ବସ୍ତ୍ରରେ ବିଭୂଷିତ । ଶିବ ହାତୀ ଚମଡ଼ା ଆବୃତ ।

"ତୁମେ ସୁନ୍ଦର ସୁନ୍ଦର ଗହଣା ପିନ୍ଧ; ତାଙ୍କ ଦେହ ସର୍ପ ମଣ୍ଡିତ ।"

ଏହି ସଙ୍ଗୀତ ବୋଲାଯାଉଥିବା ସମୟରେ ଚୌଳି ମୁହଁରେ ଅବଜ୍ଞାର ଭାବ ପ୍ରକାଶ ପାଉଥାଏ । ସଙ୍ଗୀତ ଏ ପର୍ଯ୍ୟନ୍ତ ଆସିଲା ବେଳକୁ, ତା'ର ବଳାଗଣ୍ଠି ଖୁବ୍ ଅସ୍ଥିର ହୋଇ ଉଠିଲା । କ୍ରୋଧ ପ୍ରକାଶ କରି ଥରି ଉଠିଲା ତାର ଗୁଣ୍ଡ ।

ବାଜା ଖୁବ୍ ଜୋର୍‌ରେ ବାଜିଲା ।

କ୍ରୋଧରେ ଜର୍ଜରିତ ପାର୍ବତୀଙ୍କ ଆଖିରୁ ଅଗ୍ନି ଶିଖା ବାହାରିଲା । ଯେଉଁ ଜାଗାରେ ଭକ୍ତ ବ୍ରାହ୍ମଣ ବସିବାର କଥା, ତା ଚାରିପାଖେ ସେ ବେଗରେ ଶୀଘ୍ର ଶୀଘ୍ର ପ୍ରଦକ୍ଷିଣ କଲେ । ସେ ଘୃଣାଭାବ ପ୍ରକାଶ କରି ବ୍ରାହ୍ମଣଙ୍କ ଆଡ଼କୁ ଦୃଷ୍ଟି ପକାଇଲା । ତାହାର ଚଳଚଳଣ, ଆଖି ଓ ମୁହଁ ସବୁଥିରୁ ତୁଚ୍ଛଜ୍ଞାନ ପ୍ରକାଶ ପାଉଥିଲା । ଶେଷଥର ସେ ବ୍ରାହ୍ମଣଙ୍କ ଆଡ଼େ ଦୃଷ୍ଟି ନିକ୍ଷେପ କଲା ।

ହଠାତ୍ ଚୌଳି ବିସ୍ମିତ ହୋଇ ଉପରକୁ ଚାହିଁଲା । ବ୍ରାହ୍ମଣ ସ୍ୱୟଂ ପ୍ରଭୁଙ୍କର ରୂପ ଗ୍ରହଣ କଲେ । ଆକାଶରେ ଘଡ଼ଘଡ଼ି ଶବ୍ଦ ହେବା ପରି ବାଜା ବାଜିଉଠିଲା । ମୁହୂର୍ତ୍ତକ ପାଇଁ ସଙ୍ଗୀତ ଗାନ ବନ୍ଦ ହୋଇଗଲା ।

ଚୌଳି ନିଜ ନୃତ୍ୟରେ ଏତେ ମଗ୍ନ ହୋଇଥିଲା ଯେ, ମନେହେଲା ଯେପରି ଲିଙ୍ଗରୁ ପ୍ରଭୁଙ୍କର ଆବିର୍ଭାବ ହେଲା । ନୃତ୍ୟରୁ ଶିରାପ୍ରଶିରାରେ ପ୍ରକାଶ ପାଉଥିବା ଆନନ୍ଦ ପ୍ରତୀୟମାନ ହେଲା । ଆଜି ତା'ର ହୃଦୟ ଆନନ୍ଦରେ ପୂରି-ଯାଇଛି । ଏହି ଆନନ୍ଦରେ ହିଁ ତା'ର ଜନ୍ମ ।

ଚୌଳି ଭୁଲିଗଲା ଯେ ସେ ନୃତ୍ୟ କରୁଛି । ସେ ବସ୍ତୁତଃ ଅନୁଭବ କଲା ଯେପରି ତା'ର ପ୍ରେମିକ ଆଗରେ ଠିଆ ହୋଇଛନ୍ତି । ତା'ର ଜୀବନର ଏକମାତ୍ର ଲକ୍ଷ୍ୟ ଆଜି ସଫଳ ହୋଇଛି । ନୃତ୍ୟ ବ୍ୟତୀତ ଅନ୍ୟ ସବୁ ସେ ଭୁଲି-ଗଲା । ସେ ଯେ ନାଚ ଏବଂ ତାଳ ଶିକ୍ଷା କରିଛି, ଏହା ମଧ୍ୟ ଭୁଲିଗଲା । ଆନନ୍ଦରେ ଗଦ୍‌ଗଦ୍ ହୋଇ ନିଶ୍ୱାସ ନେବାକୁ ମଧ୍ୟ କଷ୍ଟ ଅନୁଭବ କଲା । ଭାବପ୍ରବଣତା ଯୋଗୁଁ ତା'ର ଆଖି ବିସ୍ଫାରିତ ହୋଇଗଲା ।

ଚୌଳିର ପାଦ ଆଉ ତଳେ ନ ଲାଗି ଶୂନ୍ୟରେ ଝୁଲନ୍ତ ହେଲା ପରି ବୋଧହେଲା । ହାତ ଲତା ପରି ତରଙ୍ଗାୟିତ ହେଲା ଓ ଆଖିରୁ ବାହାରିଲା ଦିବ୍ୟ ଜ୍ୟୋତି ।

ଆନନ୍ଦରେ ସେ ପ୍ରଭୁଙ୍କ ଗୃହପାଖରେ ପ୍ରଦକ୍ଷିଣ କଲା । ପ୍ରଭୁଙ୍କ ବାହନ ନନ୍ଦୀକୁ ସେ କଲା ଆଲିଙ୍ଗନ । ସତେ ଯେପରି ସେ ପ୍ରଭୁଙ୍କୁ ଆଲିଙ୍ଗନ କରୁଥିବା ଭଳି ଏବଂ ପ୍ରଭୁ ତାକୁ ପ୍ରେମାଲିଙ୍ଗନ କଲାଭଳି ସେ ଅନୁଭବ କଲା ! ସେ ମଧ୍ୟ ଅନୁଭବ କଲା ଲଜ୍ଜା ।

ନୃତ୍ୟର ଗତି ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ସଙ୍ଗୀତର ମୂର୍ଚ୍ଛନା ବଢ଼ିବାକୁ ଲାଗିଲା । ତାର ହୃଦୟର ଚଞ୍ଚଳତା ଏବଂ ପାଦର ଗତି ମଧ୍ୟ ବଢ଼ିଲା । ସେ ଆଉ ନିଜକୁ ସଂଯତ କରିପାରିଲା ନାହିଁ । ତାର ନୃତ୍ୟ ପ୍ରେମସଙ୍ଗୀତରେ ପରିଣତ ହେଲା । ଆନନ୍ଦର ବନ୍ୟା ସେ ରୋଧ କରି ନ ପାରି ତଳେ ପଡ଼ିଗଲା ।

ବାଜା ବାଜିବା ବନ୍ଦ ହୋଇଗଲା । ଉପସ୍ଥିତ ଯାତ୍ରୀବୃନ୍ଦ ସ୍ତବ୍ଧ ହୋଇଗଲେ । ଗଙ୍ଗସର୍ବଜ୍ଞଙ୍କ ଆଖିରୁ ଆନନ୍ଦାଶ୍ରୁ ଗଡ଼ିଲା । ତା ପରେ ଆଉ ଏକ ଦୃଶ୍ୟ, ଯାହା କି ଗତ ସତେଇଶ ବର୍ଷ ମଧ୍ୟରେ ଦେଖାଯାଇ ନ ଥିଲା-ବୃଦ୍ଧ ଗଙ୍ଗସର୍ବଜ୍ଞ ଆସ୍ତେ ଆସ୍ତେ ଚୌଲା ନିକଟକୁ ଯାଇ ତାକୁ ଉଠାଇଲେ । ତାକୁ ସାଙ୍ଗରେ ନେଇ ଗର୍ଭଗୃହ ନିକଟକୁ ଯାଇ ପ୍ରଭୁ ଶିବଙ୍କୁ କହିଲେ, "ପ୍ରଭୁ, ଏହି ବାଳିକାକୁ ତୁମେ ଗ୍ରହଣ କର । ଯେ ପର୍ଯ୍ୟନ୍ତ ଚୌଲା ବଞ୍ଚିଥିବ ସେ ପର୍ଯ୍ୟନ୍ତ ତୁମ ପୁଣ୍ୟ ତୀର୍ଥ ପ୍ରତି ଶିବରାତ୍ରିରେ ତୁମ ସମ୍ମୁଖରେ ରହିଯାଇ ନାଚିବ ।" ଏହା କହି ସେ ଚୌଲାକୁ ପ୍ରଭୁଙ୍କ ସମ୍ମୁଖରେ ଶୁଆଇଦେଲେ ।

ଚୌଲା ଆସ୍ତେ ଆସ୍ତେ ନିଜର ଆଖି ଫିଟାଇଲା । ଏହା ହେଉଛି ତାର ଜୀବନର ସର୍ବଶ୍ରେଷ୍ଠ ମୁହୂର୍ତ୍ତ । ତା ସମ୍ମୁଖରେ ଜଟାଧାରୀ ପ୍ରଭୁଙ୍କୁ ସାକ୍ଷାତ କଲା ପରି ସେ ଅନୁଭବ କଲା ।

"ଇହଲୋକରେ ଓ ପରଲୋକରେ ମୁଁ ତୁମରି, ପ୍ରଭୁ !" କହି ଚୌଲା ପୁଣି ଅଜ୍ଞାନ ହୋଇଗଲା ।

# ପ୍ରଭୁଙ୍କ କ୍ରୋଧ

ହଠାତ୍ ଯାତ୍ରୀମାନଙ୍କ ମଧ୍ୟରେ ଚହଳ ପଡ଼ିଗଲା । ପଛରେ ଥିବା କେତେ ଲୋକ ଯେପରି ମାଡ଼ି ଚକଟି ଆଗକୁ ଆସିବାକୁ ଚେଷ୍ଟା କରୁଛନ୍ତି । ଗଙ୍ଗଦେବଙ୍କ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ସମ୍ମୁଖରେ ଲୋକଙ୍କର ଏପରି ବିଶୃଙ୍ଖଳ ବ୍ୟବହାର ସେ କେବେହେଲେ ଦେଖି ନ ଥିଲେ । ପୂଜା ଚାଲିଥିବା ସମୟରେ ମନ୍ଦିରର ଶାନ୍ତି ଭାଙ୍ଗିବାକୁ କିଏ ସାହସ କଲା ?

ଯାତ୍ରୀମାନଙ୍କ ମଧ୍ୟରୁ ଆବିର୍ଭୂତ ହେଲା ଜଣେ ଉନ୍ମତ୍ତ ବ୍ୟକ୍ତି । ଧୀର ଗମ୍ଭୀର ଭାବରେ "ମହାରାଜା ଭୀମଦେବଙ୍କର ଜୟ ହେଉ" ବୋଲି ସେ କହି ଉଠିଲେ ।

ମନ୍ଦିର ମଧ୍ୟରେ କିଏ ତାଙ୍କୁ ଏଭଳି ସ୍ୱାଗତ କରୁଛି ବୋଲି ଜାଣିବା ପାଇଁ ବିସ୍ମିତ ହୋଇ ରାଜା ଭୀମଦେବ ନିଜ ଆସନରୁ ଉଠିପଡ଼ିଲେ ।

ଗଙ୍ଗଦେବଙ୍କ ହୁକୁମ କଲେ, "ଯେ ହେଉ ପଛକେ ସେ ସମ୍ମୁଖକୁ ଆସୁ ।"

ସେହି ବ୍ୟକ୍ତି କ୍ଳାନ୍ତ ହେଲାଭଳି ଆଗକୁ ଆସିଲେ । ସେ ଗଙ୍ଗଦେବଙ୍କଙ୍କ ନିକଟକୁ ଯାଇ ଯଥାବିଧି ତାଙ୍କ ଗୋଡ଼ତଳେ ମଥା ନଇଁ କହିଲେ, "ନମଃଶିବାୟ ।"

ଗଙ୍ଗଦେବଙ୍କ "ଶିବାୟ ନମଃ" କହି ପଚାରିଲେ, "ତୋର ପରିଚୟ ବାପ ?"

ଭୀମଦେବ କହିଲେ, "ଏ ତ ମୂଳା ରାଉତର !"

ମୂଳା ଉଠିପଡ଼ି ଭୀମଦେବଙ୍କୁ ପ୍ରଣାମ କରି କହିଲେ, "ବାପୁ, ମେହେତାଜୀ ମୃତପ୍ରାୟ । ଆପଣ ଚଞ୍ଚଳ ଚାଲନ୍ତୁ ।"

ମନ୍ତ୍ରୀ ବିମଳ ମୂଳାକୁ ହଲାଇ ଦେଇ ପଚାରିଲେ, "ମେହେତାଜୀ ? ତା ମାନେ ଦାମୋଦର ? ସେ କେଉଁଠାରେ ? ତୁମେ କେଉଁଠୁ ଆସିଛ ? ସେ ତ ସଫାଲଦକ୍ଷ ଯାଇଥିଲେ ।" କ୍ଳାନ୍ତ ଅନୁଭବ କରୁଥିଲେ ସୁଦ୍ଧା ମୂଳା ପ୍ରତିବାଦ କରି କହିଲେ, "ବାପୁ, ମୁଁ ଆପଣଙ୍କୁ ସତ କହୁଛି । ସେ ସଫାଲଦକ୍ଷରେ ନାହାନ୍ତି । ସେ ଏହି ପ୍ରଭାସର ଦ୍ୱାରଦେଶରେ ପ୍ରାୟ ମୃତାବସ୍ଥାରେ ଅଛନ୍ତି । ଆମେ ଦଶଦିନ ହେବ କିଛି ଖାଇନାହୁଁ କି ଶୋଇନାହୁଁ । ଆମର ଭାରବାହୀ ଗଧମାନଙ୍କ ମଧ୍ୟରୁ ଚାରୋଟି ସର୍ବୋତ୍କୃଷ୍ଟ ଜନ୍ତୁ କ୍ଳାନ୍ତ ହୋଇ ପଡ଼ିଛନ୍ତି । ମହାରାଜ, ସମୟ

ଥାଉଁ ଥାଉଁ ଆପଣ ଆସନ୍ତୁ । ନ ହେଲେ ମେହେଡାଙ୍କୁ ଆପଣ ଜୀବନରେ ଦେଖିପାରିବେ ନାହିଁ । ଗୋଳମାଳ ହୋଇଯିବ ।"

ଭୀମଦେବ ଆଶ୍ଚର୍ଯ୍ୟ ହୋଇଗଲେ । ମନ୍ତ୍ରୀ ଦାମୋଦର ମେହେତାଙ୍କୁ ସେ ସପାଲଦକ୍ଷ ରାଜାଙ୍କ ସହିତ ସନ୍ଧି କରିବା ନିମନ୍ତେ କଥାବାର୍ତ୍ତା କରିବାକୁ ପଠାଇଥିଲେ । ମୂଲ୍ ହେଉଛି ତାଙ୍କର ଗୁପ୍ତ ପତ୍ରବାହକ । ସେ ଏପରି ତରତର ହୋଇ ପ୍ରଭାସକୁ କାହିଁକି ଆସିଲା ଏବଂ ଦାମୋଦର ମେହେତାଙ୍କ ଅବସ୍ଥା ଏପରି ଖରାପ କାହିଁକି ହେଲା ?

"ବାପୁ ! ଚାଲ ।"

ମନ୍ତ୍ରୀ ବିମଳ ଅଧୀର ହୋଇ କହିଲେ, "ଆଚ୍ଛା ! ଚାଲ ।"

ଗଙ୍ଗସର୍ବଜ୍ଞ ଏତେବେଳକୁ ପ୍ରକୃତ ଘଟଣା ଠିକ୍‌ଭାବେ ବୁଝିଲେଣି । ସେ ଶିଷ୍ୟ ଶିବରାଶିଙ୍କୁ କହିଲେ, "ଏହା ବୋଧହୁଏ ଆମପ୍ରତି କୌଣସି ଭାବୀ ବିପଦର ସଙ୍କେତ । ତୁମେ ସେମାନଙ୍କ ସହିତ ଯାଇ ଦାମୋଦରଙ୍କୁ ମୋ ଘରକୁ ଆଣ । ମୁଁ ସାଙ୍ଗେ ସାଙ୍ଗେ ଯାଉଛି ।"

ଦୁଇ ଜଣ ସାଧୁଙ୍କ ସହ ଭୀମଦେବ, ବିମଳ ଓ ମୂଲ୍‌ଙ୍କୁ ନେଇ ଶିବରାଶି ଦାମୋଦରଙ୍କୁ ଦେଖିବାକୁ ଗଲେ ।

ଗଙ୍ଗସର୍ବଜ୍ଞଙ୍କ ମନ ଚଞ୍ଚଳ ହୋଇଉଠିଲା । ପ୍ରଭୁ ସୋମନାଥଙ୍କ ଆଡ଼କୁ ଚାହିଁ ପ୍ରଶ୍ନ କଲେ, "ସୃଷ୍ଟିକର୍ତ୍ତା ପ୍ରଭୁ, ଏହାର ଅର୍ଥ କଅଣ ?" ଏହାର କୌଣସି ଉତ୍ତର ନ ପାଇ ସେ ପ୍ରଭୁଙ୍କ ପାଦତଳେ ନିଜର ସମସ୍ତ ଚିନ୍ତା ସଭକ୍ତି ଉପସ୍ଥାପିତ କଲେ ।

କିଛି ସମୟ ପରେ ମେହେତାଙ୍କୁ ଖୋଜିବାକୁ ଯାଇଥିବା ଦଳ ଗଙ୍ଗସର୍ବଜ୍ଞଙ୍କ ଘରେ ଆସି ପହଞ୍ଚିଲେ । ସେତେବେଳକୁ ଦାମୋଦର ମେହେତା ଅଚେତ ଅବସ୍ଥାରେ ଯନ୍ତ୍ରଣାରେ ପଡ଼ିଥାନ୍ତି । ତାଙ୍କୁ ପ୍ରାୟ ଚାଳିଶ ବର୍ଷ ବୟସ । ତାଙ୍କ ସୁନ୍ଦର ମୁହଁଟି ହଳଦିଆ ପଡ଼ି ଆଖିମାନ ଫୁଲିଗଲାଣି । ମନ୍ତ୍ରୀ ବିମଳ ତାଙ୍କ ମୁଣ୍ଡ ଆଉଁଶି ଦେଉଥାନ୍ତି ଓ ସର୍ବଜ୍ଞଙ୍କର ଜଣେ ଶିଷ୍ୟ ତାଙ୍କ ଗୋଡରେ ତେଲ ମାଲିସ୍ କରୁଥାଆନ୍ତି । ଭୀମଦେବ ଦାମୋଦରଙ୍କ ପାଇଁ ଅସ୍ଥିର ହେଉଥାନ୍ତି ।

ଗଙ୍ଗସର୍ବଜ୍ଞ ଚକା ପକାଇ କିଛି ଦୂରରେ ବସିଲେ ଏବଂ ଶିବରାଶି ତାଙ୍କ ନିକଟରେ ବସିଲେ । ଘରର ଗୋଟିଏ କଣରେ ଜଣେ ଶିଷ୍ୟ ଔଷଧ ତିଆରି କରୁଥାଆନ୍ତି ଏବଂ ଅନ୍ୟ ଗୋଟିଏ କଣରେ ନିଆଁ ଜାଳୁଥାଆନ୍ତି ।

ଖ୍ରିମଦେବ ବାରମ୍ବାର ପ୍ରଶ୍ନ କଲେ, "ଗୁରୁଦେବ ! ଦାମୋଦର ସୁସ୍ଥ ହୋଇଯିବେ ତ ?"

"ମୁଁ ତୁମକୁ ପ୍ରତିଶ୍ରୁତି ଦେଉଛି, ସେ ନିଶ୍ଚୟ ସୁସ୍ଥ ହୋଇ ଉଠିବେ ।" ଏହା କହି ଗଙ୍ଗସର୍ବଙ୍କ ଉଠି ଶିଷ୍ୟ ତିଆରି କରୁଥିବା ଔଷଧ ନେଇ ଦାମୋଦର ମେହେନ୍ତାଙ୍କ ପାଟିରେ ଦେଲେ ।

ଅଳ୍ପ ସମୟ ମଧ୍ୟରେ ରୋଗଗ୍ରସ୍ତ ମେହେନ୍ତାଙ୍କର ପାଟିରୁ ଗୋଟିଏ ଶବ୍ଦ ସେମାନେ ଶୁଣିଲେ । ଆସ୍ତେ ଆସ୍ତେ ସେ ଆଖି ଖୋଲି ଶଯ୍ୟପାଖରେ ଥିବା ଲୋକଙ୍କୁ ଚିହ୍ନିଲେ । ସାଙ୍ଗେ ସାଙ୍ଗେ ଖ୍ରିମଦେବ ସସ୍ନେହରେ ଡାକିଲେ, "ଦାମୋଦର !"

ଏତେବେଳକୁ ଦାମୋଦର ଖ୍ରିମଦେବଙ୍କୁ ଚିହ୍ନିଲେଣି । ସେ ସାଙ୍ଗେ ସାଙ୍ଗେ ବସି, "ବାପୁ, ଅନ୍ନଦାତା ତୁମେ !" ବୋଲି କହି ଖ୍ରିମଦେବଙ୍କୁ କୁଣ୍ଢାଇ ପକାଇଲେ ।

ଖ୍ରିମଦେବ—"ମେହେନ୍ତା !"

ସର୍ବଙ୍କ ଆଦେଶ ଦେଲେ, "ଦାମୋଦରକୁ ଗୋଟିଏ ତକିଆ ଦିଅ ।"

ସର୍ବଙ୍କଙ୍କୁ ଚିହ୍ନି ଦାମୋଦର ତାଙ୍କ ପାଦତଳେ ପଡ଼ିବାକୁ ଉଦ୍ୟତ ହେଲେ । ସର୍ବଙ୍କ ତାଙ୍କୁ ଉଠାଇ ଧୀରେ ସୁସ୍ଥେ ଗଦିକୁ ଆଉଜାଇ ଦେଇ ପାଖରେ ବସିଲେ ।

ସର୍ବଙ୍କ ପୁଣି କହିଲେ, "ଆମର ଉଦ୍‌ବେଗର ଆଉ କାରଣ ନାହିଁ । ତୁମେ ସମସ୍ତ ଘଟଣା ଧୀରେ ସୁସ୍ଥେ କହ ।"

ଦାମୋଦର ଆନନ୍ଦରେ "ହେ ତାତ !" ବୋଲି କହିଲାବେଳକୁ ତାଙ୍କ ଗଳାରେ କଫ ଜମିଗଲା । ତାହା କମିଯିବାରୁ ସେ ପୁଣି କହିବା ଆରମ୍ଭ କଲେ ।

ଅତି କଷ୍ଟରେ ସହିତ ସେ କହିଲେ, "ବାପୁ ! ତୁମେ ଏଠାରେ କଣ କରୁଛ ? ଶୀଘ୍ର ପାଟଣ ଯାଅ ।"

ଖ୍ରିମଦେବ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କାହିଁକି ?"

ଦାମୋଦର କହିଲେ, "କାହିଁକି ? ଗଜନୀର ଅମୀର୍ ଆମକୁ ଆକ୍ରମଣ କରିବାକୁ ଆସୁଛି ।"

ସର୍ବଙ୍କ ଓ ଖ୍ରିମଦେବ ଉଭୟେ ପାଟି କରି ଉଠିଲେ "ତୁମେ କଣ ସଜ୍ଞାନରେ ଏହା କହୁଛ ?"

ଦାମୋଦର କହିଲେ, "ତାର ସୈନ୍ୟବାହିନୀ ପଙ୍ଗପାଳଙ୍କ ଗତିରେ ମାଡ଼ି ଆସୁଛନ୍ତି । ସେମାନେ କାଲିପରି ଏଠାରେ ପହଞ୍ଚିଯିବେ ।"

ସର୍ବଜ୍ଞ ପଚାରିଲେ, "ଏଠାରେ ?"

ଦାମୋଦର ଉତ୍ତର ଦେଲେ, "ହିଁ, ସେ ଥାନେଶ୍ୱର ଲୁଟ୍ କରି ସାରିଲାଣି । କନୌଜ ନଷ୍ଟଭ୍ରଷ୍ଟ କରିଦେଲାଣି । ବର୍ତ୍ତମାନ ସେ ପ୍ରଭୁ ସୋମନାଥଙ୍କ ବିଜେସ୍ଥଳୀ ନଷ୍ଟ କରିବାକୁ ଆସୁଛି । ପ୍ରଭୁ, ଗୁଜରାଟକୁ ଏ ବିପଦରୁ ରକ୍ଷାକର ।"

"କେବେଠାରୁ ସେ ଗଜନୀ ଛାଡ଼ିଛି ବୋଲି ତୁମେ ଖବର ପାଇଛ ?" ପଚାରିଲେ ଭୀମଦେବ ।

ଦାମୋଦର ଉତ୍ତର ଦେଲେ, "ସେ ମାସେ ହେବ ଆସିଲାଣି । ମୁଁ ଖବର ପାଇବା ସାଙ୍ଗେ ସାଙ୍ଗେ ଆପଣଙ୍କ ନିକଟକୁ ଜଣାଇବାକୁ ଠିକ୍ କଲି । ଗତ ଦଶ ଦିନ ହେଲି ମୁଁ ଶୋଇନାହିଁ କି ବିଶ୍ରାମ ମଧ୍ୟ ନେଇ ନାହିଁ ।"

ଗଙ୍ଗସର୍ବଜ୍ଞ ଆଶ୍ଚର୍ଯ୍ୟ ହୋଇ କହିଲେ, "ଓ , ତାହାହେଲେ ପ୍ରଭୁଙ୍କ ନିବାସସ୍ଥଳୀ ନଷ୍ଟ କରିବାକୁ ସେ ଆସୁଛି ?"

ଦାମୋଦର କହିଲେ, "ହିଁ, ସପାଲଦକ୍ଷ ରାଜ୍ୟ ଭିତର ଦେଇ ଯେପରି ତାର ସୈନ୍ୟବାହିନୀ ବିନା ବାଧାରେ ଆସନ୍ତି ସେଥିପାଇଁ ହମୀର ଖବରପଠାଇଛି ।"

ସର୍ବଜ୍ଞ—"ଏଠାରେ ପହଞ୍ଚିବାକୁ ତାକୁ କେତେ ଡେରି ଲାଗିବ ?"

ଦାମୋଦର—"କେମିତି କହିବି ? ନିଜର ବିରାଟ ସୈନ୍ୟବାହିନୀ ସହି ତାକୁ ମରୁଭୂମି ଅତିକ୍ରମ କରି ଆସିବାକୁ ହେବ । ଏ ପର୍ଯ୍ୟନ୍ତ ଅତିକ୍ରମ କରିନାହିଁ ।"

ସର୍ବଜ୍ଞ ହସି କରି କହିଲେ, "ପ୍ରଭୁ ଶଙ୍କରଙ୍କର ଧ୍ୱଜା ମ୍ଳେଚ୍ଛ; ତଳକୁ ଖସାଇ ପାରିବ ବୋଲି କଣ ଭାବୁଛ ? ଏହି ଦାମ୍ଭିକର ଭଗବତ୍ ଭୟ କଣ ନାହିଁ ?"

ଦାମୋଦର—"ଗଜନୀର ହମୀର ମୃତ୍ୟୁ ଦେବତାଙ୍କଠାରୁ ମଧ୍ୟ ଅଧିକ ଭୟଙ୍କର ।"

ସର୍ବଜ୍ଞ—"ହେଉ, ଆସୁ । ଯେଉଁ ପ୍ରଭୁ ଶଙ୍କର ନିଜ ତୃତୀୟ ନେତ୍ର ସାହାଯ୍ୟରେ କାମଦେବତାକୁ ନଷ୍ଟ କରିଥିଲେ, ସେ ଏ ପର୍ଯ୍ୟନ୍ତ ଶକ୍ତିଶାଳୀ ଅଛନ୍ତି । ଭୀମଦେବ, ଦାମୋଦର ଠିକ୍ କହୁଛି । ତୁମେ ଶୀଘ୍ର ପାଟଣ ଯାଇ ନିଜ ରାଜ୍ୟ ରକ୍ଷାକରିବାର ବ୍ୟବସ୍ଥା କର ।"

ଭୀମଦେବ—"ଗୁରୁଦେବ, ମୁଁ ରାଜା । ଗଜନୀର ସୈନ୍ୟବାହିନୀ ପାଖରେ ସୈନ୍ୟବାହିନୀର ମୁଖାମୁଖୀ ହେଲେ ଉଚିତ ଶିକ୍ଷା ପାଇବ । ସେହେତୁ, ଏହି ବିଦେଶୀ ଆକ୍ରମଣକାରୀର କେତେ ସୈନ୍ୟ ?"

ଦାମୋଦର—"କିଏ କହିପାରିବ ? ତାହାର ସୈନ୍ୟବାହିନୀରେ ଲକ୍ଷ ଲକ୍ଷ ଲୋକ ଅଛନ୍ତି ବୋଲି ଶୁଣାଯାଏ ।"

ଗଙ୍ଗସର୍ବଜ୍ଞ କହିଲେ—"ଯାହାକୁ ଭଗବାନ ସାହାଯ୍ୟ କରିବେ ତାର କିଏ ଅନିଷ୍ଟ କରିପାରେ ? ପ୍ରଭୁ ସୋମନାଥ ତୁମକୁ ସାହାଯ୍ୟ କରନ୍ତୁ । ତୁମେ ଅଗ୍ରସର ହୁଅ ।"

ଭୀମଦେବ—"ଗୁରୁଦେବ ! ଗଜନୀର ହମୀର ସହିତ ଯୁଦ୍ଧ କରିବାକୁ ସୁଯୋଗ ଦେଇଥିବାରୁ ମୁଁ ପ୍ରଭୁ ଶଙ୍କରଙ୍କ ନିକଟରେ କୃତଜ୍ଞ । ଭୀମର କଥାବଳୀ ଆପଣ ବର୍ତ୍ତମାନ ଦେଖିବେ । ବିମଳ, ଆସ ପ୍ରସ୍ତୁତ ହେବା ।"

ସର୍ବଜ୍ଞ—"ଶେଷରେ ସତ୍ୟର ହିଁ ଜୟ ହେବ ବତ୍ସ ! ପ୍ରଭୁ ସୋମନାଥ ସବୁବେଳେ ତୁମ ପାଖରେ ରହିବେ ।"

ଯୁଦ୍ଧ ଅବଶ୍ୟମ୍ଭାବୀ ଜାଣି ଭୀମଦେବଙ୍କ ମନରେ ଆନନ୍ଦ ଦେଖାଦେଲା । ଯେଉଁ ବାପର ଏକମାତ୍ର କାମ୍ୟ ଥିଲା ପରସ୍ତ୍ରୀ ଏବଂ ଯେଉଁ ଭାଇର ସାମର୍ଥ୍ୟ ବା ନାମମାତ୍ର ବ୍ୟକ୍ତିତ୍ୱ ନ ଥିଲା, ସେ ଉଭୟଙ୍କୁ ପାଟଣା ଗାଦିଚ୍ୟୁତ କରିବା ପାଇଁ ତାଙ୍କୁ କୌଣସି ଅସୁବିଧା ହୋଇ ନ ଥିଲା । ମାଳବ ଆକ୍ରମଣ କରିବାକୁ ସେ ପ୍ରସ୍ତୁତ ହେଉଥିଲେ ଏବଂ ବିଜୟୀ ହେବେ ବୋଲି ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା । ତାଙ୍କର ଏକମାତ୍ର ଦୁଃଖ ଯେ, ତାଙ୍କ ସମକକ୍ଷ କୌଣସି ଶତ୍ରୁ ନାହାନ୍ତି ।

ଗଜନୀର ହମୀର ଲବକୋଟ ରାଣାଙ୍କୁ ପରାଜିତ କରିବା ସଙ୍ଗେ ସଙ୍ଗେ ଥାନେଶ୍ୱରକୁ ଭସ୍ମୀଭୂତ କରି କନୌଜ ସୈନ୍ୟବାହିନୀକୁ ଧ୍ୱସ୍ତ ବିଧ୍ୱସ୍ତ କରିଥିବା ସମ୍ପର୍କରେ ସେ ବହୁତ ଶୁଣିଛନ୍ତି । ଭାରତଠାରୁ ଏତେ ଦୂରରେ ଥିବା ଗଜନୀର ଶାସକ ମରୁଭୂମି ଡେଇଁ ଗୁଜରାଟ ଆକ୍ରମଣ କରିବ ବୋଲି କେହି କେବେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ।

ଭଗବାନ ତାଙ୍କୁ ଏପରି ସୁଯୋଗ ଦେଇଥିବାରୁ ଭୀମଦେବ ଆଜି ଖୁସି । ଭାରତର ପୁଣ୍ୟତମ ତୀର୍ଥଭୂମି ଧ୍ୱସ୍ତବିଧ୍ୱସ୍ତ କରିବାକୁ ଆସୁଥିବା ବିଦେଶୀକୁ ଯୁଦ୍ଧରେ ଯେବେ ହରାନ୍ତି, ତାହା ଅପେକ୍ଷା ଅଧିକ ସେବା କଣ ବା ସେ ପ୍ରଭୁ ସୋମନାଥଙ୍କର କରିପାରିବେ ? ଅବଶ୍ୟମ୍ଭାବୀ ଯୁଦ୍ଧ ପାଇଁ ଭୀମଦେବ ଅତ୍ୟମାତ୍ରାରେ ଉତ୍ସାହୀ ହୋଇଉଠିଲେ ।

# ୬

# ଶୁଭଦୃଷ୍ଟି

ରାତ୍ର ଅଧ ବିତିଗଲାଣି । ପାଟଣ ଯିବା ପାଇଁ ବିମଳ ସମସ୍ତ ଆୟୋଜନ ପ୍ରାୟ ଶେଷ କଲେଣି । ଯାତ୍ରାର ଶୁଭମୁହୂର୍ତ୍ତ ପାଇଁ ଆଉ କିଛି ସମୟ ବାକି ଅଛି । ଭୀମଦେବ ନିଜେ ଅସ୍ତ୍ରଶସ୍ତ୍ର ସହ ପୂର୍ଣ୍ଣ ପ୍ରସ୍ତୁତ ହୋଇଛନ୍ତି ; ଅନ୍ୟମାନଙ୍କ ପାଇଁ ଅପେକ୍ଷା କରି ସେ ପିଞ୍ଜରାବଦ୍ଧ ସିଂହ ପରି ଅଧୈର୍ଯ୍ୟ ଭାବେ ଆଗକୁପଛକୁ ଟହଲ ମାରୁଛନ୍ତି ।

ହଠାତ୍ ତାଙ୍କ ମନକୁ ଗୋଟିଏ ଚିନ୍ତା ଆସିଲା । ବାକି ସମୟତକ ମନ୍ଦିରକୁ ଯାଇ ପ୍ରଭୁ ସୋମନାଥଙ୍କୁ କାହିଁକି ଆରାଧନା ନ କରିବେ ?

ସେ ସର୍ବଜ୍ଞଙ୍କ ଘରୁ ଯାଇ ପହଞ୍ଚିଲେ ମନ୍ଦିରରେ । ସେତେବେଳକୁ ଲୋକଗହଳି ଭାଙ୍ଗି ଲାଣି । କେବଳ ଦୁଇ ତିନିଜଣ ଭକ୍ତ ବସି ମନ୍ତ୍ର ପଢ଼ୁଛନ୍ତି । ଅଧିକାଂଶ ଦୀପ ଲିଭିଗଲାଣି । ସେ ପୂଜାମଣ୍ଡପକୁ ଯାଇ ଦେଖନ୍ତି ସେଠାରେ କେହି ନାହାନ୍ତି । ଗଛ ଶାଖା ଭିତର ଦେଇ ଆଲୁଅ ଯେପରି ଉପରୁ ଆସି ଝିନ୍ଦି ଝିନ୍ଦି ହୋଇ ତଳେ ପଡ଼େ, ସେହିପରି ଦଣ୍ଡାୟମାନ ସ୍ତମ୍ଭଗୁଡ଼ିକୁ ଅତିକ୍ରମ କରି ନାଟମନ୍ଦିରରେ ଚନ୍ଦ୍ର କିରଣ ପଡ଼ୁଛି ।

ଜୁଳୁଜୁଳୁ ହୋଇ ଅଳ୍ପ କେତୋଟି ତେଲ ଦୀପ ଜଳୁଥିବା ଗର୍ଭଗୃହ ଭିତରକୁ ସେ ନୀରବରେ ଆସିଲାବେଳକୁ ଖମ୍ବର ଆଡ଼ୁଆଳରେ ଦଣ୍ଡାୟମାନ ଜଣେ ବ୍ୟକ୍ତି ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ସେ ଆଶ୍ଚର୍ଯ୍ୟ ଓ ସ୍ଥିର ହୋଇଗଲେ ।

ଏହି ବ୍ୟକ୍ତିଟିର ଚେହେରା ଭୟଙ୍କର । ଦୀର୍ଘ ଧୂସର ଦେହ, ମସ୍ତକରେ ଦୀର୍ଘ କେଶ । ବେକରେ ମଣିଷ ମୁଣ୍ଡ ମାଳ, ପାଦରେ ବଳୟ, ହାତରେ ଦୀର୍ଘ ଅସ୍ଥିଖଣ୍ଡ । ଉପର ଓଷ୍ଠ ଆବରଣ ଅତିକ୍ରମ କରି ଲୋକଟାର ଭୟଙ୍କର ଦାନ୍ତଗୁଡ଼ାକ ପରିଷ୍କାର ଦେଖାଯାଉଛି ।

ଭୀମଦେବ ଏହି ଚେହେରା ଦେଖି ପ୍ରଥମେ ଭୟଭୀତ ହୋଇଗଲେ । ଭାବିଲେ, ଧ୍ୱଂସକାରୀରୂପରେ ପ୍ରଭୁ ସୋମନାଥଙ୍କ ବିଜେସ୍ଥଳୀ ରକ୍ଷାକରିବା ପାଇଁ ଆସିଥିବା ଭୈରବ ନିଜେ ଦଣ୍ଡାୟମାନ ! କିନ୍ତୁ ଦେଖି କ୍ଷଣକ ପରେ ବୁଝିଲେ, ଏ ହେଉଛି ଭୈରବ ସମ୍ପ୍ରଦାୟର ଅନୁଗାମୀ ଜଣେ କାପାଳିକ । ଏ ଭୟଙ୍କର

ରୂପ ଦେଖି ସେ ପଳାଇ ଯିବାକୁ ଉଦ୍ୟତ ହେଲେ । କିନ୍ତୁ ତାଙ୍କ ଗୋଡ଼ ଆଉ ଚଳିଲା ନାହିଁ ।

ଭୀମଦେବ ଲକ୍ଷ୍ୟ କଲେ କାପାଳିକର ଲାଲ ଆଖି ଦୁଇଟି ଗର୍ଭଗୃହରେ ଥିବା କୌଣସି ନିର୍ଦ୍ଦିଷ୍ଟ ବସ୍ତୁ ଉପରେ ତୀକ୍ଷ୍ଣ ଭାବେ ପଡ଼ିଛି ।

ସେହି ବସ୍ତୁଟି କଣ ତାହା ଜାଣିବାକୁ ସେଆଡ଼କୁ ସେ ଆଖି ପକାଇଲେ । ପ୍ରଥମେ ଭାବିଲେ, ହୁଏ ତ ତାହା ଏକ ଫୁଲଗଦା । ତାଙ୍କ ଆଖି ଆଉ ଟିକିଏ ଭଲଭାବେ ପଡ଼ିବାରୁ ଏହା ଏକ ମଣିଷ ଶରୀର ବୋଲି ଜଣାଗଲା । ସେ ଦେଖିଲେ ଏକ ସୁଗଠିତ ମଣିଷର କାନ୍ଧ ଓ ନରମ ହାତ । ହଠାତ୍ ତାଙ୍କ ମନକୁ ଆସିଲା—ଏ ତ ମନ୍ଦିରର ନର୍ତ୍ତକୀ ଚୌଳା ! ଭୂମିରେ ମସ୍ତକ ଲଗାଇ ସେ ପ୍ରାର୍ଥନା କରୁଛି ।

ଏ ପର୍ଯ୍ୟନ୍ତ ବି ସେ ସେହିପରି ସ୍ଥିର । ସେ କଣ ମୃତା ? କାପାଳିକ ଚୌଳାକୁ କାହିଁକି ଏପରି ଅଣାଇଛି ?

କିଛି ସମୟ ପରେ ଚୌଳା ମୁଣ୍ଡ ଉଠାଇଲା । ତା ହେଲେ ସେ ଜୀବିତା ! କାପାଳିକ କଣ ତାକୁ ଏଠାକୁ ଆଣିଥିଲା ? ସେ କଣ ଚୌଳା ପାଇଁ ଏ ପର୍ଯ୍ୟନ୍ତ ଅପେକ୍ଷା କରିଛି ? ଚୌଳା ଉଠି ହାତ ଯୋଡ଼ି ପ୍ରାର୍ଥନା କରିବା ପର୍ଯ୍ୟନ୍ତ ଭୀମଦେବ ବା କାପାଳିକ କେହି ହଲ୍‌ଚଲ୍ ହୋଇ ନ ଥିଲେ ।

ଚୌଳା ହଠାତ୍ ଉଠିପଡ଼ିଲା । ସେ ତାଳ ଲୟରେ କେତେଥର ଗୋଡ଼ ପକାଇବା ପରେ ଆନନ୍ଦରେ ହସିଉଠିଲା । ତାପରେ ସସ୍ନେହରେ ସେ କହିଉଠିଲା, "ପ୍ରଭୁ ! ମୁଁ ତୁମର ।" ଏହା କହି ଆଖି ନଚାଇ ଆନନ୍ଦ ପ୍ରକାଶ କରି ହସିଲା ଏବଂ ଗର୍ଭଗୃହ ଭିତରୁ ବାହାରି ଆସ୍ତେ ଆସ୍ତେ ଦକ୍ଷିଣ ଦ୍ୱାର ଆଡ଼କୁ ଗଲା ।

ଭୀମଦେବ ଟିକିଏ ପଛେଇ ଗଲେ । କାପାଳିକ ଚୌଳା ପଛେ ପଛେ ଖମ୍ବ ଆଡ଼୍ ଆଳରେ ଲୁଚି ଲୁଚି ଗତି କଲା ।

ପ୍ରଭୁଙ୍କର ଆରାଧନା ଓ ଆଗତ ପ୍ରାୟ ଶତ୍ରୁ, ଉଭୟଙ୍କୁ ଭୀମଦେବ ଭୁଲିଗଲେ । ସେ ମଧ୍ୟ କାପାଳିକ ପଛେ ପଛେ ଗଲେ । କାପାଳିକ ଚୌଳା ପଛରେ ଚାଲିଛି କାହିଁକି ?

ତ୍ରିପୁରସୁନ୍ଦରୀଙ୍କ ନିକଟରେ ବଳି ଦେବା ଏବଂ ଭୈରବଙ୍କୁ ନରରକ୍ତ ଦେବା ଉଦ୍ଦେଶ୍ୟରେ କାପାଳିକମାନେ ଅନେକ ସମୟରେ ଯୁବତୀ ବାଳିକାମାନଙ୍କୁ ଅପହରଣ କରିବାର ସେ ଶୁଣିଛନ୍ତି । କିନ୍ତୁ ପ୍ରଭୁ ସୋମନାଥଙ୍କର ଯେ ନର୍ତ୍ତକୀ, ତାହାକୁ ଏପରି ଅପହରଣ କରିବା ପାଇଁ ଚେଷ୍ଟା କରିବା ଯେ ଅସମ୍ଭବ !

ଚୌଲ୍ ଆଗେ ଆଗେ କାପାଳିକ ଏବଂ ତା ପଛରେ ଭୀମଦେବ ଛପି ଛପି ଚାଲିଥାନ୍ତି । ସମୁଦ୍ରକୁ ଯିବା ଦ୍ୱାରଦେଶ ଅତିକ୍ରମ କରିବା ରାସ୍ତାରେ ଚୌଲ ଗଲା । ଭୀମଦେବ ଭାବିଲେ—ଏତେ ରାତିରେ ସେ କାହିଁକି ସମୁଦ୍ର ଆଡ଼କୁ ଯାଉଛି ? ମୁହୂର୍ତ୍ତକ ପାଇଁ ସେ ନିଜକୁ ଦୁଆର ଆଡ଼୍ଆଳରେ ଲୁଚାଇ ଦେଲେ ଏବଂ କାପାଳିକ ସମୁଦ୍ରକୁ ପଡ଼ିଥିବା ପାହାଚ ପାଖର ଏକ ଗଛ ଆଡ଼୍ଆଳରେ ଲୁଚିଗଲା ।

ଚୌଲ୍ ପାହାଚଦେଇ ସମୁଦ୍ର ଭିତରକୁ ଗଲା ଏବଂ ମୁହୂର୍ତ୍ତକ ପାଇଁ ତଳ ପାହାଚରେ ଠିଆହେଲା । ତାହା ପରେ ସେ ହଠାତ୍ ଦେହରୁ ପରିଧେୟ କାଢ଼ିଦେଲା । ତାକୁ ଯେ ଦୁଇ ଜଣ ପୁରୁଷ ଦେଖୁଛନ୍ତି, ଏ ବିଷୟରେ ସେ ଟିକିଏ ସୁଦ୍ଧା ଜାଣିନାହିଁ । ତାକୁ ଯେପରି ଅବସ୍ଥାରେ ଭଗବାନ ସଂସାରକୁ ପଠାଇଥିଲେ, ସେହି ଅବସ୍ଥା ଧାରଣ କରି ସେ ଦଣ୍ଡାୟମାନ ହେବାରୁ ସମୁଦ୍ର ଲହରୀର ପୃଷ୍ଠଭୂମିରେ ଲକ୍ଷ୍ମୀ ସମୁଦ୍ରରୁ ଉଠୁଥିବା ଭଳି ଦେଖାଗଲା ।

ଚୌଲର ଅପରୂପ ସୌନ୍ଦର୍ଯ୍ୟ ଭୀମଦେବଙ୍କୁ ପାଗଳ କରିଦେଲା ।

ଚୌଲ ସମୁଦ୍ର ପାଣିକୁ ଡେଇଁପଡ଼ି ତା ଭିତରେ ଖେଳିଲା । ସେ ତାର ମୁକୁଳା ବାଳକୁ ବାନ୍ଧିଦେଲା ଏବଂ ତାର କଅଁଳ ହାତ ପାପୁଲି କ୍ରମାନ୍ୱୟରେ ନିଜର ଗାଲ, ଛାତି ଏବଂ ତା ପରେ ପେଟ ଉପରେ ଚାଳନ କଲା । ସେ ପାଣିରେ ବୁଡ଼ି କଟିଛି ସମସ୍ତ ଅଦୃଶ୍ୟ ରହି ତାପରେ ଭାସିଉଠିଲା ।

ଚନ୍ଦ୍ରଙ୍କର କିରଣ ସମୁଦ୍ରର ତରଙ୍ଗ ଅତିକ୍ରମ କରି ତା ଦେହରେ ଛୁପ ଛୁପ ହୋଇ ପଡ଼ୁଥାଏ । ସମୁଦ୍ରରେ ସେ ଭାସିଉଠିବା ସମୟରେ ତାର ସୌନ୍ଦର୍ଯ୍ୟ ଦେଖି ମନେହେଲା, ସତେ ଯେପରି ଗୋଟିଏ ସୁନ୍ଦର ଶଙ୍ଖ ଭାସୁଥିବାରୁ ସମୁଦ୍ର ଦୁର୍ଦ୍ଧର୍ଷ ରୂପ ତ୍ୟାଗ କରି ସ୍ନେହରେ ସ୍ଥିର ହୋଇଯାଇଛି ।

ଭୀମଦେବ ତାଙ୍କ ଜୀବନରେ ବହୁ ସୁନ୍ଦରୀ ଓ ଆକର୍ଷଣୀୟ ରମଣୀ ଦେଖିଛନ୍ତି, କିନ୍ତୁ କୌଣସି ନାରୀର ସୌନ୍ଦର୍ଯ୍ୟରେ ସେ ଯେ ଏପରି ମୁଗ୍ଧ ହୋଇପାରିବେ, ଏହା କେବେହେଲେ କଳ୍ପନା କରି ନ ଥିଲେ । ସେ ବୋଧହୁଏ ସ୍ୱପ୍ନ ଦେଖୁଛନ୍ତି । ଚନ୍ଦ୍ରକିରଣ, ତରଙ୍ଗ, ମୃଦୁ ସମୀର ଏବଂ ପ୍ରକୃତିର ଅପୂର୍ବ ନୈଶ ମାଧୁରୀ, ଏ ସବୁର ସମ୍ମିଶ୍ରଣରେ ସୃଷ୍ଟି ହୋଇଥାଏ ଗୋଟିଏ ଅଦ୍ଭୁତ ପୃଷ୍ଠଭୂମି ।

ଚୌଲ୍ ସ୍ନାନ ସାରି କୂଳ ଆଡ଼କୁ ପହଁରି ପହଁରି ଯାଇ ସେଠାରେ ଥିବା ଅଳ୍ପ ପାଣିରେ କଟିଛି ସମସ୍ତ ଠିଆହେଲା । ତା ପରେ ଆପଣାର ଅଙ୍ଗ ପ୍ରତ୍ୟଙ୍ଗ

ଯୋଗ୍ନ୍ତପାତ୍ର କରି ଓ ମୁକୁଳା ବାଳକୁ ଗର୍ଣ୍ଣି ପକାଇ କୂଳକୁ ଆସିଲା । ଭୀମଦେବ ଏକନିଷ୍ଠ ଭାବେ ତନ୍ମୟ ହେଲାଭଳି ଠିଆ ହୋଇଥାନ୍ତି ।

ହଠାତ୍ ରୋମାଞ୍ଚକ ଦୃଶ୍ୟବଳୟ ବଦଳିଗଲା । ଅନ୍ତରାଳରୁ ଆବିର୍ଭାବ ହେଲା କାପାଳିକ । ସେ ଚୌଳ ନିକଟରେ ଯାଇ ଠିଆ ହେଲା ।

ମୁହୂର୍ତ୍ତକ ଆଗର ଆନନ୍ଦ ଉନ୍ମତ୍ତ ଚୌଳା, ଏହି ଭୟଙ୍କର ରୂପଧାରୀ କାପାଳିକକୁ ସମ୍ମୁଖରେ ଦଣ୍ଡାୟମାନ ଦେଖି, ଭୟରେ ଆର୍ତ୍ତନାଦ କରି ଉଠିଲା । ସମୁଦ୍ର ତରଙ୍ଗଧ୍ୱନିର ସଙ୍ଗୀତମୟ ବାତାବରଣ ବିପର୍ଯ୍ୟସ୍ତ ହେଲା ।

ହଠାତ୍ କଣ ଘଟିଗଲା ଭଳି ଭୀମଦେବଙ୍କର ସ୍ୱପ୍ନଭଙ୍ଗ ହେଲା । ଗୋଟିଏ କୁଦାମାରି ସେ ପହଞ୍ଚିଲେ କାପାଳିକ ନିକଟରେ । ସେ ତା ବେକ ଧରି ଗଳାକୁ ଜୋର୍‌ରେ ଚିପିଧରିଲେ । ଚୌଳାକୁ ଧରିବା ଲାଗି ପ୍ରସାରିତ କାପାଳିକର ହାତ ଏବେ ନିଶ୍ଚେଷ୍ଟ ହୋଇ ରହିଲା ।

ଅଣନିଶ୍ୱାସୀ ହେବା ପୂର୍ବରୁ କାପାଳିକ ନିଜକୁ ମୁକ୍ତ କରିବାକୁ ଚେଷ୍ଟାକଲା; କିନ୍ତୁ ଭୀମଦେବ କ୍ରୋଧରେ ତାହାର ଗଳାକୁ ଆହୁରି ଜୋର୍‌ରେ ଚିପି ଧରିଲେ । କାପାଳିକ ତାର ସମସ୍ତ ବଳ ଖଟାଇ ତାଙ୍କ ହାତ ଫିଟାଇବାକୁ ଚେଷ୍ଟା କଲା । ଶେଷକୁ ସେ ଭୀମଦେବଙ୍କର ବାହୁକୁ ଧରିପକାଇଲା । ପରସ୍ପରକୁ ତଳେ ପକାଇବା ପାଇଁ ଉଭୟଙ୍କ ମଧ୍ୟରେ ସଂଘର୍ଷ ଆରମ୍ଭ ହୋଇଗଲା । ଉଭୟେ ପାଣି ଭିତରକୁ ଗଡ଼ିଗଲେ ।

ଭୀମଦେବ କାପାଳିକର ମୁଣ୍ଡ ପାଣିରେ ମାଡ଼ିଦେବା ପାଇଁ ପ୍ରବଳ ଚେଷ୍ଟା କଲେ । ପ୍ରତିରୋଧ କରି ନ ପାରି କାପାଳିକ ସମୁଦ୍ରରେ ବୁଡ଼ିଗଲା ଏବଂ ତାହାର ପାପିଷ୍ଠ ଜୀବନର ଅବସାନ ହେଲା ।

## ୭

# ଭୀମଦେବ

ଭୀମଦେବ ପାଣିରୁ ଉଠିଲେ । ସେ ଦେଖିଲେ ଚୌଳା ଭୂମିରେ ଅଜ୍ଞାନ ଅବସ୍ଥାରେ ପଡ଼ି ଶୁଷ୍କ ଶ୍ୱେତ ପୁଷ୍ପଟିଏ ପରି ଦେଖାଯାଉଛି

ମନ୍ତ୍ରମୁଗ୍ଧବତ୍ ଭୀମଦେବ ତାର କୋମଳ ଶୀତଳ ଦେହକୁ ନିଜ ଗ୍ରୀବାରେ ଆଉଜାଇ ନେଲେ । ଚୌଲା ପ୍ରତି ତାଙ୍କ ହୃଦୟରେ ସଞ୍ଚିତ ପ୍ରେମ ରସ ଅନୁଭବ କଲେ । ତାଙ୍କ ଦୃଷ୍ଟିରେ ସେହି ଅନଭିଜ୍ଞା ବାଳିକା ଏବଂ ତାର ଶରୀରର ଗଠନ ପ୍ରକୃତ ରୂପ ନେବାକୁ ଆରମ୍ଭ କରିଛି । ଜଗତର ସର୍ବଶ୍ରେଷ୍ଠ ବିଜ୍ଞାଣୀ ସ୍ୱୟଂ ଭଗବାନ ତାର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗକୁ ସତେ ଯେପରି ପୂର୍ଣ୍ଣାଙ୍ଗ କରିବାରେ ଲାଗିଛନ୍ତି ।

ଚୌଲାର ଅଙ୍ଗରେ ଶିହରଣ ଦେଖାଦେଲା । ଭୀମଦେବ ତାକୁ କୋଳକୁ ନେଇ ତାର ମୁହଁରେ ଚୁମ୍ବନର ରେଖା ଆଙ୍କିଦେଲେ ଓ ତାର ଶୀତଳ ଅଧର ସ୍ପର୍ଶରେ ନିଜେ ଉନ୍ମତ୍ତ ହେଲେ । ପଡ଼ିଥିବା ଲୁଗାରେ ସେ ଚୌଲାକୁ ଯଥାତଥା ଘୋଡ଼ାଇ ଦେଲେ ଏବଂ ନିଜ କୋଳରେ ତାହାର ମୁଣ୍ଡ ରଖି ଚେତନା ଆଣିବାକୁ ଚେଷ୍ଟା କଲେ ।

କିଛି କ୍ଷଣ ପରେ ଚୌଲାର ଆଖି ଖୋଲିଲା ଓ ସଚେତ ହେବା ସଙ୍ଗେ ସଙ୍ଗେ କାପାଳିକ କଥା ଭାବି ସେ ଚମକି ଉଠିଲା । ତାର ଦେହରୁ ପରିଧାନ ପୁଣି ଖସିପଡ଼ିଲା ।

"ଭୟ କର ନା" କହି ଭୀମଦେବ ଆଶ୍ୱାସନା ଦେବାକୁ ଚେଷ୍ଟା କଲେ ।

ଚୌଲା ଉଲଗ୍ନା ଥିବା ଜାଣି ଅତିଶୟ ଲଜ୍ଜିତା ହେଲା । ସାଂଗେ ସାଂଗେ ତଳୁ ଲୁଗା ଉଠାଇ ଯଥାତଥା ଅଙ୍ଗ ଆବୃତ କରିବାକୁ ଚେଷ୍ଟା କଲା । ସେ ଚାରିଆଡ଼କୁ ଭୟରେ ଚାହିଁ ପଚାରିଲା, "ଆଉ ସେ କଳାମୁହଁ । ?"

ଭୀମଦେବ କହିଲେ, "ମୁଁ ସେ ବଦ୍‌ମାସକୁ ତାର ପୂର୍ବପୁରୁଷମାନଙ୍କ ନିକଟକୁ ପଠାଇଦେଇଛି ।"

ଚୌଲା—"ଆପଣ ତାକୁ······ ।" ଚୌଲାର କଣ୍ଠ ରୁଦ୍ଧ ହେଲା । "ଭଗବାନଙ୍କର ଜୟ ହେଉ । କିନ୍ତୁ ଆପଣ······?"

ଭୀମଦେବ—ମୋତେ ତୁମେ ଏ ପର୍ଯ୍ୟନ୍ତ ଚିହ୍ନିପାରୁ ନାହିଁ ? ମୁଁ ପାଟଣର ଭୀମଦେବ ।

"ଭୀମଦେବ ମହାରାଜ", ସମ୍ଭ୍ରମରେ ଚୌଲା ନିଜ ଶରୀରକୁ ଭଲ ଭାବେ ଲୁଚାଇବାକୁ ଅସଫଳ ପ୍ରଯତ୍ନ କଲା ।

ଭୀମଦେବ—ମୁଁ ତାକୁ ମାରି ଦେଇ ନ ଥିଲେ ସେ ତୁମକୁ ନେଇ ଯାଇଥାନ୍ତା ।

ଚୌଲା—ଭଗବାନ୍ ! ମୋତେ ତା ହେଲେ ଆପଣ ପାଣିରୁ ଉଠାଇ ଆଣିଛନ୍ତି ? ମୁଁ······

ଭୀମଦେବ ହସି ହସି କହିଲେ, "ମୁଁ ଆଉ କରିଥାନ୍ତି କଣ ? ଅଜ୍ଞାନ ଅବସ୍ଥାରେ କଣ ତୁମ ଦେହରେ ବସ୍ତ୍ର ଥିଲା ?"

ଚୌଳା ଦେହରେ ଲୁଗା ନ ଥିବା ଯୋଗୁଁ ସେ ବ୍ୟସ୍ତ ହେଉଥିବା ଦେଖି ଭୀମଦେବ ହସିଉଠିଲେ ଓ ତାଙ୍କର ଖୋଲାଖୋଲି କଥାବାର୍ତ୍ତା ତଥା ସ୍ମିତହାସ ଚୌଳାକୁ ଆକୃଷ୍ଟ କଲା ।

ଚୌଳା—ପ୍ରଭୁ ! ଯାହା ଦେଖିଲେ ତାହା ଭୁଲିଯାଆନ୍ତୁ । ମୁଁ ସାଧାରଣ ନର୍ତ୍ତକୀ ନୁହେଁ—ପ୍ରଭୁ ଶିବଙ୍କର ନିର୍ମାଲ୍ୟ ।

ଭୀମଦେବ - ସେଇଥିପାଇଁ ଶିବଙ୍କୁ ଅର୍ପିତ ହୋଇଥିବା ଫୁଲ ମୁଁ ମୁଣ୍ଡରେ ମାରିଛି । ମୁଁ ଆଖି ଫେରାଇ ନେଉଛି, ତୁମେ ଭଲକରି ଲୁଗା ପିନ୍ଧ ।

ଭୀମଦେବ ହସି ହସି ମୁହଁ ସେ ପାଖକୁ କଲେ । ଚୌଳା ଅବିଳମ୍ବେ ବସ୍ତ୍ର ପରିଧାନ କଲା । ଏକ ଦିଗରେ କାପାଳିକର ଭୟ ଏବଂ ଅନ୍ୟ ଦିଗରେ ଲୁଗା ନ ଥିବାରୁ ଲଜ୍ଜା—ଏହି ଉଭୟ ଘଟଣା ଯୋଗୁଁ ସେ ବିଶେଷ ବିଚଳିତ ହୋଇ ପଡ଼ିଥାଏ ।

ଭୀମଦେବ—ଏବେ ମୁହଁ ବୁଲାଇବି ତ ?

ଚୌଳା—ହଁ ।

ଭୀମଦେବ—ମୁଁ ଏଠି ଉପସ୍ଥିତ ଥିଲି ବୋଲି ରକ୍ଷା ହେଲା । ନ ହେଲେ······ ।

ଚୌଳା—ସେ ବଦ୍‌ମାସ୍ ମରିଛି । ବର୍ତ୍ତମାନ କଣ ହେବ କେଜାଣି ? ସେ ଭୟଙ୍କର ଅଘୋରୀକୁ ଛୁଇଁବାକୁ ଆପଣ କପରି ସାହସ କଲେ ? ଭଗବାନ ମୋତେ ରକ୍ଷାକରିଛନ୍ତି । । ସେ ତାଙ୍କର ନର୍ତ୍ତକୀକୁ ଭୁଲି ନାହାନ୍ତି ।

ଭୀମଦେବ ପୁଣି ହସିଲେ । ଚୌଳା ତାଙ୍କ ପାଖକୁ ଆସି କହିଲା, "ଆପଣ ଅତ୍ୟନ୍ତ ସାହସୀ ।"

ଭୀମଦେବ—ତୁମେ କହୁଛ ତ !

ଚୌଳା—ମୁଁ ତେବେ ଯାଏଁ ! ଆଉ ଆପଣ କେତେ ସମୟ ଏଠାରେ ରହିବେ ?

ଭୀମଦେବ—ତୁମକୁ ରକ୍ଷା କରିବା ପାଇଁ ଭଗବାନ ମୋତେ ଏଠାକୁ ପଠାଇଥିଲେ । ମୁଁ ମଧ୍ୟ ସାଙ୍ଗେ ସାଙ୍ଗେ ଯାଉଛି ।

ଚୌଳା— ଏତେ ରାତିରେ କୁଆଡ଼େ ?

ଭୀମଦେବ—ପାଟଣ ଯାଉଛି ।

ଚୌଲା ପ୍ରଥମ ଥର ପାଇଁ ହସି କହିଲା, "କିନ୍ତୁ ଆଜି ସକାଳେ ତ ଆସିଥିଲେ··· ···ଏତେ ଚଞ୍ଚଳ କାହିଁକି ଫେରିବେ ?" ଚୌଲାର ହସ ଫଳରେ ତାର ସୌନ୍ଦର୍ଯ୍ୟ ହଜାରେ ଗୁଣ ବଢ଼ି ଯାଇଥିବା ଭୀମଦେବ ଅନୁଭବ କଲେ ।

ଭୀମଦେବ—ତୁମେ ଯେବେ କାହାକୁ ନ କହିବ ବୋଲି ଜବାବ ଦେବ, ତା ହେଲେ ଗୋଟିଏ କଥା କହିବ ।

ଚୌଲା—ମୁଁ କାହାକୁ କହିବ ନାହିଁ ।

ଭୀମଦେବ ଗଜନୀର ହମୀର ଆମକୁ ଆକ୍ରମଣ କରିବାକୁ ଆସୁଛି । ମୁଁ ତା ସହିତ ଲଢ଼େଇ କରିବାକୁ ଯାଉଛି ।

ଚୌଲା—ପ୍ରଭୁ ଶିବ ଆପଣଙ୍କୁ ସାହାଯ୍ୟ କରନ୍ତୁ ଏବଂ ବିଜୟୀ ହୋଇ ଶୀଘ୍ର ଫେରନ୍ତୁ ।

ଭୀମଦେବ ପଚାରିଲେ—ମୋ ପାଇଁ ଅପେକ୍ଷା କରିଥିବ ତ ?

ଚୌଲା କହିଲା—ଯେତେବେଳେ ଆପଣ ଫେରିବେ, ମୋତେ ଭୋଳାନାଥଙ୍କ ଚରଣରେ ହିଁ ପାଇବେ ।

ଏହି ଉତ୍ତର ତାଙ୍କ ଗାଲରେ ଗୁଡ଼ୁପୁଡ଼ା ବସିବା ପରି ହେଲା ଭଳି ଭୀମଦେବ ଭାବିଲେ । ତାଙ୍କୁ ଅପମାନ ହେଲା ଏବଂ ତାଙ୍କ ଗର୍ବ କ୍ଷୁଣ୍ଣ ହେଲା । ସେ ତାକୁ ପୁଣି ଚାହିଁଲେ; କିନ୍ତୁ ଚୌଲାର ଆଖିରେ କୌଣସି ଭାବପ୍ରବଣତା ନ ଥିଲା; ବରଂ ତା ପରିବର୍ତ୍ତେ ଥିଲା କୃତଜ୍ଞତାର ଭାବ, ସୁନ୍ଦର ହସ ଏବଂ ଭଗବତ୍ ଭାବ ।

ଭୀମଦେବ କହିଲେ—ବିମଳ ମୋତେ ଅପେକ୍ଷା କରିଥିବ । ଚାଲ, ମୁଁ ତୁମକୁ ଘରେ ଛାଡ଼ିଦେବି ।

ଚୌଲା ବୁଲିପଡ଼ିଲା ଏବଂ ସମୁଦ୍ର ପାଣିକୁ ଦୃଷ୍ଟି ନିକ୍ଷେପ କରି ବିଦାୟ ନେଲା ବେଳେ ଅଳ୍ପ ମୁହୂର୍ତ୍ତ ପୂର୍ବର ଘଟଣା ଭାବ ଶିହରି ଉଠିଲା ।

ନର୍ତ୍ତକୀ ସାହିର ପ୍ରବେଶଦ୍ୱାରରେ ଚୌଲା ହାତ ଯୋଡ଼ି ଭୀମଦେବଙ୍କ ଠାରୁ ବିଦାୟ ନେଲା । ସେ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ଭୀମଦେବ ଏକ ସ୍ଥାନରେ ଛିଡ଼ା ହୋଇ ରହିଥାଆନ୍ତି । ସେ ଆଜି ତାଙ୍କ ଜୀବନରେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିବା ସୁନ୍ଦରୀ ଦେଖିଛନ୍ତି । ନାରୀର ପଦତଳେ ଯିଏ ଜୀବନର ସର୍ବସ୍ୱ ଅର୍ପଣ କରିଥିଲେ ଏବଂ ସେଥିରେହିଁ ଜୀବନକୁ ସାର୍ଥକ କରିବେ ବୋଲି ଭାବିଥିଲେ, ତାଙ୍କୁ ଆଜି ସିଧା ରଣକ୍ଷେତ୍ରକୁ ଯାଇ ସେଠାରେ ଆକ୍ରମଣକାରୀର

ସମ୍ମୁଖୀନ ହେବାକୁ ପଡ଼ିବ । ହୁଏ ତ ସେ ଜୀବନରେ ଫେରି ନ ପାରନ୍ତି । ଏ କଥା ଭାବି ତାଙ୍କ ମନରେ ଦୁଃଖ ହେଲା ।

ସେ ଦେଉଳ ଆଡ଼କୁ ଦୃଷ୍ଟି ପକାଇ ଆସ୍ତେ ଆସ୍ତେ ଶିଖରର ପତାକାକୁ ଚୁହିଁଲେ । ଭାବିଲେ, ପ୍ରଭୁ ମହାଦେବ ତାଙ୍କ ସଙ୍ଗେ ସଙ୍ଗେ ଅଛନ୍ତି ଓ ସର୍ବଜ୍ଞାତ ଗଙ୍ଗସର୍ବଜ୍ଞଙ୍କର ତାଙ୍କ ପ୍ରତି ଆଶୀର୍ବାଦ ରହିଛି । ଚୌଳା ନିଶ୍ଚୟ ତାଙ୍କ ପାଇଁ ଅପେକ୍ଷା କରିବ । ସେ ଯୁଦ୍ଧକ୍ଷେତ୍ରରୁ ଫେରି ତା ସହିତ ଦେଖା କରିବେ ।

ଆଉ କିଛି ଅଧିକ ଭାବିବା ପୂର୍ବରୁ ସେ ମନ୍ଦିର ଆଡ଼କୁ ଗଲେ । ସେଠାରେ ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରିସାରି ତାଙ୍କୁ ଅପେକ୍ଷା କରିଥିବା ବିମଳଙ୍କ ନିକଟକୁ ଗଲେ । ଯୁଦ୍ଧକ୍ଷେତ୍ରକୁ ବାହାରିବା ପୂର୍ବରୁ ଦାମୋଦରଙ୍କ ନିକଟରୁ ମଧ୍ୟ ବିଦାୟ ନେବାକୁ ଗଲେ ।

ଦାମୋଦର କହିଲେ, "ମୁଁ ଭଲ ହୋଇଗଲେ ଆପଣଙ୍କ ନିକଟକୁ ଯାଇ ଯୋଗଦେବି । ଆକ୍ରମଣକାରୀକୁ ଆପଣ କିଛି କମ୍ ବୋଲି ଭାବନ୍ତୁ ନାହିଁ । ବନାଗ୍ନି ପରି ସେ ଭୀଷଣ । ତାକୁ ରୋକିବା ସହଜ ନୁହେଁ ।"

ଭୀମଦେବ—କିଛି ବ୍ୟସ୍ତ ହୁଅ ନାହିଁ । ମୁଁ ନିଶ୍ଚୟ ତାକୁ ପରାଜିତ କରିବି ।

ଦାମୋଦର—ଆପଣ ତାକୁ ପରାଜିତ କରିବେ ବୋଲି ମୁଁ ନିଶ୍ଚିତ ।

ଦାମୋଦରଙ୍କ ଶତ୍ରୁ ଆକ୍ରମଣ ଆଶଙ୍କା ବୃଥା ବୋଲି ବିମଳ ଭାବୁଥିଲେ । ସେ ପଚାରିଲେ, "ଶତ୍ରୁ ମରୁଭୂମି ଉପରେ ଅତିକ୍ରମ କରିବ ମୋତେ ଆପଣ କହିଲେ ? ମୁଁ ଆମ ସୈନ୍ୟବାହିନୀକୁ ପରିଚାଳନା କରିବି । ମହାରାଜ ପାଟଣରେ ହାନିଲାଭ ବୁଝିପାରିବେ ।"

ଦାମୋଦର ମୁଣ୍ଡ ହଲାଇ କହିଲେ, "ତୁମେ ଏପରି ବେପରୁଆ ହୁଅ ନାହିଁ, ବିମଳ ! ସମସ୍ତ ଶକ୍ତି ଠୁଳ କରି ଶତ୍ରୁର ସମ୍ମୁଖୀନ ହୁଅ । ମହାରାଜ, ମୁଁ ଯାହା କହୁଛି ଶୁଣନ୍ତୁ ।"

ଭୀମଦେବ ପୁଣି ଦୃଢ଼ତାର ସହିତ ଦାମୋଦରଙ୍କୁ କହିଲେ, "କିଛି ବ୍ୟସ୍ତ ହୁଅନା । ମୁଁ ସବୁପ୍ରକାରେ ପ୍ରସ୍ତୁତ ହେଉଛି ।"

ଗଙ୍ଗସର୍ବଜ୍ଞଙ୍କ ଆଶୀର୍ବାଦ ଲାଭ କରିସାରି ଭୀମଦେବ ବିମଳଙ୍କ ସହ ଯୁଦ୍ଧକ୍ଷେତ୍ରକୁ ଯାତ୍ରା କଲେ । ଓଟ ଉପରେ ଚଢ଼ି ପ୍ରଭୁ ସୋମନାଥଙ୍କ ଦୃଷ୍ଟିରୁ

ଦୂରକୁ ଯିବାବେଳେ ସତେ ଯେପରି ଗୋଟିଏ ଅଦୃଶ୍ୟ ସୂତ୍ର ତାଙ୍କୁ ସେହି ଅସାଧାରଣ ନର୍ତ୍ତକୀ ସହ ବାନ୍ଧୁଛି, ସେହିପରି ତାଙ୍କର ମନେହେଲା । କର୍ତ୍ତବ୍ୟ ଦୃଷ୍ଟିରୁ ଆଜ ଯୁଦ୍ଧକ୍ଷେତ୍ରକୁ ଯିବାକୁ ପଡ଼ୁଛି ; କିନ୍ତୁ ଚୌଲ ପାଖରେ ହିଁ ତାଙ୍କର ହୃଦୟ ରହିଯାଇଛି ।

୮

## ଅଶୁଭ ଲକ୍ଷଣ

ସବୁଦିନ ପରି ସେଦିନ ମନ୍ଦିରର ଜଣେ ସେବକ ଖୁବ୍ ଭୋରରୁ ଉଠି ସମୁଦ୍ର ଘାଟ ଅଭିମୁଖେ ଗଲା । ଯାଉ ଯାଉ ବାଟରେ ମନେ ମନେ ଭଜନ ଗାଉଥାଏ ଏବଂ ଦାନ୍ତକାଠି ଘେଁଷୁଥାଏ । ସେ ଆସ୍ତେ ଆସ୍ତେ ପାହାଚରେ ଯାଇ ଦାନ୍ତକାଠି ଖଣ୍ଡିକ ମୁହଁରୁ ପକାଇଦେଇ ପାଣିରେ ମୁହଁ ଧୋଇବା ପାଇଁ ନଇଁ ପଡୁଛି ହଠାତ୍ କୂଳରେ ପଡ଼ିଥିବା ଗୋଟିଏ କନକ ଉପରେ ତାର ଦୃଷ୍ଟି ପଡ଼ିଲା । ଭୟଭୀତ ହୋଇ ପ୍ରଭୁ ସୋମନାଥଙ୍କ ନାମ ଧରି ସେ ଜୀବନ ରକ୍ଷା ପାଇଁ ଦୌଡ଼ିଲା ।

ଦୁଇ ଜଣ ସ୍ତ୍ରୀଲୋକ ମୁଣ୍ଡରେ ଖାଲି ପାତ୍ର ରଖି ଗୀତ ଗାଇ ଗାଇ ପାଣି ପାଇଁ ଯାଉଥାନ୍ତି । ସେମାନେ ତଳକୁ ଯାଇ ପାଣିରେ ଗୋଡ଼ ଦେଲା ବେଳକୁ ଗୋଡ଼କୁ କଣ ଗୋଟାଏ ଟାଣ କନକ ଲାଗିଲା । ଉଭୟେ ଆଖି ପକେଇ ଏକ ଭୟଙ୍କର କନକ ଦେଖି, ନେଇଥିବା ପାତ୍ର ପକାଇ ଦେଇ ପ୍ରାଣ ବିକଳରେ ପାଟିକରି ଦୌଡ଼ିଲେ ।

ଅଳ୍ପ କ୍ଷଣ ପରେ ମନ୍ଦିର ଅଗଣାରେ ପାଟିଗୋଳ ଶୁଣାଗଲା । ସମସ୍ତଙ୍କ ମୁହଁରେ ଗୋଟିଏ କଥା । ଏପରି ଗୋଟିଏ ବିପଦ ଆସି ଦେଖାଦେବ, ଯାହା କି କେହି କଳ୍ପନା କରିନାହାନ୍ତି ।

ଏପରି ଏକ ଘଟଣା ଘଟିଛି ଯାହା କି କେବେ ଘଟି ନ ଥିଲା । ଫଳରେ ପୃଥିବୀରେ କଳ୍ପନାତୀତ ବିପଦ ଦେଖାଦେବାର ଲକ୍ଷଣ ଜଣାପଡ଼ୁଛି ଏବଂ ପ୍ରଭୁ କ୍ରୋଧାନ୍ୱିତ ହୋଇଥିବା ଏଥିରୁ ସ୍ପଷ୍ଟ ହେଉଛି ।

ଭୈରବଙ୍କର ଜଣେ ଶିଷ୍ୟର ଶବ ପାଣିରେ ଭାସୁଛି । ତାର ଭୟଙ୍କର ଚେହେରା, ବିକଟାଳ ଆଖି ଓ କଦାକାର ମୁହଁ ଦେଖିଲେ ମୃତ୍ୟୁର ମଧ୍ୟ ଭୟ ହେବ ।

ଏହି ଖବର ବିଜୁଳି ପରି ସମୁଦ୍ର କୂଳରୁ ଗଙ୍ଗସର୍ବଜ୍ଞଙ୍କ ବାସସ୍ଥାନ, ସେଠାରୁ ମନ୍ଦିର, ବିଦ୍ୟାଳୟ ଓ ନର୍ତ୍ତକୀମାନଙ୍କ ପଡ଼ା ପର୍ଯ୍ୟନ୍ତ ସର୍ବତ୍ର ବ୍ୟାପିଗଲା ।

ଘରଆଡ଼େ ନାରୀ ଓ ପୁରୁଷମାନଙ୍କ ମଧ୍ୟରେ ଆତଙ୍କ ଦେଖାଦେଲା । ଏହି ବିପଦରୁ ରକ୍ଷାକରିବା ପାଇଁ ସମସ୍ତେ ପ୍ରଭୁ ସୋମନାଥଙ୍କୁ ପ୍ରାର୍ଥନା କଲେ । ଭୟାତୁର ହୋଇ ସୁଦ୍ଧା ନିଜ ନିଜର କୌତୂହଳକୁ ଚାପି ନ ପାରି ଶବ ନିକଟକୁ ଲୋକଙ୍କର ଧାଡ଼ ଲାଗିଲା ।

ଏହି ଘଟଣାଟି ଲୋକମୁଖରେ ପରିବର୍ଦ୍ଧିତ ହୋଇ ଶେଷରେ ସର୍ବତ୍ର ରଟିତ ହେଲା ଯେ, ସମୁଦ୍ରରେ ଗୋଟିଏ ଶବ ନ ପଡ଼ି ବହୁ ଶବ ପଡ଼ିଛି । ଏହି ଭୟଙ୍କର ଗପ ଯାତ୍ରୀମାନଙ୍କ ମଧ୍ୟରେ ପ୍ରଚରିତ ହେବାରୁ ଆସନ୍ନ ବିପଦରୁ ରକ୍ଷା ପାଇବା ପାଇଁ ସେମାନେ ପ୍ରାର୍ଥନା କଲେ । ମହିଳାମାନେ ନିଜ ନିଜ ପିଲାଙ୍କୁ ଏ ବିପଦରୁ ରକ୍ଷା କରିବା ନିମିତ୍ତ କିଏ କେତେ ପ୍ରକାର ବ୍ରତ ଓ ଉପବାସ ପାଇଁ ମାନସିକ କଲେ । ବୟସ୍କ ତଥା ଯୁବକ ସମସ୍ତଙ୍କ ମନରେ ଭୀତି ସଞ୍ଚାର ହେଲା । ନିଜ ନିଜକୁ ରକ୍ଷା କରିବା ପାଇଁ ସମସ୍ତେ ଶିବଙ୍କୁ ପ୍ରାର୍ଥନା କଲେ ।

ଭକ୍ତମାନେ ମନ୍ଦିର ଭିତରକୁ ଯାଇ ସେମାନେ ଯେବେ କୌଣସି ପାପ କରିଥାନ୍ତି ସେଥିନିମିତ୍ତ କ୍ଷମା କରିବାକୁ ପ୍ରଭୁଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ଯେଉଁମାନେ ସକାଳୁ ଗାଧୋଇ ପୂଜାପୂଜି କରିସାରିଥିଲେ; ସେମାନେ ପୁଣି ପୂଜା କଲେ ।

କେତେକ ଲୋକ ଅତିଶୟ ଭୀତହୋଇ ଦଳ ଦଳ ହୋଇ ଭଜନ ଗାନ କଲେ; କେହି କେହି ଭଜନ ସଙ୍ଗେ ବାଦ୍ୟଯନ୍ତ୍ରମାନ ବଜାଇଲେ । କାପାଳିକର ମୃତ୍ୟୁ ଫଳରେ ଦେଖାଦେଇଥିବା ବିପଦରୁ ଏକମାତ୍ର ପ୍ରଭୁ ସୋମନାଥ ରକ୍ଷା କରି ପାରିବେ ବୋଲି ସମସ୍ତଙ୍କର ବିଶ୍ୱାସ ।

ବହୁ କଷ୍ଟରେ ଗଙ୍ଗସର୍ବଜ୍ଞଙ୍କ ପ୍ରଧାନ ଶିଷ୍ୟ ଶିବରାଶି ଘଡ଼ିଏ ଆଖି ବୁଜିଥିଲେ । କିନ୍ତୁ ଅଳ୍ପ ସମୟ ମଧ୍ୟରେ ଆଖପାଖରେ ଏପରି ଗୋଳମାଳ ହେଲା ଯେ ତାଙ୍କ ପକ୍ଷରେ ଶୋଇବା ଅସମ୍ଭବ ହୋଇ ପଡ଼ିଲା । ସେ ଉଠିବା ପରେ ସବୁ ଘଟଣା ଶୁଣି ଶିବକବଚ ବୋଲିବାକୁ ଆରମ୍ଭ କରିଦେଲେ ।

ସେ ମନ୍ଦିରକୁ ଗଲାବେଳକୁ ଏତେ ଲୋକ ଭୟରେ ଏକାଠି ହୋଇଥିବା ଓ ସେମାନଙ୍କ ମୁହଁର ଅବସ୍ଥା ଦେଖି ବିସ୍ମିତ ହୋଇଗଲେ । ଲୋକଗହଳି ଆଡ଼େଇ ସେ ପାହାଚଦେଇ ସମୁଦ୍ରକୁ ଗଲେ । ଉଦୀୟମାନ ସୂର୍ଯ୍ୟର ତେଜରେ ମୃତ କାପାଳିକର ବୀଭତ୍ସ ମୁଖମଣ୍ଡଳ ଓ ବିକଟାଳ ଆଖି ଦେଖି ସେ ନିଜେ ମଧ୍ୟ ଭୟଭୀତ ହୋଇଗଲେ ।

ଗୋଟାଏ ମହାବିପଦ ଆସିବା ସୁନିଶ୍ଚିତ ବୋଲି ସବୁ ଲୋକଙ୍କ ପରି ଶିବରାଶି ମଧ୍ୟ ବିଶ୍ୱାସ କଲେ । ପୂର୍ବଦିନ ସନ୍ଧ୍ୟାବେଳେ ଦାମୋଦର ଦେଇଥିବା ଖବର ଦୃଷ୍ଟିରୁ ବିପଦ ନିଶ୍ଚିତ ବୋଲି ସେ ଧରିନେଲେ ।

ଏ ବିପଦରୁ ରକ୍ଷା କରିବା ପାଇଁ ଅନ୍ୟମାନଙ୍କ ପରି ସେ ମଧ୍ୟ ଶିବଙ୍କର ଧ୍ୟାନ କଲେ । ଧ୍ୟାନ କରୁଥିବା ସମୟରେ ସେ ପଳାଇ ଯିବାକୁ ଭାବିଲେ । କିନ୍ତୁ ସେ ଯେବେ ଚାଲିଯାଆନ୍ତି, ତାହେଲେ ତାଙ୍କ ନିକଟରେ ବସିଥିବା ଭୟାତୁର ନରନାରୀଙ୍କର ଅବସ୍ଥା କଣ ହେବ, ଏହି ଆଶଙ୍କା ତତ୍‌କ୍ଷଣାତ୍ ତାଙ୍କ ମନକୁ ଉଦ୍‌ବେଳିତ କଲା । ଧର୍ମଶାସ୍ତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ, ଗୁରୁଙ୍କ ପ୍ରତି ଏକନିଷ୍ଠ ଭକ୍ତି ଏବଂ ସରଳ ଜୀବନଯାପନ ହିଁ ତାଙ୍କୁ ଏ ବିପଦରୁ ରକ୍ଷାକଲା । ବିରାଟ ପାଶୁପତ ସମ୍ପ୍ରଦାୟର ମୁଖ୍ୟ ରୂପେ ସେ ଗଙ୍ଗସର୍ବଜ୍ଞଙ୍କ ଉତ୍ତରାଧିକାରୀ ହେବାର କଥା । ତେଣୁ ସେ ଏପରି ସମୟରେ କିପରି ପଳାଇବେ ?

ତାଙ୍କ ମନରେ କ୍ରମେ ସାହସର ସଞ୍ଚାର ହେବାରୁ ସେ ପଛକୁ ଚାହିଁ ନିକଟରେ ଠିଆ ହୋଇଥିବା ଶିଷ୍ୟକୁ କାପାଳିକମାନଙ୍କ ମୁଖ୍ୟ କିଙ୍କ ଯୋଗେଶ୍ୱରଙ୍କର ମୃତ୍ୟୁ ହୋଇଛି ବୋଲି ତାଙ୍କ ଗୁରୁଦେବ ଓ କାପାଳିକମାନଙ୍କ ଶିବିରରେ ଖବର ଦେବା ପାଇଁ ନିର୍ଦ୍ଦେଶ ଦେଲେ ।

କିଙ୍କ ଯୋଗେଶ୍ୱର ହିଁ ସର୍ବଶ୍ରେଷ୍ଠ କାପାଳିକ । ତାଙ୍କର ମୃତ୍ୟୁ ହୋଇଥିବା ଜାଣି ଏକତ୍ରିତ ହୋଇଥିବା ଲୋକେ ଅଧିକ ଭୟଭୀତ ହେଲେ । ଯୋଗେଶ୍ୱର ଏତେ ଶକ୍ତିଶାଳୀ ଥିଲେ ଯେ ଭୈରବ ନିଜେ ତାଙ୍କ ପାଖେ ପାଖେ ରହୁଥିଲେ ବୋଲି ଶୁଣାଯାଏ ।

ପ୍ରଭୁ ସୋମନାଥଙ୍କୁ ସାକ୍ଷାତ ଭାବେ ଦେଖିବା ପାଇଁ ଯୋଗେଶ୍ୱର ଗୋଟିଏ ବିରାଟ ପୂଜା ଆରମ୍ଭ କରିଥିଲେ । ଏହି କାମନା ପୂରଣ ନ ହେଲେ ସେ ଏକଶହ ଆଠ ସୁନ୍ଦରୀ ଯୁବତୀଙ୍କର ରକ୍ତ ଭୈରବଙ୍କୁ ଅର୍ପଣ କରିବେ ବୋଲି ସ୍ଥିର କରିଥିବା କଥା ଶୁଣାଯାଏ ।

ଗତ ଅଧରେ ଶ୍ମଶାନରେ ସେ ଏହି ପୂଜା କରୁଥିବା ବହୁ ଲୋକ ଜାଣନ୍ତି । ଏଭଳି ଜଣେ ମହାନ୍ ବ୍ୟକ୍ତିଙ୍କର ଏପରି ମୃତ୍ୟୁ ହେବାରୁ ସମସ୍ତଙ୍କ ମନରେ ଅଧିକ ଭୟ ଦେଖାଦେଲା ।

ଏହା ନିଜ ପରୀକ୍ଷାର ସମୟ ବୋଲି ଶିବରାଶି ଭାବିଲେ । ଅନ୍ୟମାନଙ୍କ ପରି ସେ ଭୟଭୀତ ବୋଲି ଯେବେ ଲୋକଙ୍କ ମନରେ ଧାରଣା ହୁଏ, ତାହାହେଲେ ପାଶୁପତ ସଂପ୍ରଦାୟର ମୁଖ୍ୟରୂପେ ଗଙ୍ଗସର୍ବଜ୍ଞଙ୍କର ଉତ୍ତରାଧିକାରୀ ହେବାକୁ ସେ ଅଯୋଗ୍ୟ ବିବେଚିତ ହେବା ସ୍ୱାଭାବିକ । ଏତେଦିନ ଗୁରୁଦେବଙ୍କ ପାଖରେ ରହି ନିଜକୁ କିପରି ସଂଯତ କରିବାକୁ ହୁଏ, ତାହା ସେ ବେଶ୍ ଜାଣିଥିଲେ । କଷ୍ଟ-ସାଧ ହେଲେ ବି ନିଜର ଭାବପ୍ରବଣତାକୁ ସଂଯତ କରି ସେ ଲୋକମାନଙ୍କୁ ଆତଙ୍କିତ ନ ହେବାପାଇଁ ବୁଝାଇଥିଲେ ।

ଜଣେ ବୃଦ୍ଧା ହାତଯୋଡ଼ି କହିଲା, "କଣ ବିପଦ ପଡ଼ିବ ? କିଙ୍ଗ ଯୋଗେଶ୍ୱର ଏଭଳି କୈଳାସବାସୀ ହୋଇଥିବାରୁ ଦୁନିଆରେ ବିପଦ ପଡ଼ିଯିବ ?"

ଶିବରାଶି କହିଲେ, "ଆପଣମାନେ ଏପରି କାହିଁକି ଭୟଭୀତ ହେଉଛନ୍ତି ? ପ୍ରଭୁ ସୋମନାଥଙ୍କ କୃପାରୁ ସବୁ ଠିକ୍ ହୋଇଯିବ ।"

ବୁଢ଼ୀ ପୁଣି ପଚାରିଲା "କାହିଁକି ଏମିତି ହେଲା ? ପ୍ରଭୁଙ୍କର ପ୍ରକୋପ ନ ହେଲେ କଣ ଏମିତି ହୁଅନ୍ତା ?"

ଶିବରାଶି ଅଜାଣତରେ ଗଜମିର ହମୀରଙ୍କ କଥା ଭାବି ଥରିଉଠିଲେ । ସାଙ୍ଗେ ସାଙ୍ଗେ ନିଜକୁ ସଂଯତ କରି କହିଲେ, "ତୁମେମାନେ ଏପରି କାହିଁକି ଡରୁଛ ? ଯୋଗେଶ୍ୱର ମୋତେ ନିଜେ କହିଥିଲେ ଯେ, ସେ ପ୍ରଭୁ ସୋମନାଥଙ୍କ ଦର୍ଶନ ପାଇଲେ ଏହି ସଂସାର ଛାଡ଼ି ପ୍ରଭୁଙ୍କ ବାସସ୍ଥାନ କୈଳାସରେ ରହିବାକୁ ଯିବେ । ତେଣୁ ଏହା ପ୍ରଭୁଙ୍କର କ୍ରୋଧର ଲକ୍ଷଣ ନ ହୋଇ ଦୟାର ଲକ୍ଷଣ ।"

ସେ ସାହସର ସହିତ ପାହାଚରେ ତଳକୁ ଯାଇ ଯୋଗେଶ୍ୱରଙ୍କ ଶବ ପାଖରେ ଠିଆହୋଇ ଶିବସ୍ତୋତ୍ର ବୋଲିବାକୁ ଲାଗିଲେ । ତାଙ୍କ ଜୀବନ ଛାଡ଼ିଯିବା ଭଳି ପ୍ରତି ମୁହୂର୍ତ୍ତରେ ତାଙ୍କୁ ଲାଗୁଥିଲେ ସୁଦ୍ଧା କେବଳ ତାଙ୍କ ଗୁରୁ ଗଙ୍ଗସର୍ବଜ୍ଞ ଶୀଘ୍ର ଆସି ସେଠାରେ ପହଞ୍ଚିବେ; ଏହି ବିଶ୍ୱାସ ବଳରେ ହିଁ ସେ ସବୁ କରିଯାଉଥିଲେ ।

ମୁହୂର୍ତ୍ତକୁ ମୁହୂର୍ତ୍ତ ଲୋକସଂଖ୍ୟା ବଢ଼ୁଥାଏ । ଲୋକେ ଭୟରୁ ତ୍ରାହି ପାଇବା ପାଇଁ ସମବେତ କଣ୍ଠରେ ଓ ବଡ଼ପାଟିରେ ଭଜନ ବୋଲୁଥାନ୍ତି । ଏହି ଉପାୟରେ ପ୍ରଭୁଙ୍କୁ ସନ୍ତୁଷ୍ଟ କରିଯାଇ ପାରିବ ବୋଲି ସେମାନଙ୍କର ବିଶ୍ୱାସ ।

ଶିବରାଣିଙ୍କ କଥା ଗୁରୁଆଡ଼େ ପ୍ରଗୁରିତ ହେବାରୁ ତା'ର ପ୍ରଭାବ ପଡ଼ିଲା । ଏହା ଫଳରେ ଲୋକଙ୍କ ମଧ୍ୟରେ ସାହସ ବଢ଼ିଲା । କଙ୍କଙ୍କ ମୃତ୍ୟୁ ଫଳରେ କୌଣସି ବିପଦ ଦେଖା ଦେବା ପରିବର୍ତ୍ତେ ଏହା ଭଗବତ୍ କୃପାର ଲକ୍ଷଣ ବୋଲି କ୍ରମେ ଲୋକଙ୍କର ଧାରଣା ହେଲା ।

ଗଙ୍ଗ ସେ ସ୍ଥାନରେ ପହଞ୍ଚିବାବେଳକୁ ଲୋକଙ୍କ ଭୟ ଦୂର ହୋଇଯାଇଥିଲା । ସେ ପହଞ୍ଚିବା ସମୟରେ ତାଙ୍କ ମୁହଁ ଥିଲା ପୂର୍ବପରି ଗମ୍ଭୀର । ମୃତ୍ୟୁଦେବତା ମାର୍କଣ୍ଡେୟଙ୍କୁ ନେବାକୁ ଆସିବାବେଳେ ଭଗବାନଙ୍କୁ ସନ୍ତୁଷ୍ଟ କରିବା ନିମିତ୍ତ ମାର୍କଣ୍ଡେୟ ମୁନି ଯେଉଁ ସ୍ତୋତ୍ର ଗାନ କରିଥିଲେ, ସେ ଆସି ତାହା ଗାନ କଲେ ।

ଲୋକେ ତାଙ୍କୁ ଦେଖିବାରୁ ସେମାନଙ୍କ ମନରେ ସାହସ ବଢ଼ିଲା ସେମାନେ ଏହି ଶ୍ଳୋକର ପୁନରାବୃତ୍ତି କଲେ—"ଯାହାକୁ ପ୍ରଭୁ ଚନ୍ଦ୍ରଶେଖର ରକ୍ଷା କରିବେ, ତାହାର ମୃତ୍ୟୁ କିଏ କରିପାରିବ ?" ଏହା ବୋଲି ସର୍ବଜ୍ଞ ଯୋଗେଶ୍ୱରଙ୍କ ଶବ ଉପରେ ଫୁଲ ରଖି ଶବଟିକୁ ସଜାଡ଼ିଲେ ।

ପରେ ପରେ କେତେକ କାପାଳିକ ଆସି ଅତି ଅଦ୍ଭୁତ ଏବଂ ଚମକପ୍ରଦ ଗାନମାନ ଗାଇ ଯୋଗେଶ୍ୱରଙ୍କ ଶବ ବୋହିନେଲେ ।

ସାଙ୍ଗେ ସାଙ୍ଗେ ଶବର ଶୋଭାଯାତ୍ରା ଗ୍ଲଲିଲା । ଶ୍ମଶାନ ପର୍ଯ୍ୟନ୍ତ ହଜାର ହଜାର ଲୋକ ଏହି ଶୋଭାଯାତ୍ରାରେ ଗ୍ଲଲିଥାନ୍ତି । ଯୋଗେଶ୍ୱରଙ୍କ ଅନୁଗାମୀମାନେ ସେମାନଙ୍କ ସମ୍ପ୍ରଦାୟର ପ୍ରଥା ଅନୁସାରେ ଭୟାବହ ଶବଦାହ ଆରମ୍ଭ କରିବାରୁ କେବଳ ଗଙ୍ଗସର୍ବଜ୍ଞ ଏବଂ ତାଙ୍କ ଶିଷ୍ୟବର୍ଗଙ୍କ ଛଡ଼ା ସମସ୍ତେ ସେଠାରୁ ଗ୍ଲଲିଗଲେ

ଯୋଗେଶ୍ୱରଙ୍କ ଶରୀର ପାଉଁଶ ହୋଇଗଲା ପରେ କାପାଳିକମାନେ ସ୍ମାରକ ସ୍ୱରୂପ ତାଙ୍କର ଅସ୍ଥି ସଂଗ୍ରହ କଲେ ।

## ୯

## ବାପ ଓ ପୁଅ

ଗଙ୍ଗା ଘରକୁ ଫେରି ଆସିଲାବେଳକୁ ଦିନ ଯଥେଷ୍ଟ ହୋଇଗଲାଣି ଦେଖେ ତ ଚୌଳା ଶୋଇଛି ।

ଚୌଲାକୁ ରାତ୍ରସାରା ଭଲ ନିଦ ହୋଇ ନଥିଲା । ସେ ଗୋଟିକ ପରେ ଗୋଟିଏ ସ୍ୱପ୍ନ ଦେଖି କେତେବେଳେ ଖୁସି ହେଉଥିଲାତ, କେତେବେଳେ ଡର୍‌-ଯାଉଥିଲା । ତା ପଛରେ ଭୈରବଙ୍କ ଶିଷ୍ୟମାନେ ଗୋଡ଼ାଉଛନ୍ତି ··· ଖିମ-ଦେବଙ୍କ ବାହା ଉପରେ ସେ ଭରା ଦେଇଛି ······ ଗଣପତିଙ୍କ ବାହନ ମୂଷିକ ଉପରେ ଚଢ଼ିଛି ··· ତା' ପାଇଁ ଦେବତା ଓ ରାକ୍ଷସଙ୍କ ମଧ୍ୟରେ କନ୍ଦଳ ଲାଗିଛି । ······ପ୍ରଭୁ ଶଙ୍କରଙ୍କ କୋଳରେ ସେ ବସିଛି ··· ଶଙ୍କରଙ୍କ ସ୍ତ୍ରୀ ପାର୍ବତୀ ଆସି ରାଗିବାରୁ ସେ ଗୋଟିଏ ଗୋଡ଼ରେ ନାଚୁଛି । ଭୈରବଙ୍କ ଅଧରହୀନ ଭକ୍ତମାନେ ଯେପରି ତାକୁ ନେଇଯାଉଛନ୍ତି । କି ଭୟଙ୍କର ଦୃଶ୍ୟ ! କାର୍ତ୍ତିକେୟଙ୍କ ବାହନ ମୟୂର ଉପରେ ଚଢ଼ି ଖିମଦେବ ଆସି ତାକୁ ରକ୍ଷା କରୁଛନ୍ତି । ସେ ତାକୁ କୋଳାଗ୍ରତ କରିବାରୁ ଚୌଲା ଖୁସି ହେଉଛି··· । ମୟୂର ତା'ର ସବୁ ଲୁଗାପଟା ନେଇ ଉଡ଼ିଯାଉଛି ଇତ୍ୟାଦି ।

ପୂର୍ବରାତ୍ରର ଘଟଣାମାନ ମନେପକାଇ ଚୌଲା ଚମକି ଉଠିଲା । ପ୍ରଭୁ ସୋମନାଥଙ୍କ ସମ୍ମୁଖରେ ସେ କିପରି ନାଚିଥିଲା, ଜୋତ୍ସ୍ନା ରାତିରେ କିପରି ସମୁଦ୍ରରେ ସ୍ନାନ କଲା, ଖିମଦେବ କିପରି ତାକୁ ରକ୍ଷାକଲେ, ଏହିସବୁ କଥା ତାର ମନେପଡ଼ିଲା । ପ୍ରଭୁ ତାକୁ ମୃତ୍ୟୁ ମୁଖରୁ ରକ୍ଷା କରିଛନ୍ତି; ନ ହେଲେ ଖିମଦେବ କାହିଁକି ବା ସେ ସମୟକୁ ଆସି ପହଞ୍ଚିଥାନ୍ତେ ! ସେ ପ୍ରଭୁଙ୍କର ଯେ ଆଶ୍ରିତା, ଏ ବିଷୟରେ ସେ ନିଶ୍ଚିତ । ସେ ଏହା ସବୁ ଭାବି ହସୁଛି, ଠିକ୍ ଏହି ସମୟରେ ଗଙ୍ଗା ଆସି ପହଞ୍ଚିଲା ।

ଗଙ୍ଗା—ଦିନ ଦ୍ୱିପ୍ରହର ଆସି ହେଲାଣି; ତୁ ଆହୁରି ଶୋଇଚୁ ?

ଚୌଲା—କଣ ହେଲା । ମୁଁ କାଲି ରାତିଯାକ ଯେ ଶୋଇନାହିଁ ?

ଗଙ୍ଗା—ଏଣେ କଣ ହେଲାଣି ତୁ ଜାଣିଲୁଣି ?

ଚୌଲା—ଶୋଇଥିଲି ତ ଜାଣିବି କିପରି ?

ଗଙ୍ଗା – କଙ୍କ ଯୋଗେଶ୍ୱର ମରିଯାଇଛି ।

ଚୌଲା—କିଏ ?

ଗଙ୍ଗା— କାପାଳିକମାନଙ୍କ ଗୁରୁ କଙ୍କ ଯୋଗେଶ୍ୱର । ସମୁଦ୍ରକୁ ପଡ଼ିଥିବା ପାହାଚରେ ତାଙ୍କ ଶବ ପଡ଼ିଥିଲା । ତାଙ୍କର ସେ ଆଖି ଓ ଭୟଙ୍କର ମୁହଁର କି ଭୟାବହ ଦୃଶ୍ୟ !

ଗଙ୍ଗା ତା ଲୁଗା ବଦଳାଉଥାଏ ଓ କଥାଗୁଡ଼ାକ କହିଚାଲିଥାଏ ।

"ତୁ ଜାଣିଛୁ; ଶହେ ଆଠ ଝିଅଙ୍କ ରକ୍ତ ପ୍ରଭୁଙ୍କୁ ଦେବା ପାଇଁ ସେ ପ୍ରତିଜ୍ଞା କରିଥିଲା ।"

ଏହା କହିଲାବେଳେ ତା' ଆଖି ଚୌଳା ଉପରେ ପଡ଼ିଗଲା ଏବଂ ସେ ଅତିରିକ୍ତ ଭୟଭୀତ ହେଉଥିବାର ଦେଖି କହିଲା, "ତୁ କାହିଁକି ଡରୁଛୁ ? କଣ ହେଲା ?"

ଚୌଳା ଡରି ଡରି କହିଲା, "ଝିଅଙ୍କ ରକ୍ତ ! ଭଗବାନ ! କି ଭୟଙ୍କର !" କହୁ କହୁ ସେ ବେହୋସ୍ ହୋଇଗଲା ।

ଜ୍ଞାନ ଫେରିଆସିବା ପରେ ତା ମନ ଆଉ ସ୍ଥିର ହୋଇ ପାରିଲା ନାହିଁ । ଆଖି ଆଗରେ ତିନି ଜଣ ଲୋକ ଦଉଡ଼ାଦଉଡ଼ି କରୁଥିବା ଭଳି ତାକୁ ଦିଶିଲା । ସେ ତିନି ଜଣ ହେଉଛନ୍ତି ଭୀମଦେବ, କାପାଳିକ ଏବଂ ଗଜନୀର ମୁସଲମାନ ଆକ୍ରମଣକାରୀ ହମୀର । ଏହି ପରିସ୍ଥିତିରେ ସେ ଡରିଯାଇ ମାଆ ପାଖରେ ଯାଇ ବସିଲା ।

ଚୌଳା—ମାଆ, ବର୍ତ୍ତମାନ କଣ ହେବ ?

ଗଙ୍ଗା—କଣ ହେବ ବୋଲି ତୁ ଭାବୁଛୁ ?

ଚୌଳା—ଯୋଗେଶ୍ୱରଙ୍କ ମୃତ୍ୟୁ ଫଳରେ ସଂସାରକୁ ବିପଦ ମାଡ଼ି ଆସିବ ବୋଲି ମୋର ଭୟ ହେଉଛି ।

ଗଙ୍ଗା— ବାଜେ କଥା । ମୁଁ ତ କାଲି ଜନ୍ମ ହୋଇ ନାହିଁ ! ମୋ ଜୀବନରେ ବଡ଼ ବିପଦ କେବେ ପଡିବାର ଯେପରି ଦେଖି ନାହିଁ !

ଚୌଳା ଚୂପ୍ ଚୂପ୍ କରି ତା' ମାଆ କାନରେ କହିଲା; "ତୁ ଜାଣିନୁ, ଗଜନୀର ହମୀର ଆମକୁ ଆକ୍ରମଣ କରିବାକୁ ଆସୁଛି ।"

ଗଙ୍ଗା ଗଜନୀର ହମୀର, ଏତେ ମରଦ କିଏ ମ !

ଚୌଳା—ମୁଁ କେମିତି ଜାଣିବି ।

ଗଙ୍ଗା—ତେବେ ତା କଥା ତୁ କେଉଁଠୁ ଶୁଣିଲୁ ?

ଚୌଳା—ଯାହାଠୁ ଶୁଣିଲି, କଣ ଠିକ୍ ନୁହେଁ ?

ଗଙ୍ଗା—ଖବରଟା ଅବଶ୍ୟ ଠିକ୍ । କିନ୍ତୁ ତୁ ତ କାଲି କିଛି ଜାଣି ନ ଥିଲୁ ? ଏ ଗୁପ୍ତଖବର ଆଜି କେମିତି ଜାଣିଲୁ ? ତୋତେ କିଏ କହିଛି କହ ।

ଗଙ୍ଗା ତାର ଝିଅକୁ ଏତେ ଭଲପାଉଥିଲା ଯେ ସେ ତାର ମନର କଥା ନ କହିବା ଫଳରେ ତା ମନରେ ଭାରି କଷ୍ଟ ହେଲା । ତାର ଜୀବନର

ଏକମାତ୍ର ଆଶା ଥିଲା ଚୌଳା ଶିବରାଣିଙ୍କୁ ପ୍ରେମ କରୁ ଏବଂ ଏହି ଉଦ୍ଦେଶ୍ୟ ପୂରଣ କରିବା ପାଇଁ ସେ ସମସ୍ତ ପ୍ରକାର ଉଦ୍ୟମ କରିଆସିଛି । ତେଣୁ ଚୌଳାର ଅନ୍ୟ କାହା ସହିତ ସମ୍ବନ୍ଧ ତା ପକ୍ଷରେ ଅସହ୍ୟ ।

ଗଙ୍ଗା ପୁଣି ବାରମ୍ବାର ପଚାରିଲା, "ତୁ ମୋତେ କହିବୁ ନାହିଁ !"

ଚୌଳା ସ୍ୱଭାବତଃ ସରଳା ଓ ସ୍ପଷ୍ଟବାଦିନୀ । ସେ କଥା ଲୁଚାଇ ରଖିପାରେ ନାହିଁ । ବିଶେଷତଃ ମାଆକୁ ବା କିପରି ନ କହିବ ? ସେ କହିଲା, "ଗଜନୀର ହମୀର ଆମକୁ ଆକ୍ରମଣ କରିବେ ବୋଲି ପାଟଣର ରାଜା ଭୀମଦେବ ମୋତେ କହିଥିଲେ ।"

ପୂର୍ବଦିନ ଜହ୍ନରାତିରେ ସେ ସ୍ନାନ କରୁଥିବା ବେଳର ସମସ୍ତ କଥା ତାର ମନେପଡ଼ିଲା ଏବଂ ସେହି କଥା ଭାବି ତା' ଦେହ ପୁଣି ଥରିଉଠିଲା ।

ଗଙ୍ଗା ଚୌଳାକୁ କୁଣ୍ଢେଇ ପକାଇ କହିଲା, "ପାଗଳି ! ତୁ ଭୀମଦେବଙ୍କୁ କେଉଁଠି ଦେଖିଲୁ !"

ଚୌଳା ତାର ସମସ୍ତ ଅଭିଜ୍ଞତା ବର୍ଣ୍ଣନା କରିବାକୁ ବ୍ୟଗ୍ର ହୋଇ ପଡ଼ିଲା । ନିଜ ମୁହଁ ମା କୋଳରେ ଲୁଚାଇ ପୂର୍ବଦିନ ରାତିରେ ଘଟିଥିବା ସମସ୍ତ ଘଟଣା, ଅର୍ଥାତ୍ ଯୋଗେଶ୍ୱରଙ୍କ ମୃତ୍ୟୁ ଏବଂ ଭୀମଦେବଙ୍କ ସହିତ ତାର ସାକ୍ଷାତ ବିଶଦଭାବେ କହିଗଲା । କେବଳ ଭୀମଦେବ ତାକୁ ସମୁଦ୍ରରୁ ଉଠାଇ ଆଣିବା-ବେଳେ ତା ଦେହରେ କୌଣସି ଲୁଗା ନ ଥିବା କଥା କହି ନ ଥିଲା ।

ଚୌଳାର କଥା ଶୁଣି ଗଙ୍ଗା ମନରେ ଅତିଶୟ ଭୟ ହେଲା । ଚୌଳା ଯୋଗେ କଙ୍କଯୋଗେଶ୍ୱରଙ୍କର ଯେ ଅକାଳରେ ମୃତ୍ୟୁ ହେଲା, ଏହାଠାରୁ ବଳି ଦୁର୍ଭାଗ୍ୟ ଆଉ କଣ ହୋଇପାରେ ? ତା' ଛଡ଼ା, ଠିକ୍ ପରେ ପରେ ଭୀମଦେବଙ୍କୁ ଯେ ଗଜନୀର ହମୀର ସହିତ ଯୁଦ୍ଧ କରିବା ପାଇଁ ଯିବାକୁ ହେଲା, ଏହାର ଗୁରୁତ୍ୱ ନାହିଁ କି ?

ଏହି ବିପଦରୁ ରକ୍ଷା ପାଇବା ପାଇଁ ଗଙ୍ଗା ଗୋଟିଏ ଉପାୟ କଲା । ସେ ଚୌଳାକୁ ନେଇ ଗଙ୍ଗସର୍ବଜ୍ଞଙ୍କ ନିକଟକୁ ଚାଲିଗଲା ।

ସେତେବେଳକୁ ଗଙ୍ଗ ମଧ୍ୟାହ୍ନ ପୂଜା ଶେଷକରି ଗାୟତ୍ରୀ ଜପ କରୁଥାନ୍ତି । ଆଜି ତାଙ୍କ ପକ୍ଷରେ ମନର ଏକାଗ୍ରତା ଆଣିବା ଏକ ପ୍ରକାର ଅସମ୍ଭବ ହୋଇ ଉଠିଛି । ଏପରି କି, ଜପ କରୁଥିବା ସମୟରେ ମନ ଭିତରେ "କଣ ହେବାକୁ ଯାଉଛି" ବୋଲି ପ୍ରଶ୍ନ ଉଠୁଥାଏ । ଠିକ୍ ଏହି ସମୟରେ ଚୌଳା ସହ ଗଙ୍ଗା ପଛ ପାଖରୁ ପ୍ରବେଶ କରି ତାଙ୍କ ଆଗରେ ଠିଆହେଲା ।

ଗଙ୍ଗସର୍ବଜ୍ଞଙ୍କ ଚନ୍ଦନର ତ୍ରିନଗାରଶୋଭିତ କପାଳକୁ ଚୌଲ ଚାହିଁଲା । ଗଙ୍ଗସର୍ବଜ୍ଞ ସାଧାରଣ ମଣିଷ ବା ପ୍ରଭୁ ଶଙ୍କର ନିଜେ, ସେ ବୁଝି ପାରିଲା ନାହିଁ । ସେ ବହୁ ସମୟରେ ପ୍ରଭୁ ସୋମନାଥଙ୍କୁ ସ୍ୱପ୍ନରେ ଦେଖିଛି । ସେ ଠିକ୍ ଗଙ୍ଗଙ୍କ ପରି ଦେଖାଯାନ୍ତି । ପ୍ରଭୁଙ୍କର ଚମତ୍କାର ଦାଢ଼ି ଠିକ୍ ତାଙ୍କ ଦାଢ଼ିପରି । ପ୍ରକୃତରେ ଗଙ୍ଗ ହେଉଛନ୍ତି ପ୍ରଭୁଙ୍କର ଅବତାର । ଯେବେ ତାହା ହୋଇଥାଏ, ସେ ହେଉଛି ଦେବଙ୍କର ଦେବ ମହାଦେବଙ୍କ ଝିଅ । କିନ୍ତୁ ଗଙ୍ଗ ନିଜେ ମହାଦେବ ଓ ପାର୍ବତୀଙ୍କର ଆରାଧନା କରନ୍ତି । ତେଣୁ ଏହା ହୋଇ ନ ଥିବ ବୋଲି ସେ ଭାବିଲା ।

ଗଙ୍ଗସର୍ବଜ୍ଞ ଆରାଧନା ଶେଷ କଲାବେଳକୁ ଆସି ପହଞ୍ଚିଲେ ଶିବରାଶି । ସେ ଗଙ୍ଗଙ୍କ ସାମନାରେ ପ୍ରଣାମ କରିବା ସମୟରେ ଆଖି କଣରେ ଚୌଲାକୁ ଦେଖିଲେ । ତାଙ୍କ ମୁହଁରେ ଆନନ୍ଦର ଆଭାସ ।

ସେ କହିଲେ, "ଗୁରୁଦେବ ! ଚୌହାନବଂଶର ମୁଖ୍ୟ ସଜ୍ଜନ ଏବଂ ତାଙ୍କ ପୁଅ ସାମନ୍ତ ଆପଣଙ୍କ ଦର୍ଶନାର୍ଥେ ଆସିଛନ୍ତି ।"

ଗଙ୍ଗସର୍ବଜ୍ଞ କହିଲେ, "ଆଚ୍ଛା, ଗଙ୍ଗା ମଧ୍ୟ କୌଣସି ଗୁରୁତର ବିଷୟରେ କଥାବାର୍ତ୍ତା କରିବାକୁ ଆସିଛି । ତା କାମ ଆଗେ ସାରିଦେବା······ ।"

ଗଙ୍ଗସର୍ବଜ୍ଞ ଚୌଲାକୁ ଚାହିଁ ସସ୍ନେହରେ କହିଲେ, "ଚୌଲା ମଧ୍ୟ ଅଭିଯୋଗ କରିବାକୁ ଆସିଛି । ଚୌଲା ! କାଲି ସନ୍ଧ୍ୟାରେ ତ ତୁ ଚମତ୍କାର କରିଦେଲୁ ।"

ଗଙ୍ଗା ଓ ଚୌଲା ଉଭୟେ ତାଙ୍କ ଆଗକୁ ଆସି ଗୋଡ଼ତଳେ ପଡ଼ିଲେ । ଚୌଲା ଫୁସ୍‌ଫୁସ୍ କରି କହିଲା, "ଏ ତ ଆପଣଙ୍କର ଅତିଶୟ ଦୟା ।"

ଗଙ୍ଗସର୍ବଜ୍ଞ—ମୋ ଦୟାର ପ୍ରଶ୍ନ ନୁହେଁ । ଏହା ହେଉଛି ଭଗବତ୍ କୃପା । ଚୌଲା, ତୁ ଅଦ୍ଭୁତ ଦିଶୁଥିଲୁ । ତୁ ଯେ ଏତେ ଭଲ ନାଚୁ, ସେ କଥା ମୁଁ ଜାଣି ନ ଥିଲି । ଗଙ୍ଗା, ତୋର ସୂର୍ଯ୍ୟ ଅସ୍ତ ହେଲେଣି ।

ଗଙ୍ଗା—ମୋ ଝିଅ ମୋ ଜାଗା ନେବ ନା ? କଣ ଶିବରାଶିଜୀ ?

ଶିବରାଶି 'ହଁ' ବୋଲି କହିବାକୁ ଯାଉ ଯାଉ ଗଙ୍ଗସର୍ବଜ୍ଞ ତାଙ୍କୁ କହିବାକୁ ନ ଦେଇ ନିଜେ କହିଲେ—

"ଗଙ୍ଗା, ହଁ ତୁ କହ, କାହିଁକି ଆସିଛୁ ?"

ଗଙ୍ଗା—କଥା କଣ କି, ଏକରେ, ଚୌଲା ଆପଣଙ୍କୁ ନମସ୍କାର କରିବାକୁ ଆସିଛି ।

ଗଙ୍ଗସର୍ବଜ୍ଞ—ଆଉ··· ?

ଗଙ୍ଗା—ଅନ୍ୟ କଥାଟି ହେଉଛି, ଚୌହାନ୍ ମୋତେ ବର୍ତ୍ତମାନ ଗୋଟିଏ କଥା କହିଲା—ତାହା ହେଉଛି ଅତ୍ୟନ୍ତ ଭୟାବହ । ସେ ଓ ଚୌହାନ୍ ଗୃହଆଡ଼କୁ ଅନାଇବାରୁ ଗଙ୍ଗ ବୁଝିପାରି କହିଲେ—"ଶିବରାଶି, ଦେଖ ବାବୁ, ଯେପରି କେହି ନ ଆସନ୍ତି ।"

ଶିବରାଶି "ଗୁରୁଦେବଙ୍କ ଆଜ୍ଞା" ବୋଲି କହି ସମସ୍ତଙ୍କୁ ଭିତରେ ପ୍ରବେଶ ନିଷେଧ ଆଦେଶ ଦେଇ ଫେରିଆସିଲେ ।

ତା'ପରେ ଗଙ୍ଗା ସମସ୍ତ ଘଟଣା ସବିଶେଷ ଭାବେ ସର୍ବଜ୍ଞଙ୍କୁ କହିଲା । ସବୁ କଥା ଶୁଣି ସର୍ବଜ୍ଞଙ୍କ ମୁହଁ ଗମ୍ଭୀର ହୋଇ ଉଠିଲା । ଶେଷକୁ ଭୀମଦେବଙ୍କ ଦ୍ୱାରା କଙ୍କ ଯୋଗେଶ୍ୱରଙ୍କ ମୃତ୍ୟୁ କଥା ଶୁଣି ସେ ନିଜ ହାତରେ ଆଖି ମଳିଲେ ଓ ପ୍ରଭୁ ସୋମନାଥଙ୍କର ମନ୍ତ୍ର ଉଚ୍ଚାରଣ କଲେ । ଶିବରାଶି ଶୁଣି ଶୁଣି ଅତିଶୟ ଭୀତତ୍ରସ୍ତ ହୋଇପଡ଼ିଥାନ୍ତି । ଗଙ୍ଗା ପୂରା ଘଟଣାଟି ବର୍ଣ୍ଣନା କରି ସାରିବା ବେଳକୁ ସମସ୍ତେ ଅବାକ୍ ହୋଇ ଚାହିଁଥାନ୍ତି ।

ବହୁ ସମୟ ପରେ ସର୍ବଜ୍ଞ ପ୍ରକୃତିସ୍ଥ ହୋଇ ଦୃଢ଼ ସ୍ୱରରେ କହିଲେ, "ମଣିଷର ଭୟ ଓ ଆଶା, ମାୟା ମାତ୍ର ! ପ୍ରକୃତ ଘଟଣା ପ୍ରଭୁଙ୍କ ଗୋଚର । ଆମର ଏକମାତ୍ର କାର୍ଯ୍ୟ ହେଉଛି ତାଙ୍କର ସାହାଯ୍ୟ ପ୍ରାର୍ଥନା କରି ତାଙ୍କ ଇଚ୍ଛା ଅନୁସାରେ ଚଳିବା । ଗତ କୋଡ଼ିଏ ବର୍ଷ ଧରି ତାଙ୍କ ଇଚ୍ଛାନୁଯାୟୀ ମୋର ଜରିଆରେ ଏହି ପୀଠ ବିସ୍ତୃତ ଲାଭ କରିଛି । ଯେ ପର୍ଯ୍ୟନ୍ତ ପ୍ରଭୁ ଶିବ ଆମକୁ ରକ୍ଷା କରୁଛନ୍ତି, ଆମର କିଏ କ୍ଷତି କରିପାରିବ !"

ତାହା ପରେ ତାଙ୍କ ଆଖି ଉଜ୍ଜ୍ୱଳ ହୋଇ ଉଠିଲା । ସତେ ଯେପରି ନୂଆ ଶକ୍ତି ତାଙ୍କ ଦେହକୁ ଆସିଛି । ଦୃଢ଼ତାର ସହିତ ସର୍ବଜ୍ଞ କହିଲେ, "ଯାହାକୁ ପ୍ରଭୁ ରକ୍ଷା କରନ୍ତି, ତାହାର ଦୁନିଆରେ କିଏ କଣ କରିପାରେ ? ଗଜନୀର ହମୀର ପ୍ରଭୁଙ୍କ ଆସ୍ଥାନ ଉପରେ ଆଞ୍ଚ ଆଣିବାକୁ ଚେଷ୍ଟା କଲେ ସେ ନିଜେ ଧ୍ୱଂସ ହୋଇଯିବ ।"

ତାହା ପରେ ଗଙ୍ଗ କିଛି କ୍ଷଣ ଆକାଶକୁ ଚାହିଁ ନୀରବରେ ଧ୍ୟାନମଗ୍ନ ହେଲେ । ଅନ୍ୟମାନଙ୍କର ଗଙ୍ଗସର୍ବଜ୍ଞ ଓ ପ୍ରଭୁ ସୋମନାଥଙ୍କ ଉପରେ ପୂର୍ବପରି ବିଶ୍ୱାସ ଫେରିଆସିଲା ।

ଗଙ୍ଗସର୍ବଜ୍ଞ କହିଲେ—ରାଶି, ସଜ୍ଜନ ଚୌହାନ ବାହାରେ ଅପେକ୍ଷା କରିଛନ୍ତି । ତାଙ୍କୁ ବୋଧହୁଏ ପ୍ରଭୁ ସୋମନାଥ ପଠାଇଛନ୍ତି । ଭିତରକୁ ଡାକ ।

ସଜ୍ଜନ ଚୌହାନ ଦୀର୍ଘକାୟ, ସୁନ୍ଦର, ଦୀର୍ଘକେଶ, ଚାଳିଶ ବର୍ଷ ବୟସ୍କ ରାଜପୁତ । ତାଙ୍କ ପୁଅ କୋଡ଼ିଏ ବର୍ଷ ବୟସ୍କ ଜଣେ ଯୁବକ । ଚେହେରା ଠିକ୍ ବାପ ପରି । ଉଭୟେ ଏକା ଭଳି ଅସ୍ତ୍ର ଧାରଣ କରିଛନ୍ତି—ଗୋଟିଏ ଲେଖାଏଁ ଖଣ୍ଡା ଓ ଢାଲ । ବାପ ପୁଅ ଦୁହେଁ ଯାକ 'ନମଃ ଶିବାୟ' ବୋଲି କହି ସର୍ବଜ୍ଞଙ୍କୁ ପ୍ରଣାମ କଲେ ।

ଗଙ୍ଗସର୍ବଜ୍ଞ ନିଜର ରୀତି ଅନୁସାରେ 'ଶିବାୟ ନମଃ' କହି ପୂର୍ବଦିନ ସନ୍ଧ୍ୟାବେଳେ ସେମାନେ ଆସିଛନ୍ତି କି ବୋଲି ପଚାରିଲେ ।

ସଜ୍ଜନ—"ହଁ, ଗୁରୁଦେବ ! ଗତକାଲି ଆମେ ଆସିଛୁ । ଆମେ ଏଠାରେ ପହଞ୍ଚିବାବେଳକୁ ଟିକିଏ ଡେରି ହୋଇଗଲା । ଯେତେବେଳକୁ ସନ୍ଧ୍ୟାବେଳର ପୂଜା ଆରମ୍ଭ ହୋଇଯାଇଥିଲା ଏବଂ ଆମେ ନୃତ୍ୟ ଦେଖିଲୁ ।" ଏହା କହି ସେ ଚୌଲା ଆଡ଼କୁ ଚାହିଁଲେ ।

ଗଙ୍ଗସର୍ବଜ୍ଞ—ହଁ, ଚୌଲା ସୁନ୍ଦର ନାଚୁଥିଲା, ନାଁ !

ସେ ଏହା କହିବାକ୍ଷଣି ଚୌଲାକୁ ଏକନିଷ୍ଠ ହୋଇ ଚାହିଁଥିବା ସଜ୍ଜନଙ୍କ ପୁଅ ସାମନ୍ତଙ୍କ ଉପରେ ତାଙ୍କ ଆଖି ପଡ଼ିଗଲା । ଚୌଲାର ସୌନ୍ଦର୍ଯ୍ୟରେ ସେ ସମ୍ପୂର୍ଣ୍ଣ ଆତ୍ମହରା ହୋଇପଡ଼ିଥିଲା ।

ସର୍ବଜ୍ଞ ସଜ୍ଜନଙ୍କ ସହିତ କଥାବାର୍ତ୍ତାରେ ଲାଗିଲେ ଏବଂ ଘୋଘାରଣାଙ୍କ ସମ୍ପର୍କରେ ପଚାରିଲେ ।

ସଜ୍ଜନ କହିଲେ—"ସେ ଭଲ ଅଛନ୍ତି ଓ ଆପଣଙ୍କୁ ତାଙ୍କର ପ୍ରଣାମ ଜଣାଇ ଉପହାର ପଠାଇଛନ୍ତି ।" ସେ ତାଙ୍କ କମରବନ୍ଧରୁ ସୁନ୍ଦର ହୀରା ଖଣ୍ଡିଏ କାଢ଼ି ଗଙ୍ଗସର୍ବଜ୍ଞଙ୍କ ସମ୍ମୁଖରେ ଧରିଲେ ।

ଗଙ୍ଗସର୍ବଜ୍ଞ—ଚୌହାନ ପରିବାରର ମୁଖ୍ୟ ଯେ ପ୍ରଭୁ ସୋମନାଥଙ୍କର ଏକନିଷ୍ଠ ଭକ୍ତ, ଏହା ଜାଣି ମୁଁ ଖୁସି ହେଲି ।

ସଜ୍ଜନ—ପ୍ରଭୁ ଶଙ୍କରଙ୍କର ଦୟା ।

ଗଙ୍ଗସର୍ବଜ୍ଞ—ସଜ୍ଜନ, ଘୋଘାରଣାଙ୍କ ଉପରେ ପ୍ରଭୁ ପ୍ରସନ୍ନ । ତାଙ୍କ ସେବା ପ୍ରଭୁଙ୍କ ମନକୁ ପାଇଛି । ତୁମେ ଘରୁ କେବେ ଆସିଲ ?

ସଜ୍ଜନ—ଆମେ ଦୁଇ ମାସ ତଳେ ଘୋଘାଗଡ଼ ଛାଡ଼ିଲୁ । ସପାଲଦକ୍ଷ, ଶ୍ରୀମାଲ ଓ ଚନ୍ଦ୍ରୋର ଦେଇ ଏଠାକୁ ଆସିଛୁ ।

ଗଙ୍ଗସର୍ବଜ୍ଞ—ଫେରିବାକୁ ତୁମକୁ କେତେଦିନ ଲାଗିବ ?

ସଜ୍ଜନ—ପ୍ରାୟ ପଚିଶ ଦିନ ।

ଗଙ୍ଗସର୍ବଜ୍ଞ – ନା, ତା ହେବନାହିଁ । ଜଲ୍‌ଦି, ପକ୍ଷୀ ପରି ସିଧା ଉଡ଼ିଗଲେ ଅତି କମ୍‌ରେ ଯେତିକି ସମୟ ଲାଗିବ, ତାହା ମୁଁ ଜାଣିବାକୁ ଚାହେଁ । ତୁମେ ଯେତେ ଶୀଘ୍ର ପାରି ସେଠାରେ ପହଞ୍ଚିବାକୁ ହେବ । ମୁଁ ଯେଉଁ କାର୍ଯ୍ୟର ଦାୟିତ୍ୱ ଦେବାକୁ ଯାଉଛି ତହିଁରେ ବିପଦ ଥିଲେ ସୁଦ୍ଧା ତାହା ହେଉଛି ଭଗବତ୍ କାର୍ଯ୍ୟ ।

# ୧୦

## ମରୁପଥ

କିଛି କ୍ଷଣ ଭାବି ସଜ୍ଜନ କହିଲେ, "ଯେତେ ଚଞ୍ଚଳ ଗଲେ ମଧ୍ୟ ଘୋଘାଗଡ଼ରେ କୋଡ଼ିଏ ଦିନରୁ କମ୍ ସମୟରେ ପହଞ୍ଚି ପାରିବି ନାହିଁ ।"

ଗଙ୍ଗସର୍ବଜ୍ଞ ଉତ୍ତର ଦେଲେ, "ସଜ୍ଜନ ! ପନ୍ଦର ଦିନରେ ନୁହେଁ, ଦଶ ଦିନ, ନା ଦଶ ଦିନ ବି ନୁହେଁ; ଆଠ ଦିନରେ ପହଞ୍ଚ । ମୁଁ ତୁମକୁ ଓ ଘୋଘାରାଣାଙ୍କ ନାତିକୁ ଜାଣେ । ଆକାଶରେ ପକ୍ଷୀ ଯେପରି ସିଧା ଉଡ଼ନ୍ତି, ତୁମେ ଇଚ୍ଛା କଲେ ଓଟରେ ସେହିପରି ବେଗରେ ଯାଇପାରିବ ।"

ସଜ୍ଜନ – କୁଳବୃଦ୍ଧ ! ଆପଣଙ୍କର କଣ ଆଜ୍ଞା ?

ଗଙ୍ଗ—ମୋ ପରି ତୁଚ୍ଛ ଲୋକ କଣ ଆଜ୍ଞା କରିପାରେ ? ମୁଁ କେବଳ ପ୍ରଭୁ ସୋମନାଥଙ୍କ ଆଦେଶବାହକ ମାତ୍ର ।

ସଜ୍ଜନ—ତାଙ୍କ ଆଦେଶ କଣ ମୋତେ କହନ୍ତୁ । ଘୋଘାରାଣାଙ୍କ ପରିବାରର ଲୋକଙ୍କ ପକ୍ଷରେ ପ୍ରଭୁ ସୋମନାଥଙ୍କର ଆଦେଶ ଶିରୋଧାର୍ଯ୍ୟ ।

ଗଙ୍ଗ – ପ୍ରଭୁ ସୋମନାଥଙ୍କର ତୁମ ପରିବାର ଉପରେ ଯଥେଷ୍ଟ ଦୟା । ସଜ୍ଜନ ! ମନ୍ଦିରର ଘୋଡ଼ାଶାଳରେ ଥିବା ସବୁଠାରୁ ଉତ୍କୃଷ୍ଟ ଏବଂ ବେଗଗାମୀ ଓଟ ବାଛି ନିଅ । ତାହା ଉପରେ ତୁମେ ଦିନ ରାତି ଯାଇ ଯେତେ ଶୀଘ୍ର ପାରି ଘୋଘାରାଣାଙ୍କୁ ପ୍ରଭୁଙ୍କର ବାର୍ତ୍ତା ଜଣାଅ ।

ସଜ୍ଜନ—ଗୁରୁଦେବ ! ପ୍ରଭୁଙ୍କର ବାର୍ତ୍ତା କଣ ?

ଗଙ୍ଗ—ଗଜନୀର ମୁସଲମାନ ହମୀର ସୋମନାଥ ଆକ୍ରମଣ କରି ପ୍ରଭୁଙ୍କର ମନ୍ଦିର ଧ୍ୱଂସ କରିବା ନିମିତ୍ତ ବଦ୍ଧପରିକର ହୋଇ ଆସୁଛି । ଘୋଘାରାଣାଙ୍କୁ

ଜଣାଅ—ଙ୍କର ଅଶୀର୍ବାଦର ନିଷ୍ଠା ଓ ଭକ୍ତିବଳରେ ପ୍ରଭୁ ତାଙ୍କୁ ଦେବଦୁର୍ଲଭ ଅଧିକାର ଦେଇଛନ୍ତି । ସୋମନାଥ ମନ୍ଦିରର ରକ୍ଷାକର୍ତ୍ତାରୂପେ ତାଙ୍କୁ ନିଯୁକ୍ତ କରାଯାଇଛି ।"

ସଜ୍ଜନ—ଆମର ଭାଗ୍ୟ !

ଗଙ୍ଗସର୍ବଜ୍ଞ ସତେ ଯେପରି ପ୍ରଭୁ ସୋମନାଥଙ୍କର ଆଦେଶ ଜଣାଉଥିବାରୁ ନିଜେ ଉତ୍ସାହିତ ହୋଇଛନ୍ତି । ତାଙ୍କ ଆଖି ଦୁଇଟି ଦେଦୀପ୍ୟମାନ ଦେଖାଯାଉଥାଏ ।

ଗଙ୍ଗ—ଯେ ପର୍ଯ୍ୟନ୍ତ ଘୋଘାରାଣାଙ୍କ ପରିବାରରେ ଜଣେ ସୁଦ୍ଧା ବୀର ବଞ୍ଚିଛି, ସେ ପର୍ଯ୍ୟନ୍ତ ଯେପରି ଆକ୍ରମଣକାରୀ ମରୁଭୂମିରେ ପ୍ରବେଶ କରି ନ ପାରେ, ସେଥିଅନୁସାରେ କାର୍ଯ୍ୟ କରିବାକୁ ତାଙ୍କୁ କହ । ତାଙ୍କର ଜୀବନରେ ସେ ପ୍ରତ୍ୟେକ ଶତ୍ରୁକୁ ନିପାତ କରନ୍ତୁ ଏହା ପ୍ରଭୁଙ୍କର ଇଚ୍ଛା । ପ୍ରଭୁ ତାଙ୍କୁ ବର ଦେଉଛନ୍ତି, ଯେ ପର୍ଯ୍ୟନ୍ତ ସୂର୍ଯ୍ୟ ଚନ୍ଦ୍ର ଅଛନ୍ତି, ସେ ପର୍ଯ୍ୟନ୍ତ ଘୋଘା ଚୌହାନ ପରିବାରର ଯଶକୀର୍ତ୍ତି ଅକ୍ଷୁଣ୍ଣ ରହିଥିବ ।

ଗଙ୍ଗସର୍ବଜ୍ଞଙ୍କ ନିକଟରେ ସଜ୍ଜନ ମସ୍ତକ ଅବନତ କରି ଠିଆହୋଇ ସବୁ ଶୁଣୁଥିଲେ । ସେ ଭାବପ୍ରବଣତା ସହିତ ସୁଦୃଢ଼ ଭାବରେ କହିଲେ, "ଗୁରୁଦେବ ! ଆପଣଙ୍କର ଭୟ କରିବାର କୌଣସି କାରଣ ନାହିଁ । ଯେ ପର୍ଯ୍ୟନ୍ତ ସଂସାରରେ ଘୋଘାବାପାଙ୍କ ପୁଅ, ନାତି ଓ ଅଣନାତିମାନେ ଥିବେ, ସେ ପର୍ଯ୍ୟନ୍ତ କୌଣସି ଦୁର୍ବୃତ୍ତ ମରୁଭୂମି ଡେଇଁ ପାରିବ ନାହିଁ ।"

ଗଙ୍ଗ—ସାବାସ୍ ଚୌହାନ ! ଯାଅ, ପ୍ରଭୁଙ୍କର ଆଦେଶ ଘୋଘାରାଣାଙ୍କୁ ଜଣାଇଦିଅ ।

ସଜ୍ଜନ—ମୁଁ ପନ୍ଦର ଦିନ ଭିତରେ ପହଞ୍ଚିବି । ଆପଣ ସାମନ୍ତଙ୍କୁ ଟିକିଏ ଦେଖାଶୁଣା କରିବେ ।

ସାମନ୍ତ ବାପାଙ୍କ ଆଡ଼କୁ ଚାହିଁଲେ । ତାଙ୍କର ବୀରତ୍ୱପୂର୍ଣ୍ଣ ଚକ୍ଷୁରେ କ୍ରୋଧ ଓ ଖେଦର ଚିହ୍ନ । ପ୍ରତିବାଦ କରି ସେ କହିଲେ, "ବାପା ! ପ୍ରଭୁ ସୋମନାଥଙ୍କର ଆଦେଶ ଘୋଘା ଚୌହାନବଂଶର ପ୍ରତ୍ୟେକ ପୁଅ ପ୍ରତି ପ୍ରଯୁଜ୍ୟ । ମୁଁ ଝିଅ ନୁହେ । ଆପଣଙ୍କ ସହିତ ଯିବି ।"

ସର୍ବଜ୍ଞ ସାମନ୍ତଙ୍କ ପିଠିରେ ହାତ ମାରି କହିଲେ, "ସାବାସ୍ ! ଚୌହାନ ବଂଶର ଲକ୍ଷଣ ଦେଖ ! ମୋର ଯଦି ତୁମ ପାଖରେ ଏଠାରେ କିଛି କାମ ଥାଏ ?"

ସାମନ୍ତଙ୍କ ମୁହଁରେ ନିରାଶାର ଭାବ ଦେଖାଦେଲା । ସେ କହିଲେ "ଗୁରୁଦେବ ! ଆପଣଙ୍କୁ ସାହାଯ୍ୟ କରିବାକୁ କଣ କୌଣସି ରାଜପୁତ୍ର ଏଠାରେ ନାହାନ୍ତି ? ଘୋଘାଗଡ଼ର ଚୌହାନବଂଶର ପ୍ରତ୍ୟେକଙ୍କର କର୍ତ୍ତବ୍ୟ ହେଉଛି ଘୋଘାଗଡ଼ ରକ୍ଷାକରିବା । ଆବଶ୍ୟକ ହେଲେ ସେଥିଲାଗି ମରିବା । ତେଣୁ ମୁଁ ଯିବି ।"

ଗଙ୍ଗସର୍ବଜ୍ଞ ଉତ୍ସାହପୂର୍ଣ୍ଣ ହସ ହସି କହିଲେ, "ସଜ୍ଜନ, ତୁମ ପୁଅ ଅତିଶୟ ସାହସୀ । ତୁମେ ତାଙ୍କୁ ସାଙ୍ଗରେ ନିଅ । ଯେ ପର୍ଯ୍ୟନ୍ତ ତାହା ପରି ଚୌହାନବଂଶୀୟ ଅଛନ୍ତି, ସେ ପର୍ଯ୍ୟନ୍ତ ଧର୍ମର ଜୟ ନିଶ୍ଚିତ ।"

ଭକ୍ତିରେ ଗଦ୍‌ଗଦ୍ ହୋଇ ଧନ୍ୟବାଦ ଅର୍ପଣ କରି ସାମନ୍ତ ସର୍ବଜ୍ଞଙ୍କୁ ପ୍ରଣାମ କଲେ । ଗଙ୍ଗ ତାଙ୍କୁ ଛାତିରେ ଲଗାଇ କହିଲେ, "ଯେ ପର୍ଯ୍ୟନ୍ତ ତୁମପରି ବୀର ଥିବେ, ସେ ପର୍ଯ୍ୟନ୍ତ ଗୋ, ବ୍ରାହ୍ମଣ ଓ ଦେବତାଙ୍କର କେହି କିଛି କ୍ଷତି କରିପାରିବେ ନାହିଁ । ତୁମର ଜୟ ହେଉ ।"

ସଜ୍ଜନ—ଗୁରୁଦେବ ! ଶତ୍ରୁ ଯେଉଁଠି ମିଳିବ, ଆମେ ତାକୁ ଧ୍ୱଂସ କରିବୁ ଏବଂ ପ୍ରଭୁ ସୋମନାଥଙ୍କର ଜୟ ହେବ ।

ଗଙ୍ଗ—ବତ୍ସ ! ଯାଅ, ବିଜୟୀ ହୁଅ । ଶିବରାଶି, ସେମାନଙ୍କ ଯାତ୍ରା ପାଇଁ ସବୁ ବନ୍ଦୋବସ୍ତ କର । ଆମର ସବୁଠାରୁ ଭଲ ଓଟ ତାଙ୍କୁ ଦିଅ ।

ସଜ୍ଜନ—ଗୁରୁଦେବ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ରାସ୍ତା ମରୁଭୂମି ଦେଇ ଯାଇଥିବାରୁ ତାହା ଅନ୍ୟମାନଙ୍କ ପାଇଁ କଷ୍ଟକର ହେଲେ ସୁଦ୍ଧା ଆମ ପାଇଁ ସାଧାରଣ ରାସ୍ତା ପରି ।

ଗଙ୍ଗ—ମୁଁ କଣ ତାହା ଜାଣେନା ?

ସଜ୍ଜନ ଚୌହାନ ଏବଂ ସାମନ୍ତ ଗଙ୍ଗସର୍ବଜ୍ଞଙ୍କଠାରୁ ବିଦାୟ ନେଲେ । ସେମାନେ ଫେରି ଯାଉଥିବା ସମୟରେ ସାମନ୍ତ ଆଉ ଥରେ ଚୌଲାକୁ ଅନାଇ ଦେଖିଲେ—ସତେ ଯେପରି ତାର ସେଇ ସୁନ୍ଦର ଆଖିଯୋଡ଼ିକ ତାଙ୍କୁ ଏକନିଷ୍ଠ ଭାବେ ଚାହିଁ ରହି ନିଜର ଶ୍ରଦ୍ଧାଞ୍ଜଳି ଓ ସଦିଚ୍ଛା ଜଣାଉଛି ।

ଏହା ଗଙ୍ଗସର୍ବଜ୍ଞଙ୍କ ଦୃଷ୍ଟିକୁ ଅଗୋଚର ରହିଲା ନାହିଁ । ସେ କହିଲେ, "ସଜ୍ଜନ ! ଉଭୟେ ପ୍ରଭୁ ସୋମନାଥଙ୍କୁ ଦର୍ଶନ କରି ଯାଅ । ଚୌଲା ନିଜେ ତୁମମାନଙ୍କୁ ପ୍ରସାଦ ଦେବ ।"

ଏହା ଶୁଣି ସାମନ୍ତଙ୍କ ଛାତି ଧଡ଼ ଧଡ଼ ହେଲା । ପୂର୍ବଦିବସ ସନ୍ଧ୍ୟାରେ ପ୍ରଭୁ ସୋମନାଥଙ୍କ ନିକଟରେ ନାଚୁଥିବା ସୁକୁମାରୀ ଦେବଦାସୀ ଚୌଲା ସେମାନଙ୍କୁ ପ୍ରସାଦ ଦେବ !

କିଛି କ୍ଷଣ ପରେ ପିତା ଓ ପୁତ୍ର ମନ୍ଦିରକୁ ଗଲେ । ଚୌଲା ସେମାନଙ୍କୁ ଅପେକ୍ଷା କରି ଠିଆ ହୋଇଥାଏ । ତାହା ହାତରୁ ସେମାନେ ସଭକ୍ତିରେ ପ୍ରସାଦ ଗ୍ରହଣ କଲେ । ଚୌଲା ସେମାନଙ୍କ ଆଖି ଓ କପାଳରେ ଚରଣାମୃତ ଓ ପ୍ରସାଦ ପୁଷ୍ପ ସ୍ପର୍ଶ କରାଇଲା ।

ସାମନ୍ତଙ୍କ ପକ୍ଷରେ ଏହା ଗଭୀର ଆବେଗରେ ସମୟ ଥିଲା । ତାଙ୍କର ହୃଦୟ ସ୍ପନ୍ଦିତ ହେଉଥାଏ । ଚୌଲା ଉପରୁ ସେ ଆଖି ଫେରାଇ ପାରୁ ନ ଥାନ୍ତି ।

ଚୌଲା ତାର ସୁମଧୁର ସ୍ୱରରେ ତାଙ୍କୁ କହୁଥିବା ଶୁଣାଗଲା, "ପ୍ରଭୁ ସର୍ବଜ୍ଞ ଆପଣଙ୍କ ପାଇଁ ଉପହାର ଦେଇଥିଲେ, ମୁଁ ତ ଭୁଲିଯାଇଛି !" ସାମନ୍ତଙ୍କ ମୁଖରେ ଆନନ୍ଦର ଚିହ୍ନ ଦେଖାଦେଲା । ଗୋଟିଏ ସ୍ୱର୍ଣ୍ଣପାତ୍ରରେ କିଛି ବିଭୂତି ଚୌଲା ଆଣିଦେଲା । ପ୍ରଭୁଙ୍କର ଏଭଳି କୃପା ଦେଖି ସଜ୍ଜନ ଅତ୍ୟନ୍ତ ଖୁସିହେଲେ ଏବଂ ସେ ବିଭୂତିର ଟିକା ନିଜ ମସ୍ତକରେ ଲଗାଇଲେ । ସାମନ୍ତଙ୍କ ମନରେ କିନ୍ତୁ ଅନ୍ୟ ଭାବନା । ଯଦି ଶଙ୍କରଙ୍କର ସେବା-ଯଜ୍ଞରେ ନିଜକୁ ଆହୁତି ଦେବାକୁ ହେବ, ତେବେ ଚୌଲା ନିଜ ହାତରେ ତା ମସ୍ତକରେ ବିଭୂତି କାହିଁକି ନ ଦେବ ? ଆବେଗାଭିଭୂତ ହୋଇ ସାମନ୍ତ ନିଜ ମସ୍ତକ ଚୌଲାଆଡ଼କୁ ବଢ଼ାଇଦେଲେ । ଚୌଲା ସାମନ୍ତଙ୍କ ଆଖିରେ ଶୌର୍ଯ୍ୟ ଓ ଭକ୍ତିର ଝଲକ ଦେଖୁଥାଏ । ତା' ଲାଗି ଏ ଯୁବକର ଉତ୍କଣ୍ଠା ମଧ୍ୟ ଅନୁଭବ କରୁଥାଏ । ତେଣୁ ବିନା ଦ୍ୱିଧାରେ ସେ ସାମନ୍ତଙ୍କ କପାଳରେ ବିଭୂତି ଲଗାଇଦେଲା ।

ଚୌଲା କହିଲା, "ବିଜୟ ହାସଲ କରି ଶୀଘ୍ର ଫେରିଆସନ୍ତୁ ।"

"ନିଶ୍ଚୟ"—ସାମନ୍ତ ଗର୍ବ ଓ ବିଶ୍ୱାସର ସହିତ ଜବାବ ଦେଲେ ।

ଚୌଲାର ମୁଖର ସ୍ମିତ ସେପରି ହୃଦୟରେ ଚିରଦିନ ରହେ, ସେହି ଉଦ୍ଦେଶ୍ୟରେ ସାମନ୍ତ ଚୌଲାର ସୁନ୍ଦର ଆଖି ସମେତ ପୂରା ଶରୀରକୁ, ରାଜ୍ୟ ଜୟ କରିବା ପାଇଁ ଯାଉଥିବା ବୀର ପରି ପୂର୍ଣ୍ଣ ଉତ୍ସାହ ଓ ଆତ୍ମବିଶ୍ୱାସରେ ଭଲ ଭାବେ ଦେଖିନେଲେ ।

ସଜ୍ଜନ ଓ ସାମନ୍ତ ଆଠ ଜଣ ଯୋଦ୍ଧାଙ୍କୁ ସାଙ୍ଗରେ ନେଇ ମରୁଭୂମିରେ ସବୁଠାରୁ ଯେଉଁ ରାସ୍ତା ନିକଟତମ ସେହି ରାସ୍ତାରେ ଗଲେ । ମନ୍ଦିରର ସବୁଠାରୁ

ଭଲ ମାଈ ଓଟ ଏବଂ ପଥପ୍ରଦର୍ଶକ ଭାବରେ ସର୍ବଶ୍ରେଷ୍ଠ ଓଟ ସଇସମାନଙ୍କୁ ସାଙ୍ଗରେ ନେଲେ ।

ସୌରାଷ୍ଟ୍ରର ମାର୍ଗ ସମ୍ପର୍କରେ ସଜ୍ଜନଙ୍କର ଭଲ ଧାରଣା ଥିଲା । ତେଣୁ ମରୁଭୂମିରେ ପ୍ରବେଶ କଲେ ତାଙ୍କର ଆଉ କିଛି ଚିନ୍ତା ରହେ ନାହିଁ—ସତେ ଯେପରି ସେ ସେଠାକାର ରାଜା ! ମରୁଭୂମିର ପ୍ରତ୍ୟେକ ଅଂଶ ସମ୍ପର୍କରେ ସେ ଭଲରୂପେ ଜାଣିଥିବାରୁ କଚ୍ଛର ମରୁଭୂମି ଅତିକ୍ରମ କରି ଘୋଡାଗଡ଼ି ଯିବା ତାଙ୍କ ପକ୍ଷରେ ପିଲାଖେଳ ପରି ମନେହେଉଥାଏ ।

ସେ ଥିଲେ ଜଣେ ଦକ୍ଷ ଉଷ୍ଟ୍ରାରୋହୀ । ଅହୋରାତ୍ର ସେ ଓଟ ଉପରେ ବସି ଯାଇପାରନ୍ତି; ଖୁବ୍ ଶୀଘ୍ର ମଧ୍ୟ ଓଟକୁ ଦଉଡ଼ାଇ ପାରନ୍ତି । ସେ ଓଟମାନଙ୍କୁ ଭଲପାଆନ୍ତି ଓ ଓଟମାନେ ମଧ୍ୟ ତାଙ୍କୁ ଭଲପାଆନ୍ତି । ତାଙ୍କ ଦୃଷ୍ଟିରେ ସେମାନେ ପଶୁ ନୁହନ୍ତି । ସେମାନଙ୍କ ସାଙ୍ଗେ କଥାବାର୍ତ୍ତା କରି ଭଳି ସେ ସେମାନଙ୍କ ସୁଖଦୁଃଖ କଥା ମଧ୍ୟ ଭଲ ବୁଝିପାରନ୍ତି ।

ସେମାନେ ଦ୍ରୁତଭାବେ ଅଗ୍ରସର ହେଲେ । ସାମନ୍ତ ଓ ଅନ୍ୟମାନଙ୍କ ସହ ସଜ୍ଜନ ଚୌହାନ ପଥପ୍ରଦର୍ଶକମାନଙ୍କ ଆଗକୁ ମଧ୍ୟ ଚାଲିଗଲେ । ସୌରାଷ୍ଟ୍ରର ଜଙ୍ଗଲ ଅତିକ୍ରମ କରି ପଥପ୍ରଦର୍ଶକମାନେ ମରୁଭୂମିରେ ପ୍ରବେଶ କଲାବେଳକୁ ଖରାବେଳ ହୋଇଗଲାଣି । ସମୁଦ୍ର କୂଳରେ ଠିଆହେଲେ ସମୁଦ୍ରର ଲହରୀ ଯେପରି ଦିଗ୍‌ବଳୟ ସାଙ୍ଗରେ ମିଶିଯାଉଥିବାଭଳି ଦେଖାଯାଏ, ସେହିପରି ମରୁଭୂମିରେ ଦିଗନ୍ତବିସ୍ତାରୀ ବାଲୁକାସ୍ତୂପମାନ ଦିଗ୍‌ବଳୟ ସାଙ୍ଗରେ ମିଶିଯାଉଥିବା ଦୃଶ୍ୟ ସଜ୍ଜନ ଦେଖିବାକୁ ପାଇଲେ ।

ସୂର୍ଯ୍ୟଙ୍କର ତେଜ ପ୍ରଖର ହୋଇଥାଏ । ଆଖି ଖୋଲି ଠିଆ ହେବା ଅସମ୍ଭବ । ଏ ପାଖରୁ ମରୁଭୂମି ବାଟେ ଯିବା ରାସ୍ତା କମ୍ ସତ, କିନ୍ତୁ ଅତ୍ୟନ୍ତ ବିପଦସଙ୍କୁଳ । ଏହି ବାଟେ ଯିବା ସଜ୍ଜନଙ୍କ ପକ୍ଷରେ ସହଜ ହେଲେହେଁ, ତାଙ୍କ ପୁଅ ପକ୍ଷରେ କଷ୍ଟକର ହୋଇପାରେ । ଏଭଳି ବିପଦସଙ୍କୁଳ ରାସ୍ତାରେ ସେ ପିଲାଟିକୁ କାହିଁକି ନେବେ ?

ସଜ୍ଜନ କହିଲେ, "ପୁଅ, ଆମେ ଏଠାରେ ଦୁଇ ଦଳରେ ବିଭକ୍ତ ହେବା । ତୁ ଆର ବାଟେ ଝାଲୋର ଯା । ମୁଁ ଏଇ ସିଧା ବାଟ ଦେଇ ଯିବି ।"

ସାମନ୍ତ ବାପାଙ୍କ ପ୍ରସ୍ତାବର ଉଦ୍ଦେଶ୍ୟ ବୁଝିପାରି ପଚାରିଲେ, "କଣ କହିଲେ ? ମୁଁ ଆପଣଙ୍କ ସହ ଗଲେ କଣ ହେବ ?"

ସଜ୍ଜନ କହିଲେ, "ତୁ କାହିଁକି କଷ୍ଟ ପାଇବୁ ? ଆମେ ଦୁଇ ଦଳ ହୋଇ ଅଲଗା ଅଲଗା ବାଟରେ ଗଲେ ଭଲ । ମୁଁ ମଧ୍ୟ ଏ ବାଟେ କେବେ ହେଲେ ଯାଇ ନାହିଁ । ଆମର ଭେଟ ଆରେ ଦେଖାହେବ ।"

ସାମନ୍ତ କହିଲେ, "ବାପା, ସତ କଥା କହନ୍ତୁ । ମୁଁ ଏ ବାଟେ ଗଲେ କଷ୍ଟ ସହ୍ୟ କରିପାରିବି ନାହିଁ ବୋଲି କଣ ଆପଣ ଭାବୁଛନ୍ତି ?"

ସେ ପୁଅକୁ କୁଣ୍ଢାଇ ପକାଇ କହିଲେ, "ବାଜେ କଥା, ଘୋଘାବାପା ପରିବାରର କୌଣସି ବ୍ୟକ୍ତିର ସାହସ ସମ୍ପର୍କରେ ମୁଁ କେବେ କୌଣସି ପ୍ରଶ୍ନ କରିଛି ?"

ସଜ୍ଜନଙ୍କର ଏହି କମ୍ ବାଟରେ ଯିବାର ଉଦ୍ଦେଶ୍ୟ ହେଉଛି ଦୁଇ ଦିନ ଆଗରୁ ଘୋଘାଗଡ଼ରେ ପହଞ୍ଚିବା; କିନ୍ତୁ ବାଟ ଥିଲା ବିପଦସଙ୍କୁଳ । ସେ ବାଟରେ ସେ କୌଣସି ବିପଦର ସମ୍ମୁଖୀନ ହୋଇପାରନ୍ତି । ହୁଏତ ପୁଅ ସହିତ ଆଉ ଦେଖା ହୋଇ ନ ପାରେ । ତାଙ୍କ ହୃଦୟ ସନ୍ତାନ ବାତ୍ସଲ୍ୟରେ ପୂର୍ଣ୍ଣ ହେଲା । ଆଖିରୁ ଲୁହ ଧାର ଧାର ହୋଇ ବହିଲା ।

ସାମନ୍ତ କହିଲେ, "ବାପା ! ଆପଣଙ୍କ କଥା ମୁଁ ବୁଝିପାରୁଛି । ଘୋଘା-ଗଡ଼ରେ ଆପଣ ମୋ ଆଗରୁ ପହଞ୍ଚିବାକୁ ଚାହାନ୍ତି । କିନ୍ତୁ ଆପଣ ଦେଖିବେ, ମୁଁ ଆଗେ ପହଞ୍ଚିବ ।"

ସଜ୍ଜନ ଉତ୍ତର ଦେଲେ, "ତୁ ଯେବେ ମୋ ଠାରୁ ନ ବଳିବୁ ଆଉ କିଏ ବଳିଯିବ ?"

ବାପାଙ୍କ ଆଖିରୁ ଲୁହ ବୋହୁଥିବା ଦେଖି ସାମନ୍ତ କହିଲେ, "ବାପା— !"

ସଜ୍ଜନ ଉତ୍ତର ଦେଲେ, "ନା, କିଛି ନୁହେ । ଏ ବାଲିର ତାପରେ ଆଖି ଝଲସିଯାଉଛି ।"

ସଜ୍ଜନ ପଥପ୍ରଦର୍ଶକକୁ ସାଙ୍ଗରେ ନେଇ ମରୁଭୂମିରେ ପ୍ରବେଶ କଲେ । ବାପ ସମୁଦ୍ରଠାରୁ ଅଧିକ ଭୟାବହ ମରୁଭୂମିରେ ପ୍ରବେଶ କରୁଥିବା ଦୃଶ୍ୟ ସାମନ୍ତ ଗର୍ବରସହିତ ଲକ୍ଷ୍ୟ କରୁଥାନ୍ତି । କି ଚମତ୍କାର ଭାବରେ ସେ ଓଟ ଉପରେ ଯାଉଛନ୍ତି ! ତାଙ୍କ ମସ୍ତକରେ ପଗଡ଼ି କିପରି ସୁନ୍ଦର ଦେଖାଯାଉଛି ! ଏଭଳି ଜଣେ ସର୍ବଗୁଣସମ୍ପନ୍ନ ବ୍ୟକ୍ତିଙ୍କ ପୁଅ ହୋଇଥିବାରୁ ସେ ନିଜକୁ ଭାଗ୍ୟବାନ୍ ମନେକଲେ । ପନ୍ଦର ଦିନ ପରେ—ସମ୍ଭବତଃ ବାର ଦିନ ପରେ—ସେ ତାଙ୍କ ଜେଜେ, ଦାଦା ଏବଂ ଭାଇମାନଙ୍କୁ ଓ ଏପରିକି ବାପାଙ୍କ ସାଙ୍ଗରେ ଦେଖାକରିବେ ।

ସଜ୍ଜନ ସିବାପରେ ବାକି ଗୃହଟି ମାଈ ଓଟକୁ ସାଙ୍ଗରେ ନେଇ ଏବଂ ବାପା ଯାଉଥିବା ବାଟକୁ ଠିକଏ ଗୃହିଁ ସାମନ୍ତ ତାଙ୍କ ଘସ୍ତାରେ ଗଲେ ।

ସଜ୍ଜନ ଚୌହାନ ଯେଉଁ ଓଟ ଉପରେ ଚଢ଼ି ଗଲେ ତାର ନାଁ ପଦମଡ଼ୀ । ସମଗ୍ର ସୌରାଷ୍ଟ୍ରରେ ତା ସମକକ୍ଷ ଓଟ ନ ଥିଲା । ସେ ପବନ ବେଗରେ ଚ୍ଲେ ଏବଂ ତା ଉପରେ ବସିଥିବା ଲୋକ ଯୁଆଡ଼େ ସିବାକୁ ଗୃହେଁ, ତା ସେ ଜାଣିପାରେ ବୋଲି ପ୍ରବାଦ ଅଛି । କିଛି ସମୟ ପରେ ସଜ୍ଜନଙ୍କର ତା ସହିତ ବନ୍ଧୁତା ହୋଇଗଲା । ସେ ତାକୁ ବାରଂବାର ପଦମଡ଼ୀ ବୋଲି ବୋଲି ସମ୍ବୋଧନ କରନ୍ତି ଓ ସେ ମଧ୍ୟ ସେହି ଅନୁସାରେ ଜବାବ ଦିଏ ।

ସଜ୍ଜନ କହିଲେ, "ପଦମଡ଼ୀ ! ପ୍ରଭୁ ସୋମନାଥ ଓ ଧୋଧାବାପାଙ୍କର ମାନସମ୍ମାନ ବର୍ତ୍ତମାନ ତୋ ଉପରେ ନିର୍ଭର କରୁଛି ।" ପଦମଡ଼ୀ ଏପରି ଭାବଭଙ୍ଗୀ ଦେଖାଇଲା ଯାହାଦ୍ୱାରା ସେ ତା ଦାୟିତ୍ୱ ଠିକ୍ ଭାବେ ବୁଝିଥିବାର ଜଣାପଡ଼ିଲା ଏବଂ ସେ ଅଧିକ ବେଗରେ ଗୃଲିବାକୁ ଲାଗିଲା । ସଜ୍ଜନ ପୁଣି କହିଲେ, "ପଦମଡ଼ୀ, ଶୀଘ୍ର ଶୀଘ୍ର ଗୃଲ । ଧୋଧାବାପାଙ୍କ ପରିବାରର ସମସ୍ତ ସ୍ତ୍ରୀ ପୁରୁଷ ମୋକ୍ଷଦ୍ୱାରରେ ତୋତେ ସ୍ୱାଗତ କରିବାକୁ ଗୃହିଁଥିବେ ।" ପଦମଡ଼ୀ ମୁଣ୍ଡ ହଲାଇଲା ଏବଂ ଅଧିକ ଦ୍ରୁତଗତିରେ ଗୃଲିଲା ।

ଅନ୍ଧାର ହେଲାବେଳକୁ ଗୋଟିଏ ଛୋଟ ମୁଣ୍ଡିଆ ଦେଖାଗଲା । ତାହା ଉପରେ କେତେକ ଛୋଟ ଛୋଟ ଗଛ ଓ ଗୋଟିଏ ବଡ଼ ତାଳଗଛ ଥିଲା । ଠିକ୍ ଏହା ପାଖରେ ଗୋଟିଏ ଭଙ୍ଗା ମନ୍ଦିରରେ ଉଡୁଥିଲା ଗୋଟିଏ ଧଳା ପତାକା ।

"ସାବାସ", ସଜ୍ଜନ ଏହି ମୁଣ୍ଡିଆ ଦେଖି ଆନନ୍ଦରେ କହିଲେ । "ପଦମଡ଼ୀ, ଖୁବ୍ ଭଲ କାମ କରିଛୁ ! ତୁ ଦୀର୍ଘାୟୁ ହୁଅ । ବର୍ତ୍ତମାନ ଏଠି କିଛି ସମୟ ବିଶ୍ରାମ ନେବା ।" ଓଟ ଦୁଇଟି ମୁଣ୍ଡିଆ ଉପରେ ପହଞ୍ଚିବା ପରେ ଦେଖାଗଲା ଦୁଇଟି କୁଡ଼ିଆଘର । ଉକ୍ତ କୁଡ଼ିଆଘର ଆଗରେ କେତେକ ରଖୁଆଳି ଖଟରେ ବସି ଗପ କରୁଥାନ୍ତି । ସେମାନଙ୍କ ଓଟ ଗଛର ପତ୍ର ଗୃେବାଉଛନ୍ତି ଏବଂ ନୂଆ ଆସୁଥିବା ଓଟମାନଙ୍କୁ ସ୍ୱାଗତ କରୁଛନ୍ତି ଚିତ୍କାର କରି ।

ସୂର୍ଯ୍ୟ ଅସ୍ତ ହୋଇ ରାତି ମାଡ଼ିଆସୁଛି । ଡେଙ୍ଗା ତାଳ ଗଛ ଉପରେ ଉଡୁଥିବା ପତାକା ମରୁଭୂମି ମଧ୍ୟରେ ପଥନିର୍ଦ୍ଦେଶନାର ସଙ୍କେତ ଦେଉଛି ।

ସଜ୍ଜନ ଓଟ ଉପରୁ ଓହ୍ଲାଇ ଖାଇବାକୁ କହୁ ଅଛୁ କ ନାହିଁ ରଖୁଆଳ-ମାନଙ୍କୁ ପଚାରିଲେ । ସେମାନେ ଜବାବ ଦେଲେ, "ହଁ ବାପୁ, ଆମ ପାଖରେ ବାଜରା ରୁଟି ଓ କୂଅର ପାଣି ଅଛି ।"

ଯେତେ ଶୀଘ୍ର ପାରନ୍ତି ଘୋଘାଗଡ଼ରେ ପହଞ୍ଚିବାକୁ ସଜ୍ଜନ ବ୍ୟଗ୍ର ହୋଇ ଉଠିଥାନ୍ତି । ସେ ଓଟଦୁଇଟିଙ୍କୁ ଖୁଆଇବା ପାଇଁ ସଇସକୁ ନିର୍ଦ୍ଦେଶ ଦେଲେ ।

ଏତେ ବାଟ ଆସିଥିଲେ ସୁଦ୍ଧା ଓ ତାର ସଇସ କ୍ଳାନ୍ତ ଦେଖାଯାଉଥିଲେ ସୁଦ୍ଧା ପଦମଜ୍ରୀ ବେଶ୍ ତାଜା ଦେଖାଯାଉଥିଲା । କିନ୍ତୁ ଅନ୍ୟ ଓଟଟି ଟିକିଏ କ୍ଳାନ୍ତ ହୋଇ ଯାଇଥିବା ପରି ମନେହେଉଥାଏ । ସଜ୍ଜନ ତା ଦେହରେ ହାତ ବୁଲାଇଲେ । ଜଣାପଡ଼ିଲା, ଯେପରି ତାର ତେଜ ମରିଯାଇଛି । ସେ ଓଟ ରଖୁଆଳମାନଙ୍କୁ ପଚାରିଲେ, "କୁଆଡ଼େ ଯିବ ଭାଇ ?"

ସେମାନେ ଉତ୍ତର ଦେଲେ, "ଆମେ କାଲି ହଲବଦ ଯିବୁ ।"

ସଜ୍ଜନ—ମୋ ଓଟ ନେଇ ତମ ଓଟରୁ ଗୋଟିଏ ଦେବ ?

ରଖୁଆଳ—ନାଁ ବାବା ! ତମେ ଯିବ କୁଆଡ଼େ ?

ସଜ୍ଜନ—ମୁଁ ଏଇ ମରୁଭୂମି ବାଟ ଦେଇ ସିଧା ଯିବି ।

ରଖୁଆଳ—ଏତେବେଳେ ? ମରୁଭୂମିରେ କେମିତି ଯିବ ?

ସଜ୍ଜନ—ତମମାନଙ୍କ ଘର କେଉଁଠି ? କେଉଁଠୁ ଆସିଲ ?

ରଖୁଆଳ—ଆମର ଏହି ମନ୍ଦିରରେ ମାନସିକ ଥିଲା । ପୂଜା କରିବା ପାଇଁ ଏଠାକୁ ଆସିଛୁ ।

ସଜ୍ଜନ—ମୋର ବି ମାନସିକ, ମୁଁ ବର୍ତ୍ତମାନ ସିଧା ମରୁଭୂମି ବାଟରେ ଯିବି ।

ରଖୁଆଳ—ବାପୁ, ଏହି ଠାକୁରାଣୀଙ୍କ ହୁକୁମ, ଏଠାରୁ ଆଗକୁ କେହି ଯାଇ ପାରିବେ ନାହିଁ । ଯେଉଁମାନେ ଆଗକୁ ଯିବାକୁ ଚେଷ୍ଟା କରିଛନ୍ତି, ସେମାନେ ଆଉ କେହି ଫେରିନାହାନ୍ତି । ବୁଢ଼ା ବୁଢ଼ା ଲୋକଙ୍କ କଥା ଅନୁସାରେ ଆଗକୁ ତିନି ଶହ ମାଇଲ ପର୍ଯ୍ୟନ୍ତ ଗଛଟିଏ ନାହିଁ ବା ପାଣି ମୁନ୍ଦାଏ ନାହିଁ ।

ସଜ୍ଜନ—ଏସବୁ ବିଷୟରେ ତୁମମାନଙ୍କର ବ୍ୟସ୍ତ ହେବାର କିଛି ନାହିଁ । ମୁଁ ତୁମକୁ କେବଳ ଗୋଟିଏ ଓଟ ମାଗୁଛି ।

ରଖୁଆଳ—ନା ବାବା, ଏ ସବୁ ଆମ ଘର ଓଟ । ଆମେ ଦେଇ ପାରିବୁ ନାହିଁ ।

ସଜ୍ଜନ—"ନ ଦେଲେ ମୋତେ ଯେଉଁକି ହେଲେ ତମ ଓଟରୁ ଗୋଟେ ନେବାକୁ ପଡ଼ିବ ।" ସେ ତାଙ୍କ ଓଟ ସଇସ ସୋନଆକୁ ଡାକି ଚଞ୍ଚଳ ଖିଆ ସାରିବାକୁ କହିଲେ ।

ସଜ୍ଜନ କହିଲେ—ମୁଁ ପଦମଣ୍ଡୀକୁ ଗାଧୋଇ ଦେଇ ନିଜେ ଗାଧୋଇବି । ତୁ ତୋ ଓଟକୁ ଗାଧୋଇଦେ ।

ସୋନଆ—ମୁଁ କାଲି ସକାଳେ ଗାଧୋଇଦେବି ।

ସଜ୍ଜନ—ତୁ କଣ ପାଗଳ ହେଲୁ ? ଠିକ୍ ଜହ୍ନ ଉଠିବା ପରେ ପରେ ଆମେ ବାହାରିବା କଥା ।

ସୋନଆ ଡରି ଡରି କହିଲା, "ଆଜ୍ଞା, ରାତିରେ ଏଠୁ ଠାକୁରାଣୀଙ୍କ ଇଚ୍ଛା ବିରୁଦ୍ଧରେ କିପରି ଯିବା ?"

ସଜ୍ଜନ—"ତୁ ଡରୁଛୁ କାହିଁକି ? ଆମେ ପରା ସୋମନାଥଙ୍କ ଆଜ୍ଞାରେ ଯାଉଛେ !" ଏହା କହି ସଜ୍ଜନ ପଦମଣ୍ଡୀକୁ ଗାଧୋଇ ଦେବା ପାଇଁ ପୋଖରୀକୁ ନେଲେ ।

ସୋନଆ ବୁଲିପଡ଼ି ରଖୁଆଳମାନଙ୍କୁ ପଚାରିଲା, "ଆମେ ଏଠୁ ଗଲେ କଣ ପଡ଼ିବ ?"

ଗୋଟିଏ ବୁଢ଼ା ରଖୁଆଳ କହିଲା, "ଛିରୁ ପଡ଼ିବ । ତୋ ମାଲିକର ତ ମୁଣ୍ଡ ଖରାପ ! ଏବାଟେ କେହି ଯିବାର ମୁଁ କେବେହେଲେ ଶୁଣି ନାହିଁ ।"

ଆଉ ଗୋଟିଏ ରଖୁଆଳ କହିଲା, "ଏପରିକି ଏବାଟେ କୌଣସି ପକ୍ଷୀ ଉଡ଼ିବାର କେହି ଦେଖି ନାହାନ୍ତି ।"

ସୋନଆ ତା ନୂଆ ସାଙ୍ଗମାନଙ୍କୁ ଡାକି କହିଲା, "ଚାଲ ଆମେ ଖାଇବା ।"

ଏହି ଦୁଇଜଣ ଯେବେ ଠାକୁରାଣୀଙ୍କ ଇଚ୍ଛା ବିରୁଦ୍ଧରେ ଆଗକୁ ଯାଆନ୍ତି ତାହେଲେ କଣ ସବୁ ବିପଦ ପଡ଼ିବ ତାହା ବର୍ଣ୍ଣନା କରି ରଖୁଆଳମାନେ ସୋନଆକୁ ଆଗକୁ ନଯିବା ପାଇଁ ଉପଦେଶ ଦେଲେ ।

ସଜ୍ଜନ ଡରିବା ଲୋକ ନୁହନ୍ତି । ତାଙ୍କର ଗୋଟିଏ ପଣ, ଯେତେ ଶୀଘ୍ର ପାରନ୍ତି ଘୋଘାବାପାଙ୍କ ପାଖରେ ପହଞ୍ଚି ପ୍ରଭୁ ଶିବଙ୍କ ବାର୍ତ୍ତା ଜଣାଇବେ । ସେ ପ୍ରଥମେ ପଦମଣ୍ଡୀକୁ ଗାଧୋଇ ଦେଇ ନିଜେ ଗାଧୋଇଲେ । ନିଜ ଥଳିରେ

କୂଅରୁ ପାଣି ଆଣି ପୂରାଇ ଓ ରଣଥମ୍ଭୀ ଠାକୁରାଣୀଙ୍କୁ ପୂଜା କରି ସେ ରଖୁଆଳମାନଙ୍କ ପାଖକୁ ଗଲେ ।

ସୂଧାର ଗାଈ ଯେପରି ଯାଏ, ଠିକ୍ ସେହିପରି ପଦମଢ଼ୀ ତାଙ୍କ ସାଙ୍ଗେ ସାଙ୍ଗେ ଗଲା । ସଜ୍ଜନ ତାକୁ ଏତେ ଭଲ ପାଉଥିଲେ ଯେ, ସେ ତାଙ୍କର ପୂରା ପୋଷା ମାନିଯାଇଥିଲା । ସୋନଆ ମାଲିକଙ୍କୁ ଖାଇବାକୁ ଦେଲା । "ଗୋଟିଏ ନୂଆ ଓଟ ଦେବ କି ନାହିଁ" ବୋଲି ରଖୁଆଳମାନଙ୍କୁ ସଜ୍ଜନ ପୁଣି ପଚାରିବାରୁ ସେମାନେ ପୁଣି ନାହିଁ କଲେ ।

ସଜ୍ଜନ—ସୋନଆ, ତା ହେଲେ ଆମେ ଆମରି ଯିବା ।

ସୋନଆ—ମରୁଭୂମି ଠାକୁରାଣୀଙ୍କୁ ଡେଇଁକରି ଆମେ କିପରି ଯିବା ?

ସଜ୍ଜନ—ତୁ ବି ଡରିଗଲୁଣି ? ମୁଁ ପରା ତୋ ସାଙ୍ଗରେ ଅଛି !

ସୋନଆ—ବାପୁ, ଠାକୁରାଣୀ କୋପ କଲେ ଆମକୁ କିଏ ରକ୍ଷା କରିବ ?

ସଜ୍ଜନ—କିନ୍ତୁ ମୁଁ ଜାଣେ ଯେ, ଠାକୁରାଣୀ ଆମ ଉପରେ ରାଗିବା ବଦଳରେ ଭାରି ଖୁସି ହେବେ ।

ସୋନଆ ତାର ଅମାନିଆପଣ ଦେଖାଇ କହିଲା, "ଆପଣ ଯାହା କହୁଛନ୍ତି ସତ ହୋଇଥିବ । କିନ୍ତୁ ଆମେ ଏତେବେଳେ ଯିବାନାହିଁ ।"

ସଜ୍ଜନ ଦୃଢ଼ ଭାବ ପ୍ରକାଶ କରି କହିଲେ, "ଆମକୁ ଯିବାକୁ ହିଁ ହେବ । ତୁ ଓଟକୁ ଚଞ୍ଚଳ ଗାଧୋଇଦେ । ବର୍ତ୍ତମାନ ଜହ୍ନ ଉଠିଯିବ ।"

କିନ୍ତୁ ସୋନଆ ଥା ଥା ମା ମା ହୋଇ ଠିଆହେଲା ।

ସଜ୍ଜନ ରାଗିଯାଇ ତାକୁ ଧକ୍କା ଦେବାକୁ ଉଦ୍ୟତ ହେଲେ ।

ସୋନଆ ଆସ୍ତେ ଆସ୍ତେ ଓଟକୁ ଗାଧୋଇ ଦେବାକୁ ନେଲା ।

ସଜ୍ଜନ ଖାଇସାରି ଯିବାକୁ ବାହାରିଲେଣି । ସୋନଆ ମଧ୍ୟ ଫେରିଲାଣି । ସଜ୍ଜନ ପୁଣି ଥରେ ଯାଇ ରଖୁଆଳମାନଙ୍କୁ କହିଲେ, "ଗୋଟିଏ ଓଟ ଓ ଆଉ କିଛି ଟଙ୍କା ଦେଲେ ଓଟଟାଏ ଦେବ କି ?" ଗୋଟିଏ ଟୋକା ରଖୁଆଳ ଲୋଭରେ ପଡ଼ିଯାଉଥିଲା । କିନ୍ତୁ ଜଣେ ବୟସ୍କ ଲୋକ ତାକୁ ଗାଳି ଦେଇ କହିଲା, "ଯେଉଁ ଓଟକୁ ଏତେଦିନ ଯାଏ ଘରେ ପୋଷି ଆସିଛୁ ତାକୁ ମାରିବାକୁ ଚାହୁଁ ?"

ସେମାନଙ୍କଠାରୁ ଓଟ ପାଇବାର କୌଣସି ଆଶା ନ ଦେଖି ସଜ୍ଜନ ସୋନଆକୁ ବାହାରିବାକୁ କହିଲେ । ଯାତ୍ରାରମ୍ଭ ଠିକଏ ଡେରି କରିବା ପାଇଁ ସୋନଆ ପୁଣି ଚେଷ୍ଟା କଲା । କିନ୍ତୁ ସଜ୍ଜନ ତା କଥା ଶୁଣିଲେ ନାହିଁ ।

ଏତେବେଳକୁ ଜହ୍ନ ଉଠିଲାଣି । ଜ୍ୟୋତ୍ସ୍ନା ସ୍ପର୍ଶରେ ମରୁଭୂମିର ସୌନ୍ଦର୍ଯ୍ୟ ମନୋମୁଗ୍ଧକର ଏବଂ ଧୀର ପବନ ଯୋଗୁଁ ଜହ୍ନ ଆଲୁଅରେ ତାଳଗଛର ପତ୍ରଗୁଡ଼ାକ ଦୋହଲ ଭାରି ସୁନ୍ଦର ଦିଶୁଥାଏ ।

ସଜ୍ଜନ ପଦମଡ଼ୀ ଉପରେ ଚଢ଼ିଲେ । ସୋନଆ ଅନିଚ୍ଛାସତ୍ତ୍ୱେ ତାଙ୍କ ପଛେ ପଛେ ଗଲା ।

ଠୋକା ରଖୁଆଳ ଜଣେ କହିଉଠିଲା, "ବାପୁ, ଜଲ୍‌ଦି ଫେରି ଆସିବ, ଆଚ୍ଛା !"

"ଜୟ ସୋମନାଥ" କହି ସଜ୍ଜନ ଯାତ୍ରା ଆରମ୍ଭ କଲେ ।

## ୧୧

# ମରୁ ଝଡ଼

ମରୁଭୂମିରେ ଉଜ୍ଜ୍ୱଳ ଚନ୍ଦ୍ରାଲୋକ ପଡ଼ୁଛି । ବାଟ ଚିହ୍ନି ଯିବାରେ କୌଣସି ଅସୁବିଧା ନାହିଁ । ଶୀତ ଦିନ ଆରମ୍ଭ । ମନ୍ଦ ଶୀତଳ ପବନ ଆରାମ ଲାଗୁଛି ।

ପଦମଡ଼ୀର ମନ ମଧ୍ୟ ବେଶ୍ ଖୁସି ଅଛି । ଏହି ସବୁ କାରଣରୁ ସଜ୍ଜନ ଭୋର ହେବା ବେଳକୁ ଯଥେଷ୍ଟ ବାଟ ଯାଇପାରିବେ ବୋଲି ବିଚାରିଥିଲେ । କିନ୍ତୁ ରଖୁଆଳଙ୍କ କଥାରେ ବିଶ୍ୱାସ କରି ସୋନଆ ଭୟରେ ଡରି ଥରି ତା ଓଟ ଉପରେ ବସିଥିଲା । ମରୁଭୂମିର ଏ ପାଖକୁ ସେ କେବେହେଲେ ଆସି ନ ଥିଲା । ତା ମନରେ ବଦ୍ଧ ଧାରଣା ଯେ, ମରୁଭୂମିର ଦେବୀ ଯେଉଁଠି ଆସ୍ଥାନ ପକାଇଛନ୍ତି ତାକୁ ପାରି ହୋଇ ଯେ ଆଗକୁ ଯିବ ତା ପାଇଁ ବିପଦ ସୁନିଶ୍ଚିତ । ସତେ ଯେପରି ନିଜ ମୁନିବର ମନ ଜାଣି ତା ଓଟ ମଧ୍ୟ ଧୀରେ ଧୀରେ ଚାଲିଲା । ସଜ୍ଜନ ବାରମ୍ବାର ତାଗିଦ୍ କରୁଥିଲେ ସୁଦ୍ଧା ସୋନଆ ତା ଓଟକୁ ଚଞ୍ଚଳ

ଚଳାଇଲା ନାହିଁ କି ଜବାବ ମଧ୍ୟ ଦେଲା ନାହିଁ । ସଜ୍ଜନ ଏଥିରେ ରାଗିଗଲେ । ପଛକୁ ଯାଇ ସୋନଆର ଓଟକୁ ତାଙ୍କ ନିଜ ବେତରେ ପିଟିଲେ । କିନ୍ତୁ କୌଣସି ଫଳ ହେଲା ନାହିଁ । ଓଟଟି ସୋନଆର ଭାବ ଗ୍ରହଣ କଲାପରି ବସିପଡ଼ିଲା ।

"ସୋନିଆ, ଓହ୍ଲା, ଶୁଣୁନୁ କଣ ?" ଏତା କହି ସେ ପଦମଡ଼ୀରୁ ଓହ୍ଲାଇ ସୋନଆର ଓଟକୁ ଅତି ନିର୍ମମଭାବେ ପିଟିଲେ । ଏଭଳି ପିଟିଲେ ଯେ, ସେ ଅତି କଷ୍ଟରେ ଠିଆ ହେଲା । ସଜ୍ଜନ ପଦମଡ଼ୀ ଉପରେ ଚଢ଼ି ସୋନଆ ଓଟକୁ ଅନାଇ ସେ ଯେପରି ଚଞ୍ଚଳ ଚଞ୍ଚଳ ଚାଲିବ ସେଥିପାଇଁ ଚେଷ୍ଟା କଲେ ।

କିନ୍ତୁ ଫଳ ନ ହେବାରୁ ସେ ବୁଝିଲେ ଯେ, ସୋନଆ ଯୋଗୁଁ ତା' ଓଟ ଅମାନିଆଁ ହେଉଛି । ସେ କେବଳ ତା ମୁନିବ କଥା ଅନୁସାରେ ହିଁ କାମ କରୁଛି ।

ସଜ୍ଜନ କହିଲେ - "ସୋନଆ, ମୁଁ ତୋ ଓଟ ଉପରେ ବସୁଛି, ତୁ ପଦମଡ଼ୀ ଉପରେ ବସ । ଦେଖିବି କେମିତି ନ ଚାଲିବ ।"

ସୋନଆ କହିଲା, "ନା ବାପୁ, ଏବେ ଚାଲିବ ।" ପ୍ରକୃତରେ ତା' ଓଟ ମଧ୍ୟ ବେଗେ ବେଗେ ଚାଲିଲା । ସଜ୍ଜନ ପଛରେ ଯାଉଥିଲେ । ଯେତେବେଳେ ଦେଖିଲେ ଯେ ସୋନଆ ଓଟ ଭଲଭାବେ ଚାଲୁଛି ସେ ପୁଣି ଆଗକୁ ଗଲେ ।

କିଛି କ୍ଷଣ ପରେ ସୋନଆର ଓଟ ପୁଣି ଆସ୍ତେ ଆସ୍ତେ ଚାଲିଲା । ସଜ୍ଜନ ଏହା ଦେଖି ସୋନଆକୁ ଚଞ୍ଚଳ ହେବାକୁ କହିଲେ । କିନ୍ତୁ ଏଥର ଦେଖିଲେ, ତା ଓଟ ଆଗକୁ ନ ଆସି ପଛକୁ ଯାଉଛି । ସେ ନିଜର ଧୈର୍ଯ୍ୟ ପୂର୍ବପରି ହରାଇ ସୋନଆକୁ ନିଜ ବେତରେ ପାହାରେ ପିଟି କହିଲେ, "ବଦ୍‌ମାସ୍ ! ତୁ ମୋ ସାଙ୍ଗରେ ଯିବାକୁ ଚାହୁଁନାହୁଁ ?"

"ନାହିଁ ନାହିଁ" କହି ସୋନଆ ତା ଓଟ ଉପରେ ବସିଲା ଓ ଆଗକୁ ନ ଯାଇ ତା ଓଟକୁ ଫେରାଇ ମରୁଭୂମି ଦେବୀଙ୍କ ମନ୍ଦିର ଆଡ଼କୁ ପଦମଡ଼ୀଠାରୁ ଅଧିକ ବେଗରେ ଦଉଡ଼ାଇଲା ।

ସୋନଆ ଯେପରି ଚଞ୍ଚଳଭାବେ ଓଟ ଦୌଡ଼ାଇ ଦୃଷ୍ଟି ଅଗୋଚର ହେଉଥିଲା, ସଜ୍ଜନ ଅତି ଦୁଃଖର ସହିତ ତାକୁ ଚାହିଁ ଥାନ୍ତି । ସୋନଆ ତା ଓଟକୁ ନେଇ ଏଭଳି ଚଞ୍ଚଳ ଚଞ୍ଚଳ ଗଲା ଯେ,ସଜ୍ଜନ ଆଉ ତାକୁ ଦେଖି ପାରିଲେ ନାହିଁ ।

ସୋନଆଙ୍କୁ ଉଚିତ ଶାସ୍ତି ଦେବା ପାଇଁ ସଜ୍ଜନଙ୍କର ପ୍ରବଳ ଇଚ୍ଛା ହେଉଥିଲେ ସୁଦ୍ଧା, ସେ ଯେଉଁ ଉଦ୍ଦେଶ୍ୟରେ ଯାଉଛନ୍ତି ତାହା ପ୍ରଥମ । ତେଣୁ ସେ ନିଜର ଇଚ୍ଛାକୁ ଚୁପିରଖିଲେ ।

ସଜ୍ଜନ ଓଟକୁ କହିଲେ—"ପଦମଣ୍ଡୀ, ପ୍ରଭୁ ଶଙ୍କରଙ୍କ ଆଦେଶ ପାଳନ କରିବାର ଦାୟିତ୍ୱ ବର୍ତ୍ତମାନ ଆମ ଦୁହିଁଙ୍କ ଉପରେ ।"

କୃଷ୍ଣପକ୍ଷ ଚତୁର୍ଥୀ ରାତି । ଚନ୍ଦ୍ରଙ୍କର ଶୀତଳ ଉଜ୍ଜ୍ୱଳ କିରଣରେ ସମସ୍ତ ମରୁଭୂମି ଆଲୋକିତ ହୋଇଛି । ସମୁଦ୍ର ଲହଡି ପରି ଗୁଡ଼ିଆଡ଼େ ବାଲିଗଦା । ନିସ୍ତବ୍ଧ ରାତିର ସୁଲୁସୁଲିଆ ଶୀତଳ ମନ୍ଦ ପବନ ତାଙ୍କୁ ଅଧିକ ସହିଷ୍ଣୁ ଓ ଚଞ୍ଚଳ କରୁଛି ।

ପଦମଣ୍ଡୀ ଗୋଡରେ ବନ୍ଧାହୋଇଥିବା ଘୁଙ୍ଗୁରର ରୁଣୁଝୁଣୁ ଶବ୍ଦରେ ସତେ ଯେପରି ସଙ୍ଗୀତ ବାଜି ଉଠୁଛି । ସଜ୍ଜନ ଚୌହାନଙ୍କ ହୃଦୟ ଆଜି ଆନନ୍ଦରେ ପୂରି ଉଠୁଛି । ଚୌହାନ ବଂଶର ଅଜେୟତା ସମ୍ପର୍କରେ ତାଙ୍କର କୌଣସି ସନ୍ଦେହ ନାହିଁ । ଘୋଘାବାପାଙ୍କ ପୁଅମାନେ ବହୁ ଯୁଦ୍ଧ କରି ଜୟ ଲାଭ କରିଛନ୍ତି । ଏହି ବିଦେଶୀ ମ୍ଳେଚ୍ଛ ଆକ୍ରମଣକାରୀ ହମିର ସେମାନଙ୍କ ବିରୁଦ୍ଧରେ କଣ କରିପାରିବ ?

ସଜ୍ଜନ ଓଟକୁ ଧ୍ରୁବତାରା ଆଡ଼କୁ ମୁହାଁ କରି ରଖିଲେ । ପଦମଣ୍ଡୀ ତା'ର ଗତି ଟିକିଏ କମାଇଦେଲା । ସଜ୍ଜନ ତା' ପିଠି ଉପରେ ଅଳ୍ପକ୍ଷଣ ପାଇଁ ଶୋଇପଡ଼ିଲେ । ରାତି ପାହିବା ସଙ୍ଗେ ସଙ୍ଗେ ଉଷା କାଳର ଶୀତଳ ପବନରେ ତାଙ୍କ ନିଦ ଭାଙ୍ଗିଯିବାରୁ ସେ ପଦମଣ୍ଡୀକୁ ଚଞ୍ଚଳ ଚଞ୍ଚଳ ଯିବାକୁ ନିର୍ଦ୍ଦେଶ ଦେଲେ । ସେ ଚାବୁକ୍ ଟିକିଏ ହଲାଇଲେ । ଓଟ ମୁନିବର ଆଦେଶ ପୂରାପୂରି ବୁଝିପାରିଲା ।

ଯେଉଁବାଟେ ସେ ଆସୁଥିଲେ ଓଟରଖୁଆଳମାନେ କହିଥିବା ପରି ନିରାଶଜନକ ନୁହେଁ ବୋଲି ଜଣାପଡ଼ିଲା । ଗୋଟିଏ ଜାଗାରେ କିଛି ଗଛ ଲତା ଥିଲା । ସେ ଗୋଟିଏ ଗଛ ତଳେ କିଛି ସମୟ ବିଶ୍ରାମ ନେଲେ ।

ପଦମଣ୍ଡୀର ବାଟ ଚିହ୍ନିବା ଗୁଣ ଅଦ୍ଭୁତ । ବାଟରେ ଗୋଟିଏ ଗୋଟିଏ ଜାଗାରେ ପାଣି, ଘାସ ଓ ଗଛମାନ ଥିବାରୁ ସେଠାରେ ସେମାନେ କିଛି ସମୟ ବିଶ୍ରାମ ନେବାର ସୁବିଧା ପାଆନ୍ତି । ସଜ୍ଜନ ସାଙ୍ଗରେ ଆଣିଥିବା ଜଳପାତ୍ରରୁ ଜଳ ନିଜେ ପିଅନ୍ତି ଓ କିଛି ଜଳଖିଆ ଖାଆନ୍ତି । ପଦମଣ୍ଡୀ ମଧ୍ୟ ଗଛର ପତ୍ର ଓ ଘାସ

ଖାଏ । ରାସ୍ତା ଠିକ୍ ଅଛି । ମରୁଭୂମିରେ ସିଧା ଆସିଲେ ଉଳ୍କାପାତ ଭୟ ଅଛି ବୋଲି ସେ ଶୁଣିଥିଲେ । ମାତ୍ର ସେଥିରେ ତାଙ୍କର ବିଶ୍ୱାସ ନଥିଲା ।

ଚତୁର୍ଥ ଦିନର ଉପରବେଳା । ସଜ୍ଜନ ଅନୁଭବ କଲେ ପଦମଣ୍ଡୀ ହାଲିଆ ହୋଇଯାଉଛି । ପବନ ଅତିଶୟ ତାତିଯାଇଛି । ଚତୁଃପାର୍ଶ୍ୱେ ଉଷ୍ଣ ବାଲିଝଡ଼ । ବହୁ ସମୟରେ ସଜ୍ଜନଙ୍କ ଆଖିକୁ କିଛି ଦେଖାଯାଉନାହିଁ । ଗରମ ପବନରେ ତାଙ୍କ ଚମ ପୋଡ଼ି ଗଲା ଭଳି ବୋଧହେଉଛି ।

ତାଙ୍କ ମନରେ ଦେଖାଦେଲା ଭୟ ଓ ସନ୍ଦେହ । ସେ କଣ ଠିକ୍ ବାଟରେ ଯାଉଛନ୍ତି ? ଯେବେ ବାଟରେ ବିଶ୍ରାମ କରିବାକୁ କୌଣସି ଜାଗା ଓ ପାଣି ନ ପାନ୍ତି ତା ହେଲେ କିହବ କଣ ! ଏହା ଭାବୁ ଭାବୁ ତାଙ୍କ ମନରେ ଚିନ୍ତା ଆସିଲା । ସେ ପ୍ରଭୁ ଶଙ୍କରଙ୍କ ଇଚ୍ଛା ପୂରଣ ପାଇଁ ଯାଉଛନ୍ତି । ପ୍ରଭୁ ଚୌହାନ ବଂଶର ରକ୍ଷାକର୍ତ୍ତା । ପ୍ରଭୁଙ୍କର ବିଜେସ୍ଥଳୀ ଯେପରି ଆକ୍ରମଣକାରୀର ଶିକାର ନ ହୁଏ, ତାହାହିଁ ହେଉଛି ତାଙ୍କର ଏକମାତ୍ର ଲକ୍ଷ୍ୟ । ସେ ବାରମ୍ବାର ମନକୁ ସାନ୍ତ୍ୱନା ଦେଲେ—"ପ୍ରଭୁ ମୋର ରକ୍ଷାକର୍ତ୍ତା । ମୁଁ କାହିଁକି ଡରୁଛି ।"

ପଦମଣ୍ଡୀ ପୁଣି ହାଲିଆ ହୋଇ ପଡ଼ିଲା । ସଜ୍ଜନ ତାକୁ ତାଜା ହେବାକୁ କହିଲେ, "ପଦମଣ୍ଡ ! ତୁ ହାରି ଯାଉଛୁ ।" କିନ୍ତୁ ଏଥର ପଦମଣ୍ଡୀର ପୂର୍ବ ତେଜ ଫେରିଲା ନାହିଁ । ସଜ୍ଜନ ଓଟ ଉପରୁ ଓହ୍ଲାଇ ପଡ଼ିଲେ । ତାକୁ ପିଇବାକୁ କିଛି ପାଣି ଦେଇ ତା ବେକ ଆଉଁସି ଦେଲେ ଓ ସୂର୍ଯ୍ୟ ଅସ୍ତ ହେବା ପର୍ଯ୍ୟନ୍ତ ତା ଆଖିକୁ ଯେପରି କଷ୍ଟ ନ ହୁଏ, ସେଥିଲାଗି ଚେଷ୍ଟା କଲେ ।

ପରେ ସନ୍ଧ୍ୟାବେଳେ ପଦମଣ୍ଡୀ କିଛି ବିଶ୍ରାମ ନେଇ ସତେଜ ହେଲା । ଶୀତଳ ସମୀରଣ ପ୍ରବାହିତ ହେବାରୁ ସଜ୍ଜନ ପୁଣି ଯାତ୍ରା ଆରମ୍ଭ କଲେ । ତାଙ୍କ ଯାତ୍ରା ସଫଳ ହେବ ବୋଲି ତାଙ୍କର ପୁଣି ଆତ୍ମବିଶ୍ୱାସ ଆସିଲା । ପଦମଣ୍ଡୀ ଅଧିକ ଦୂର ଯାଇପାରିଲା ନାହିଁ, କିନ୍ତୁ ପରେ ଚନ୍ଦ୍ର ଉଦୟ ହେବାରୁ ତାର ଗତି ବଢ଼ିଲା ।

× × ×

ପଞ୍ଚମ ଦିନ ଦିବାଲୋକ ଆସିବା ସଙ୍ଗେ ସଙ୍ଗେ ଉଷ୍ଣ ପ୍ରବାହ ଆରମ୍ଭ ହୋଇ ଗଲା ଓ ଦିନ ବଢ଼ିବାରୁ ଅତିଶୟ ଭୟଙ୍କର ହେଲା । ସଜ୍ଜନଙ୍କ ଚତୁଃପାଖରେ ଗରମ ବାଲି ଉଡ଼ି ବୁଲିଲା । ସଜ୍ଜନ ବା ପଦମଣ୍ଡୀ କେହି ଆଖି ଖୋଲି ରଖିପାରିଲେ ନାହିଁ । ସେମାନଙ୍କ ପକ୍ଷରେ ଆଗକୁ ଯିବା ଅସମ୍ଭବ ହୋଇପଡ଼ିଲା ।

ସଜ୍ଜନ ତା ଉପରୁ ଓହ୍ଲାଇଯାଇ ପଦମଡ଼ୀକୁ ସେଠି ଶୁଆଇ ଦେଲେ ଏବଂ ତା ଆଖିରେ ଯେପରି ବାଲି ନ ପଡ଼େ ସେଥିପାଇଁ ତାଙ୍କ ନିଜ ଶରୀର ଆଡ଼ୁଆଳ କରି, ନିଜ ମୁହଁକୁ ଓଟ ବେକରେ ଲୁଚାଇ ବସିଲେ ।

ସୂର୍ଯ୍ୟ ଅସ୍ତ ହୋଇ ବାଲିଝଡ଼ କମିଯିବା ପରେ ସେ ପୁଣି ଯାତ୍ରା ଆରମ୍ଭ କଲେ । ପ୍ରଥମଥର ପାଇଁ ସଜ୍ଜନଙ୍କ ହୃଦୟରେ ଦେଖାଦେଲା ଭୟ—ତାଙ୍କୁ ଯେବେ ବାଲିଝଡ଼ ଭିତର ଦେଇ ଯିବାକୁ ପଡ଼େ ତାହାହେଲେ କଣ ହେବ ? ସେ କଣ ପଥଭ୍ରଷ୍ଟ ହେଲେ ? ସେ ଯେବେ ଠିକ୍ ବାଟେ ଆସୁଥାନ୍ତେ ତା' ହେଲେ ବିଶ୍ରାମ କରିବାକୁ ନିଶ୍ଚୟ କୋଉଠି ଜାଗା ଥାଆନ୍ତା ।

ସେଦିନ ରାତିରେ ପଦମଡ଼ୀ ଦବିଯାଇଥିବା ପରି ଜଣାଗଲା । ସଜ୍ଜନ ମଧ୍ୟ ଅତି ମାତ୍ରାରେ କ୍ଳାନ୍ତ ଅନୁଭବ କରୁଥିଲେ । ତେଣୁ ବିଶ୍ରାମ କରିବା ପାଇଁ ସେ ପଦମଡ଼ୀ ପାଖରେ ଶୋଇଗଲେ ।

ଭୋରବେଳକୁ ପଦମଡ଼ୀର ଅସ୍ଥିରତାରେ ସଜ୍ଜନଙ୍କ ନିଦ ଭାଙ୍ଗିଗଲା । ସେ ଠିଆ ହୋଇ କୁନ୍ଦ ହେଉଥାଏ । ତାର ମନର ଭାବ ସଜ୍ଜନ ବୁଝିପାରିଲେ —ସେ ଯିବାକୁ ଚାହୁଁଛି । ସଜ୍ଜନ ତା ଉପରେ ବସିଯାଇ ଉତ୍ତର ଆଡ଼କୁ ଯିବାପାଇଁ ଚାବୁକ ହଲାଇଲେ । କିନ୍ତୁ ତାଙ୍କ ନିର୍ଦ୍ଦେଶ ପଦମଡ଼ୀ ଅମାନ୍ୟ କରିଦେଲା । ସେ ତାକୁ ଯିବା ପାଇଁ ମନାଇ ନ ପାରିବାରୁ ବେତରେ ପ୍ରହାର କଲେ । ପଦମଡ଼ୀ ଦୀର୍ଘଶ୍ୱାସ ଛାଡ଼ିଲା, କିନ୍ତୁ ତାଙ୍କ କଥା ନ ମାନି ପୂର୍ବମୁହାଁ ହୋଇ ଦଉଡ଼ିଲା । ସଜ୍ଜନ ଏବେ ବୁଝି ପାରିଲେ ଯେ, ଉତ୍ତର ଦିଗରେ କୌଣସି ବିପଦ ଆଶଙ୍କା କରି ପଦମଡ଼ୀ ନିଜର ଗତି ବଦଳାଇଲା ।

ସଜ୍ଜନ ମନେ ମନେ ଭାବିଲେ, "ପ୍ରଭୁ ଶଙ୍କର, ମୋର ଭାଗ୍ୟ ଆଜି ତୁମରି ହାତରେ ।" ତାଙ୍କର ଏକମାତ୍ର ସନ୍ତୋଷ ଯେ, ସାଙ୍ଗରେ ପୁଅକୁ ଆଣି ନାହାନ୍ତି ।

ପଦମଡ଼ୀ ଦୁଇଘଣ୍ଟା ଦଉଡ଼ିବା ପରେ ସେ ପୂର୍ବମୁହାଁ ଦୌଡ଼ିବାର କାରଣ ସଜ୍ଜନ ବୁଝି ପାରିଲେ । ସେ ପଛକୁ ଚାହିଁ ଦେଖିଲେ, ତାଙ୍କ ପଛେ ପଛେ ଉତ୍ତର ଏବଂ ପଶ୍ଚିମ ଦିଗରୁ ବାଲି ଝଡ଼ ମାଡ଼ି ଆସୁଛି । ସଜ୍ଜନ କହିଲେ, "ପଦମଡ଼ୀ, ପ୍ରଭୁ ତୋତେ ଆୟୁଷ ଦିଅନ୍ତୁ । ତୁ ଆଜି ମୋ ଜୀବନ ରକ୍ଷା କଲୁ ।"

ବିପଦ ଏ ପର୍ଯ୍ୟନ୍ତ ଅତିକ୍ରାନ୍ତ ହୋଇନାହିଁ । ତେବେ ଝଡ଼ ବନ୍ଦ ହୋଇ ଆସୁଛି । ପଦମଡ଼ୀ ଖବ୍ ଚଞ୍ଚଳ ଚଞ୍ଚଳ ଗତି କରୁଛି । ପଦମଡ଼ୀକୁ ତାର ନିଜ

ଇଚ୍ଛା ଅନୁସାରେ ଯିବାକୁ ସଜ୍ଜନ ଛାଡ଼ ଦେଇ ଥିବାରୁ ଉଭୟେ ଭୟଙ୍କର ବାଲି ଝଡ଼ରୁ ରକ୍ଷାପାଇଗଲେ ।

ଆଜି ଯାତ୍ରାର ସପ୍ତମ ଦିବସ । ପଦମଡ଼ୀ ନୂଆ ବଳ ପାଇଥିବା ଭଳି ଦଉଡ଼ୁଛି । ସେମାନଙ୍କ ଭାଗ୍ୟରେ କଣ ଅଛି, ପଦମଡ଼ୀ ହୁଏତ କିଛି ଜାଣେ ।

ହଠାତ୍ ପୁଣି ଅନ୍ଧାର ହୋଇ ଆସିଲା ଓ ବାଲିଝଡ଼ ମାଡ଼ ଆସିଲା । ସଜ୍ଜନଙ୍କ ଛାତି ଦବି ଗଲା । ଆଗରେ ଅସରନ୍ତି ମରୁଭୂମି । ବିଚରା ପଦମଡ଼ୀ ଏପରି ଗତିରେ କେତେ ଦୂର ଯିବ ଓ ବାଲିଝଡ଼ କିପରି ପାର ହେବ ?

ମଧ୍ୟାହ୍ନ ହେଲାଣି । ଖାଇବା ଓ ପିଇବା ପାଇଁ ମଧ୍ୟ ବିଶ୍ରାମ ନାହିଁ । ବିଶ୍ୱସ୍ତ ଓଟଟି ଅବିଶ୍ରାନ୍ତ ଦଉଡ଼ ଚାଲିଛି । ଝଡ଼ ଭୀଷଣତର ହେବାକୁ ଲାଗିଲା । ପଦମଡ଼ୀ ଦକ୍ଷିଣମୁହାଁ ହେଲା । ବଞ୍ଚିବାର କୌଣସି ଉପାୟ ନ ଥିବା ପରି ମନେହେଲା ।

ହଠାତ୍ ଘୂର୍ଣ୍ଣିବାୟୁ ଆସି ସେମାନଙ୍କ ଚାରିପଟେ ଘୂରିବାକୁ ଲାଗିଲା । ସେମାନେ ବାଧ୍ୟ ହୋଇ ଅଟକି ଗଲେ । ପଦମଡ଼ୀ ଭୂଇଁରେ ଶୋଇ ପଡ଼ିଲା । ସଜ୍ଜନ ତାର ଆଖି, ନାକ ଓ ଦେହରୁ ବାଲି ଝାଡ଼ି ଦେଲେ । ତାଙ୍କୁ ଲାଗିଲା, ସତେ ଯେପରି ତାଙ୍କର ସବୁ ଶେଷ ହୋଇଗଲା । ଏ ବାଲିଝଡ଼ରୁ ରକ୍ଷା ପାଇବାର ଆଉ କିଛି ଉପାୟ ନାହିଁ ।

ଚାରିଆଡ଼େ ବାଲି ତାଙ୍କୁ ରୁନ୍ଧି ଦେଲା ପରି ବୋଧ ହେଲା । ବୋଧହୁଏ ଏଥର ତାଙ୍କୁ ତାଙ୍କର ଏକମାତ୍ର ବିଶ୍ୱସ୍ତ ସଙ୍ଗୀ ଓଟଟିକୁ ବିଦାୟ ଦେବାକୁ ପଡ଼ିବ । ସେ ପ୍ରଭୁ ସୋମନାଥଙ୍କୁ ଶେଷ ପ୍ରାର୍ଥନା ଜଣାଇଲେ ।

ହଠାତ୍ ଝଡ଼ ବନ୍ଦ ହୋଇଗଲା ଓ ବାଲି ସ୍ତମ୍ଭ ଉଭେଇଗଲା । ସଜ୍ଜନ ପାଟି କରି ଉଠିଲେ, "ପଦମଡ଼ୀ ରାଣୀ, ଆମେ ରକ୍ଷା ପାଇଗଲେ । ପ୍ରଭୁ ଶଙ୍କର ଆମକୁ ରକ୍ଷା କରିଛନ୍ତି ।"

କିନ୍ତୁ ଏହା କହିସାରିବା ପରମୁହୂର୍ତ୍ତରେ ଆଉ ଗୋଟିଏ ବାଲିଝଡ଼ ତାଙ୍କ ଆଡ଼କୁ ଆସୁଥିବାର ସେ ଦେଖିଲେ । ପଦମଡ଼ୀର ଦୂରଦୃଷ୍ଟି ଯୋଗୁ ସେମାନେ ବାଲି ଝଡ଼ର କେନ୍ଦ୍ରଠାରୁ ଦୂରରେ ରହିଛନ୍ତି । କିନ୍ତୁ ବର୍ତ୍ତମାନ ସେ ବୁଝିଲେ ଯେ, ଘୋଘାଗଡ଼କୁ ସିଧା ବାଟରେ ସେ ଯାଇ ପାରିବେ ନାହିଁ । ତାଙ୍କୁ ପରାଜୟ ସ୍ୱୀକାର କରି ସାଧାରଣ ବାଟରେ ଯିବାକୁ ହେବ ।

ସୂର୍ଯ୍ୟ ଅସ୍ତ ହୋଇ ଗଲେଣି । ଦିଶିଯାଏ ଝଡ଼ ମଧ୍ୟ ସେମାନଙ୍କୁ ଛାଡ଼ି ଆଗକୁ ଗଲାଣି । ପରିଷ୍କାର ଆକାଶରେ ତାରା ପଡ଼ିଥିବା ଦେଖି ଆନନ୍ଦରେ

ପଦମଣ୍ଡୀ ନାଚୁଛି । ସଜ୍ଜନ ତାକୁ ଶୁଆଇ ସାଉଁଳାଇ କହିଲେ, "ପଦମଣ୍ଡୀ, ସାବାସ୍ ଝିଅ ।" ରାତ୍ରର ସୁଶୀତଳ ପବନ ଫଳରେ ସେମାନଙ୍କ ସାହସ ଓ ଶକ୍ତି ବଢ଼ୁଛି । ସେମାନେ ଏତେ କ୍ଳାନ୍ତ ହୋଇଯାଇଥିଲେ ଯେ, ନିଜକୁ ରକ୍ଷା କରିବାର ଦାୟିତ୍ୱ ପ୍ରଭୁ ସୋମନାଥଙ୍କ ଉପରେ ଛାଡ଼ିଦେଇ ନିଦ୍ରୋଡ଼ ନିଦରେ ଶୋଇପଡ଼ିଲେ ।

ଏ ପର୍ଯ୍ୟନ୍ତ ସଜ୍ଜନଙ୍କର ଧାରଣା ଥିଲା ଯେ, ଉତ୍ତର ଦିଗକୁ ଗଲେ ସେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବେ । ତାଙ୍କର ସମସ୍ତ ଭରସାକୁ ବାଲିଝଡ଼ ଧୂଳିସାତ୍ କରିଦେଲା । ସେ କେଉଁଠାରେ ଅଛନ୍ତି ବା ଘୋଘାଗଡ଼ କେଉଁ ଦିଗରେ ତାଙ୍କୁ କାନ୍ଥୁ ଜଣାଗଲା ନାହିଁ । ସେ ଯେତେବେଳେ ଏଡ଼େ ବଡ଼ ଦାୟିତ୍ୱ ନେଇ ଯାଉଛନ୍ତି କାହିଁକି ଅଜଣା ବାଟରେ ଆସିବା ଭଳି ବୋକାମି କଲେ ! ସମ୍ପାଳ-ଦକ୍ଷକୁ କେଉଁ ବାଟ ? ସୁରସାଗର କେଉଁଠାରେ ହୋଇପାରେ ? ଝାଲୋରକୁ କେଉଁ ବାଟ ?

ଏସବୁ ଦୁର୍ଯୋଗ ସତ୍ତ୍ୱେ ସଜ୍ଜନଙ୍କର ପ୍ରଭୁ ଶଙ୍କରଙ୍କ ଉପରେ ପୂର୍ବପରି ଦୃଢ଼ ବିଶ୍ୱାସ ରହିଥାଏ । ସମସ୍ତ ଦୁଃଖ ଦୁର୍ଦ୍ଦଶା ସତ୍ତ୍ୱେ ଶେଷକୁ ଯେ ଭଲ ହେବ ଏ ସଂପର୍କରେ ତାଙ୍କର ସନ୍ଦେହ ନାହିଁ । ଘୋଘାବାପାଙ୍କୁ ମଧ୍ୟ ଏଭଳି ବହୁ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏ ପର୍ଯ୍ୟନ୍ତ ସେ ବଞ୍ଚିରହିଛନ୍ତି । ଏ ବୁଢ଼ା ବୟସରେ ତାଙ୍କର ଏକମାତ୍ର ଆନନ୍ଦ ହେଉଛି, ତାଙ୍କ ଅତୀତ ଜୀବନର ବୀରତ୍ୱ କାହାଣୀମାନ ନିଜର ପରିବାରକୁ ଗୋପନରେ ବସି ଶୁଣାଇବା । ସଜ୍ଜନ ଭାବିଲେ, ସେ ମଧ୍ୟ ଦିନେ ନା ଦିନେ ତାଙ୍କର ଓ ପଦମଣ୍ଡୀର ଏ ଅସାଧାରଣ କାର୍ଯ୍ୟ ତାଙ୍କ ପିଲାମାନଙ୍କୁ ଶୁଣାଇବେ । କୌଣସି ଲୋକ ଯେ ଏପରି ବୀରତ୍ୱପୂର୍ଣ୍ଣ କାର୍ଯ୍ୟ କରିପାରେ, ଏହା ପିଲାମାନେ ବିଶ୍ୱାସ କରି ପାରିବେ ନାହିଁ । ସେ ଗର୍ବରେ ନିଜର ନିଶ ମୋଡ଼ିଲେ । ରାଜସ୍ଥାନର ଚାରଣ (ଭାଟ) ମାନେ ଯେପରି ଘୋଘା-ବାପାଙ୍କ ବୀରତ୍ୱର ପ୍ରଶଂସା ଗାନ କରନ୍ତି, ସେହିପରି ତାଙ୍କ ବୀରତ୍ୱର ମଧ୍ୟ ପ୍ରଶଂସା ଗାନ କରିବେ ।

୧୨

## ସଜ୍ଜନ ଓ ଆକ୍ରମଣକାରୀ

ଦିବାସ୍ୱପ୍ନ ଦେଖିଲା ପରେ ସଜ୍ଜନ ଭାବି ଭାବି ଯାଉଛନ୍ତି—"ଏତେବେଳକୁ ସାମନ୍ତ ଝାଲୋରରେ ପହଞ୍ଚି ସାରିବଣି । ପିତୃଭକ୍ତ ସାମନ୍ତ ବାପାଙ୍କ କାର୍ଯ୍ୟ ପାଇଁ ଯଥେଷ୍ଟ ଗର୍ବ ଅନୁଭବ କରିବ । ଯେତେବେଳେ ବାପ, ମା ଓ ପୁଅ ତିନିହେଁ ଏକାଠି ବସି ଏ ସବୁ ବୀରତ୍ୱ କାହାଣୀ କଥାବାର୍ତ୍ତା ହେବେ, ତାହା କେଡ଼େ ଆନନ୍ଦପ୍ରଦ ମୁହୂର୍ତ୍ତ ନ ହେବ ! ସାମନ୍ତଙ୍କ ମା ହେଉଛନ୍ତି ପ୍ରକୃତରେ ଜଣେ ଚୌହାନବଂଶୀୟ ନାରୀ । ଏହାଠାରୁ କୌଣସି କମ୍ ଘଟଣାରେ ସେ ତୃପ୍ତି ଲାଭ କରି ନଥାନ୍ତେ । ଆଉ ସାମନ୍ତ, ଘୋଘାବାପାଙ୍କର ସବୁଠାରୁ ବଳି ଗେହ୍ଲା ନାତି ତ !"

ସଜ୍ଜନଙ୍କ ବୟସରେ ସେ ଠିକ୍ ତାଙ୍କ ପରି ଦେଖାଯାଉଥିଲେ ବୋଲି ଘୋଘାବାପା ଅନେକ ସମୟରେ କହନ୍ତି । ଘୋଘାବାପାଙ୍କ ବୟସରେ ଠିକ୍ ତାଙ୍କରି ପରି ଦେଖାଯିବେ ବୋଲି ଭାବି ସଜ୍ଜନ ମଧ୍ୟ ଖୁସି ହେଉଥାନ୍ତି । ଏହି ସବୁ କଥା ଭାବି ଭାବି ସଜ୍ଜନ ନିଜକୁ ଭୁଲିଯାଇ ପଦମଡ଼ୀ କେଉଁବାଟେ ଯାଉଛି ସେଥିପ୍ରତି ଲକ୍ଷ୍ୟ ଦେଇ ନ ଥାନ୍ତି । ପଦମଡ଼ୀ ନିଜ ଇଚ୍ଛା ଅନୁସାରେ ଚାଲିଥାଏ ।

ଏତେବେଳକୁ ମରୁଭୂମି ପଥ ଯଥେଷ୍ଟ ଆରାମ ବୋଧ ହେଉଥାଏ । ଅଷ୍ଟମ ଦିନ ସନ୍ଧ୍ୟାରେ ଗଛପତ୍ର ଥିବା ଗୋଟିଏ ପଥର ମୁଣ୍ଡିଆ ଦୂରରେ ଦୃଷ୍ଟିଗୋଚର ହେଲା । ପଦମଡ଼ୀକୁ ସେ ଦିଗକୁ ଯିବା ପାଇଁ ସଜ୍ଜନ ନିର୍ଦ୍ଦେଶ ଦେବା ପୂର୍ବରୁ ସେ ନିଜେ ବୁଲିପଡ଼ି ସେ ଦିଗକୁ ଯାତ୍ରା କଲା ।

ସେ ମୁଣ୍ଡିଆ ପାଖରେ ପହଞ୍ଚି ଦେଖିଲେ ଯେ,ମୁଣ୍ଡିଆ ଉପରେ କୌଣସି ଜନମାନବ ନଥିଲେ ସୁଦ୍ଧା ପ୍ରଚୁର ପାଣି ଥିବା ଗୋଟିଏ ଗଭୀର ବାମ୍ଫୀ ଅଛି । ସଜ୍ଜନଙ୍କ ପକ୍ଷରେ ଅବସାଦ ଦୂର କରିବା ପାଇଁ ଏହାହିଁ ଯଥେଷ୍ଟ । ସେ ପାଣି କାଢ଼ି ନିଜେ ପିଇଲେ ଓ ପଦମଡ଼ୀ ଯେତେ ଚାହିଁଲା ତାକୁ ପିଆଇଲେ । ତାପରେ ସେ ନିଜେ ଗାଧୋଇଲେ ଓ ପଦମଡ଼ୀକୁ ଧୋଇ ଧାଇ ଦେଲେ । ବହୁଦିନ ଧରି ପଦମଡ଼ୀ କୌଣସି ସବୁଜ ଘାସପତ୍ର ଖାଇ ନଥିଲା । ଉଭୟେ ଖାଇ ସାରିବା ପରେ ଗୋଟିଏ ଗଛ ତଳେ ବିଶ୍ରାମ ନେବା ପାଇଁ ଶୋଇଲେ । ଏହି ଦୁଇବନ୍ଧୁ, ଜଣେ ମନୁଷ୍ୟ ଓ ଅନ୍ୟଟି ପଶୁକୁ ଆକାଶରେ ତାରାମାନେ ଦେଖୁଥାନ୍ତି । ସୂର୍ଯ୍ୟୋଦୟ ପରେ ସଜ୍ଜନ ନିଦରୁ ଉଠିଲେ । ସେ ନିଦରୁ

ଉଠିବାର ଦେଖି ପଦମଣ୍ଡୀ ନିଜର ଆନନ୍ଦ ପ୍ରକାଶ କଲା । ସଜ୍ଜନ କହିଲେ, "ପଦମଣ୍ଡୀ, ଝିଅ ! ଆମକୁ ଯଥେଷ୍ଟ ବାଟ ଯିବାକୁ ହେବ ।"

ସଜ୍ଜନ ତାଙ୍କ ଚମଡ଼ା ଥଳୀରେ ପାଣି ପୂରାଇ ଯାତ୍ରା ଆରମ୍ଭ କଲେ ଏବଂ ପୂର୍ବ ପରି ବାଟ ଚିହ୍ନି ଯିବା ପାଇଁ ପଦମଣ୍ଡୀକୁ ଛାଡ଼ିଦେଲେ ।

ନବମ ଦିବସରେ କୌଣସି ଘଟଣା ନ ଥାଇ ଦିନଟି କଟିଗଲା । ରାତିରେ ସଜ୍ଜନଙ୍କର ମନେପଡ଼ିଲା ଯେ, ସେ ଉତ୍ତର ଦିଗକୁ ଯିବା ପରିବର୍ତ୍ତେ ପଶ୍ଚିମ ଦିଗକୁ ଯାଉଥିବାରୁ ଘୋଘାଗଡଠାରୁ ଦୂରେଇ ଯାଉଛନ୍ତି । ତହୁଁ ସେ ପଦମଣ୍ଡୀର ଆଖି ଉତ୍ତର ଦିଗକୁ ବୁଲେଇବାକୁ ଚେଷ୍ଟା କରିବାରୁ ସେ ବୁଲିଲା ନାହିଁ । ସଜ୍ଜନ ତହୁଁ ପ୍ରଭୁ ଶଙ୍କରଙ୍କୁ ନୀରବ ପ୍ରାର୍ଥନା କରି ପଦମଣ୍ଡୀକୁ ନିଜ ଇଚ୍ଛା ଅନୁଯାୟୀ ଯିବାକୁ ଛାଡ଼ିଦେଲେ । ସେ ନିଜର ଅସହାୟତା ବୁଝିପାରି କିପରି ଗୋଟିଏ ଜଣାଶୁଣା ବାଟକୁ ଯିବେ ସେଥିପାଇଁ ଉଦ୍‌ବିଗ୍ନ ହୋଇ ଉଠିଲେ ।

ଦଶମ ଦିନ ସେ ଶ୍ୟାମଳ ବୃକ୍ଷ ପରିପୂର୍ଣ୍ଣ ଏକ ସ୍ଥାନରେ ଆସି ପହଞ୍ଚିଲେ । କୌଣସି ଜଣା ଶୁଣା ପଥର ନିକଟବର୍ତ୍ତୀ ହେଲେ ବୋଲି ସଜ୍ଜନଙ୍କର ଏବେ ଧାରଣା ହେଲା ।

ବହୁ ଦିନ ଧରି ସେ ବ୍ୟସ୍ତ ହେବା ଛାଡ଼ିଦେଇଛନ୍ତି । ଗଜନୀର ନବାବ କେଉଁଠାରେ ଅଛି ତାହା କେବଳ ପ୍ରଭୁ ସୋମନାଥଙ୍କୁ ଜଣା । ଘୋଘାବାପାଙ୍କ ନିକଟରେ ସେ ପହଞ୍ଚିବା ସହଜ ହୋଇ ନ ଥିବ । ତାଙ୍କର ଅଭିଯାନ କଥା ସେ ମଧ୍ୟ ବାଟରେ ଅନ୍ୟ ରାଜାମାନଙ୍କୁ ଜଣାଇ ସେମାନଙ୍କୁ ତାଗିଦ କରି ଦେବେ । ପ୍ରଭୁ ସୋମନାଥଙ୍କ ବିରୁଦ୍ଧରେ ଯେ ଲଢ଼େଇ କରିବାକୁ ଆସୁଛି, କୌଣସି ବାଧା ନ ପାଇ ସେ କଣ ଏତେ ସହଜରେ ମରୁଭୂମି ଅତିକ୍ରମ କରି ପାରିବ !

ସଜ୍ଜନ ଏଗାର ଦିନ ହେଲା ମରୁଭୂମିରେ ଚାଲିଛନ୍ତି ଏବଂ ଅଠର ଦିନ ହେଲା ପ୍ରଭାସ ପାଟଣା ଛାଡ଼ିଲେଣି । କ୍ରମେ ଅଧିକରୁ ଅଧିକ ଗଛବୃକ୍ଷ ଦେଖାଗଲାଣି । ସପାଲଦାକ୍ଷ କଣ ପାଖ ହେଲାଣି ?

ହଠାତ୍ ପଦମଣ୍ଡୀ ରଡ଼ି ଦେଲା । ସଜ୍ଜନ ବିସ୍ମିତ ହୋଇ ଚାରିଆଡ଼କୁ ଦୃଷ୍ଟି ନିକ୍ଷେପ କଲେ । ଆକାଶରେ ଖଣ୍ଡିଏ କଳାମେଘ ଦ୍ରୁତଗତିରେ ଆସୁଥିବାର ସେ ଦେଖିଲେ । ଅଳ୍ପ ସମୟ ପରେ ସେ ବୁଝିପାରିଲେ ଯେ, ସେ ଯାହାକୁ ମେଘ ବୋଲି ଭାବୁଛନ୍ତି ତାହା ପ୍ରକୃତରେ ଦଳ ବାନ୍ଧି ଉଡ଼ୁଥିବା କଳା

କଳା ପକ୍ଷୀ । ପକ୍ଷୀଗୁଡ଼ାକ ତାଙ୍କ ଉପରେ ଦେଇ ପୂର୍ବ ଦିଗକୁ ଉଡ଼ିଯିବାରୁ ସେ ଜାଣିଲେ ଯେ ଏଗୁଡ଼ାକ ଶାଗୁଣା ।

ଏହା ଦେଖି ସେ ଅତିଶୟ ଭୟଭୀତ ହୋଇଗଲେ । ତାଙ୍କ ଛାତି ଥରିଉଠିଲା । କୌଣସି ଭୀଷଣ ଯୁଦ୍ଧଭୂମିରେ ଯୁଦ୍ଧ ପରିଧାନ ଛଡ଼ା ଅନ୍ୟତ୍ର ସେ ଏତେ ଶାଗୁଣା କେବେ ଏକାଠି ଦେଖି ନାହାନ୍ତି । ତେବେ ଏଠାରେ କଣ ଯୁଦ୍ଧ ଲାଗିଥିଲା ? ଗଜନୀର ହମୀର କଣ ମୁଲତାନ ଓ ଘୋଘାଗଡ଼ ଅତିକ୍ରମ କରି ସଫାଳଦାଷଠାରେ ପହଞ୍ଚିଗଲାଣି ।

ବହୁ ସମୟ ଧରି ତାଙ୍କ ଉପରେ ଉଡ଼ୁଥିବା ଶାଗୁଣାମାନଙ୍କର ଶବ୍ଦ ଶୁଣି ସେ କହିଲେ, "ପଦମଣ୍ଡୀ, ଖୁବ୍ ଲଢ଼େଇ ଲାଗି ଯାଇଛି ।" ପଦମଣ୍ଡୀ ତାଙ୍କ କଥା ବୁଝିଥିବା ପରି ମନେହେଲା । କାରଣ ଯେଉଁ ଦିଗକୁ ଶାଗୁଣା ଦଳ ଯାଉଥିଲେ ସେ ସେହି ଦିଗକୁ ଚାଲିଲା ।

ପଦମଣ୍ଡୀ କେତେ ବାଟ ଯିବା ପରେ ପୁଣି ଥରେ ରଡ଼ି କଲା । ତା ପିଠି ଆଉଁସି ଦେଇ ସଜ୍ଜନ କହିଲେ, "ପଦମଣ୍ଡୀ, କଥା କଣ ? କାହିଁକି ଡରୁଛୁ ?" କିଛି କ୍ଷଣ ପରେ ସଜ୍ଜନ ତାହାର ଭୟର କାରଣ ବୁଝିପାରିଲେ । ତାଙ୍କ ନାକରେ ପଚା ଶବର ଦୁର୍ଗନ୍ଧ ଲାଗିଲା ।

ପଦମଣ୍ଡୀ ଗୋଟିଏ ଚ୍ଛୋଟ ମୁଣ୍ଡିଆ ଉପରକୁ ଯାଇ ରହିଗଲା । ତାର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ଭୟରେ ଥରୁଥିବା ଜଣାଗଲା । କିଛି ଦୂରରେ ଥିବା ସମତଳ ଭୂମିରେ ପଲେ ଶାଗୁଣା ବସିଥିବା ଏବଂ ଆହୁରି ଦୂରରେ ଅନ୍ୟ ଶାଗୁଣାମାନେ ଦକ୍ଷିଣକୁ ଉଡ଼ୁଥିବା ବା ତଳକୁ ଓହ୍ଲାଇ ବସୁଥିବା ଦେଖାଗଲା ।

ଏ ସବୁର କାରଣ ଜାଣିବା ସଜ୍ଜନଙ୍କ ପକ୍ଷରେ କଷ୍ଟକର ହେଲା ନାହିଁ । ସେ ଅସ୍ୱସ୍ତି ଅନୁଭବ କଲେ । କେତେକ ଶବ ତାଙ୍କ ଆଗରେ ସଢ଼ି ପଡ଼ିଥାଏ ଏବଂ ଅନ୍ୟ କେତେକ ବାଲିରେ ଅଧା ପୋତି ହୋଇଥାଏ, ଯେପରିକି କୌଣସି ବିରାଟ ସୈନ୍ୟବାହିନୀ ମରୁଭୂମି ଅତିକ୍ରମ କରୁଥିବା ସମୟରେ ସେମାନଙ୍କର ମୃତ୍ୟୁ ହୋଇଛି ।

ପଦମଣ୍ଡୀ ଆଉ ଆଗକୁ ଗଲା ନାହିଁ । ସଜ୍ଜନ ବାଧ୍ୟ ହୋଇ ଓହ୍ଲାଇ ଆଗେ ଆଗେ ଚାଲିଲେ । ପଲ ପଲ ଶାଗୁଣାଙ୍କୁ ଘଉଡ଼େଇ ସେ ଯିବାକୁ ଚେଷ୍ଟା କଲେ । କେତେକ ଘୁଞ୍ଚିଲେ ନାହିଁ, ଆଉ କେତେକ ଉପରେ ଉଡ଼ିଲେ । ଏହି

ସବୁ ଶବ କାହାର ତାହା ସଙ୍କନ ଜାଣି ପାରିଲେ ନାହିଁ । ଏହା ମଧ୍ୟରେ ହାତୀ, ଓଟ ଓ ଘୋଡ଼ାଙ୍କର ଶବ ମଧ୍ୟ ଥିଲା ।

ଏ ଶବଗୁଡ଼ାକ ଯୁଦ୍ଧରେ ମୃତ୍ୟୁ ବରଣ କରିଥିବା ବ୍ୟକ୍ତିମାନଙ୍କର ନୁହେଁ ବୋଲି ସେ ଜାଣିପାରିଲେ । ବୋଧହୁଏ କୌଣସି ସୈନ୍ୟବାହିନୀ ମରୁଭୂମି ଅତିକ୍ରମ କରୁଥିବା ସମୟରେ ପ୍ରଖର ସୂର୍ଯ୍ୟତାପ ଓ ବାଲି ଝଡ଼ ସହ୍ୟ କରି ନପାରି ଏବଂ ପିଇବାକୁ ପାଣି ନ ପାଇ କେତେକ ମରିଯାଇଛନ୍ତି । ସେମାନଙ୍କ ଶବକୁ ପଛରେ ପକାଇଦେଇ ଅନ୍ୟମାନେ ହୁଏତ ଆଗକୁ ଅଗ୍ରସର ହୋଇଛନ୍ତି । ମରୁଭୂମି ଅତିକ୍ରମ କରୁଥିବା ସୈନ୍ୟବାହିନୀ କେତେ ବିଶାଳ ତାହା ସଙ୍କନ ଏଇଥିରୁ କଳ୍ପନା କରୁଥାନ୍ତି ।

ଦୁର୍ଗନ୍ଧ ଓ ନିଜର ଭୟକୁ ଖାତିର ନ କରି ସେ ଆଗକୁ ଯିବାକୁ ଠିକ୍ କଲେ । ଏତେ ବିରାଟ ସୈନ୍ୟବାହିନୀ କାହାର ହୋଇପାରେ ? ସମ୍ପାଳଦକ୍ଷ, ଝାଲେର ବା ଶତୋର ରଜାଙ୍କର ଏହି ସୈନ୍ୟବାହିନୀ ହୋଇ ନ ପାରେ । ତା ହେଲେ ଏହା କଣ ଗଜନୀର ହମୀରର ସୈନ୍ୟବାହିନୀ ? ଏହି ଭୟାବହ ଦୃଶ୍ୟ ଅଧିକ ସମୟ ଦେଖି ନ ପାରି ସୈନ୍ୟବାହିନୀ ଯାଇଥିବା ରାସ୍ତାରେ ସେ ଆଗକୁ ଚାଲିଲେ । ପଦମଡ଼ୀ ମଧ୍ୟ ଏହି ଭୟାବହ ସ୍ଥାନ ତ୍ୟାଗ କରି ଆଗକୁ ଚାଲିଲା ।

ସନ୍ଧ୍ୟା ସମୟକୁ ସେ କିଛି ଦୂରରେ ଗୋଟିଏ ଆଶ୍ରୟ ସ୍ଥଳ ଦେଖି ସେହି ଆଡ଼କୁ ଚାଲିଲେ । କେତେକ ଗଛ ଗହଳରେ ଗୋଟିଏ ଛୋଟ ପଡ଼ା ଗାଁ । ସେ ତା ଭିତରକୁ ଯାଇ କୌଣସି ପଶୁ ବା ମଣିଷ ନ ଦେଖି ଭୟଭୀତ ହେଲେ । ଘରର ଦ୍ୱାରଗୁଡ଼ିକ ମେଲା । କେତେଗୁଡ଼ିଏ ଛାତ ପଡ଼ିଯାଇଛି । ଗ୍ରାମର ମନ୍ଦିରଟି ପୂରାପୂରି ଭାଙ୍ଗି ଯାଇଛି । ପୋଖରୀର ପାଣି ପଙ୍କୁଆ ହୋଇଯାଇଥିବାରୁ ବନ୍ୟ ପଶୁ ଏଠାରେ ଧୂଆ ହୋଇଥିବା ସେ ଜାଣିଲେ । କୂଅରେ ମଧ୍ୟ ପାଣି ଯଥେଷ୍ଟ ନଥିଲା । ସର୍ବୋପରି ମରୁଭୂମିର ଏହି ଅଂଶ ସତେ ଯେପରି ବିରାଟ ଏକ ଶ୍ମଶାନରେ ପରିଣତ ହୋଇଛି ।

ଏହି ଭୟାବହ ଧ୍ୱଂସଲୀଳା କଳ୍ପନା କରି ସଙ୍କନଙ୍କ ପରି ସାହସୀ ଲୋକ ମଧ୍ୟ ଡରିଗଲେ । ସେ ଶୀଘ୍ରକରେ କୂଅରୁ ପାଣି କାଢ଼ି ନିଜେ ଗାଧୋଇଲେ ଓ ପଦମଡ଼ୀକୁ ଗାଧୋଇ ଦେଲେ । ସେ କିଛି ଖାଇପାରିଲେ ନାହିଁ, କିନ୍ତୁ ପଦମଡ଼ୀକୁ ପେଟ ପୂରା ଖାଇବାକୁ ଦେଲେ । ରାତି ହେବାରୁ ଏହି ସ୍ଥାନ ତାଙ୍କ ମନରେ

ଅତିଶୟ ଭୟ ସୃଷ୍ଟି କଲା । ଭୀଷଣ ଅସ୍ୱସ୍ତି ମଧ୍ୟରେ ଏହି ସ୍ଥାନରେ ହିଁ ତାଙ୍କୁ ରାତି ଯାପନ କରିବାକୁ ପଡ଼ିଥିଲା ।

ପର ଦିନ ସେ ବାହାରିବା ପାଇଁ ପ୍ରସ୍ତୁତ ହେଲେ । ହୁଏତ ସେ ଅନ୍ୟ କୌଣସି ବାଟ ଦେଇ ଯାଇଥାନ୍ତେ, କିନ୍ତୁ ଏହି ସୈନ୍ୟବାହିନୀ କାହାର ତାହା ଜାଣିବା ପାଇଁ ତାଙ୍କର ପ୍ରବଳ ଆଗ୍ରହ ହେବାରୁ ସେ ସୈନ୍ୟମାନେ ଯାଇଥିବା ରାସ୍ତାରେ ଗଲେ । ଘୋଘାଗଡ଼ ଓ ସମ୍ପାଲଦିଷର ଅବସ୍ଥା କଣ ହୋଇଥିବ ଏହା ଭାବିବାକୁ ମଧ୍ୟ ସେ ଭୟ କଲେ ।

ସଜ୍ଜନ ପ୍ରାୟ ପାଞ୍ଚ ଘଣ୍ଟା ଯିବା ପରେ ଗୋଟିଏ ବିରାଟ ବାଲିଝଡ଼ ମଧ୍ୟରୁ କେତେକ ଉଷ୍ଟ୍ରାରୋହୀ ତାଙ୍କ ଆଡ଼କୁ ଦ୍ରୁତ ବେଗରେ ଆସୁଥିବାର ସେ ଦେଖିଲେ । ପଦମର୍ଦ୍ଦୀ ପ୍ରଥମେ ଲୁଙ୍ଗୁଡ଼ି ଟେକି ଅନ୍ୟ ବାଟରେ ପଳାଇ ଯିବାକୁ ଚାହିଁଥିଲେ ସୁଦ୍ଧା ଏହି ଅବସରରେ ଉଷ୍ଟ୍ରାରୋହୀମାନେ ତାଙ୍କ ନିକଟରେ ଆସି ପହଞ୍ଚିଗଲେ ।

ଏହି ଦଳରେ ସାତଗୋଟି ଓଟ ଥିଲେ । ପାଞ୍ଚଗୋଟି ଓଟ ଉପରେ ଦାଢ଼ି ଥିବା ପାଞ୍ଚଜଣ ଭୀଷଣାକୃତି ଲୋକ ବସି, ଚମତ୍କାର ପୋଷାକ ପିନ୍ଧି ନୂତନପ୍ରକାରର ଅସ୍ତ୍ରଶସ୍ତ୍ର ଧାରଣ କରିଥାନ୍ତି । ଅନ୍ୟ ଦୁଇଟି ଓଟରୁ ଗୋଟିକରେ ବସିଛି ସେହି ଦଳର ନେତା ଓ ଅନ୍ୟଟିରେ ତାର ପଥନିର୍ଦ୍ଦେଶକ ଗୋଟିଏ ସ୍ଥାନୀୟ ଗାଉଁଆଲ । ନାୟକର ଚେହେରା ଡେଙ୍ଗା, ଗୋରା ଓ ଚେହେରାରୁ ହମୀରର ସୈନ୍ୟବାହିନୀର ଜଣେ ଉଚ୍ଚପଦସ୍ଥ କର୍ମଚାରୀ ପରି ମନେ ହେଉଥାଏ ।

ନାୟକର ନିର୍ଦ୍ଦେଶମତେ ତାର ଦଳ ସଜ୍ଜନଙ୍କୁ ଘେରିଗଲେ ଓ ପଥନିର୍ଦ୍ଦେଶକ ତାଙ୍କୁ ନାନାପ୍ରକାର ପ୍ରଶ୍ନ କଲା, "ହେ, ତୁ ଏବାଟେ ବାଟ ଜାଣିଚୁ ?"

ଯେଉଁଭଳି ତାଚ୍ଛଲ୍ୟ ଭାବେ ତାଙ୍କୁ ପଚରା ଯାଉଥିଲା, ତହିଁରେ ସଜ୍ଜନ ଅପମାନିତ ବୋଧ କରୁଥିଲେ ସୁଦ୍ଧା ସେଥିପ୍ରତି ଭ୍ରୂକ୍ଷେପ ନ କରି ଗମ୍ଭୀର ଭାବେ ଜବାବ ଦେଲେ, "ହଁ, କିନ୍ତୁ ତମେ କିଏ ?"

ଦଳର ନାୟକକୁ ପଥନିର୍ଦ୍ଦେଶକ ତାଙ୍କ ଜବାବ ଜଣାଇଦେବାରୁ ସେ ହସି ହସି କହିଲା, "ଆମେ କିଏ ମୁହୂର୍ତ୍ତିକ ମଧ୍ୟରେ ତତେ ଜଣାପଡ଼ିବ । ଆଗ ଗୁଜରାଟ ଯିବାକୁ ବାଟ ବତା ।"

ସଜ୍ଜନ—ଗୁଜରାଟ କିଏ ଯିବ ?

ଉତ୍ତର—ଆମେ ।

ହଠାତ୍ ସଜ୍ଜନଙ୍କ ମୁଖ ଉଜ୍ଜଳ ଦେଖାଗଲା ।

ଏହି ମ୍ଳେଚ୍ଛ ସୈନ୍ୟବାହିନୀ ପ୍ରଭୁ ସୋମନାଥଙ୍କ ମନ୍ଦିର ଧ୍ୱଂସ କରିବା ଉଦ୍ଦେଶ୍ୟରେ ଗୁଜରାଟ ଯିବାକୁ ଚାହୁଁଛନ୍ତି । ହୁଏତ ତାଙ୍କର (ସଜ୍ଜନଙ୍କର) ଯେପରି ଏମାନଙ୍କ ସହିତ ଭେଟ ହୁଏ ସେହି ଉଦ୍ଦେଶ୍ୟରେ ପ୍ରଭୁ ନିଜେ ଉକ୍ତ ସୈନ୍ୟବାହିନୀକୁ ଏଠାକୁ ଆଣିଛନ୍ତି । ସେ ମନେ ମନେ ହସିଲେ । ଗଜନୀର ହମୀରକୁ ଧ୍ୱଂସ କରିବା ନିମନ୍ତେ ପ୍ରଭୁ ଶଙ୍କର ତାଙ୍କୁ ଯେଉଁ ଆଦେଶ ଦେଇଥିଲେ ତାହା କାର୍ଯ୍ୟରେ ପରିଣତ କରିବା ପାଇଁ ଏହାଠାରୁ ଅଧିକ ସୁଯୋଗ କଣ ମିଳିପାରେ ?

ସଜ୍ଜନ ଉଚ୍ଚ ସ୍ୱରରେ ଉତ୍ତର ଦେଲେ, "ଭଲକଥା, ମୁଁ ତମମାନଙ୍କୁ ସେଠାକୁ ନେଇଯିବି ।"

ପ୍ରଶ୍ନ—ତୁ କଣ ସତରେ ବାଟ ଜାଣୁ ?

ସଜ୍ଜନ—ହଁ, ମୁଁ ତ ଗୁଜରାଟରୁ ଆସୁଛି ।

ପ୍ରଶ୍ନ—ପହଞ୍ଚିବାକୁ କେତେ ଦିନ ଲାଗିବ ?

ସଜ୍ଜନ—ବାର ଦିନରୁ ପନ୍ଦର ଦିନ ମଧ୍ୟରେ ।

ନାୟକ ଏହା ଶୁଣି ଖୁସି ହୋଇ ପ୍ରହରୀ ଜରିଆରେ ସଜ୍ଜନଙ୍କୁ ଆଦେଶ ଦେଲା, "ତା ହେଲେ ଆମ ସାଙ୍ଗରେ ଆସେ ।"

'ଚାଲ' ବୋଲି ସଜ୍ଜନ ଉତ୍ତର ଦେଲେ ।

ସେ ବୁଝିଲେ ଯେ, ଏହି ସୈନ୍ୟବାହିନୀ ସହିତ ଯିବା ଛଡ଼ା ତାଙ୍କ ପକ୍ଷରେ ଅନ୍ୟ ଉପାୟ ନାହିଁ । ପ୍ରଭୁ ସୋମନାଥଙ୍କ ଆଦେଶ ଏକାକୀ ପୂରଣ କରିବା ନିମିତ୍ତ ଏହା ହେଉଛି ତାଙ୍କ ପକ୍ଷେ ସୁବର୍ଣ୍ଣ ସୁଯୋଗ । ଏହା ଭାବି ସେ ଆନନ୍ଦ ଅନୁଭବ କଲେ ।

କ୍ରମେ ସଜ୍ଜନ ଭଲ ଭାବେ ବୁଝିଲେଯେ ସେ ପଥନିର୍ଦ୍ଦେଶକ ହିସାବରେ ଯାଇ ସୁଦ୍ଧା ପ୍ରକୃତ ପକ୍ଷରେ ସେ ସେମାନଙ୍କର ବନ୍ଦୀ । ଦଳର ନେତା ତାଙ୍କ ଉପରେ କଡ଼ା ନଜର ରଖୁଛି; ଅବଶ୍ୟ ପଦମର୍ଦ୍ଦୀକୁ ଯଥେଷ୍ଟ ପାଣି ପିଇବାକୁ ଦିଆଯାଉଛି ଏବଂ ତାଙ୍କୁ ଖାଇବାକୁ ଡାକି ଯଥେଷ୍ଟ ଭଦ୍ରୋଚିତ କଥାବାର୍ତ୍ତା କରାଯାଉଛି । କିନ୍ତୁ ସଜ୍ଜନ କୌଣସି ବିଷୟ ଜାଣିବାକୁ ଚାହିଁଲେ ସେମାନେ ତାଙ୍କୁ ଉପରଠାଉରିଆ ଉତ୍ତର ଦେଉଛନ୍ତି ।

ସେମାନଙ୍କୁ ପ୍ରତାରିତ କରିବା ପାଇଁ ସଜ୍ଜନ ଗୋଟିଏ ଉପାୟ ପାଞ୍ଚିଲେ । ସେମାନେ ଖାଇ ସାରିବା ପରେ ସଜ୍ଜନ ଉଠିପଡ଼ି କହିଲେ, "ମୁଁ ବର୍ତ୍ତମାନ ଯାଉଛି ।"

"କୁଆଡେ ଯାଉଛ ?" ପଥ ନିର୍ଦ୍ଦେଶକ ପଚାରିଲା ।

ସଜ୍ଜନ ଉତ୍ତର ଦେଲେ, "ମୁଁ ଗଜନୀର ହମୀରଙ୍କ ସହିତ ଦେଖା କରିବାକୁ ଯାଉଛି ।"

ସେମାନେ ପାଟି କରି ହସିଉଠି କହିଲେ, "ତୁ ତାଙ୍କ ସହିତ କାହିଁକି ଦେଖା କରିବୁ ?"

ସଜ୍ଜନ ଉତ୍ତର ଦେଲେ, "ମୁଁ ସେ ସବୁ କଥା ତୁମମାନଙ୍କୁ କହିବି ନାହିଁ । କିନ୍ତୁ ମୁଁ ତାଙ୍କ ସହିତ ଦେଖା କଲେ ତାଙ୍କ କାର୍ଯ୍ୟ ସହଜ ହେବ ।"

ନାୟକ—ତୁ କିଏ ?

ସଜ୍ଜନ—ମୁଁ ଏହି ମରୁଭୂମିର ପଥପ୍ରଦର୍ଶକ । ମୋ କାମ ଯାତ୍ରୀମାନଙ୍କୁ ଠିକ୍ ବାଟ ଦେଖାଇବା ।

ପଥନିର୍ଦ୍ଦେଶକ ତାଙ୍କ କଥା ସେମାନଙ୍କୁ ବୁଝାଇବା ପରେ ସେମାନେ ନିଜ ଭିତରେ ପରାମର୍ଶ କରି ତାଙ୍କୁ ହମୀରଙ୍କ ନିକଟକୁ ନେଇଯିବେ ବୋଲି କହିଲେ ।

ତାଙ୍କ ଯୋଜନା ସଫଳ ହେବାକୁ ଯାଉଥିବାରୁ ସଜ୍ଜନ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ତାଙ୍କ ଆଶଙ୍କା ମଧ୍ୟ ଦୃଢ଼ୀଭୂତ ହେଲା । ମୁଲତାନ, ନାହୁଲ, ସପାଲଦକ୍ଷ ଓ ଆଜମୀର ଦେଇ ହମୀର ଆସିଥିବ । ଏହି ରାଜ୍ୟର ଶାସକ-ମାନଙ୍କ ଅବସ୍ଥା କଣ ହେଲା ? ସେମାନେ କଣ ହାରିଯାଇ ପ୍ରାଣ ଦେଲେ ନା ଆକ୍ରମଣକାରୀକୁ ସେମାନଙ୍କ ରାଜ୍ୟ ମଧ୍ୟ ଦେଇ ଯିବାକୁ ଛାଡ଼ିଦେଲେ ? ହମୀର କଣ ଘୋଘାଗଡ଼ ଅଧିକାର କଲା ? ଏ ସବୁର ଉତ୍ତର ସଜ୍ଜନ ଜାଣିବାକୁ ଚାହୁଁଥିଲେ ସୁଦ୍ଧା ପଚାରିବାକୁ ତାଙ୍କର ସାହସ ହେଲା ନାହିଁ ।

## ୧୩

# ଗଜନୀର ହମୀର

ଏହି ଦଳ ଖୁବ୍ ଶୀଘ୍ର ଶୀଘ୍ର ଯାତ୍ରା କଲେ । ସନ୍ଧ୍ୟା ହୋଇପିବାର ଯଥେଷ୍ଟ ପରେ ସେମାନେ ଗୋଟିଏ ବିରାଟ ଗ୍ଛାଉଣୀରେ ପହଞ୍ଚିଲେ । ଏହା ସାଧାରଣ ଗ୍ଛାଉଣୀ ନୁହେଁ—ଠିକ୍ ଗୋଟିଏ ବଡ଼ ସହର ପରି । ଏହିପରି ଗ୍ଛାଉଣୀ ସଜ୍ଜନ ପୂର୍ବରୁ କେବେ ଦେଖି ନ ଥିଲେ । ଚାରିଆଡ଼େ ଦଳ ଦଳ ଲୋକ ପ୍ରବଳ ଶୀତରୁ ରକ୍ଷା ପାଇବା ପାଇଁ ନିଆଁ ଚାରିପାଖେ ବସି ଶରୀରର ଉଷ୍ଣତା ରକ୍ଷା କରୁଥାନ୍ତି । ଗ୍ଛାଉଣୀର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ହଜାର ହଜାର ଆଲୁଅ ଜଳୁଥିବାରୁ ଆଖିକୁ ଯେ ପର୍ଯ୍ୟନ୍ତ ଦେଖାଯାଉଥାଏ, ସେ ପର୍ଯ୍ୟନ୍ତ ଏହି ଗ୍ଛାଉଣୀ ବିଶୁଥାଏ । ଅସୁମାରି ମଣିଷ, ହାତୀ, ଓଟ, ଘୋଡ଼ା ଏବଂ ଅନ୍ୟାନ୍ୟ ପଶୁ ଏହି ସୈନ୍ୟବାହିନୀରେ ଥିଲେ ।

ଏହି ଗ୍ଛାଉଣୀରେ ବିଭିନ୍ନ ଆକାର ଏବଂ ପ୍ରକାରର ପ୍ରାୟ ଦଶ ହଜାର ପତାକା ପବନରେ ଉଡ଼ୁଥାଏ ଏବଂ ହଜାର ହଜାର ତମ୍ବୁ ପଡ଼ିଥାଏ । ମଣିଷ ଏବଂ ପଶୁମାନଙ୍କର ମୁଖରୋଳ ବହୁ ଦୂର ପର୍ଯ୍ୟନ୍ତ ଶୁଣାଯାଉଥାଏ ।

ଏହା ସବୁ ଦେଖି ସଜ୍ଜନଙ୍କ ମନରେ ଭୟ ହେଲା । ସୈନ୍ୟବାହିନୀ ଏତେ ବଡ଼ ହୋଇପାରେ ବୋଲି ତାଙ୍କର ଧାରଣା ନ ଥିଲା । ତାଛଡ଼ା ଗଜନୀର ହମୀର ଏତେ ବିରାଟ ସୈନ୍ୟବାହିନୀ ସହ ଏତେ ବାଟ ଆସି, ସ୍ଥାନେ ସ୍ଥାନେ ରହି ଶେଷକୁ ଯେ ପାଣି ନ ଥିବା ଏହି ବିରାଟ ମରୁଭୂମିରେ ପହଞ୍ଚିବ, ତାହା ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ ।

ମୁହୂର୍ତ୍ତକ ପାଇଁ ସଜ୍ଜନଙ୍କର ସାହସ ଓ ବିଶ୍ୱାସ ଉଭେଇ ଗଲେ ମଧ୍ୟ ପ୍ରଭୁ ସୋମନାଥଙ୍କର ଆଦେଶ ସ୍ମରଣ କରିବା ପରେ ତାଙ୍କର ପୂର୍ବତେଜ ପୁଣି ଫେରି ଆସିଲା । ପ୍ରଭୁ ଯେବେ ଆକ୍ରମଣକାରୀକୁ ଧ୍ୱଂସ କରିବାକୁ ଠିକ୍ କରିଛନ୍ତି ତାକୁ କେହି ରକ୍ଷା କରି ପାରିବେ ନାହିଁ । ଦଶମୁଣ୍ଡ ଓ କୋଡ଼ିଏ ହାତ ବିଶିଷ୍ଟ ରାବଣ ପରି ବିରାଟ ବ୍ୟକ୍ତି ଯେତେବେଳେ ଧ୍ୱଂସ ପାଇଗଲା, ତା ତୁଳନାରେ ଗଜନୀର ହମୀର ବା କି ଛାର ! ହୁଏତ ତାଙ୍କ ପରି ଜଣେ ନଗଣ୍ୟ ରାଜପୁତ୍ର ହାତରେ ହମୀରର ଜୀବନ ଯିବା ଭଗବାନ ଚାହାନ୍ତି ।

ଏହି ଦଳର ନାୟକ ବୋଧହୁଏ ଜଣେ ଉଚ୍ଚପଦସ୍ଥ ସାମରିକ କର୍ମଚାରୀ । ତାର ଆଦେଶରେ ପ୍ରହରୀମାନେ ବାଟ ଛାଡ଼ି ଦେଲେ । ଛାଉଣୀର ସୈନ୍ୟମାନେ ତାଙ୍କୁ ଆସୁଥିବା ଦେଖି ନିଜ କପାଳରେ ଡାହାଣ ହାତ ମାରି ଓ ନତ ମସ୍ତକ ହୋଇ ସମ୍ମାନ ପ୍ରଦର୍ଶନ କଲେ ।

ଏଠାରେ ସଜ୍ଜନ ନିଜ ଆଖିରେ ବିଭିନ୍ନ ଦେଶର ସୈନ୍ୟ ଓ ଅଦ୍ଭୁତ ସାମରିକ ଅସ୍ତ୍ରମାନ ଦେଖିବାକୁ ପାଇଲେ । ଖାଇବା ଓ ପିଇବାର ଅଭାବ ନାହିଁ । ପ୍ରତ୍ୟେକେ ଆମୋଦ ପ୍ରମୋଦରେ ନିମଗ୍ନ ।

ସଜ୍ଜନ ଅତ୍ୟନ୍ତ ଅସ୍ୱସ୍ତି ଅନୁଭବ କଲେ । ରାଜସ୍ଥାନର ବୀର ଯୋଦ୍ଧାମାନେ କଣ ଧ୍ୱଂସ ହୋଇଗଲେ ? ଘୋଘାଗଡ଼ର ଅବସ୍ଥା କଣ ହେଲା । ଘୋଘାବାପା କେଉଁଠାରେ ? ଏ ସବୁ ପ୍ରଶ୍ନର ଉତ୍ତର ନ ପାଇ ସେ ଅତ୍ୟନ୍ତ ବ୍ୟସ୍ତ ହେଲେ ଏବଂ ତାଙ୍କର ନିଶ୍ୱାସ ବନ୍ଦ ହୋଇଗଲା ପରି ବୋଧ ହେଲା ।

ନାୟକ ତାଙ୍କୁ ଓଟରୁ ଓହ୍ଲାଇବା ପାଇଁ ଆଦେଶ ଦେଲା । ସଜ୍ଜନ ସାଙ୍ଗେ ସାଙ୍ଗେ ଓହ୍ଲାଇପଡ଼ି କାଳେ ପଦମଡ଼ୀକୁ କିଏ ନେଇଯିବ ସେଥିପାଇଁ କହିଲେ, "ଏପରି ଓଟ ସଂସାରରେ ନାହିଁ । ଏହାର ବିନା ସାହାଯ୍ୟରେ ମୁଁ ବାଟ ଦେଖାଇ ପାରିବି ନାହିଁ ।"

"ତୁମ ଓଟ ତୁମକୁ ପରେ ଫେରିଆସିବ ।" ନାୟକର ଏହି ଆଦେଶ ସଜ୍ଜନଙ୍କୁ ଜଣାଇଦିଆଗଲା ।

ସଙ୍ଗେ ସଙ୍ଗେ "ମୋ ସାଙ୍ଗରେ ଆସ" ବୋଲି ନାୟକ ସଜ୍ଜନଙ୍କୁ ନିର୍ଦ୍ଦେଶ ଦେଇ ତମ୍ବୁ ଭିତରକୁ ପଶିଲା ।

ସେ ନାୟକର ପଛେ ପଛେ ଗଲେ । ତାଙ୍କ ପଛରେ ଦୁଇଜଣ ପ୍ରହରୀ ଯାଉଥାନ୍ତି । ଏହି ତିନିଜଣଙ୍କର ସଜ୍ଜନଙ୍କ ଉପରେ ଅତି କଡ଼ା ନଜର ଥାଏ । ସେ ଯେବେ ପଳେଇଯିବାକୁ ଚେଷ୍ଟା କରିଥାନ୍ତେ ବା କୌଣସି ଯୁକ୍ତିତର୍କ କରି-ଥାନ୍ତେ, ତା ହେଲେ ସାଙ୍ଗେ ସାଙ୍ଗେ ହୁଏତ ତାଙ୍କର ମୁଣ୍ଡ କାଟ ହୋଇଥାନ୍ତା ।

ଅଳ୍ପ ସମୟ ପରେ ସେମାନେ ପଶୁ ଚମଡ଼ାରେ ତିଆରି ଗୋଟିଏ ବିରାଟ ତମ୍ବୁକୁ ଆସିଲେ । ଏହାର ଚାରିପାଖେ ସୈନ୍ୟମାନେ ଖଣ୍ଡା ଉଞ୍ଚାଇ ରଖି ପାଚେରି ଭଳି ଠିଆହୋଇଥାନ୍ତି । ଏହି ମଣିଷ ପାଚେରି ପଛକୁ ଧନୁଶର ଧରି କିଛି ବାଟ ଅନ୍ତରରେ ଜଣେ ଜଣେ ସୈନ୍ୟ ଠିଆ ହୋଇଥାନ୍ତି । ଏହି ଦୁର୍ଗ ଭିତରକୁ ଯିବା

ପାଇଁ ସୁସଜ୍ଜିତ ସୈନ୍ୟଦଳ ଭିତର ଦେଇ ବାହାରୁ ଗୋଟିଏ ରାସ୍ତା ଥାଏ । ସଜ୍ଜନଙ୍କୁ ନେଇ ଉକ୍ତ କର୍ମଚାରୀ ସେଠାକୁ ଯିବାରୁ ପ୍ରତ୍ୟେକ ଲୋକ ନଇଁପଡ଼ି ତାଙ୍କୁ ଅଭିବାଦନ କଲେ ।

ସେମାନେ ତମ୍ବୁ ନିକଟରେ ପହଞ୍ଚିବା କ୍ଷଣି, ସେମାନଙ୍କ ଆସିଥିବା କଥା ପ୍ରହରୀ ଭିତରେ ଯାଇ ଖବର ଦେଲା । ସେମାନଙ୍କୁ ଭିତରକୁ ଛାଡ଼ିଦେବାପାଇଁ ଆସିଲା ହୁକୁମ । ଦୁଇଜଣ ବିଶାଳକାୟ ହବ୍‌ଶୀ (ନିଗ୍ରୋ) ପ୍ରହରୀ ତମ୍ବୁର ଦ୍ୱାର ଖୋଲି ଦେଲେ ।

ସେମାନେ ତମ୍ବୁରେ ପ୍ରବେଶ କରିବା ପରେ ଯେଉଁ ଆଡ଼ମ୍ବର ପୂର୍ଣ୍ଣ ପରିବେଶ ସଜ୍ଜନ ଦେଖିଲେ, ସେଥିରେ ଆଶ୍ଚର୍ଯ୍ୟ ହୋଇ ନିଜ ଆଖି ମଳିଲେ । ତିରିଶଜଣ ବ୍ୟକ୍ତି ଆଲୁଅ ଧରି ମୂର୍ତ୍ତି ପରି ଠିଆହୋଇଥାନ୍ତି । ଠିକ୍ ପ୍ରବେଶ ଦ୍ୱାର ନିକଟରେ ଦୁଇଜଣ ବିଶାଳକାୟ ନିଗ୍ରୋ ତରବାରି ଧରି ଦଣ୍ଡାୟମାନ । ତମ୍ବୁ ମଝିରେ ଜଳୁଥିବା ତେଲ ଦୀପ ଯୋଗୁ ଭିତରର ଯାକଯମକ ବେଶ୍ ଦେଖା-ଯାଉଥିଲା ।

ତମ୍ବୁର ଅନ୍ୟ ପାଖରେ ପଡ଼ିଥିବା ବାଘ ଓ ହରିଣ ଚମଡ଼ାରେ ତିଆରି ଗୋଟିଏ ବିରାଟ ସତରଞ୍ଜି ଉପରେ ଜଣେ ବ୍ୟକ୍ତି ବସିଥାଏ । ସେ ପ୍ରବଳ ପ୍ରତାପୀ ବୋଲି ଜଣାଯାଉଥାଏ । ସେ ଗୋଟାଏ ବଡ଼ ତକିଆକୁ ଆଉଜି ବସିଥାଏ ଏବଂ ତାର ଲମ୍ବା ନାଲି ଦାଢ଼ି ତଳକୁ ଲମ୍ବିଥାଏ । ଭ୍ରୂଲତା ତଳେ ଦୁଇଟି ବଡ଼ ବଡ଼ କଳା ଭୟଙ୍କର ଆଖି । ବାଁ ହାତରେ ସେ ଧରିଥାଏ ଗୋଟିଏ ବଡ଼ ଖଣ୍ଡା ।

ସେ ଦେହରେ ଚମତ୍କାର ପୋଷାକ ଓ ମୁଣ୍ଡରେ ମଣିମୁକ୍ତା ଖଚିତ ପଗଡ଼ି ପିନ୍ଧିଥାଏ । ତାର ଡାହାଣ ପାଖରେ ବସିଥିବା ଜଣେ ମଧ୍ୟମବୟସ୍କ ମୁସଲମାନର କାନରେ କଲମ ଖୋସା ହୋଇଥାଏ ଏବଂ ଗୁଡ଼ିରେ ଏକ ଦୁଆତ ଓହଳିଥାଏ । ତା ପାଖରେ ବସିଥାଏ ଜଣେ ଖର୍ବକାୟ ଶକ୍ତିଶାଳୀ ଯୋଦ୍ଧା ଓ ଜଣେ ଯୁବକ ସୈନ୍ୟ । ସେହି ଦୁଇଜଣ ରାଜପୁତ୍ର ପରି ଦେଖାଯାଉଥାନ୍ତି ।

ଏହି ବିରାଟକାୟ ବ୍ୟକ୍ତିର ବାଁ ପାଖକୁ ବସିଥାଏ ଆଉ ଜଣେ ମୁସଲମାନ ଯୋଦ୍ଧା । ସେ ଏକ ତକିଆକୁ ଆଉଜିଥାଏ ଏବଂ ତାର ପୋଷାକ ପତ୍ରରୁ ସେ ଜଣେ ଉଚ୍ଚପଦସ୍ଥ ସାମରିକ କର୍ମଚାରୀ ଭଳି ଦେଖାଯାଉଥାଏ ।

ଆଗନ୍ତୁକମାନଙ୍କୁ ଦେଖି ନାଲିଦାଢ଼ିଆ ବ୍ୟକ୍ତିଟି ସିଧା ହୋଇ ବସିଲା ଏବଂ ଉଚ୍ଚ ସ୍ୱରରେ ନାୟକଙ୍କୁ ନିକଟକୁ ଆସିବାକୁ ସଙ୍କେତ ଦେଲା । ସଙ୍ଗେ

ସଙ୍ଗେ ନାୟକ ତା ନିକଟକୁ ଯାଇ ନଇଁପଡ଼ି ସସମ୍ମାନ ଅଭିବାଦନ କଲା । ଏହି ନାୟକର ନାମ ସାଲାର ମାସୁଦ ଏବଂ ବସିଥିବା ନାଲିଦାଢ଼ିଆ ବ୍ୟକ୍ତି ଗଜନୀର ମହାପ୍ରତାପୀ ହମୀର ମହମ୍ମଦ ବୋଲି ସଜ୍ଜନ ଜାଣିପାରିଲେ । ହମୀର କନୌଜ, କାଲିଜର, ନଗରକୋଟ ଓ ମଥୁରା ଭଳି ସହରମାନଙ୍କୁ ଧ୍ୱଂସ କରିଛି । ସଙ୍ଗେ ସଙ୍ଗେ ମଥୁରାର ପ୍ରତ୍ୟେକ ବ୍ରାହ୍ମଣଙ୍କୁ ଧରିନେଇ ଗଜନୀର ବଜାରରେ ବିକିଛି ଓ ମରୁଭୂମି ଅତିକ୍ରମ କରି ପ୍ରଭୁ ସୋମନାଥଙ୍କ ବିଜେସ୍ଥଳୀ ଧ୍ୱଂସ କରିବାକୁ ପଣ କରିଛି । ଏହା ଭାବି ସଜ୍ଜନଙ୍କ ରକ୍ତ ଗରମ ହୋଇ ଉଠିଲା ଏବଂ ତାଙ୍କର ମନହେଲା, ଯେବେ ଟିକିଏ ହେଲେ ସୁବିଧା ଥାନ୍ତା, ତାହେଲେ ସାଙ୍ଗେ ସାଙ୍ଗେ ଏହି ଦୁର୍ବୃତ୍ତର ମସ୍ତକ ଛିନ୍ନ କରି ଗଙ୍ଗସର୍ବଜ୍ଞଙ୍କ ଇଚ୍ଛା ପୂରଣ କରିଥାନ୍ତେ ।

ମଝିରେ ବସିଥିବା ବ୍ୟକ୍ତି ସମ୍ପର୍କରେ ସଜ୍ଜନଙ୍କର ଅନୁମାନ ଠିକ୍ ବୋଲି ପ୍ରମାଣିତ ହେଲା । ଗଜନୀର ଶାସକ ୟାମିନୁଦ୍ଦୌଲା ମହମ୍ମଦ ନିଜାମୁଦ୍ଦିନ କାସିମ୍ ମହମ୍ମଦ ସାମାନ୍ୟ ଚଉଦବର୍ଷ ବୟସରେ ସମସ୍ତ ଏସିଆ ମହାଦେଶରେ ପ୍ରସିଦ୍ଧି ଲଭିକରି ସାହସୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବିବେଚିତ ହୋଇଛି । ଦରିଦ୍ର ଓ ଅଜ୍ଞାତ ବାଳକ ହିସାବରେ ଜୀବନ ଆରମ୍ଭ କରିଥିଲେ ସୁଦ୍ଧା, ସେ ଏମଧ୍ୟରେ ବିପୁଳ ସମ୍ପତ୍ତି ତଥା ଅସୀମ କ୍ଷମତାର ଅଧିକାରୀ ହୋଇପାରିଛି । ଖୁରାସନମାନଙ୍କ ଉପରେ ଆଧିପତ୍ୟ ଲାଭ କରି ନିଜ ଭାଇଠାରୁ ଗଜନୀର ଶାସନ ଦାୟିତ୍ୱ ମଧ୍ୟ ଅପହରଣ କରିଛି । ପ୍ରତିଜ୍ଞାର ଦୃଢ଼ତା ଏବଂ ଅସାଧାରଣ ସାହସ ଯୋଗୁଁ ସେ ଜୀବନରେ ବିପୁଳ ଯଶ ଲାଭ କରିପାରିଛି । ସେ ଯାହା ସାଙ୍ଗରେ ଲଢେଇ କରିଛି, ତାକୁ ଜୟ କରିବା ସଙ୍ଗେ ସଙ୍ଗେ ନିଜର ସମସ୍ତ ଲକ୍ଷ୍ୟ ସେ ପୂରଣ କରିଛି ।

ନିଜ ପିତାର ପଦାଙ୍କ ଅନୁସରଣ କରି ହମୀର ଅସୀମ ଧନରତ୍ନରେ ପୂର୍ଣ୍ଣ ଭାରତବର୍ଷକୁ ଲୁଣ୍ଠନ କରି ଲାଗିଛି । ଲାହୋର ଆତ୍ମସମର୍ପଣ କଲା ଏବଂ ମୁଲତାନର ପତନ ହେଲା । ଗ୍ୱାଲିୟର ଏବଂ କନୌଜ, ଦିଲ୍ଲୀ ତଥା ସପାଲ-ଦକ୍ଷର ସୈନ୍ୟବାହିନୀ ପରାଜିତ ହେଲେ । ଧନ ସମ୍ପଦରେ ପରିପୂର୍ଣ୍ଣ ନଗରକୋଟ ସହର ମଧ୍ୟ ସେ ଲୁଣ୍ଠନ କଲା ।

ବିଜିତ ଦେଶମାନଙ୍କର ସମସ୍ତ ଦେବଦେବୀ ମୂର୍ତ୍ତିକୁ ଭାଙ୍ଗି ନିଜେ ଅମରତ୍ୱ ଲାଭ କରି ଇସଲାମ ଧର୍ମର ପଥ ପ୍ରଦର୍ଶକ ହେବାକୁ ସେ ଚାହିଁଛି । ମଥୁରାରେ ଥିବା ବହୁ ପୁରାତନ ମନ୍ଦିର ସେ ଧୂଳିସାତ୍ କରିଛି । ଦେବ ମୂର୍ତ୍ତି

ମାନଙ୍କର ସୁନା ମୁକୁଟମାନ ଲୁଣ୍ଠନ କରି ନିଜ ପ୍ରାସାଦର ନାରୀମାନଙ୍କୁ ପିନ୍ଧାଇଛି ।

ତାର ଅଭିଳାଷର ସୀମା ନ ଥିଲା । ତାର କାମନେଇ ତାର ହୃଦୟ ଥିଲା ଉଦାର ଓ କଳ୍ପନା ପୂର୍ଣ୍ଣ । କୌଣସି ଶ୍ରେଷ୍ଠ କାର୍ଯ୍ୟ କରି ଚିରକାଳକୁ ନିଜର ନାମ ରଖିବାକୁ ସେ ଚାହୁଁଥିଲା । ଇସଲାମ ଜଗତର ଖଲିଫାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଖଲିଫା ଓମାର କରିଥିବା କାର୍ଯ୍ୟ ସେ କରିବାକୁ ଚାହୁଁଛି । ହମୀର ତାର ଇରାନୀୟ ମାଆଠାରୁ କଳା ଓ ସଂସ୍କୃତି ପ୍ରତି ପ୍ରୀତି ଶିକ୍ଷା କରିଥିଲା । ସେ କବିତାକୁ ପସନ୍ଦ କରୁଥିଲା ଓ ଗଜନୀକୁ ପୃଥିବୀର ଶ୍ରେଷ୍ଠ ନଗରୀରେ ପରିଣତ କରିବାକୁ ଚାହୁଁଥିଲା । ଅନ୍ୟମାନଙ୍କ ହୃଦୟ ଜୟ କରିବାପାଇଁ ତାର ଥିଲା ଅସୀମ ଶକ୍ତି । ସେ ନିଜେ ଜଣେ ଯୋଦ୍ଧା ହୋଇଥିବାରୁ ଅନ୍ୟମାନଙ୍କ ସାହସକୁ ସେ ବେଶ୍ ପସନ୍ଦ କରୁଥିଲା । ତାକୁ ବିରୋଧ କରୁ ନଥିବା ପର୍ଯ୍ୟନ୍ତ ତା ହୃଦୟରେ ସବୁ ଧର୍ମର ଲୋକଙ୍କ ପାଇଁ ସ୍ଥାନ ଥିଲା । ସେ ମୂର୍ତ୍ତିପୂଜା ସହ୍ୟ କରି ପାରୁ ନଥିଲେ ସୁଦ୍ଧା ମୂର୍ତ୍ତିପୂଜକ ମାନଙ୍କର ସାହସକୁ ଯଥେଷ୍ଟ ସମ୍ମାନ କରୁଥିଲା; ଏପରିକି ରାଜପୁତମାନଙ୍କୁ ପରାଜିତ କରୁଥିଲେ ମଧ୍ୟ ସେମାନଙ୍କ ଅଦ୍ଭୁତ ବୀରତ୍ୱର ବିଶେଷ ପ୍ରଶଂସା କରୁଥିଲା ।

ତାର ବିରାଟ ସୈନ୍ୟବାହିନୀରେ କକେସସ୍ ଠାରୁ ଗଙ୍ଗା ନଦୀର ଉପତ୍ୟକା ପର୍ଯ୍ୟନ୍ତ ସବୁ ଦେଶର ଯୋଦ୍ଧାମାନେ ଥିଲେ ।

ସେ ଶହଶହ ମାଇଲ ଅତିକ୍ରମ କରି ଆସିଛି କେବଳ ମରୁଭୂମିର ଅପରପଟେ ଥିବା ଦେବମୂର୍ତ୍ତିକୁ ଧ୍ୱଂସ କରି ମନ୍ଦିରର ଅଗାଧ ସମ୍ପତ୍ତି ନେବା ପାଇଁ । ଗ୍ରେଷ୍ଠ ଗ୍ରେଷ୍ଠ ରାଜ୍ୟର ରାଜପୁତ ଶାସକମାନଙ୍କର ତା ଭଳି ତୀକ୍ଷ୍ଣ ବୁଦ୍ଧି ବା ସାମରିକ ନୈପୁଣ୍ୟ ନ ଥିଲା । ସେମାନଙ୍କର ସାହସ, ଦୃଢ଼ ପ୍ରତିଜ୍ଞା ଓ ବୀରତ୍ୱ ଥିଲେ ସୁଦ୍ଧା ଅଦୂରଦୃଷ୍ଟି ଏବଂ ଗର୍ବ ଯୋଗୁଁ ସେମାନେ ନିଜ ଶତ୍ରୁର ଶକ୍ତି ସମ୍ପର୍କରେ ଠିକ୍ କଳନା କରି ପାରୁ ନ ଥିଲେ । ସେମାନଙ୍କର ଯଥେଷ୍ଟ ସାମରିକ କୌଶଳ ଜ୍ଞାନ ଥିଲେ ସୁଦ୍ଧା ସମୂହ ଶତ୍ରୁ ବିରୁଦ୍ଧରେ ଲଢ଼ିବା ପାଇଁ ସେମାନେ ଏକାଠି ହୋଇ ପାରୁ ନ ଥିଲେ । ପ୍ରତ୍ୟେକେ ନିଜ ନିଜର ରାଜ୍ୟ ରକ୍ଷା କରି ଆବଶ୍ୟକ ହେଲେ ମରିବା ପାଇଁ ପ୍ରସ୍ତୁତ ଥିଲେ ମଧ୍ୟ, ନିଜ ରାଜ୍ୟ ସମୂହ ତଥା ଧର୍ମର ରକ୍ଷା ପାଇଁ ସେମାନେ ଏକାଠି ହେଲେ ନିଜର ପ୍ରତିରୋଧ ଶକ୍ତି ଯେ ବଢ଼ିବ ତାହା ଉପଲବ୍ଧି କରି ପାରୁ ନଥିଲେ ।

ସାଲର ମାସୁଦ୍ ହମୀରର ପାଦତଳେ ବସି ସେମାନଙ୍କ ଅଦ୍ଭୁତ ଭାଷାରେ ନଜର କଥା ଉପସ୍ଥାପିତ କଲା । ସେ ସମ୍ପର୍କରେ ଆଲୋଚନା ପରେ ସାଧାରଣ କଥାବାର୍ତ୍ତା ହେଲା । ଏହି କଥାବାର୍ତ୍ତାରେ ବରାବର ହମୀରର ଉଚ୍ଚ ସ୍ୱର ଶୁଭୁଥାଏ ।

କିଛି ସମୟ ପରେ କଲମ ଓ ଦୁଆତ ନେଇ ବସିଥିବା କର୍ମଚାରୀ-ଆଲ୍‌ତାବ ଓ ତା ପାଖରେ ବସିଥିବା ରାଜପୁତ୍ର ସଜ୍ଜନଙ୍କ ପାଖକୁ ଗଲେ । ଏହି ରାଜପୁତକୁ ଦେଖି ସଜ୍ଜନ ତାର ଗଳା ଚିପି ହତ୍ୟା କରିବା ଇଚ୍ଛାକୁ ଅତି କଷ୍ଟରେ ଦମନ କରିନେଲେ । ପ୍ରଭୁ ଶଙ୍କରଙ୍କ ଆଦେଶ ପୂରଣ କରିବା ନିମନ୍ତେ ଯଦି କୌଣସି ସରଳ ଉପାୟ ଥାନ୍ତା, ତା ହେଲେ ସେ ନିଜର ଜୀବନ ବିନିମୟରେ ଏହି ଦେଶ ତଥା ଧର୍ମଦ୍ରୋହୀକୁ ହତ୍ୟା କରିଥାନ୍ତେ ।

ଏହି ରାଜପୁତ୍ରର ନାମ ସଂବେଦ ରାୟ ବୋଲି ସଜ୍ଜନ ଶୁଣିଲେ । ରାଜପୁତ୍ରଟି ସଜ୍ଜନଙ୍କ ନିକଟକୁ ଆସିଲା । ପଛରେ ଆଲ୍‌ତାବ କଲମ ଧରି ଆସୁଥାଏ ।

ସଂବେଦରାୟ ସଜ୍ଜନଙ୍କୁ ପଚାରିଲା—ତୁମ ଘର ?

ସଜ୍ଜନ—ଭଟମାରିଆ ।

ସଂବେଦରାୟ—କୁଆଡ଼େ ଆସିଥିଲ ?

ସଜ୍ଜନ—ସଫାଲଦକ୍ଷ ଓ ଘୋଘାଗଡ଼ ମଝିକୁ ।

ସଂବେଦରାୟ ଓ ଆଲ୍‌ତାବ ନିଜ ନିଜ ମଧ୍ୟରେ ଏ ଭଳି ଗୋଟିଏ ଭାଷାରେ କଥାବାର୍ତ୍ତା ହେଲେ, ଯାହାକି ସଜ୍ଜନ ବୁଝିପାରିଲେ ନାହିଁ । ଏହି ସମୟରେ ସୁଲତାନର କିଛି ପ୍ରଶ୍ନର ଉତ୍ତର ମଧ୍ୟ ଆଲ୍‌ତାବ ଦେଲା ।

ସଂବେଦରାୟ—କେଉଁଠୁ ଆସିଲ ?

ସଜ୍ଜନ—ଅନ୍‌ହିଲଓ୍ୱାଡ଼୍‌ରୁ ।

ସଂବେଦରାୟ—କେବେ ବାହାରିଲ ?

ସଜ୍ଜନ—ପନ୍ଦର ଦିନ ଆଗରୁ ।

ସଂବେଦରାୟ ବିସ୍ମିତ ହୋଇ ପଚାରିଲା—କେମିତି ଆସିଲ ?

ସଜ୍ଜନ—ମୁଁ ଏହି ମରୁଭୂମିର ସମସ୍ତ ରାସ୍ତା ଜାଣେ ।

ସଂବେଦରାୟ—କେଉଁ ଗଡ଼ ଦେଇ ଆସିଲ ?

ସଜ୍ଜନ—ମୁଁ ଯଦି ଦୁର୍ଗ ମାନଙ୍କ ରାସ୍ତା ଦେଇ ଆସିଥାନ୍ତି, ମୋତେ ଦୁଇମାସ ଲାଗିଥାନ୍ତା । ମୁଁ ଅନ୍‌ହିଲଓ୍ୱାଡ଼୍‌ରୁ ସିଧାସଳଖ ଆସିଛି ।

ସଂବେଦରାୟ—ବାଟରେ ବିଶ୍ରାମ ନେବା ପାଇଁ ସ୍ଥାନ ଅଛି ?

ସଜ୍ଜନ—ସେ ଭଳି ସ୍ଥାନ ନଥିଲେ ମୁଁ ଏକା କିପରି ବଞ୍ଚିକରି ଆସି-ଥାନ୍ତି ?

ସଂବେଦ—ଆମେ ବର୍ତ୍ତମାନ କେଉଁଠି ?

ସଜ୍ଜନ—ଆପଣମାନେ ପ୍ରଧାନ ରାସ୍ତାଠାରୁ ବହୁ ଦୂରରେ । ଆପଣମାନେ ଏ ବାଟେ କାହିଁକି ଆସିଲେ ମୁଁ ବୁଝି ପାରୁ ନାହିଁ ।

ସଂବେଦ– ପ୍ରଧାନ ରାସ୍ତା ଆଉ କେତେ ଦୂର ଅଛି ?

ସଜ୍ଜନ—ପ୍ରଧାନ ରାସ୍ତାରେ ପହଞ୍ଚିବାକୁ ଏହି ସୈନ୍ୟବାହିନୀକୁ ଆଠ ଦଶଦିନ ଲାଗିବ ଏବଂ ବାଟରେ ମେଓ୍ୱାଡ,ଝାଲୋର,ଗୁଜରାଟ ଓ ମାଳବ ଶାସକ-ମାନଙ୍କର ସମ୍ମୁଖୀନ ହେବାକୁ ପଡ଼ିବ ।

ସଂବେଦ—କେମିତି ଜାଣିଲ ?

ସଜ୍ଜନ—ମୁଁ ସବୁ ଜାଣେ । ବାଟରେ ଏକ ଲକ୍ଷରୁ ଅଧିକ ସୈନ୍ୟ ଏମାନଙ୍କୁ ପ୍ରତିରୋଧ କରିବା ପାଇଁ ରହିଛନ୍ତି ।

ସଂବେଦ—ତମେ ଆମକୁ ରାସ୍ତା ବତାଇ ଦେବ ?

ସଜ୍ଜନ—ମୋତେ ଯେବେ ମୋ ଓଟଟି ଫେରାଇ ଦେବ ତା ହେଲେ ମୁଁ ବାଟ ଦେଖାଇଦେବି ।

ସଂବେଦ—ତମ ଓଟ କାହିଁ ?

ସଜ୍ଜନ ମାସୁଦ୍‌କୁ ଦେଖାଇ କହିଲେ "ସେ ନେଇଛି" । ସଂବେଦରାୟ ଓ ଆଲତାବ ସୁଲତାନ ନିକଟକୁ ଯାଇ ତିନିହେଁ ଏକତ୍ର ଗୋପନରେ କଥାବାର୍ତ୍ତା ହେଲେ ।

ଦ୍ୱିତୀୟ ଦିନ ସାଲାର ମାସୁଦ୍ ସଜ୍ଜନଙ୍କୁ ନିଜ ତମ୍ବୁ ଭିତରେ ରଖିଲା । ପରଦିନ ପ୍ରଭାତରୁ ସୁଲତାନ ମହମ୍ମଦ ଗ୍ଜଉଣୀ ଉଠାଇବାକୁ ଲାଗିଲା । ପ୍ରଧାନ ରାସ୍ତାରେ ରାଜପୁତ୍ ସୈନ୍ୟମାନେ ଜଗି ରହିଥିବାରୁ ସେ ବାଟେ ନ ଯିବାକୁ ନିଷ୍ପତ୍ତି ହେଲା । ପ୍ରଧାନ ରାସ୍ତାରେ ପହଞ୍ଚିବାକୁ ପୂର୍ବଦିଗକୁ ଯିବା ପାଇଁ ଯେଉଁ ନିଷ୍ପତ୍ତି ହୋଇଥିଲା ତାହା ବଦଳାଇ ସଜ୍ଜନଙ୍କର ବିଶ୍ୱାସୀ ଓଟ ପଦମଣ୍ଡି ପଛେ ପଛେ ସୈନ୍ୟବାହିନୀ ପଶ୍ଚିମ ଦିଗକୁ ଚାଲିଲା ।

ଘୋଘା ରାଣା ଚୌହାନଙ୍କ ପୁଅ ପ୍ରଭୁ ସୋମନାଥଙ୍କ ନିର୍ଦ୍ଦେଶ ପାଳନ କରିଥିବାରୁ ନିଜକୁ ଭାଗ୍ୟବାନ୍ ମଣିଲେ । ସେ ଶୀଘ୍ର ଶୀଘ୍ର ଆସିବାକୁ ସମସ୍ତଙ୍କୁ କହିଲେ । ମନେ ମନେ ଗୀତ ବୋଲି ବୋଲି ସଜ୍ଜନ ବାଟ କଢ଼ାଇ ଚାଲିଥାନ୍ତି ।

ସେ ଏପରି ଗୋଟିଏ ସିଧା ରାସ୍ତାରେ ଆକ୍ରମଣକାରୀର ସୈନ୍ୟବାହିନୀକୁ ନେବାକୁ ମନେ ମନେ ଠିକ୍ କଲେ, ଯେଉଁ ବାଟେ ଗଲେ ବାଲିଝଡ଼ରେ ପଡ଼ି ସେମାନଙ୍କର ମୃତ୍ୟୁ ହେବ ।

୧୩

## ସାମନ୍ତଙ୍କର ବନ୍ଧୁମିଳନ

ଚୌଲର ସ୍ମୃତିର ପ୍ରେରଣାରେ ପ୍ରମୋଦିତ ହୋଇ ସାମନ୍ତ ନିଜ ବାପାଙ୍କୁ ଭେଟିଯିବେ ବୋଲି ପ୍ରଥମରୁ ସ୍ଥିର କରିଥିଲେ । ସେଥିରେ ତାଙ୍କର ଟିକିଏ ହେଲେ ଅସୁବିଧା ହେବ ନାହିଁ ବୋଲି ତାଙ୍କ ମନରେ ଥିଲି ଦୃଢ଼ ବିଶ୍ୱାସ ।

ସେ ଦ୍ରୁତ ଗତିରେ ଯାଇ ଆବୁ ଓ ଇନ୍ଦ୍ରାବତୀ ଅତିକ୍ରମ କରି ଶ୍ରୀମାଲରେ କିଛି ସମୟ ବିଶ୍ରାମ କଲେ ଏବଂ ଘୋଘାବାପାଙ୍କ ସମ୍ପର୍କୀୟ ପାରମାର ଶାସକ ବାକ୍‌ପତିରାଜଙ୍କର ରାଜଧାନୀ ଝାଲୋର ଯିବାକୁ ପୁଣି ଯାତ୍ରା କଲେ । ଝାଲୋରର ପ୍ରବେଶଦ୍ୱାରରେ ପହଞ୍ଚି ସାମନ୍ତ ଦେଖିଲେ ଯେ ଦୁର୍ଗଦ୍ୱାରରେ ଥିବା ପ୍ରାନ୍ତରରେ ଗୋଟିଏ ଗ୍ରୁଡଣୀ ପଡ଼ିଛି । ସେ ଓଟରୁ ଓହ୍ଲାଇବା ସଙ୍ଗେ ସଙ୍ଗେ ଅସ୍ତ୍ରଶସ୍ତ୍ର ସଜ୍ଜିତ ଜଣେ ସୁନ୍ଦର ଯୁବକ ତାଙ୍କୁ ସ୍ୱାଗତ କଲେ । ଯୁବକର ମୁହଁ ପରିଚିତ ପରି ତାଙ୍କର ମନେହେଉଥିଲି । କିନ୍ତୁ କେଉଁଠାରେ ଓ କେବେ ତାଙ୍କ ସହ ଦେଖାହୋଇଥିଲି ତାହା ମନେପଡ଼ୁ ନଥାଏ ।

ଯୁବକ ପଚାରିଲେ, "ଆପଣ କେଉଁଠାରୁ ଆସିଲେ ?" ସାମନ୍ତ ଉତ୍ତର ଦେଲେ, "ଆପଣ ଯେଉଁଠାରୁ ଆସିଛନ୍ତି ମୁଁ ସେହିଠାରୁ ଆସିଛି ।"

ଯୁବକ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ପାଟଣରୁ ଆସିଲେ ?"

ସାମନ୍ତ—ନାଁ, ପ୍ରଭାସରୁ । ଆପଣ ଗଙ୍ଗସର୍ବଜ୍ଞ ଏବଂ ପାଟଣର ରାଜା ଭୀମଦେବଙ୍କ ନିକଟରେ ବସିନଥିଲେ କି ?

ଯୁବକ—ଆଉ ତୁମେ ?

ଏତିକିରୁ ପ୍ରଖରବୁଦ୍ଧିସମ୍ପନ୍ନ ସାମନ୍ତ କାହିଁକି ଉକ୍ତ ଯୁବକ ଏଠାକୁ ଆସିଛନ୍ତି ତାହା ବୁଝିପାରି କହିଲେ, "ହଁ, ମୁଁ ଯେପରି ପ୍ରଭୁ ସୋମନାଥଙ୍କ

ଆଦେଶରେ ଏଠାକୁ ଆସିଛୁ, ଆପଣ ବୋଧହୁଏ ସେହିପରି ଆସିଛନ୍ତି । ଆପଣଙ୍କ ନାମ କଣ ?"

"ମୁଁ ରାଜା ଭୀମଦେବଙ୍କ ମନ୍ତ୍ରୀ ବିମଳ"—ଏହା କହି ସେ ସାମନ୍ତଙ୍କୁ ଅନ୍ୟ ସୈନ୍ୟମାନଙ୍କଠାରୁ ଦୂରକୁ ନେଇଗଲେ । ବିମଳ ପଚାରିଲେ, "ତୁମର ପରିଚୟ ?"

ସାମନ୍ତ—"ମୁଁ ଘୋଘାଗଡ଼ ରାଣାଙ୍କର ନାତି ସାମନ୍ତ । ମ୍ଳେଚ୍ଛଯୋଗୁଁ ଆପଣ ବୋଧହୁଏ ଏଠାକୁ ଆସିଛନ୍ତି ?" ବିମଳ ନିଜର ଆସିବା ଉଦ୍ଦେଶ୍ୟ ହଠାତ୍ ନଜଣାଇ କହିଲେ, "ଆଉ ତୁମେ ?"

ସାମନ୍ତ କହିଲେ, "ଆକ୍ରମଣକାରୀ ସମ୍ପର୍କରେ ଘୋଘାବାପାଙ୍କୁ ଜଣାଇବା ନିମନ୍ତେ ଗୁରୁଦେବଙ୍କ ଆଦେଶ ଅନୁଯାୟୀ ମୁଁ ଯାଉଛି । ଆପଣ କୁଆଡ଼େ ଯାଉଛନ୍ତି ?"

ବିମଳ ଉତ୍ତର ଦେଲେ, "ତମ ସହିତ ଦେଖା ହୋଇ ଭଲ ହେଲା । ଝାଲୋରର ରାଜା ତୁମର ସମ୍ପର୍କୀୟ । ତୁମେ ଯେବେ ଆମକୁ ସାହାଯ୍ୟ କରିବ ତାହେଲେ ସେ ଆମ କଥା ଶୁଣିବେ ।"

ସାମନ୍ତ—ମୁଁ ତାଙ୍କୁ କଣ କହିବାକୁ ଆପଣ ଚାହାନ୍ତି ?,

ବିମଳ—ଝାଲୋରର ସୈନ୍ୟବାହିନୀ ଯେବେ ଆମକୁ ସାହାଯ୍ୟ କରନ୍ତି, ତା ହେଲେ ପାଟଣର ସୈନ୍ୟବାହିନୀ ଏଠାକୁ ଆସିବେ ଓ ଉଭୟ ସୈନ୍ୟ-ବାହିନୀ ମିଶି ଏହି ମରୁଭୂମିରେ ଗଜନୀର ନବାବକୁ ଶେଷ କରିଦେବା ସମ୍ଭବ ହେବ ।

ସାମନ୍ତ ହସିକରି କହିଲେ, "ବୁଝିଲି, ତାକୁ କେହି ନ ଅଟକାଇ ସେ ମରୁଭୂମିରେ ପହଞ୍ଚିଲେତ ! ମରୁଭୂମିର ଶାସକ ଘୋଘାବାପା ତାଙ୍କର ହଜାର ହଜାର ଦୁର୍ଗ ସହ, ସପାଲଦକ୍ଷର ରାଜା, ନାଡୁଲ, କନୌଜ ଏବଂ ସୁରସାଗରର ଶାସକମାନେ ସମସ୍ତେ ହମୀର ଯେଉଁଠାରୁ ଆସିଛି ତାକୁ ସେଠାକୁ ଫେରାଇ ଦେବାପାଇଁ ପ୍ରସ୍ତୁତ ହୋଇ ଅଛନ୍ତି ।"

ବିମଳ—ଏ ସବୁ ଅବଶ୍ୟ ସତ୍ୟ । କିନ୍ତୁ ଆମେ ଅଧିକ ମାତ୍ରାରେ ପ୍ରସ୍ତୁତ ହେବା ଭଲ । ଆମକୁ ଏହି ଦାୟିତ୍ୱ ପ୍ରଭୁ ସୋମନାଥ ଦେଇଛନ୍ତି ।

ସାମନ୍ତ—ଆପଣ କିଛି ବ୍ୟସ୍ତ ହୁଅନ୍ତୁ ନାହିଁ । ଘୋଘାବାପା ପ୍ରଭୁ ସୋମନାଥଙ୍କ ମାନସମ୍ମାନରେ କୌଣସି ଆଞ୍ଚ ଆଣିବେ ନାହିଁ ।

ବିମଳ ଉତ୍ସାହୀ ସାମନ୍ତଙ୍କୁ ନିରୁତ୍ସାହିତ କରିଦେଲା ଭଳି କିଛି ନକହି କେବଳ କୂଟନୈତିକ ଭାବେ କହିଲେ, "ମୁଁ କଣ ଜାଣିନାହିଁ ?"

ଉଭୟଙ୍କ ମଧ୍ୟରେ ଏହି ସବୁ କଥାବାର୍ତ୍ତା ହେଉଥିବା ସମୟରେ ଦୁର୍ଗର ଦ୍ୱାରଦେଶରେ କେତେକ ଲୋକ ଓଟ ଉପରେ ଦେଖାଦେଲେ । ସେମାନେ ଖୁବ୍ ଚଞ୍ଚଳ ଗତିରେ ଉତ୍ତର ଦିଗକୁ ଯାଉଥାନ୍ତି ।

ଦୃଷ୍ଟିରୁ ଅନ୍ତର ହେବା ପର୍ଯ୍ୟନ୍ତ ବିମଳ ସେମାନଙ୍କ ଉପରେ ଦୃଷ୍ଟି ନିବଦ୍ଧ କରି ରହିଲେ ।

ପରେ ସେଦିନ ସନ୍ଧ୍ୟାବେଳେ ସାମନ୍ତ ଓ ବିମଳ ବାକ୍‌ପତିରାଜଙ୍କ ସହିତ ଦେଖାକଲେ । ସେ ଗୋଟିଏ ତକ୍ତପୋଷ ଉପରେ ଶୋଇଥାନ୍ତି ଓ ଜଣେ ଭୃତ୍ୟ ତାଙ୍କ ଗୋଡ଼ ଚିପିଦେଉଥାଏ । ଏହି ସତୁରିବର୍ଷ ବୟସ୍କ ଯୋଦ୍ଧା ଯେ ଅତି ଶକ୍ତିଶାଳୀ ଦେଖାଯାଉଥାନ୍ତି ସେତିକି ନୁହେଁ, ତାଙ୍କ ଆଖିରୁ ଯୁଦ୍ଧରେ ସଫଳ ବିଜୟର ଲକ୍ଷଣ ଦେଖିବାକୁ ମିଳୁଥାଏ ।

ବାକ୍‌ପତିରାଜ ସାମନ୍ତଙ୍କୁ ସ୍ନେହରେ ତାଙ୍କ ପାଖରେ ବସାଇ ତା ପିଠିରେ ହାତ ମାରୁଥାନ୍ତି । ମନ୍ତ୍ରୀ ଯେପରି ତଳେ ବସିବାର କଥା, ବିମଳଙ୍କୁ ସେହିପରି ଟିକିଏ ତଳକୁ ବସାଇଥାନ୍ତି । କେତେକ ସଭାସଦ୍ ମଧ୍ୟ ବସିଥାନ୍ତି ।

ବିମଳ କହିଲେ, "ଗଙ୍ଗସର୍ବଜ୍ଞ ଏବଂ ମୋର ମୁନିବ ପାଟଣର ରାଜାଙ୍କ ଆଦେଶରେ ମୁଁ ଆସିଛି । ସାମନ୍ତ ସିଂହ ମଧ୍ୟ ସେହି ଉଦ୍ଦେଶ୍ୟରେ ଆସିଛନ୍ତି । ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆମେ ଆପଣଙ୍କ ସହ କଥାବାର୍ତ୍ତା କରିବାକୁ ଚାହୁଁ ।"

ଉପସ୍ଥିତ ସଭାସଦ୍‌ମାନେ ସଙ୍କେତ ବୁଝିପାରି ତତ୍‌କ୍ଷଣାତ୍ ବିଦାୟ ନେଲେ ।

ବାକ୍‌ପତିରାଜ—କେଉଁ ବିଷୟ କହିବାକୁ ଚାହୁଁଛ, କୁହ ।

ସାମନ୍ତ—ଗଜନୀର ହମୀର ପ୍ରଭାସର ପ୍ରଭୁ ସୋମନାଥଙ୍କ ମନ୍ଦିର ଧ୍ୱଂସ କରିବା ପାଇଁ ଆସୁଥିବା ଆପଣ ଜାଣିଥିବେ ।

ବୟସ୍କ ଶାସକ ବାକ୍‌ପତିରାଜ ଉଚ୍ଚସ୍ୱରରେ ହସି କହିଲେ, "ହଁ, ଜାଣେ, ଏବଂ ଏହି ଦୁର୍ଗର ଅନ୍ୟ ସମସ୍ତେ ମଧ୍ୟ ଜାଣନ୍ତି ।"

ସାମନ୍ତ ତାଙ୍କ ହସ ଦେଖି ପଚାରିଲେ, "କିପରି ଜାଣିଲେ ?"

ବାକ୍‌ପତିରାଜ— ମୁଲତାନର ମୁଖୀ ଅଜୟପାଳ ମୁସଲମାନ ଶାସକଙ୍କ-ଠାରୁ ବାର୍ତ୍ତା ଆଣି ଆସିଥିଲା ଏବଂ ଅଳ୍ପ ସମୟ ହେଲା ଏଠାରୁ ଫେରି ଯାଇଛି ।

ସାମନ୍ତ ଏବଂ ବିମଳ ଉଭୟେ "କଣ 'ବାର୍ତ୍ତା ଆଣିଥିଲେ" ବୋଲି ପଚାରିଲେ ।

ବାକ୍‌ପତିରାଜ—ତା ହେଲେ ମୁଁ କଣ ଏ ଖବର ତୁମମାନଙ୍କୁ ଦେବି ? ଗଜନୀର ମ୍ଳେଚ୍ଛ ମୁଲତାନରୁ ମୋ ପ୍ରତି ତାର ଶ୍ରଦ୍ଧା ଜଣାଇଥିଲା ।

ଉଭୟେ ବିସ୍ମୟରେ କହିଉଠିଲେ—ଶ୍ରଦ୍ଧା !

ବାକ୍‌ପତିରାଜ ତାଙ୍କର ନିଶ ମୋଡ଼ି କହିଲେ, "ହଁ,ଝାଲୋରରେ କୌଣସି ବାଧା ନ ପାଇ ଯେପରି ଆଗକୁ ଯାଇପାରେ ସେଥିପାଇଁ ସେ ମୋ ସାହାଯ୍ୟ ଚାହିଁଛି । ସେ ସୋନଗିରର ଚୌହାନମାନଙ୍କୁ ଭୟ କରୁଛି ।"

ବିମଳ ଚିନ୍ତିତ ହୋଇ ପଚାରିଲେ,"ଆପଣ କଣ ରାଜି ହେଲେ ?"

ବାକ୍‌ପତିରାଜ—ମୁଁ ତାର ଉପହାର ନେଇ ଭଣ୍ଡାରରେ ରଖି ଦେଇଛି ।

ସାମନ୍ତ ନିଜର କ୍ରୋଧ ଅତି କଷ୍ଟରେ ସହିତ ସମ୍ଭାଳି ପଚାରିଲେ, "ଆପଣ ତାକୁ ସାହାଯ୍ୟ କରିବା ପାଇଁ କଣ ପ୍ରତିଶ୍ରୁତି ଦେଇଛନ୍ତି ?"

ବାକ୍‌ପତିରାଜ—ମୁଁ ତାକୁ ଜବାବ ଦେଇଛି, ଯଦି ଗୁଜୁରାଟକୁ ଯିବାକୁ ଚାହଁ, ତାହେଲେ ଅବାଧରେ ଯାଅ । କିନ୍ତୁ ପାରମାର ରାଜ୍ୟରେ ପାଦ ଦିଅ ନାହିଁ । ପାଦ ଦେଲେ ଏଠୁ ଫେରିଯିବା ସନ୍ଦେହ ।

ସାମନ୍ତ କହିଲେ, "ମାମୁଁ, ମନ୍ତ୍ରୀ ବିମଳ ମଧ୍ୟ ସାହାଯ୍ୟ ଭିକ୍ଷା କରିବା ନିମନ୍ତେ ଆପଣଙ୍କ ନିକଟକୁ ଆସିଛନ୍ତି । ଆପଣ ଓ ଭୀମଦେବ ଏକାଠି ହେଲେ ମୁସଲମାନ ସୈନ୍ୟବାହିନୀର ଆଗକୁ ଯିବା କେବଳ ବନ୍ଦ ନକରି ସେମାନଙ୍କୁ ଧ୍ୱଂସ ମଧ୍ୟ କରିପାରିବେ ।"

ବାକ୍‌ପତିରାଜ ମୁରୁକିହସା ଦେଇ କହିଲେ,"ଓଃ,ସେଥିପାଇଁ ଭୀମଦେବ ମୋ ସାହାଯ୍ୟ ଚାହେଁ ! ମାରୱାଡ଼ ଆକ୍ରମଣ କରିବା ନିମନ୍ତେ ଗତବର୍ଷ ମୁଁ ତାକୁ ହଜାରେ ଅଶ୍ୱାରୋହୀ ଏବଂ ଦୁଇଶହ ଉଷ୍ଟ୍ରାରୋହୀ ସୈନ୍ୟ ମାଗିଥିଲି । ସେ ଦେଲା ନାହିଁ । ମାରୱାଡ଼ର ଶାସକ ତାର ସଂପର୍କୀୟ ବୋଲି ସେ ନିଜ

ଇଚ୍ଛାନୁସାରେ ଯାହା କିଛି କରିପାରେ । ମୁଁ କାହିଁକି ତାକୁ ସାହାଯ୍ୟ ଦେବି ?"

ବିମଳ ନରମି ଯାଇ କହିଲେ, "ମହାରାଜ, ପ୍ରଭୁ ସୋମନାଥଙ୍କ ମନ୍ଦିର ଧ୍ୱଂସ କରିବା ନିମନ୍ତେ ହମୀର ଆସୁଛି । କେବଳ ପ୍ରଭୁଙ୍କ ମନ୍ଦିରର ସୁରକ୍ଷା ନିମନ୍ତେ ଆମେ ଆପଣଙ୍କ ସାହାଯ୍ୟ ଲୋଡ଼ୁ ।"

ବାକ୍‌ପତିରାଜ—ମଥୁରା ଧ୍ୱଂସ ହେବା ସମୟରେ ଭୀମଦେବ ତ କାହିଁ କିଛି ସାହାଯ୍ୟ କଲା ନାହିଁ ?

ବିମଳ—ମ୍ଳେଚ୍ଛ ଆକ୍ରମଣକାରୀ ସଫଳଦକ୍ଷ, ନାଦୁଲ, ଝାଲୋର, ଆବୁ ଏବଂ ପାଟଣ ଭଳି ରାଜ୍ୟ ଭିତର ଦେଇ ବିନା ବାଧାରେ ପ୍ରଭାସ ଯିବା ଆପଣ କିପରି ସହ୍ୟ କରିବେ ?

ବାକ୍‌ପତିରାଜ—ଯେପର୍ଯ୍ୟନ୍ତ ପାରମାର ଅଛୁ, ସେପର୍ଯ୍ୟନ୍ତ କୌଣସି ମୁସଲମାନ ଝାଲୋରରେ ପାଦ ଦେଇପାରିବେ ନାହିଁ ।

ବିମଳ—ମହାରାଜ, ଆପଣ ଆମ ରାଜାଙ୍କୁ ସାହାଯ୍ୟ ନକରିବା ଫଳରେ ସେ ଯଦି ପରାଜିତ ହୁଅନ୍ତି, ତାହେଲେ ଶେଷକୁ ହମୀର ଆପଣଙ୍କୁ ମଧ୍ୟ ଧ୍ୱଂସ କରିବ ।

ବାକ୍‌ପତିରାଜ—ବାଜେ କଥା ! ଝାଲୋରର ସୈନ୍ୟବାହିନୀକୁ ପରାସ୍ତ କରିବା ଭଳି ଶତ୍ରୁ ଏ ପର୍ଯ୍ୟନ୍ତ ଜନ୍ମ ହୋଇନାହିଁ ।

ସାମନ୍ତ—ସେ ଯେବେ ସୋମନାଥ ମନ୍ଦିରକୁ ଧ୍ୱଂସ କରେ, ତାହା ପ୍ରତ୍ୟେକ କ୍ଷତ୍ରୀୟ ପକ୍ଷେ ଅପମାନଜନକ ହେବ ।

ବାକ୍‌ପତିରାଜ—ସୋମନାଥଙ୍କର ଭଲ ମନ୍ଦ ଦେଖିବା ଭୀମଦେବର ଦାୟିତ୍ୱ । ସୋମନାଥ ତ ତାର ମନ୍ଦିର ? ନିଜ ଇଷ୍ଟଦେବଙ୍କୁ ରକ୍ଷା କରିବାର ଶକ୍ତି କଣ ତାର ନାହିଁ ?

ସାମନ୍ତ—ମାମୁଁ ! ବିଦେଶୀ ସୈନ୍ୟବାହିନୀ ଆମ ରାଜ୍ୟମାନଙ୍କ ମଧ୍ୟ ଦେଇ ଯାଇ ମନ୍ଦିରମାନ ଧ୍ୱଂସ କରିବା ଆମେ କିପରି ସହ୍ୟ କରିପାରୁ ? ଯେଉଁ ଲୋକ ଗୋ-ବ୍ରାହ୍ମଣଙ୍କ ଶତ୍ରୁ ଏବଂ ଆମ ମନ୍ଦିରମାନ ଧ୍ୱଂସ କରିବା ଯାହାର କାର୍ଯ୍ୟ, ତାକୁ ରାଜ୍ୟ ମଧ୍ୟ ଦେଇ ଯିବାକୁ ଆମେ କିପରି ଛାଡ଼ିଦେବା ?

ବାକ୍‌ପତିରାଜ—ସେଥିପାଇଁ ମୋ ରାଜ୍ୟରେ ପାଦ ନଦେବା ପାଇଁ ମୁଁ ତାକୁ କହୁଛି ।

ବିମଳ—ତାହାର ଅର୍ଥ ଅନ୍ୟ ରାଜ୍ୟ ବାଟ ଦେଇ ଯିବେ ? ଲୋକ ହତ୍ୟା କରିବା ସଙ୍ଗେ ସଙ୍ଗେ ଯେଉଁ ମନ୍ଦିରମାନ ଧ୍ୱଂସ କରିବେ, ସେମାନେ ସବୁ ତ ଆପଣଙ୍କ ଲୋକ ଏବଂ ସେଗୁଡ଼ିକ ତ ଆପଣଙ୍କ ମନ୍ଦିର ?

ବାକ୍‌ପତିରାଜ—ବେଶ୍ ମିଠା କଥା କହି ଜାଣ ! କିନ୍ତୁ ମୁଁ ତୁମ କଥାରେ ଭୁଲିବା ଲୋକ ନୁହେ ।

ସାମନ୍ତ ରାଗିକରି କହିଲେ—ତାହେଲେ ମୁସଲମାନମାନେ ଆମ ମନ୍ଦିର ଧ୍ୱଂସ କରିବାକୁ ଆସିବାରେ ଆପଣ ବାଧା ଦେବେ ନାହିଁ ? ବାକପତିରାଜଙ୍କୁ ଏହା ବେଶ୍ ସୁନ୍ଦର ଦିଶିବ !

ବାକ୍‌ପତିରାଜ ତାଚ୍ଛଲ୍ୟର ସହିତ ଉତ୍ତର ଦେଲେ, "ତୁମେ ଜଣେ ସାମାନ୍ୟ ପିଲ । ମୁଁ ତୁମ ଘୋଘାବାପାପର ବୋକା ହୋଇନାହିଁ ଯେ, ଅନ୍ୟ-ମାନଙ୍କ ପାଇଁ ମୁଁ ଯୁଦ୍ଧ କରିବ ।"

ଅସନ୍ତୁଷ୍ଟ ହୋଇ ସାମନ୍ତ କହିଲେ, "ମାମୁଁ ! ଘୋଘାବାପା ଅନ୍ୟମାନଙ୍କୁ ସାହାଯ୍ୟ କରି ତାଙ୍କ ଜୀବନଟା କଟାଇଛନ୍ତି । ଅନ୍ୟମାନଙ୍କ ବିପଦ ଆପଦ ସେ ନିଜର ବୋଲି ଭାବନ୍ତି ।"

ବିମଳ ବୁଢ଼ା ରାଜାଙ୍କୁ ଶାନ୍ତ କରିବା ଉଦ୍ଦେଶ୍ୟରେ କହିଲେ,"ମହାରାଜ, ମୋ ମୁନିବ ଆପଣ ଗୃହୁଁ ଥିବା ସମସ୍ତ ସାହାଯ୍ୟ ଦେବାକୁ ପ୍ରସ୍ତୁତ ।"

ବାକ୍‌ପତିରାଜ ଆଉ ଏବେ କାହିଁକି ? ତାର ତ ମାଳବ ଏବଂ ଆବୁ ଦଖଲ କରିବା ଦରକାର !

ବିମଳ—ବର୍ତ୍ତମାନ ଅବସ୍ଥାର ପରିବର୍ତ୍ତନ ହୋଇଛି, ମହାରାଜ ! ଆପଣ ଆପଣଙ୍କର ସର୍ତ୍ତ ଦେଇପାରନ୍ତି । ସେ ପ୍ରଭୁ ସୋମନାଥଙ୍କ ମନ୍ଦିର ରକ୍ଷା କରିବା ପାଇଁ ବ୍ୟଗ୍ର । ଆପଣ ଗୃହୁଁ ଥିବା ଯେ କୌଣସି ସାହାଯ୍ୟ ଆପଣଙ୍କୁ ଦେବା ଛଡ଼ା ତାଙ୍କର ଅନ୍ୟ ପନ୍ଥା ନାହିଁ ।

ବାକ୍‌ପତିରାଜ—ଯେବେ ଆଗରୁ ଆସିଥାନ୍ତି ତା ହେଲେ ଭିନ୍ନ ପ୍ରକାର ହୋଇଥାନ୍ତା । ବାକ୍‌ପତିରାଜ ଯେଉଁ କଥା କିଏ, ତାହା ବଦଳାଇବା ଲୋକ ସେ ନୁହ । କିନ୍ତୁ ବଡ଼ ଡେରିରେ ଆସିଲ । ମୁସଲମାନମାନଙ୍କୁ ମୁଁ ଝାଲୋର ମଧ୍ୟ ଦେଇ ଯିବାକୁ ଦେବି ନାହିଁ ବା ତୁମ ରାଜାକୁ କୌଣସି ସାହାଯ୍ୟ କରିବି ନାହିଁ ।

ବିମଳ—ଆକ୍ରମଣକାରୀ ଯେବେ ପ୍ରଥମେ ଆମକୁ ପରାଜିତ କରି ତା ପରେ ଆପଣଙ୍କ ରାଜ୍ୟକୁ ଆସେ, ଆପଣ କଣ କରିବେ ?

ବାକ୍‌ପତିରାଜ—ମୁଁ ଖୁବ୍ ଜାଣେ । ଦେଖାଯାଉ ।

ବିମଳ ପଚାରିଲେ, "ଯେଉଁ ଲୋକ ପ୍ରଭାସ ପର୍ଯ୍ୟନ୍ତ ଲୋକଙ୍କୁ ଉପସ୍ଥିତ କରିପାରିବ, ତାକୁ ଅନ୍ୟ ଶତ୍ରୁ ଅଟକାଇ ପାରିବ ବୋଲି ଆପଣ କଣ ଭାବୁଛନ୍ତି ?"

ବାକ୍‌ପତିରାଜ ଉତ୍ତେଜିତ ହୋଇ କହିଲେ, "ଯୁବକ, ସମସ୍ତେ ତୁମ ଭୀମଦେବ ପରି ନୁହନ୍ତି । ତମେ ପାରମାର ବଂଶର ବୀରତ୍ୱ ଦେଖିନାହଁ । ହମୀର ଆଗ ମୋ ରାଜ୍ୟରେ ପଶୁ ।"

ସାମନ୍ତ ନିଜର କ୍ରୋଧ ସମ୍ଭାଳି ନ ପାରି କହିଲେ, "ମ୍ଳେଚ୍ଛଙ୍କୁ ତଡ଼ି-ଦେବାରେ ହିଁ ଆମ ବୀରତ୍ୱର ପରିଚୟ !"

ବାକ୍‌ପତିରାଜ—ବେଶ୍ ବଡ଼ି ବଡ଼ି କଥା କହୁଛ, ସାମନ୍ତ ! ବାକ୍‌ପତି-ରାଜର ଧୈର୍ଯ୍ୟ ଓ ସାହସ କେତେ ଯାଇ ନିଜ ଘୋଘାବାପାଙ୍କୁ ପଚାରି ।

ସାମନ୍ତ ସଙ୍ଗେ ସଙ୍ଗେ ଜବାବ ଦେଲେ; "ଘୋଘାବାପାଙ୍କୁ ଆପଣ ପରାମର୍ଶ ଦେବାର କୌଣସି ଆବଶ୍ୟକତା ନାହିଁ । ସେ ଯେ ପର୍ଯ୍ୟନ୍ତ ବଞ୍ଚିଛନ୍ତି ସେ ପର୍ଯ୍ୟନ୍ତ ହମୀର ମରୁଭୂମିରେ ପାଦ ଦେଇ ପାରିବ ନାହିଁ । ଆପଣ ଆପଣଙ୍କ ନିଜ କଥାରେ ଓ ଅନ୍ଧବିଶ୍ୱାସରେ ସନ୍ତୁଷ୍ଟ ରହି ଆନନ୍ଦ ଅନୁଭବ କରିପାରନ୍ତି । କିନ୍ତୁ ଏହା ଜାଣିରଖିଥାନ୍ତୁ, ଯେବେ ହମୀରକୁ ବାଧା କରାନଯାଏ ତାହାହେଲେ ସେ ଆପଣଙ୍କୁ ମଧ୍ୟ ଜୀବନରେ ରହିବାକୁ ଦେବନାହିଁ ।"

ବାକ୍‌ପତିରାଜ କୌଣସି ଜବାବ ଦେବା ପୂର୍ବରୁ ସାମନ୍ତ ସେ ଘରୁ ଚାଲିଗଲେ ।

ବାକ୍‌ପତିରାଜ ଗୁଣୁଗୁଣୁ କରି କହିଲେ, "ଘୋଘାବାପା ପରିବାରର ପ୍ରତ୍ୟେକେ ଉଦ୍ଧତ ଓ ଶିଷ୍ଟାଚାରହୀନ ।" ବିମଳଙ୍କୁ ଚାହିଁ ସେ କହିଲେ, "ବିମଳ; ତୁମେ ଫେରିଯାଇ ତୁମ ମୁନିବଙ୍କୁ କହ, ମୁଁ ମୋର ନିଷ୍ପତ୍ତି ବଦଳେଇ ପାରିବ ନାହିଁ ।"

ବିମଳ—କାଲି ସକାଳେ ମୁଁ ଆପଣଙ୍କୁ ପୁଣି ଥରେ ଦେଖାକରିବି ।

ବାକ୍‌ପତିରାଜ—କାଲିତ ମୁଁ ମୋର ନିଷ୍ପତ୍ତି ପରିବର୍ତ୍ତନ କରି ପାରିବ ନାହିଁ !

ବିମଳ ହାତ ଯୋଡ଼ି ଠିଆହୋଇ, "ଯାହା ଆପଣଙ୍କ ଇଚ୍ଛା" କହି ନମସ୍କାର କରି ଚାଲିଗଲେ । ବାକ୍‌ପତିରାଜ ପୁଣି ତାଙ୍କର ତୈଳମର୍ଦ୍ଦକ ସେବକଙ୍କୁ ଡ଼ାକାଇଲେ ।

## ୧୫

# ମୁଲ୍ତାନର ମୁଖୀ

ଝାଲୋର ଶାସକଙ୍କର ସ୍ୱାର୍ଥପରତା ଓ ନିଷ୍କ୍ରିୟତାରେ ସାମନ୍ତ ଅତିଶୟ କ୍ରୋଧାନ୍ୱିତ ହୋଇଥିଲେ । ସେ ତାଙ୍କ ବସା ଘରକୁ ଯାଇ ସାଙ୍ଗେ ସାଙ୍ଗେ ଯାତ୍ରା ପାଇଁ ପ୍ରସ୍ତୁତ ହେବାକୁ ବିରକ୍ତ ସ୍ୱରରେ ଲୋକମାନଙ୍କୁ ହୁକୁମ୍ ଦେଲେ ।

ଏହାର କିଛି କ୍ଷଣ ପରେ ବିମଳ ଆସି ପହଞ୍ଚିଲେ । ସେ ମଧ୍ୟ ଅତି ବିବ୍ରତ ଅବସ୍ଥାରେ ଥିଲେ । ତାହାଛଡ଼ା ସାମନ୍ତଙ୍କୁ ମନ ଦୁଃଖରେ ତଳେ ବସିଥିବା ଦେଖି ତାଙ୍କର ଦୁଃଖ ବୃଦ୍ଧି ପାଇଲା । ସସ୍ନେହରେ ସେ କହିଲେ, "ଚୌହାନ, ବିବ୍ରତ ହୁଅନା ।"

ସାମନ୍ତ ରାଗି ଯାଇ କହିଲେ, "ବାକ୍‌ପତିରାଜ କେତେ ନୀଚ ହେଲାଣି ! ସାମାନ୍ୟ ଟଙ୍କା କେତୋଟା ପାଇଁ ଝାଲୋରର ଶାସକ ଯେ ଶତ୍ରୁକୁ ରାଜ୍ୟ ଭିତର ଦେଇ ଛାଡ଼ିଦେବ, ଏହା କିଏ ବା ବିଶ୍ୱାସ କରିବ ? ଲଜ୍ଜାରେ ଆମ ମୁଣ୍ଡ ନୁଆଁଇବା ପାଇଁ ଏହାହିଁ ଯଥେଷ୍ଟ । ଯେବେ ଘୋଘାବାପା ଏଠି ଥାଆନ୍ତେ ତା ହେଲେ ସେ ତାର ମୁଣ୍ଡ କାଟିଦେଇଥାନ୍ତେ ।"

ମନ୍ତ୍ରୀ ବିମଳ—ଭାଇ ! ଆମେ ଯେତେବେଳେ ତାଙ୍କ ଅତିଥି, ଏଭଳି କହିବା ଆମ ପକ୍ଷରେ ସୁନ୍ଦର ନୁହେଁ ।

ସାମନ୍ତ—ମୁଁ ଯାହା କହୁଛି, ତାହା ତାଙ୍କ ମୁହଁରେ କହିବାକୁ ପ୍ରସ୍ତୁତ । ବାକ୍‌ପତିରାଜ ଆଉ କଣ କହିଥାନ୍ତେ ? ଏହା ପରେ ଯେବେ କେହି କୁହେ ଯେ, ସୂର୍ଯ୍ୟ ପଶ୍ଚିମରେ ଉଦୟ ହୁଅନ୍ତି, ତା ମୁଁ ବିଶ୍ୱାସ କରିବି ।

ବିମଳ—ଏଭଳି ଅଧୈର୍ଯ୍ୟ ହୁଅନାହିଁ । କାଲି ପୁଣି ତାଙ୍କୁ ରାଜି କରାଇବାକୁ ଚେଷ୍ଟା କରିବା ।

ସାମନ୍ତ—ତାଙ୍କୁ ପ୍ରବର୍ତ୍ତାଇବା ଅସମ୍ଭବ । ସେ ଆମ କଥା ଶୁଣିବେ ନାହିଁ । ସେ କେବଳ ଝାଲୋରର କଥା ଭାବୁଛନ୍ତି । ଧର୍ମ ନଷ୍ଟ ହେଲେ ବା ସୋମନାଥମନ୍ଦିର ଉପରେ ଉଡ଼ୁଥିବା ପତାକା ତଳକୁ ପଡ଼ିଲେ ତାଙ୍କର ଯାଏ ଆସେ କଣ ? ହମୀରର ଟଙ୍କା ଲୋଭରେ ସେ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରିବାରେ ବ୍ୟସ୍ତ । ନିଜ ପରିବାର ବା ଧର୍ମର ସମ୍ମାନ ପାଇଁ ସେ ଭ୍ରୂକ୍ଷେପ କରନ୍ତି ନାହିଁ ।

ବିମଳ— ଭାଇ ଚୌହାନ ! ଆମେ ଏଭଳି ବ୍ୟସ୍ତ ହେଲେ ଲାଭ କଣ ?

ସାମନ୍ତ ଜୋର୍ ଦେଇ କହିଲେ, "ଘୋଘାବାପା କେବେହେଲେ ଶତ୍ରୁକୁ ମରୁଭୂମିରେ ପ୍ରବେଶ କରିବାକୁ ଦେବେନାହିଁ ।"

ବିମଳ ଭାବଚକ୍ତ ଜୋର୍ ଦେଇ କହିଲେ, "ଧରିଯାଉ ଶତ୍ରୁ ଯେବେ ଘୋଘାବାପାଙ୍କୁ ପାର ହୋଇ ଆସେ, ତା ହେଲେ ମାରଓ୍ୱାଡ ଦେଇ ଯିବା ଛଡ଼ା ଆଉ କି ବାଟ ଅଛି ?"

ସାମନ୍ତ - ସେ ମଧ୍ୟ କଣ ତାକୁ ବାଟ ଛାଡ଼ି ଦେବେ ନାହିଁ ?

ବିମଳ— ମୁଁ ଏଠାରୁ ମାରଓ୍ୱାଡ଼ ଯାଉଛି । ତୁମେ ମୋ ସାଙ୍ଗରେ ଯିବ ?

ସାମନ୍ତ—ନା, ଘୋଘାବାପାଙ୍କୁ ସାବଧାନ କରିବା ପାଇଁ ପ୍ରଭୁ ସୋମନାଥ ଦେଇଥିବା ଆଦେଶ ମୁଁ ପାଳନ କରିବି ।

ବିମଳ— ମୁସଲମାନମାନଙ୍କର ଯେବେ ଘୋଘାଗଡ଼ ଯିବାର ଥାଏ ତା ହେଲେ ସେମାନେ ବହୁ ସମୟରୁ ପହଞ୍ଚିସାରିବେଣି ।

ସାମନ୍ତ—ନାଁ, ଅଜ ମୋତେ ନିଦ ହେବନାହିଁ । ବାକ୍‌ପତିରାଜଙ୍କ ସହିତ ଆମର ହୋଇଥିବା କଥାବାର୍ତ୍ତା ମୁଁ ବାରମ୍ବାର ଭାବୁଛି ।

ବିମଳ—ତମେ କମ୍ ବୟସ୍କ । ବହୁ ସମୟରେ ଏପରି ନିରାଶ ହେବାକୁ ପଡ଼େ । ତହିଁରେ କଣ ଏପରି ବିବ୍ରତ ହେବା ଉଚିତ ? ଆମକୁ ବାଟ ବାହାର କରିବାକୁ ହେବ । ତମେ ଆଜ ରାତିରେ ମୋ ସହିତ ଯିବ ?

"କେଉଁଠିକି" ବୋଲି ସାମନ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

ବିମଳ ଗମ୍ଭୀର ହୋଇ କହିଲେ, "ମୁଲତାନର ମୁଖୀ ଯେପରି ମାରଓ୍ୱାଡ଼କୁ ନଯାଏ ତାହା ଦେଖିବାକୁ ହେବ ।"

ସାମନ୍ତ—ବର୍ତ୍ତମାନ ସଙ୍ଗେ ସଙ୍ଗେ ? ତେବେ ଚାଲ । ବିମଳ, ତମେ ପ୍ରସ୍ତୁତ ହୁଅ । ମୋ ଲୋକଙ୍କୁ ଯିବାପାଇଁ ପ୍ରସ୍ତୁତ ହେବାକୁ ମୁଁ କହୁଛି ।" "ମୁଁ ଏହା ଭିତରେ ଯାଇ ବାକ୍‌ପତିରାଜଙ୍କ ଠାରୁ ବିଦାୟ ନେଇ ଆସେ ।"— ଏହା କହି ବିମଳ ଚାଲିଗଲେ ।

ଏହି ଅବାଞ୍ଛିତ ଅତିଥିମାନେ କିପରି ଶୀଘ୍ର ଯିବେ ସେଥିପାଇଁ ବାକ୍‌ପତିରାଜ ବ୍ୟଗ୍ର ଥିଲେ । ଲୋକଦେଖାଣିଆ ଭଦ୍ରତା ଦେଖାଇ ସେମାନଙ୍କୁ

ଆନ୍ତରିକତାହୀନ ଭାବରେ ଅଧିକ ସମୟ ରହିବାକୁ କହି ତେଣେ ସେମାନଙ୍କ ଯିବାଲାଗି ଦୁର୍ଗର ଦ୍ୱାର ଖୋଲିବାକୁ ଆଦେଶ ଦେଲେ ।

ମୁଲତାନର ମୁଖୀ ଅଜୟପାଳଙ୍କୁ ଯେପରି ସେମାନେ ଭେଟିପାରିବେ ସେଥିପାଇଁ ସାମନ୍ତ ଓ ବିମଳ ଦ୍ରୁତ ଗତିରେ ଯାଆକଲେ । ସେମାନେ ଯେଉଁ ବାଟେ ଯାଉଥିଲେ ତାହା ଏକ ପ୍ରଧାନ ରାସ୍ତା ହୋଇଥିବାରୁ ରାତି ଅନ୍ଧାରରେ ସୁଦ୍ଧା ବିଶେଷ ଅସୁବିଧା ହୋଇ ନଥିଲା ।

ବିମଳ ବିଷୟ ଉତ୍ଥାପନ କରି କହିଲେ, "ଦେଖ, ମୁଖୀ ଜଣେ ଅଭିଜ୍ଞ ଏବଂ କୌଶଳୀ ଲୋକ । ତାଙ୍କୁ ଫେରାଇ ଦେବା ବା ଆଗକୁ ଯିବାପାଇଁ ନଦେବା କଷ୍ଟକର ! ତମେ ରାଜପରିବାରର ଲୋକ । ତାଙ୍କ ସାଙ୍ଗେ କଥାବାର୍ତ୍ତା ହେଲେ ସେ ତୁମକୁ ଚିହ୍ନିପାରିବେ ।"

ସାମନ୍ତ—ମୁଁ ପଦେହେଲେ କଥା କହିବି ନାହିଁ । ଆପଣ ଯେଉଁଭଳି ଭାବରେ ବାକ୍‌ପଣ୍ଡିତଙ୍କ ସହିତ ଚତୁରତା ସହକାରେ କଥାବାର୍ତ୍ତା ହେଲେ ତାହା ଦେଖି ମୁଁ ଅବାକ୍ । ଆପଣଙ୍କ ଭଳି ମନ୍ତ୍ରୀ ଯଦି ଘୋଘାବାପାଙ୍କର ଥାଆନ୍ତେ ତାହାହେଲେ ଅତି ଚମତ୍କାର ହୋଇଥାନ୍ତା ।

ବିମଳ—ଯେଉଁ ଗୁରୁଙ୍କଠାରୁ ମୁଁ ଶିକ୍ଷା ପାଇଛି ତାଙ୍କୁ ତୁମେ ଏପର୍ଯ୍ୟନ୍ତ ଦେଖିନାହିଁ ।

ସାମନ୍ତ—ଆପଣଙ୍କର ଜଣେ ଗୁରୁ ମଧ୍ୟ ଅଛନ୍ତି ?

ବିମଳ—ମୋ ଗୁରୁ ଦାମୋଦର ମେହେଟାଙ୍କ ସମ୍ମୁଖରେ ମୁଁ ଶିଶୁମାତ୍ର । ସେ କେବଳ ପାଟି ଫିଟାଇଲେ ଯେ କୌଣସି ଲୋକ ସେ ଚାହୁଁଥିବା କାର୍ଯ୍ୟ କରିବାକୁ ବାଧ୍ୟ ହୋଇଯିବ । ତୁମେ ବିଶ୍ୱାସ କରିବ—ଦଶ ବର୍ଷ ମଧ୍ୟରେ ସେ ରାଗିବାର ମୁଁ କେବେ ଦେଖି ନାହିଁ ।

ସାମନ୍ତ—ସତେ, ଅସମ୍ଭବ ! ଯେ ରାଗେ ନାହିଁ ସେ ଜଣେ ଶକ୍ତ ଲୋକ ହୋଇପାରିବା ସମ୍ଭବ କି ?

ବିମଳ—ଦାମୋଦର ମେହେଟା ଆମ ରାଜାଙ୍କୁ ବରାବର କହନ୍ତି, 'କିପରି ରାଗିବାକୁ ହୁଏ ତାହା ଜାଣିଥିବା ଲୋକ ସବୁଠାରୁ ଭଲ ଶାସକ । କିନ୍ତୁ କେବେହେଲେ ରାଗୁ ନ ଥିବା ଲୋକ ସବୁଠାରୁ ଭଲ ମନ୍ତ୍ରୀ ।'

ସାମନ୍ତ—ଆପଣ କେବେ ରାଗନ୍ତି ନାହିଁ ?

ବିମଳ—କେବେ କେବେ । ମୁଁ ବେଳେବେଳେ ରାଗୁ ଥିବାରୁ ମୋର ଗୁରୁଙ୍କ ସମକକ୍ଷ ବୋଲି କହି ପାରିବି ନାହିଁ । ମୋ ପ୍ରକୃତି ଯଦି ମୋର ଗୁରୁଙ୍କ ପରି ହୋଇଥାନ୍ତା, ତା ହେଲେ ବାକ୍‌ପତିରାଜ କଣ ମନା କରିଥାନ୍ତେ ?—ଏହା କହି ବିମଳ ହସୁଥାନ୍ତି ଏବଂ ସାମନ୍ତ ନୂତନ ବନ୍ଧୁଙ୍କର କଥା ବିହ୍ୱଳ ଭାବେ ଠିଆ ହୋଇ ଶୁଣୁଥାନ୍ତି ।

ବାଟରେ ଗୋଟିଏ ଜାଗାରେ ଅଳ୍ପକ୍ଷଣପାଇଁ ସେମାନେ ରହିଲେ ଓ ସେଠାରେ ପଚାରି ଜାଣିଲେ ଯେ, ମୁଖୀ ଅନ୍ୟ ଜାଗାରେ ରହିବାକୁ ସ୍ଥିର କରିଛି । ଏଥିରୁ ମୁଖୀ ଝାଲୋରଠାରୁ ଯଥେଷ୍ଟ ଦୂରରେ ନ ଥିବା ଅନୁମିତ ହେବାରୁ ବିମଳ ଖୁସି ହେଲେ ।

ସେମାନେ ପରବର୍ତ୍ତୀ ରହିବା ସ୍ଥାନରେ ପହଞ୍ଚିଲା ବେଳକୁ ରାତି ଅଧିକ ହୋଇଯାଇଥିଲା । ଅଳ୍ପ ଫର୍ଚ୍ଚା ଆଲୋକରେ ବିମଳ ଦେଖିଲେ କେତେକ ଓଟ ଖୁଣ୍ଟରେ ବନ୍ଧା ହୋଇଛନ୍ତି । ଏହା ଦେଖି ବିମଳ ଅଧିକ ପ୍ରୀତ ହୋଇଥିଲେ, କାରଣ ମୁଖୀଙ୍କ ବୁଦ୍ଧି ସହ ନିଜ ବୁଦ୍ଧିର ପରୀକ୍ଷା କରିବାକୁ ସେ ଏବେ ସୁଯୋଗ ପାଇଲେ । ବାଜି ଖୁବ୍ ବଡ଼ ଧରଣର । ତାଙ୍କ ବିଜୟର ଅର୍ଥ ହେବ ପାଟଣ ତଥା ପ୍ରଭୁ ସୋମନାଥଙ୍କର ବିଜୟ ।

କିନ୍ତୁ ଠିକ୍ ବିଶ୍ରାମ ନେବା ସ୍ଥାନରେ ସେ ପହଞ୍ଚିବା ବେଳକୁ ମୁଖୀଙ୍କ ସୈନ୍ୟସାମନ୍ତ ସେଠାରୁ ଚାଲିଯିବାକୁ ଯୋଗାଡ଼ କରୁଥାନ୍ତି ।

ବିମଳ ଏହି ଦଳର ନେତାଙ୍କୁ କହିଲେ, "ମୁଲତାନର ମୁଖୀଙ୍କ ପାଇଁ ଝାଲୋରର ଶାସକଙ୍କଠାରୁ ମୁଁ ଗୋଟିଏ ବାର୍ତ୍ତା ଆଣିଛି । ଟିକିଏ ଅପେକ୍ଷା କରନ୍ତୁ ।"

ଏହି ସମୟରେ ଓଟରେ ଚଢ଼ିବାକୁ ଯାଉଥିବା ଜଣେ ବିଶାଳକାୟ ଯୋଦ୍ଧା ହଠାତ୍ ଆଗକୁ ଆସିଲେ । ତାଙ୍କ ଆଖିରେ ସନ୍ଦେହ । ସେ ଆସି ପଚାରିଲେ, "ତୁମେ କିଏ ? କେଉଁଠୁ ଆସିଛ ?"

ବିମଳ କହିଲେ, "ମୁଁ ବର୍ତ୍ତମାନ ଝାଲୋରରୁ ଆସିଛି । ମୋ ସାଙ୍ଗରେ ଏହି ଯୁବରାଜ ହେଉଛନ୍ତି ସାମନ୍ତ ସିଂହ ଚୌହାନ । ସେ ବାକ୍‌ପତିରାଜଙ୍କ ଭଣଜା । ମୁଁ କେତେକ କଥା ଆପଣଙ୍କୁ ଗୁପ୍ତରେ କହିବାକୁ ଚାହେଁ ।" ବିମଳ ଓଟ

ଉପରୁ ଓହ୍ଲାଇଲେ ଓ ହାତଯୋଡ଼ି ସେହି ଯୋଦ୍ଧାଙ୍କୁ ନମସ୍କାର କରି କହିଲେ, "ମୋତେ ବୋଧହୁଏ ବିଶ୍ୱାସ କରୁନାହାନ୍ତି ।"

ମୁଖୀ ଗମ୍ଭୀରଭାବେ ସନ୍ଦିଗ୍‌ଧ ଆଖିରେ ଏଭଳି ଭଦ୍ରତାପୂର୍ଣ୍ଣ କଥାବାର୍ତ୍ତା କରୁଥିବା ଯୁବକଙ୍କୁ କିଛି କ୍ଷଣ ନିରୀକ୍ଷଣ କଲେ । ବିମଳ ତାଙ୍କୁ ଅନ୍ୟ ମାନଙ୍କ-ଠାରୁ କିଛି ଦୂରକୁ ଡାକିନେଇ ଧୀର ଓ ମଧୁର ସ୍ୱରରେ କହିଲେ, "ମୁଁ ବର୍ତ୍ତମାନ ଝାଲୋରର ଶାସକଙ୍କ ପାଖରୁ ଆସିଲି । ଆପଣ ଆଗରୁ ତାଙ୍କୁ ଦେଖାକରି କେତେକ ଉପହାର ଦେଇଥିଲେ । ସେତେବେଳେ ସେ ତାଙ୍କ ରାଜ୍ୟ ଦେଇ ଯିବା ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ ସୁଦ୍ଧା ବର୍ତ୍ତମାନ ଯେବେ ଆପଣ ଯାଆନ୍ତି, ତା ହେଲେ ସେ ଆପଣଙ୍କୁ କୌଣସି ବାଧା ଦେବେ ନାହିଁ । ଆପଣ ଏଥିରେ ସନ୍ତୁଷ୍ଟ ତ ? ମୁଁ ସତ କହୁନାହିଁ ବୋଲି ଯେବେ ଆପଣ ଭାବୁଥାନ୍ତି, ତା' ହେଲେ ମୋ ସଙ୍ଗୀ ଚୌହାନ ଯୁବରାଜଙ୍କୁ ପଚାରିପାରନ୍ତି ।"

ମୁଖୀଙ୍କ ସନ୍ଦେହ କେତେକାଂଶରେ ଦୂର ହୋଇଥିଲେ ସୁଦ୍ଧା, ପୁଣି ତାଙ୍କୁ ପଚାରିଲେ, " ବାକ୍‌ପତିରାଜ ତୁମକୁ କାହିଁକି ପଠାଇଛନ୍ତି ?"

ବିମଳ କହିଲେ, "ଅନ୍ୟ ଜଣଙ୍କ ଦ୍ୱାରା ତାହା ପ୍ରମାଣିତ ନ ହେଲେ ମାରଓ୍ୱାଡ଼ର ଶାସକ ରଣମୟୁ ରାଠୋର ଆପଣଙ୍କ କଥା ବିଶ୍ୱାସ କରି ନପାରନ୍ତି ବୋଲି ବାକ୍‌ପତିରାଜ ଭାବୁଥିବାରୁ ସେ ଆମକୁ ପଠାଇଲେ । ଆମେ ତାଙ୍କୁ ବିଶ୍ୱାସ ଦେବାକୁ ଚାହୁଁ ଯେ, ଯୁଦ୍ଧ କରିବା ବାକ୍‌ପତିରାଜଙ୍କର ଇଚ୍ଛା ନୁହେଁ ।"

ମୁଖୀ ପୁଣି ସନ୍ଦେହ ପ୍ରକାଶ କରି ପଚାରିଲେ, "ବିଶ୍ୱାସ ଦେବାର ଆବଶ୍ୟକତା କଅଣ ?"

"ଅନହିଲ୍‌ଓ୍ୱାଡ଼ ପାଟଣାର ରାଜା ଭୀମଦେବ ଶତ୍ରୁଙ୍କୁ ପ୍ରତିରୋଧ କରିବା ନିମିତ୍ତ ରାଠୋରଙ୍କୁ ଅନୁରୋଧ କରିଛନ୍ତି ।"

ମୁଖୀ—ସତେ ?

ବିମଳ ବ୍ୟଗ୍ରତା ପ୍ରକାଶ ନ କରି କହିଲେ, "ହଁ ଚାଲନ୍ତୁ, ସାଙ୍ଗ ହୋଇ ଯିବା । ରାଠୋର ଯେପରି ଭୀମଦେବଙ୍କ ଅନୁରୋଧ ପ୍ରତ୍ୟାଖ୍ୟାନ କରନ୍ତି ତାଙ୍କୁ ସେହିଭଳି ପରାମର୍ଶ ଦେବା ।

ମୁଖୀ ଶୁଷ୍କ କଣ୍ଠରେ 'ହେଉ ଚାଲ' ବୋଲି କହି ନିଜ ଓଟ ଉପରେ ଚଢ଼ିଲେ । ଉଭୟଙ୍କ ସୈନ୍ୟସାମନ୍ତ ଆଗକୁ ଚାଲିଲେ ।

ବିମଳଙ୍କ କଥାରେ ମୁଖୀଙ୍କର ଏ ପର୍ଯ୍ୟନ୍ତ ତଥାପି ସନ୍ଦେହ ରହିଥାଏ । ସେ ଭ୍ରୂ-କୁଞ୍ଚିତ କରି ତାଙ୍କ ଗତିବିଧି ପ୍ରତି ସତର୍କ ଆଖି ରଖିଥାନ୍ତି । ସେ ନିଜେ ବେଶି କଥା କହୁ ନଥାନ୍ତି, ବା ବିମଳଙ୍କୁ କଥା କହିବାକୁ ମଧ୍ୟ ଉତ୍ସାହିତ କରୁ ନ ଥାନ୍ତି ।

ବହୁ ସମୟ ନୀରବରେ କଟିଯିବା ପରେ ଓଟମାନଙ୍କର ପଦାଘାତ ଗତିର ନିସ୍ତବ୍ଧତା ଭାଙ୍ଗିଲା । ତାଙ୍କ ପୂର୍ବ କଥା ଅନୁସାରେ ସାମନ୍ତ ନୀରବ ଥାଆନ୍ତି । ବିମଳ ନିଜ ଓଟକୁ ମୁଖୀଙ୍କ ଓଟ ପାଖେ ପାଖେ ଚଲାଉଥାନ୍ତି । ଉଭୟେ ପରସ୍ପର ଉପରେ ପ୍ରଖର ଆଖି ରଖିଥାନ୍ତି । ସମୟ ଯେତେ ଅତିବାହିତ ହେଉଥାଏ, ବିମଳଙ୍କ ମନ ସେତିକି ଚଞ୍ଚଳ ହେଉଥାଏ । କ୍ରମେ ରାତି କଟି ଆସିଲା ଓ ଆସ୍ତେ ଆସ୍ତେ ଉଷା ଉର୍କିମାରି ଦେଖା ଦେଲା । ସମୟ ଅତିବାହିତ ହେଉଥିବା ସଙ୍ଗେ ସଙ୍ଗେ ତାଙ୍କ ହାତରୁ ସୁଯୋଗ ସେହି ପରିମାଣରେ ଚାଲି ଯାଉଛି ବୋଲି ବିମଳ ଭାବୁଥିବାରୁ ଆଉ ଅଧିକ ସମୟ ନୀରବ ରହିବା ଅନୁଚିତ ବୋଲି ସେ ଠିକ୍ କଲେ ।

ସକାଳୁଆ ଥଣ୍ଡା ପବନରେ ମୁଖୀ ଢୁଲାଉ ଥିବାର ସେ ଦେଖିଲେ । କିଛି କରିବାର ଏହା ହେଉଛି ପ୍ରକୃଷ୍ଟ ସମୟ । ହୁଏତ ବର୍ତ୍ତମାନ କିଛି କରିବେ ନଚେତ୍ ଆଉ କିଛି କରି ପାରିବେ ନାହିଁ । ସେ ତାଙ୍କ ଓଟକୁ ମୁଖୀଙ୍କ ଓଟ ପାଖରେ ରଖି ତାଙ୍କ ଲୋକମାନଙ୍କୁ ସଙ୍କେତ ଦେବା ପରେ ପତର ନିଜ ଖଣ୍ଡା ଧରି ମୁଖୀଙ୍କୁ ଆକ୍ରମଣ କଲେ ।

ମୁଖୀ ଯେ ଜମା ଶୋଇ ନଥିଲେ ଏହା ଜାଣି ବିମଳ ଆଶ୍ଚର୍ଯ୍ୟ ହୋଇଗଲେ । ମୁଖୀ ଉଠିପଡ଼ି ଏହି ଆକ୍ରମଣର ପ୍ରତିରୋଧ କରିବା ପାଇଁ ନିଜ ଖଣ୍ଡାକୁ ବିମଳଙ୍କ ଗ୍ରୀବାକୁ ଉଞ୍ଚାଇଲେ । ନିଜକୁ ପ୍ରକୃତିସ୍ଥ କରି ମୁଖୀ ବିମଳଙ୍କ ଉପରେ ଚଢ଼ାଉ କରିବା ପୂର୍ବରୁ ବିମଳ ନିଜ ଓଟ ଉପରୁ ତଳକୁ ଡେଇଁ ପଡ଼ିଲେ । ମୁଖୀ ମଧ୍ୟ ତାଙ୍କ ଉପରକୁ କୁଦା ମାରିଲେ ।

ବିମଳ ଆକ୍ରମଣ କରିବାକୁ ନିଜ ଖଣ୍ଡା ବାହାର କରୁଥିବା ଦେଖି ତାଙ୍କ ସୈନ୍ୟମାନେ ମଧ୍ୟ ମୁଖୀଙ୍କ ଲୋକମାନଙ୍କ ଉପରେ ଆକ୍ରମଣ କଲେ । ଏହି କୁଦାକୁଦି ଏକ ବଡ଼ ଧରଣର ଯୁଦ୍ଧରେ ପରିଣତ ହେଲା ।

ଏହି ପରିସ୍ଥିତିରେ ସାମନ୍ତଙ୍କର ଅଚାନକ ହସ୍ତକ୍ଷେପ ଫଳରେ ବିମଳ ରକ୍ଷା ପାଇଗଲେ । ମୁଖୀ ତାଙ୍କ ତରବାରିରେ ବିମଳଙ୍କ ଉପରେ ଚୋଟ

ପକାଇବା ବେଳକୁ ସାମନ୍ତ ମୁଖୀଙ୍କୁ ନିଜ ଛୁରୀ ଦ୍ୱାରା ଆକ୍ରମଣ କଲେ । ମୁଖୀଙ୍କ ହାତରୁ ତରବାରିଟି ଖସି ପଡ଼ିଲା ଏବଂ ସେ ଆହତ ହୋଇ ତଳେ ପଡ଼ିଗଲେ ।

ବିମଳ ଦେଖିଲେ ଯେ ମୁଖୀଙ୍କର ତିନିଜଣ ଲୋକ ତାଙ୍କୁ ଘେରାଉ କରିଛନ୍ତି । ମାତ୍ର ସୌଭାଗ୍ୟକୁ ତାଙ୍କୁ ସାହାଯ୍ୟ କରିବା ପାଇଁ ସାମନ୍ତ ପ୍ରସ୍ତୁତ ହୋଇସାରିଥିଲେ । ଆହତ ମୁଖୀଙ୍କ ଚାରିପାଖେ ଭୀଷଣ ଯୁଦ୍ଧ ଲାଗିଲା । ବହୁ ଲୋକ ମଲେ, ଅନେକ କ୍ଷତ ବିକ୍ଷତ ହୋଇଗଲେ । ବିମଳ ଖୁବ୍ କୌଶଳ ଓ ଦକ୍ଷତାର ସହିତ ଯୁଦ୍ଧ କଲେ । ସାମନ୍ତଙ୍କର ଯୁଦ୍ଧ କୌଶଳ ମଧ୍ୟ ଶତ୍ରୁ ଦଳରେ ଆତଙ୍କ ସୃଷ୍ଟି କଲା ।

ଚେତନା ଲାଭ କରି ଆହତ ମୁଖୀ ଆଖି ଫିଟାଇଲେ ଏବଂ ବିମଳ ତାଙ୍କର ଅତି ପାଖରେ ଯୁଦ୍ଧ କରୁଥିବା ଦେଖି ସେ ନିଜର ଶକ୍ତି ସଂଗ୍ରହ କରି ପାଖରେ ପଡ଼ିଥିବା ଖଣ୍ଡାଟି ଉଠାଇ ବିମଳଙ୍କୁ ଆକ୍ରମଣ କରିବା ପାଇଁ ଉଦ୍ୟତ ହେଲେ ।

ଭାଗ୍ୟବଶତଃ ସାମନ୍ତଙ୍କର ଦୃଷ୍ଟିରେ ଏହା ପଡ଼ିଗଲା । ସେ ଗର୍ଜନ କରି ମୁଖୀଙ୍କ ଉପରକୁ କୁଦା ମାରି, ତାଙ୍କୁ ପୁଣି ଆକ୍ରମଣ କରି ହତ୍ୟା କଲେ । ସାମନ୍ତଙ୍କର ଗର୍ଜନ ଫଳରେ ସମସ୍ତଙ୍କ ଆଖି ମୁଖୀଙ୍କ ଉପରେ ପଡ଼ିଲା । ମୁଖୀ ମରିଯିବା ଦେଖି ତାଙ୍କର ସୈନ୍ୟମାନେ ନିରାଶ ହୋଇ ଛତ୍ରଭଙ୍ଗ ଦେଲେ ।

"ସାବାସ୍ ଚୌହାନ, ସାବାସ୍ !" ତାଙ୍କ ଜୀବନ ଦୁଇଥର ରକ୍ଷା କରିଥିବାରୁ ବିମଳ ହର୍ଷ ଧ୍ୱନି କରି କହିଲେ । ସାମନ୍ତଙ୍କ ଆଖି ମୁଖୀ ଉପରେ ନିବଦ୍ଧ ଭାବରେ ନିବଦ୍ଧ ରହିଥାଏ । ସେ କହିଲେ, "ପ୍ରଭୁ ସୋମନାଥଙ୍କର ସମସ୍ତ ଶତ୍ରୁ ଏହିପରି ମରିବେ ।" ବିମଳ ବିଜେତା ରୂପେ ନିଜର ଅଧିକାର ବଜାୟ ରଖିବା ପାଇଁ ମୁଖୀଙ୍କ ଅଣ୍ଟାରୁ ହୀରାଖଚିତ ତରବାରିଟି ନେଇ ନିଜ ଅଣ୍ଟାରେ ବାନ୍ଧିଲେ ।

ବିମଳ ହସି କରି କହିଲେ, "ଖ୍ୱାଲୋରର ବାକ୍‌ପତିରାଜର ଖବର ଆଉ କେହି ଆଗକୁ ନେଇ ପାରିବେ ନାହିଁ ।"

ଏହି ଯୁଦ୍ଧରେ ମୁଖୀଙ୍କର ନଅଜଣ ଲୋକ ନିହତ ହୋଇଥିଲେ ଏବଂ ତିନିଜଣ ଧରା ପଡ଼ିଥିଲେ । ସାମନ୍ତ ଓ ବିମଳଙ୍କ ପକ୍ଷରୁ ସାତଜଣ ନିହତ ହୋଇଥିଲେ ଓ ଚାରିଜଣ ଆହତ ହୋଇଥିଲେ । ସାମନ୍ତ ଓ ବିମଳଙ୍କ ସମେତ ଚାରିଜଣଙ୍କର କିଛି କ୍ଷତି ହୋଇ ନଥିଲା ।

ସାମନ୍ତ ଆଗକୁ ଯିବାକୁ ବ୍ୟସ୍ତ ହେଲେ । ବିମଳ କହିଲେ, "ଚୌହାନ, ତୁମେ ଦୁଇଥର ମୋ ଜୀବନ ରକ୍ଷା କରିଛ । ତୁମେ ଯାହା କହିବ ମୁଁ ତାହା କରିବି । ଏପରି କିଛି କାର୍ଯ୍ୟ ନାହିଁ ଯାହାକି ମୁଁ ତୁମ ପାଇଁ ନ କରିବି ।"

ସାମନ୍ତ ସ୍ନେହପୂର୍ଣ୍ଣ କଣ୍ଠରେ କହିଲେ, "ମନ୍ତ୍ରୀ ବିମଳ, ତୁମେ ଆଜିଠାରୁ ମୋର ପ୍ରିୟ ବନ୍ଧୁ । ଘୋଘାଗଡ଼କୁ ନିଜ ଘର ବୋଲି ଭାବିବ ।'

ବିମଳ କହିଲେ, "ତୁମେ ଯେବେ ଗୁଜୁରାଟ ଆସ ତା ହେଲେ ବିମଳକୁ ଭୁଲିବ ନାହିଁ ।"

ଆଲିଙ୍ଗନ ପରେ ଆପଣା ଆପଣାର ସ୍ଥାନାଭିମୁଖେ ଯାତ୍ରା କରିବାକୁ ସେମାନେ ପରସ୍ପରଠାରୁ ବିଦାୟ ନେଲେ ।

ବନ୍ଦୀଭାବେ ଧରାପଡ଼ିଥିବା ତିନିଜଣ ଲୋକଙ୍କୁ ବିମଳ ନିଜ ସାଙ୍ଗରେ ନେଲେ । ଗଜନୀର ହମୀରର ସୈନ୍ୟବାହିନୀ ସମ୍ପର୍କରେ ସେମାନଙ୍କଠାରୁ ଯାହା ଖବର ମିଳିଲା, ତହିଁରେ ବିମଳ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ତାଙ୍କର ଆଶଙ୍କା ବଢ଼ିଲା । ହମୀରର ସୈନ୍ୟବାହିନୀରେ ତିରିଶ ହଜାର ଅଶ୍ୱାରୋହୀ, ପଚିଶ ହଜାର ଧନୁର୍ଦ୍ଧାରୀ ସୈନ୍ୟ ଓ ତିନିଶହ ଗଜାରୋହୀ ଅଛନ୍ତି । ସେମାନଙ୍କ ପାଇଁ କେବଳ ପାଣି ବୁହାଇବା ନିମନ୍ତେ ତିରିଶ ହଜାର ଓଟ ଅଛନ୍ତି । ଏହା ବ୍ୟତୀତ ହଜାର ହଜାର ପଦାତିକ ସୈନ୍ୟ ଅଛନ୍ତି—ସତେ ଯେପରି ସାରା ଦେଶଟା ଯୁଦ୍ଧ ଯାତ୍ରା କରୁଛି !

ଗଜନୀର ସୈନ୍ୟବାହିନୀ ସଂଖ୍ୟା ସମ୍ପର୍କରେ ତଥ୍ୟ ଶୁଣି ବିମଳ ସ୍ତମ୍ଭିତ ହୋଇଗଲେ । ପ୍ରଥମେ ସେ ଏହା ଅତିରଞ୍ଜିତ ଭାବି ହସି ଦେଇଥିଲେ, କିନ୍ତୁ ପରେ ଯାହା ଶୁଣିଲେ ତହିଁରେ ସେ ଅତିଶୟ ବିଚଳିତ ହୋଇ ପଡ଼ିଲେ ।

୧୬

# ନିସ୍ତବ୍ଧ ମରୁଭୂମି

ସାମନ୍ତ ବିମଳଙ୍କୁ ବିଦାୟ ଦେଲାବେଳେ ତାଙ୍କ ମନ ଖୁବ୍ ଉତ୍‌ଫୁଲ୍ଲ ଥାଏ । ଗଜନୀର ହମୀର ବିରୁଦ୍ଧରେ ସେ ପ୍ରଥମ ବିଜୟ ହାସଲ କରିଛନ୍ତି । ସେହି କଥା ସ୍ମରଣ କରି ସେ ମନେମନେ "ଏହା ଗୋଟିଏ ଶୁଭ ଲକ୍ଷଣ" ବୋଲି ଭାବୁଥାନ୍ତି । ତାଙ୍କ ନିଜର ଦୁଇଜଣ ସହଚରଙ୍କ ମଧ୍ୟରୁ ଜଣେ ଟିକିଏ ଜଖମ ହୋଇଥିଲା । ମାତ୍ର ସେ ନିଜେ ସୋମନାଥରେ ଶୀଘ୍ର ପହଞ୍ଚିବାକୁ ଚାହୁଁଥିବାରୁ ଆହତ ସୈନ୍ୟ ଓ ବନ୍ଦୀମାନଙ୍କୁ ବିମଳଙ୍କ ପାଖରେ ଛାଡ଼ି ଆସିଥିଲେ ।

ବାଟରେ ବିଶ୍ରାମ ନେବା ପାଇଁ ଅନେକ ସ୍ଥାନ ଥିବାରୁ ସେ କୌଣସି ହିଇଘଣ ନ ହୋଇ ଯଥେଷ୍ଟ ଦୂର ଆଗେଇ ଗଲେ । ତିନିଦିନ ପର୍ଯ୍ୟନ୍ତ ନିର୍ଜନ ବାଟରେ ଯିବା ପରେ ଚତୁର୍ଥଦିନ କେତେକ ବାଟୋଇଙ୍କ ସହିତ ତାଙ୍କର ଦେଖା ହେଲା । ସେମାନଙ୍କ ମଧ୍ୟରୁ କେତେକ ଘୋଡ଼ା ଓ ଓଟରେ ଏବଂ ଅନ୍ୟମାନେ ଚାଲିଚାଲି ଯାଉଥାନ୍ତି । ସାମନ୍ତ ପଚାରି ଜାଣିଲେ ହମୀରଙ୍କ ଭୟରେ ସେମାନେ ଘର ଦ୍ୱାର ଛାଡ଼ି ମାଡ଼ୱାଡ଼ ପଳାଇଯାଉଛନ୍ତି ।

ତନ୍ନ ତନ୍ନ କରି ପଚାରିବାରୁ ଏହି ପଳାତକମାନେ ଭିନ୍ନ ଭିନ୍ନ ପ୍ରକାର ଖବର ଦେଲେ । କେତେକ କହିଲେ, ମୁସଲମାନ ଆକ୍ରମଣକାରୀମାନେ ସଫାଲ-ଦକ୍ଷରେ ପହଞ୍ଚି ଗଲେଣି । ଆଉ କେତେକ କହିଲେ, ପହଞ୍ଚିବା ପାଇଁ ଦୁଇ ଦିନ ଲାଗିବା ଭଳି ଦୂର ବାଟରେ ଅଛନ୍ତି । ଆଉ କେତେକ ହମୀରର ଓଟମାନେ ପବନରେ ଉଡ଼ନ୍ତି ବୋଲି କହିଲେ । ଆକ୍ରମଣକାରୀର ଆଦେଶରେ ମରୁଭୂମିରୁ ନୂଆ ପାଣି ବାହାରୁଛି ବୋଲି କେତେକ ମଧ୍ୟ କହିଲେ । କିଏ କେତେ ମନଗଢ଼ା କଥା କହିଲେ । କିନ୍ତୁ ଏ ସବୁ କଥାରୁ ଗୋଟିଏ କଥା ଜଣାଗଲା ଯେ, ଆକ୍ରମଣକାରୀ ପ୍ରତିଦିନ ନିକଟରୁ ନିକଟତର ହୋଇ ଆସୁଛି ଏବଂ ସେହି ଭୟରେ ଲୋକେ ଘରଦ୍ୱାର ଛାଡ଼ି ପଳାଇଯାଉଛନ୍ତି ।

ପୁଣି ଦୁଇ ଦିନ ବାଟ ଯିବା ପରେ ପଳାତକ ଶରଣାର୍ଥୀଙ୍କ ସଂଖ୍ୟା ବଢ଼ୁଥିବା ସାମନ୍ତ ଲକ୍ଷ୍ୟ କଲେ – ସତେ ଯେପରି ପ୍ରତି ଗାଁର ପୁରୁଷ, ସ୍ତ୍ରୀ, ପିଲା ପିଲି ଘୋଡ଼ା, ଓଟ ଓ ଛେଳି ପ୍ରଭୃତି ଯାହା ପାଉଛନ୍ତି ଧରି ପଳେଇଆସୁଛନ୍ତି ।

ସାମନ୍ତ ଯେତେ ଆଗକୁ ଆଗକୁ ଗଲେ ଆକ୍ରମଣକାରୀ ସମ୍ପର୍କରେ ସେତେ ଭୟାବହ କଥାମାନ ଶୁଣାଗଲା । ହମୀର ଦେଖିବାକୁ ଭୟଙ୍କର—ତାର

ତିନ ଆଖି, ଆଠ ହାତ ଓ ଛହାତର ଗୋଟିଏ ଖଣ୍ଡା ଅଛି । ଆଉ କେତେକ ହମୀରର ସୈନ୍ୟବାହିନୀର ଭୟାବହ ବିବରଣୀମାନ ଦେଲେ । କେତେକ କହିଲେ ଯେ, ତାର ଉଡ଼ନ୍ତା ଘୋଡ଼ା ଓ ହାତୀ ଅଛନ୍ତି—ଦୁଇ ମୁହାଁ ମଣିଷଖିଆ ରାକ୍ଷସ ତା ପାଖରେ ଅଛନ୍ତି—ହମୀର ଯାଉଥିବା ସମୟରେ ଆକାଶ ପୂରା ଅନ୍ଧାର ହୋଇଯାଏ—ଖଣ୍ଡା ବାହାର କରିବା ବେଳେ ବିଜୁଳି ଖେଳି ଯାଏ ଇତ୍ୟାଦି ।

ଏହି ସବୁ ବିଭିନ୍ନ ଭୟାବହ ମନଗଢ଼ା କଥା କେତେଦୂର ସତ୍ୟ ତାହା ଜାଣିବା ପାଇଁ ସାମନ୍ତ ଚେଷ୍ଟା କଲେ । ସେ ଗୋଟିଏ କଥା ସ୍ଥିର କଲେ ଯେ, ଯଦିଓ କେହି କିଛି ପ୍ରକୃତ କଥା ଜାଣି ନାହାନ୍ତି, ତଥାପି ଗୋଟିଏ କଥା ଠିକ୍ ଯେ, ଆକ୍ରମଣକାରୀ ସପାଲଦକ୍ଷ (ଆଜମିର) ଅତିକ୍ରମ କରିଗଲାଣି– ଏ ବିଷୟ ସମସ୍ତେ କହୁଛନ୍ତି । ଯେବେ ଏହା ସତ୍ୟ ହୋଇଥାଏ, ତା ହେଲେ ହୁଏତ ଘୋଘାଗଡ଼ ଦଖଲ କରିଗଲାଣି ବା ତାହା ଟପି ଆଗକୁ ଗଲାଣି । ଘୋଘାଗଡ଼ ଅବସ୍ଥା କଣ ହୋଇଥିବ ତାହା ଭାବି ସାମନ୍ତ ବିଚଳିତ ହୋଇଗଲେ । ଦେଖା ହୋଇଥିବା ଶରଣାର୍ଥୀମାନେ ମଧ୍ୟ ଏପରି କେତେକ ଖବର ଦେଇଛନ୍ତି, ଯାହା ଫଳରେ କି ତାଙ୍କର ଉଦ୍‌ବେଗ ବୃଦ୍ଧି ପାଇଲା ।

ଆଠଦିନ ଧରି ଶରଣାର୍ଥୀଙ୍କ ସ୍ରୋତ ଚାଲୁଥିବାର ସେ ଦେଖିଲେ । ନବମ ଦିନ ଏହି ସ୍ରୋତ ଟିକିଏ କମିବା ଜଣାଗଲା ଓ ଏକାଦଶ ଦିନ ଜଣେ ଲୋକ ସୁଦ୍ଧା ଦେଖିବାକୁ ମିଳିଲା ନାହିଁ । ଚାରିଆଡ଼ ଜନଶୂନ୍ୟ, ଏପରିକି ବାଟରେ ଥିବା ବିଶ୍ରାମଘରମାନଙ୍କରେ ଜଣେ ଲୋକ ସୁଦ୍ଧା ଦେଖିବାକୁ ମିଳିଲା ନାହିଁ । ଗାଁମାନ ଭୟାବହ ଲାଗୁଥାଏ ।

ଘୋଘାଗଡ଼ର ଅବସ୍ଥା କଣ ହୋଇଥିବ ତାହା ଅଧିକ କଳ୍ପନା ନ କରି ସାମନ୍ତ ଆଗକୁ ଦ୍ରୁତ ଗତିରେ ଚାଲିଲେ ଓ ମୃତ୍ୟୁ ଦେବତା ନିଜେ ଆସିଲେ ମଧ୍ୟ ତାଙ୍କର ମୁହାଁମୁହିଁ ହେବାକୁ ସେ ପ୍ରସ୍ତୁତ ହେଲେ । ସେ ତ ଚୌହାନ ବଂଶର ପିଲା !

ଦୁଇଦିନ ଧରି ଜନହୀନ ଗାଁମାନଙ୍କ ବାଟ ଦେଇ ସେ ଚାଲିଲେ । ଠିକ୍ ଶ୍ମଶାନପରି ଗାଁମାନ ଦେଖାଯାଉଥାଏ । ପଞ୍ଚଦଶ ଦିବସରେ ତାଙ୍କ ସାଙ୍ଗରେ ଥିବା ଆହତ ଲୋକର ଅସୁସ୍ଥତା ଅତିରିକ୍ତ ବଢ଼ିଯିବାରୁ ତାକୁ ସାଙ୍ଗରେ ନେବା ଅସମ୍ଭବ ହୋଇପଡ଼ିଲା । ତେଣୁ ସାମନ୍ତ ତାକୁ ବାଟରେ ଛାଡ଼ି; ସାଙ୍ଗରେ ଆସୁଥିବା

ଅନ୍ୟ ଲୋକଙ୍କୁ ମଧ୍ୟ ତାର ଦେଖାଶୁଣା କରିବାପାଇଁ ଛାଡ଼ି ଦେଇ ଚାଲିଲେ । ସଙ୍ଗୀ ଦୁଇ ଜଣ ତାଙ୍କୁ ଏକାକୀ ନ ଯିବାକୁ କହିବା ସତ୍ତ୍ୱେ, ସେ ଆଗକୁ ଚାଲିଲେ । ମନରେ ତାଙ୍କର ଅଜଣା ଆଶଙ୍କା । ଅନିଶ୍ଚିତ ଅବସ୍ଥାରେ ବାଟରେ ଅଟକିବା ଅପେକ୍ଷା ଘଟଣାପୂର୍ଣ୍ଣ କ୍ଷେତ୍ରରେ ଶୀଘ୍ର ପହଞ୍ଚିବା ଦରକାର ବୋଲି ସେ ସ୍ଥିର କଲେ । ଦୁଇ ଦିନ ଭିତରେ ସେ ଗୋମୋଗଆରେ ପହଞ୍ଚି ଯିବେ ବୋଲି ଭାବିଲେ । ସେଠାରେ ତାଙ୍କ ବାପା ଅପେକ୍ଷା କରିଥିବେ । ସାମନ୍ତ ପହଞ୍ଚିଗଲେ ଉଭୟେ ଯେତେ ଶୀଘ୍ର ପାରନ୍ତି ସାଙ୍ଗ ହୋଇ ଘୋଘାଗଡ଼ ଯିବେ ।

ପଛରେ ରହିଯାଇଥିବା ଆହତ ଲୋକେ କାଲେ ଆସି ମିଶିଯିବେ, ସେହି ଆଶାରେ ସାମନ୍ତ ପ୍ରଥମ ଦୁଇଦିନ ଆସ୍ତେ ଆସ୍ତେ ଚାଲିଲେ । ପ୍ରତି ମୁହୂର୍ତ୍ତରେ ଓଟର ପାଦ ଧ୍ୱନି ଶୁଭୁଥାଏ ବା ଶୁଣିବା ପରି ତାଙ୍କର ମନେହେଉଥାଏ । କିନ୍ତୁ ଚାରିଆଡ଼କୁ ଚାହିଁ ସେ କିଛି ଦେଖିପାରୁ ନଥାନ୍ତି ।

ଭୟଙ୍କର ନିସ୍ତବ୍ଧତା । ଜନଶୂନ୍ୟ କୁଡ଼ିଆ ବା ଯୁଦ୍ଧ ଭୂମିରେ ପ୍ରାଣ ତ୍ୟାଗ କରିଥିବା ବୀରମାନଙ୍କ ଉଦ୍ଦେଶ୍ୟରେ ତିଆରି କରାଯାଇଥିବା ସ୍ମାରକ ଛଡ଼ା ଆଉ କିଛି ଦେଖିବାକୁ ମିଳୁ ନଥାଏ ।

ଏହି ରାସ୍ତା ଦେଇ ସୋମନାଥଙ୍କ ପାଖକୁ ଯିବାବେଳେ ରାସ୍ତାରେ ବହୁ ଜନ ସମାଗମ ହୋଇଥାଏ ଓ ଯାତ୍ରୀମାନେ ଦଳ ଦଳ ହୋଇ ଚାଲିଥାନ୍ତି । ରାସ୍ତାର ଦୁଇ ପାଖରେ ଥିବା ଗାଁମାନଙ୍କରୁ କୁକୁରର ରାବ ଶୁଣାଯାଏ । ବାଟରେ ଥିବା ଆଶ୍ରୟ ଗୃହମାନଙ୍କରେ ଦଳ ଦଳ ଗାଆଁଲି ବସି ନାନା ପ୍ରକାର କଥାବାର୍ତ୍ତା ହେଉଥାନ୍ତି । କିନ୍ତୁ ଆଜି ମଣିଷ କଥା ଦୂରେ ଥାଉ, ଜନ୍ତୁଟିଏ ସୁଦ୍ଧା ଦେଖିବାକୁ ମିଳୁ ନାହିଁ ।

ରାସ୍ତାର ଏହି ନିର୍ଜ୍ଜନତା ଯୋଗୁ ସାମନ୍ତଙ୍କୁ ମାଡ଼ପଡ଼ିଲା ଭଳି ଲାଗୁଥାଏ, ଛାତି ଅଧିକରୁ ଅଧିକ ଧଡ଼ପଡ଼ ହେଉଥାଏ । ଏକାକୀ ଯାତ୍ରା କରିବାରେ ପୂର୍ବେ ତାଙ୍କୁ ଏପରି କେବେ ଭୟ ଲାଗୁନଥିଲା । ଏହି ନିର୍ଜ୍ଜନତାରୁ ରକ୍ଷା ପାଇବା ପାଇଁ ସେ ନିଜେ ପାଟି କରିବାକୁ ଭାବିଲେ । କିନ୍ତୁ ନିଜ ସ୍ୱରର ଶବ୍ଦର ପ୍ରତିଧ୍ୱନି କେବଳ ତାଙ୍କ ନିକଟକୁ ଫେରିଆସିଲା । ତାଙ୍କର ଛାତି ଦବିଗଲା । ଚାରିଆଡ଼େ ଭୀଷଣ ନିର୍ଜ୍ଜନତା । ନୀରବରେ ପ୍ରଭୁ ସୋମନାଥଙ୍କୁ ପ୍ରାର୍ଥନା କରି କରି ସାମନ୍ତ ଆଗକୁ ଚାଲିଲେ ।

ବାଟରେ ଗୋଟିଏ ବଡ଼ ବିଶ୍ରାମଘରେ ପହଞ୍ଚିବାରୁ ସେଠାରେ ନିଶ୍ଚୟ କାହା ସାଙ୍ଗରେ ଦେଖା ହେବ ବୋଲି ସେ ଆଶା କରୁଥିଲେ । ଘମୋଇଆ ଆଉ ବେଶି ବାଟ ନାହିଁ । ହୁଏତ ତା ବାପା ସେଇ ବାଟ ଦେଇ ଯାଇଥିବେ । ବାପା ଯେବେ ସେଠାରେ ଆଗରୁ ପହଞ୍ଚି ଘୋଘାଗଡ଼ ଯାଇଥିବେ ତାହାହେଲେ କଣ ହେବ ? ବାପା ବାଜିରେ ଜିତିବେ ଓ ସେ ହାରିବ । ଯାହାହେଉ ପଛକେ, ବନ୍ଧୁବାନ୍ଧବ ଓ ସାଙ୍ଗ ସାଥୀମାନେ ତାଙ୍କୁ ଉତ୍କଣ୍ଠିତ ଚିତ୍ତରେ ଅପେକ୍ଷା କରି ରହିଥିବେ । ମରୁଭୂମି ଦେଇ ସେ ଯେପରି ସାହସରେ ଆସିଛନ୍ତି ତାଙ୍କଠାରୁ ତାହା ଶୁଣି ସମସ୍ତେ ଗର୍ବ ଅନୁଭବ କରିବେ ।

ଗଜନୀର ହମୀରଙ୍କ ଭୟରେ ଲୋକେ ପଳାଇ ଆସୁଥିବାର ସେ ଦେଖିଛନ୍ତି । କିନ୍ତୁ ହମୀର ଅଛି କେଉଁଠି ? ଏସବୁ ଲୋକ କଣ ବୋକା ? ସେମାନେ ବୁଝୁନାହାନ୍ତି ଯେ ଘୋଘାବାପାଙ୍କ ସହିତ ଯୁଦ୍ଧ ନ କରି ଆକ୍ରମଣକାରୀ କିପରି ଏତେ ବାଟ ଯିବ ?

ଏହିପରି ଚିନ୍ତା ଭିତରେ ସେ ଉପରବେଳାଟି ଏକ ବିଶ୍ରାମ ସ୍ଥଳରେ କଟାଇଲେ । ଦୁଷ୍ଟ ରାକ୍ଷସ ବହୁ ବିରାଟ ସହର ନଷ୍ଟ କରିଦେବା କାହାଣୀ ସେ ପିଲାଦିନେ ଶୁଣିଥିଲେ । ସେ ବିଶ୍ରାମ ନେଇଥିବା ନିର୍ଜନ ଘର ତାଙ୍କୁ ପିଲାଦିନର ସେହି କଥା ମନେ ପକାଇ ଦେଲା ।

କୂଅରେ ପାଣି ଥିଲା, କିନ୍ତୁ ପାଖରେ ପଡ଼ିଥିବା ବାଲ୍ଟି ଅନେକ ଦିନ ଧରି କେହି ବ୍ୟବହାର କରି ନାହାନ୍ତି । ମନ୍ଦିରରେ ଥିବା ମୂର୍ତ୍ତିଟି ବହୁ ଦିନ ଧରି ଅପୂଜା ପଡ଼ି ରହିଛନ୍ତି । ନିକଟରେ ପରିଷ୍କାର ଛଅଟି କୁଡ଼ିଆ ଘର ଥିଲେ ସୁଦ୍ଧା ରହିବାକୁ ଗୋଟିଏ ହେଲେ ଲୋକ ନ ଥିଲେ ।

କିଛି ସମୟ ପରେ ତାଙ୍କ ମନରୁ ଭୟ ଦୂର ହେଲା ଏବଂ ଏହି କାପୁରୁଷତା ପାଇଁ ନିଜ ଉପରେ ସେ ରାଗିଲେ । ସେ ଘୋଘାବାପାଙ୍କର ନାତି ଓ ଚୌହାନ ବଂଶରେ ତାଙ୍କର ଜନ୍ମ; ପ୍ରଭୁ ସୋମନାଥଙ୍କର ମଧ୍ୟ ବାର୍ତ୍ତାବହ । ତାଙ୍କର ଧୈର୍ଯ୍ୟହରା ହେବା ଉଚିତ ନୁହେଁ । ସେ ରାଗରେ ନିଜର ଓଠ କାମୁଡ଼ି ଆଗକୁ ଯିବାକୁ ପ୍ରସ୍ତୁତ ହେଲେ । ଏହି ସ୍ଥାନ ଓ ଘୋଘାଗଡ଼ ମଧ୍ୟରେ ହମୀରର ହଜାର ହଜାର ସୈନ୍ୟ ଥିଲେ ସୁଦ୍ଧା ତହିଁରେ କିଛି ଯାଏ ଆସେ ନାହିଁ । ତାଙ୍କୁ ଯେ କୌଣସି ମତେ ଘୋଘାଗଡ଼ରେ ପହଞ୍ଚିବାକୁ ହିଁ ହେବ ।

ଅନନ୍ତଦୂର ଅତିକ୍ରମ କରିବା ପରେ ଦୂରରେ ଧୂଳି ଉଡ଼ୁଥିବାର ସେ ଦେଖିଲେ । ଏହାର ଅର୍ଥ କେହି ବାଟୋଇ ଆସୁଛି । କେତେଦିନ ହେଲା ସେ କୌଣସି ଲୋକ ଦେଖିନାହାନ୍ତି । ଯଦି ଆଗନ୍ତୁକଟି ଶତ୍ରୁ ହୋଇଥାଏ, ତହିଁରେ କ୍ଷତି କଣ ? ଶତ୍ରୁ ହେଲେବି ତ ସେ ମଣିଷ, ତେଣୁ ସେ ସ୍ୱାଗତଯୋଗ୍ୟ । ଆଗନ୍ତୁକ ଯଦି ଶତ୍ରୁ ରୂପେ ଆଘାତ କରେ ତେବେ ସେ ପ୍ରତିଆଘାତ ପାଇବ । ସାମନ୍ତ ନିଜର ଧନୁଶର ଦେଖିନେଲେ, ଖଣ୍ଡା ଢିଲା କରି ପରଖି ନେଲେ ଓ ଅଣ୍ଟାରେ ଥିବା ଛୁରୀଟି ଠିକ୍ ଅଛି କି ନାହିଁ ଦେଖିଲେ ।

ଧୂଳି ଉଡ଼ିବା ସ୍ଥାନ ନିକଟ ହୋଇ ଆସିଲା । ଦୁଇଜଣ ଲୋକ ଓଟରେ ଆସୁଥିବାର ଦେଖି ସାମନ୍ତ ଅତିଶୟ ଖୁସି ହେଲେ । ସେ ଦୁହେଁ ଶୀଘ୍ର ଶୀଘ୍ର ଆସୁଥିଲେ । ତୃଷାର୍ତ୍ତ ଜଳାଶୟ ଦେଖିଲେ ଯେପରି ତାହା ନିକଟକୁ ଦଉଡ଼େ, ସେ ସେହିପରି ସେମାନଙ୍କ ନିକଟକୁ ଦଉଡ଼ିଗଲେ । ସାମନ୍ତ ଡାକିବାରୁ ସେମାନେ ଜବାବ ଦେଲେ । ସେମାନଙ୍କ ସ୍ୱର ଶୁଣି ଆନନ୍ଦରେ ସାମନ୍ତଙ୍କର ପେଟ ପୂରି ଉଠିଲା । ସେ ନିଜ ପୂର୍ବ ଧୈର୍ଯ୍ୟ ଫେରି ପାଇ ସାମୟିକ ଦୁର୍ବଳତା ପାଇଁ ହସି ଆଗକୁ ଗଲେ ।

## ୧୭

## ଘୃମୋରିଆ ଦୁର୍ଗ

ଆଗନ୍ତୁକ ଦୁଇ ଜଣ ସଶସ୍ତ୍ର ରାଜପୁତ ଯୋଦ୍ଧା । ଜଣେ ମଧ୍ୟମ ବୟସ୍କ ଏବଂ ଆଉ ଜଣେ ଯୁବକ । ସାମନ୍ତଙ୍କୁ ଦେଖି ବୟସ୍କ ଲୋକ ଜଣକ ବଡ଼ ପାଟିରେ ପଚାରିଲା, "ତମେ କିଏ ?" ତାର ସଙ୍ଗୀ ଯୁବକଟି ତରବାରିକୁ କୋଷମୁକ୍ତ କରି ହାତରେ ଧରିଲା ।

ସାମନ୍ତ ଚିରାଚରିତ ପ୍ରଥା ଅନୁଯାୟୀ ଉଚ୍ଚସ୍ୱରରେ "ଜୟ ସୋମନାଥ" କହି ସମ୍ବୋଧନ କରିବା ସଙ୍ଗେ ସଙ୍ଗେ ନିଜ ତରବାରି କାଢ଼ି ପ୍ରସ୍ତୁତ କରି ରଖିଲେ ।

ବୟସ୍କ ବ୍ୟକ୍ତି ପଚାରିଲେ—କୁଆଡେ ଯାଉଛ ?

ସାମନ୍ତ—ଘୋଘାଗଡ଼ ।

ଏତେ ବେଳକୁ ସେ ଦୁହେଁ ସାମନ୍ତଙ୍କ ପାଖାପାଖି ହୋଇଗଲେଣି ।

ବୟସ୍କ ବ୍ୟକ୍ତିଟି ପୁଣି ପଚାରିଲା—ତମେ ବର୍ତ୍ତମାନ କେଉଁଠୁ ଆସୁଛ ? ଝାଲୋରରୁ ?

ଏପରି ପ୍ରଶ୍ନରେ ସାମନ୍ତ ବିରକ୍ତ ହୋଇ କହିଲେ, "ଆପଣମାନେ ଏପରି ପ୍ରଶ୍ନ ବାରମ୍ବାର କାହିଁକି ପଚାରୁଛନ୍ତି ?"

ସାମନ୍ତର ପଗଡ଼ି ବନ୍ଧାରୁ ଆଗନ୍ତୁକ ଦୁହେଁ ତାଙ୍କୁ ଚିହ୍ନିଲେଣି । ସେମାନେ ପୁଣି ପଚାରିଲେ,"ଚୌହାନ, ତମେ ରାସ୍ତାରେ ହମୀରର ସୈନ୍ୟବାହିନୀ ବିଷୟରେ କିଛି ଖବର ପାଇନ୍ଥ କି ?"

ସାମନ୍ତ ଏଥିରେ ଆଶ୍ଚର୍ଯ୍ୟ ହୋଇ କହିଲେ, "ନାହିଁତ ! ଆପଣ ଦୁହେଁ କିଏ ?"

"ଆମେ ଘୋର ବିଶାଳରୁ ଆସିଛୁ । ତମେ କହୁଛ ଯେ ମ୍ଳେଛମାନଙ୍କୁ ବାଟରେ ଦେଖି ନାହଁ—ବଡ଼ ଆଶ୍ଚର୍ଯ୍ୟ କଥା ? କୁଆଡ଼େ ଗଲେ ସେମାନେ ?"

ସାମନ୍ତ – ମୁଁ ଜାଣିବି କିପରି ? ମୁଁ କେବଳ ବାଟରେ ଜନଶୂନ୍ୟ ଗ୍ରାମ ଓ ପରିତ୍ୟକ୍ତ ଘରମାନ ଦେଖି ଦେଖି ଆସିଲି ।

ବୟସ୍କ ଜଣଙ୍କ ପଚାରିଲେ, "ତେବେ ହମୀର ଗଲା କୁଆଡ଼େ ?"

ସାମନ୍ତ ପଚାରିଲେ, "ଆପଣମାନେ ହମୀରକୁ କେଉଁଠି ଭେଟିଥିଲେ ?"

ବୟସ୍କ ରାଜପୁତ ଜଣକ ନିର୍ମମ ହସ ହସି କହିଲେ, "ଆମେମାନେ କେଉଁଠି ଭେଟି ନାହୁଁ ।"

ସାମନ୍ତ ପଚାରିଲେ, "ସେ କଣ ତେବେ ମୁଲତାନ ପାର ହୋଇ ନାହିଁ ?"

ଆଗନ୍ତୁକ ଦୁଇଜଣ ପୁଣି ନିର୍ମମ ଭାବରେ ହସିଲେ । ଏହା ଦେଖି ସାମନ୍ତ କିଛି ବୁଝି ନପାରି ଅଧିକ ବ୍ୟସ୍ତ ହେଲେ । ବୟସ୍କ ରାଜପୁତ୍ର ଜଣକ ସାମନ୍ତ ପାଖକୁ ଆସି ସସ୍ନେହରେ ମଧୁର ସ୍ୱରରେ କହିଲା, "ଭାଇ, ତୁମେ କାହିଁକି ଘୋଘାଗଡ଼ ଯାଉଛ ?"

ସାମନ୍ତ ସଗର୍ବ କହିଲେ, "ମୁଁ କାହିଁକି ଯାଉଛି ? ସେଠି ମୋର ଘର ଓ ମୁଁ ଘୋଘାବାପାଙ୍କ ନାତି । ମୁଁ ସେଠାକୁ ଯିବି ନାହିଁ ତ ଆଉ କେଉଁଠାକୁ ଯିବି ?"

ଯାତ୍ରୀ ଦୁଇଜଣ ପରସ୍ପରକୁ ବିଚିତ୍ର ଭାବରେ ଚାହିଁଲେ । ବୟସ୍କ ରାଜପୁତ୍ ଜଣକ ନିଜ ଓଠକୁ ଆଣି ସାମନ୍ତଙ୍କ ଓଠ ପାଖରେ ଲଗାଇ ସ୍ନେହରେ ତାଙ୍କ ପିଠି ଆଉଁସି କହିଲା, "ଚୌହାନ, ତମେ ଘୋଘାଗଡ଼ କେବେ ଛାଡ଼ିଲ ?"

ସାମନ୍ତ ଉତ୍ତର ଦେଲେ, "କାହିଁକି ? ମୁଁ ତ ସେଠାରୁ ଆସିବା ପ୍ରାୟ ତିନିମାସ ହେବ ।"

ବୟସ୍କବ୍ୟକ୍ତି—ବାପ, ଏହି ତିନିମାସ ମଧ୍ୟରେ ଭୟାବହ କାଣ୍ଡମାନ ଘଟି ଗଲାଣି । ତମେ ଆମ ସାଙ୍ଗରେ ଚାଲ ।

ଏହି ରାଜପୁତ୍ର ଦୁଇଜଣଙ୍କ ମୁହଁର ଭାବଭଙ୍ଗୀ ଓ କଥା ଶୁଣି ସାମନ୍ତଙ୍କ ମନରେ ପୁଣି ଭୟର ସଞ୍ଚାର ହେଲା । ସାମନ୍ତ ପଚାରିଲେ, "କାହିଁକି ? କଣ ହୋଇଛି ? ଆପଣମାନେ କିଏ ?"

ବୟସ୍କ ବ୍ୟକ୍ତି—ଯାହା ହୋଇଛି ତମେ ନ ଜାଣିବା ଭଲ । ତମେ ଏବେ ଆଗକୁ ନ ଯାଇ ପଛକୁ ଯାଅ । ଚୌହାନ, ଏ ତିନିମାସ ଭିତରେ ଦୁନିଆ ଓଲଟ ପାଲଟ ହୋଇଯାଇଛି ।

ସାମନ୍ତ—ଆପଣ ମୋତେ ଏଭଳି କାହିଁକି କହୁଛନ୍ତି ? ପ୍ରକୃତରେ କଣ ହୋଇଛି ?

ବୟସ୍କ ରାଜପୁତ ଯାତ୍ରୀଙ୍କର ଆଖିରେ ଲୁହ ଦେଖା ଦେଲା । ସେ କହିବାକୁ ଲାଗିଲା—କଣ ନ ହେଲା, ବାପ ! ଆମର ସବୁ ଆଶା ଧୂଳି ହୋଇ ଯାଇଛି । ଚୌହାନ ବଂଶର ସବୁଠାରୁ ବଡ଼ ବୀର ବାଲମଦେବଙ୍କୁ ହତ୍ୟା କରା ହୋଇଛି । ତାଙ୍କ ସହିତ ପଚାଶ ହଜାର ଯୁବକ ଓ ସାହସୀ ଯୋଦ୍ଧା ମରିଛନ୍ତି । ସପାଲଦକ୍ଷ ଶ୍ମଶାନରେ ପରିଣତ ହୋଇଛି । ରାଜା ଶାରଙ୍ଗଦେବ ଓ ରାଓ ଲକ୍ଷ୍ମଣ ଘୋର ବଟାଳିକୁ ପଳାଇ ଯାଇଛନ୍ତି । ମ୍ଲେଚ୍ଛ ଜିଣି ଯାଇଛି । ରାଜପୁତ ସୈନ୍ୟ ବାହିନୀ ନଷ୍ଟ ହୋଇଯାଇଛି ।

ସାମନ୍ତ—ମ୍ଲେଚ୍ଛ ଏବେ କେଉଁଠି ? ମୁଁ ଝାଲୋରରୁ ବର୍ତ୍ତମାନ ଆସୁ ଥିବାରୁ ଦୃଢ଼ ଭାବେ କହିପାରେ ଯେ, ସେ ଏ ବାଟେ ଯାଇନାହିଁ ।

ବୟସ୍କ ବ୍ୟକ୍ତିଟି ତାର ସଙ୍ଗୀ ଯୁବକ ଆଡ଼କୁ ଚାହିଁ କହିଲା, "ତାହେଲେ ହମୀର ଆମକୁ ଠକି ଦେଲା ।" ତା ପରେ ସେ ସାମନ୍ତଙ୍କ ଆଡ଼କୁ ଚାହିଁ କହିଲା, "ପୁଅ, ଆମେ କହୁଛୁ, ତୁମେ ଆମ ସାଙ୍ଗରେ ଆସ । ଶାରଙ୍ଗଦେବ ବାପୁ ତୁମକୁ ଦେଖିଲେ ଆଦର କରିବେ ।"

ସାମନ୍ତ—ନାଁ, ମୁଁ ଯେତେ ଶୀଘ୍ର ପାରେ ଘୋଘାବାପାଙ୍କ ନିକଟକୁ ଯିବ । ଆପଣଙ୍କ ଅନୁରୋଧ ରକ୍ଷା କରି ନ ପାରି ଦୁଃଖିତ ।

ଏବେ ଯୁବକ ଜଣକ ସାମନ୍ତଙ୍କୁ ରାଜି କରିବା ପାଇଁ କହିଲା—ଆମ କଥା ମାନି ଆମ ସାଙ୍ଗରେ ଆସ ।

ସାମନ୍ତ—କାହିଁକି ? ଘୋଘାଗଡ଼ ସିଧା ଯିବା ପାଇଁ ମୁଁ ଆଦେଶ ପାଇଛି । ତାହା ଅମାନ୍ୟ କରିବି କିପରି ? ରାତି ହେବା ଆଗରୁ ମୁଁ ଭମୋରିଆରେ ପହଞ୍ଚିବି ।

ଯୁବକ—ନାଇଁ ଭାଇ, ଆଗକୁ କେବେ ଯାଅ ନାହିଁ ।

ସାମନ୍ତ—ମୁଁ ନିଶ୍ଚୟ ଯିବ ।

ଯୁବକ କାହା ଆଦେଶରେ ଯାଉଛ ?

ସାମନ୍ତ—କାହା ଆଦେଶ ! ପ୍ରଭୁ ସୋମନାଥଙ୍କର ଆଦେଶ ।

ଏବେ ସେହି ବୟସ୍କ ବ୍ୟକ୍ତିଟି ସାମନ୍ତଙ୍କ ଓଟକୁ ଅଟକାଇ, "କଣ ଆଦେଶ ?" ବୋଲି ପଚାରିଲା । ସାମନ୍ତଙ୍କ ମନରେ ଏହି ଦୁଇଜଣ ରାଜପୁତଙ୍କ ପ୍ରତି ସନ୍ଦେହ ଜାତ ହେଲା । ସେମାନେ କାହିଁକି ତାଙ୍କୁ ଅଟକାଉଛନ୍ତି ? ଏହା କଣ କିଛି ଷଡ଼ଯନ୍ତ୍ର ? ମୁସଲମାନ ଆକ୍ରମଣକାରୀ କଣ ସେମାନଙ୍କୁ ପଠାଇଛି ?

ସାମନ୍ତ ନିଜ ଓଟକୁ ଆଗକୁ ଚଳାଇ ନେଇ କେବଳ ଏତିକି କହିଲେ, "ମୋର ଯାହା କହିବାର କଥା ତାହା ଘୋଘାବାପାଙ୍କୁ କେବଳ କହିବି । ଅନ୍ୟ କାହାକୁ ନୁହେଁ ।" ତାଙ୍କ ମନ ଅତିମାତ୍ରାରେ ବ୍ୟଗ୍ର ଓ ଅଧୀର ହେଲା । ଘୋଘାଗଡ଼ ଆଉ ଅଳ୍ପ ବାଟ । ଏପରି ଅବସ୍ଥାରେ ଆଉ ସେ ଫେରିବେ ବା କିପରି ?

ବୟସ୍କ ରାଜପୁତଟିର ଆଖି ଲୁହରେ ଛଳ ଛଳ ହୋଇଗଲା । ତାଙ୍କର ସେହି ଯୁବକ ସାଥିକୁ ଚାହିଁଲା ବେଳକୁ ତାର ଆଖି ମଧ୍ୟ ସେହିପରି ଲୁହରେ ପୂରିଛି । ସାମନ୍ତ ଉତ୍ସାହର ସହିତ ଓଟରେ ଆଗକୁ ଅଗ୍ରସର ହେବା ପରେ ବହୁ ସମୟ ଧରି ଦୁଃଖ ମନରେ ତାଙ୍କୁ ଚାହିଁ ରହିଲେ ସେ ଦୁଇଜଣ ।

ଭମୋରିଆ ପାଖେଇ ଆସିବା ପର୍ଯ୍ୟନ୍ତ ସାମନ୍ତ ଆଉ କାହାରିକୁ ଦେଖିଲେ ନାହିଁ । ନାନା ଚିନ୍ତା ତାଙ୍କ ମନକୁ ଆକ୍ରାନ୍ତ କଲା । ବୋଧହୁଏ ହମୀର ମୁଲତାନ ଦଖଲ କରିଗଲାଣି ଓ ସଫାଲଦକ୍ଷର ପତନ ହୋଇଛି । ଚୌହାନ

ବଂଶର ବଡ଼ ଯୋଦ୍ଧା ବାଲମଦେବଙ୍କର ମୃତ୍ୟୁ ହୋଇଛି । ହମୀର ଘୋର ବିଶାଳ ନ ଯାଇ ମରୁଭୂମି ବାଟେ କେଉଁ ଜାଗାକୁ ଯାଇଛି କେହି ଜାଣନ୍ତି ନାହିଁ । ବାଟ କଡ଼ର ଗାଁମାନଙ୍କରୁ ଲୋକେ ପଳାଇ ଯାଇ ଥିବାରୁ ଘର ସବୁ ଶୂନ୍‌ଶାନ ।

ଘୋଘାଗଡ଼ ଅବସ୍ଥା କଣ ହୋଇଥିବ ? ତାହାତ ମୁଲତାନରୁ ସ ଫାଲ-ଦକ୍ଷକୁ ଯିବା ବାଟରେ ! ମୁସଲମାନମାନେ କଣ ଘୋଘାଗଡ଼ ଦଖଲ କରି ଯାଇଛନ୍ତି ! ଆକ୍ରମଣକାରୀ ଘୋଘାଗଡ଼ ଛାଡ଼ ସିଧା ସଫାଲଦକ୍ଷ ଯାଇଥିବ । ଘୋଘାବାପାଙ୍କ ଅବସ୍ଥା କଣ ହୋଇଥିବ ? ଏହି ସବୁ ଚିନ୍ତା ମନକୁ ଆସି ସାମନ୍ତଙ୍କ ମନ ଅସ୍ଥିର ହେଲା । ଆକାଶକୁ ଚାହିଁ ପ୍ରଭୁ ସୋମନାଥଙ୍କୁ ସେ ପ୍ରାର୍ଥନା କଲେ । ତାଙ୍କର ବିଶ୍ବାସ ସେମାନେ ଯେତେବେଳେ ଦେବ ଦେବ ମହାଦେବଙ୍କର ଆଜ୍ଞା ପାଳନ କରୁଛନ୍ତି ସେତେବେଳେ ତାଙ୍କର ଓ ତାଙ୍କ ପରିବାରର କଣ କ୍ଷତି ହୋଇପାରେ !

ତାଙ୍କର ପ୍ରଥମ ଆଗ୍ରହ, ଉତ୍ସାହ ଓ ଆଶା ଧୂଳିସାତ୍ ହୋଇ ଦେଖାଦେଲା ନୈରାଶ୍ୟ । ଭମୋରିଆ ଦୁର୍ଗ ଦୃଷ୍ଟିରେ ପଡ଼ିବା କ୍ଷଣି ତାଙ୍କର ହୃଦୟରେ ପୁଣି ଆଶାର ସଞ୍ଚାର ହେଲା, କିନ୍ତୁ ଏହି ଆଶା କ୍ଷଣକ ଲାଗି । ଦୁର୍ଗ ଉପରେ ପଞ୍ଝା ପଞ୍ଝା ଶାଗୁଣା ଉଡ଼ୁଥିବାର ଦେଖି ମନ ଭୟଭୀତ ହେଲା ।

ମରୁ ପ୍ରାନ୍ତର ମଝିରେ ଓ ସମତଳ ପତ୍ତନରୁ ୭୦୦ ଫୁଟ ଉପରେ ବିରାଟ ଶୂନ୍ୟତା ଭିତରେ ଭମୋରିଆ ଦୁର୍ଗ । ତାର ଚାରିପାଖରେ ଦେଖା ଦେଉଥିବା ନିସ୍ତବ୍ଧତା ମନରେ ଭୟ ସଞ୍ଚାର କରୁଥାଏ । ଏପରିକି ଶାଗୁଣାମାନେ ମଧ୍ୟ ଏହି ଜନମାନବହୀନ ଅଞ୍ଚଳ ଛାଡ଼ ଅନ୍ୟ ଆଡ଼େ ଉଡ଼ ଯିବାକୁ ଠିକ୍ କରିଥିବାପରି ଜଣାପଡ଼ୁଥାଏ ।

ଭମୋରିଆ ଘୋଘାଗଡ଼ର ବାହାରେ ଥିବା ଗୋଟିଏ ଥାନା । ଜଣେ ସେନାପତି ଓ କେତେକ ରାଜପୁତ ସୈନ୍ୟ ସେଠାରେ ଥିଲେ । ତାଙ୍କ ଛଡ଼ା ଥିଲେ ଆଉ କେତେକ ଓଟ ରଖୁଆଳ । ଘୋଘାବାପା ସେଠାକୁ ଗଲେ ତାଙ୍କ ରହିବା ପାଇଁ ଥିଲା ଗୋଟିଏ ଶ୍ରେଷ୍ଠ ପ୍ରାସାଦ ଏବଂ ପ୍ରଭୁ ସୋମନାଥଙ୍କର ଗୋଟିଏ ଶ୍ରେଷ୍ଠ ମନ୍ଦିର । ସେ ବାଟେ ଯାଉଥିବା ଯାତ୍ରୀମାନେ ଘୋଘାବାପାଙ୍କର ଆତିଥ୍ୟ ବରାବର ଉପଭୋଗ କରୁଥିଲେ । ତେଣୁ ସେଠାରେ ସବୁବେଳେ ଲୋକ ଗହଳି ହୋଇଥାଏ ।

କିନ୍ତୁ ଆଜ ଏହାର ଦ୍ୱାର ଖୋଲା । ଭିତରେ ବିରାଟ ନୀରବତା । ଗଡ଼ର ଦ୍ୱାର ଦେଶରେ ଗୋଟିଏ ହେଲେ ଯାତ୍ରୀ କି ଗୋଟିଏ ଓଟ ଦେଖାଯାଉ ନାହିଁ ।

ଲୁହଭରା ଆଖିରେ ସାମନ୍ତ ଦୁର୍ଗର ଗୃହଆଡ଼କୁ ଦୃଷ୍ଟି ନିକ୍ଷେପ କଲେ । ଅହ୍ଲୋରାବ ଦୁର୍ଗ ଉପରେ ଉଡ଼ୁଥିବା ପ୍ରଭୁ ସୋମନାଥଙ୍କର ଧ୍ୱଜା ଆଉ ଉଡ଼ୁନାହିଁ । ସାମନ୍ତ ଭୟରେ ଅଜ୍ଞାନ ହେଲା ପରି ବୋଧ କଲେ । ତା ପରେ ନିଜର ଲୁହ ପୋଛି ଦେଇ ଗୃହଆଡ଼କୁ ପୁଣି ନିରୀକ୍ଷଣ କଲେ । ଗୃମୋରଆର ପୂର୍ବ ବିଭବ ଆଉ ନାହିଁ । ଆଜି ଏହାର ଅବସ୍ଥା ଠିକ୍ ଏକ ନିରାଭରଣା ବିଧବା ପରି । ସେ ଦୁଃଖ ମନରେ ଓଟକୁ ଦୁର୍ଗର ଦ୍ୱାର ଦେଶକୁ ନେଲେ ।

ଦୁର୍ଗ ଆଜି ଶ୍ମଶାନ ପରି ନୀରବ । ସେ ଏବଂ ତାଙ୍କ ଓଟ ସେ ସ୍ଥାନରେ ଏହି ଦୁଇଟି ମାତ୍ର ଜୀବନ୍ତ ପ୍ରାଣୀ । ସତେ ଯେପରି ଏହା ଏକ ଭୟଙ୍କର ଗୁହାରେ ପରିଣତ ହୋଇଅଛି । ଦୁର୍ଗର କାନ୍ଥ ପୂର୍ବ ପରି ଠିଆ ରହିଥିଲେ ହେଁ ଗୋଟିଏ ସୁଦ୍ଧା ମଣିଷ ନାହାନ୍ତି । ତାଙ୍କ ଓଟ ଚଞ୍ଚଳ ଗତିରେ ଦୁର୍ଗ ଉପରକୁ ଉଠିଲା । କିନ୍ତୁ ତାର ନିଃଶ୍ୱାସ ଛଡ଼ା ଆଉ କୌଣସି ଶବ୍ଦ ଶୁଣିବାକୁ ମିଳୁ ନ ଥାଏ ।

ଦୁର୍ଗର ଗୋଟିଏ ଦ୍ୱାର ଭଙ୍ଗା ହୋଇଥିବା ସାମନ୍ତ ଦେଖିପାରିଲେ । ସେହି ବାଟେ ଭିତରକୁ ଯାଇ ସେ ଦେଖିଲେ ଯେ ସବୁ ଶୂନ୍‌ଶାନ୍ ଓ ଖାଲି; ଗୋଟିଏ ଟେମେଣି ମାତ୍ର ଉଡ଼ୁଥାଏ । ପ୍ରତ୍ୟେକ ଜିନିଷ ଯେପରି ରହିବାର କଥା ସେହିପରି ଅଛି, କେବଳ ମଣିଷଟିଏ ଆଖ ପାଖରେ ନାହାଁନ୍ତି । ସାମନ୍ତ ଓଟରୁ ଓହ୍ଲାଇ ଭିତରକୁ ଗଲେ ।

ସେନାପତିଙ୍କ ଘର ଖୋଲା ପଡ଼ିଛି । ସେ ଦ୍ୱାର ଦେଶରେ ପହଞ୍ଚି ଚମକି ପଡ଼ିଲେ । ସଂପୂର୍ଣ୍ଣ ନିସ୍ତବ୍ଧତା ଭିତରୁ ଗୋଟିଏ ଶବ୍ଦ ଶୁଣାଗଲା । ଗୋଟିଏ ମୂଷା ଚଳପ୍ରଚଳ ହେଉଛି । ମଣିଷ ଦେଖି ସେ ମୂଷାଟି ମଧ୍ୟ ତାର ଗାତରେ ପଶିଗଲା । ସେନାପତିଙ୍କୁ ଡାକିବାକୁ ସାମନ୍ତଙ୍କର ଚେତନା ନଥାଏ । କିଏ କାଳେ ପଛରୁ ଆସୁଥିବ ଏହି ଆଶଙ୍କା କରି ସେ ବାରବାର ପଛକୁ ଚାହୁଁଥାନ୍ତି ଓ ନିଜ ପାଦ ଶବ୍ଦରେ ସେ ନିଜେ ଚମକି ଉଠୁଥାନ୍ତି । ଛାତ ଯେପରି ଝୁଲି ପଡ଼ୁଛି ଉଠୁଛି ସେ ସେହିପରି ଅନୁଭବ କଲେ । ଗୋଟିଏ ଗଛରେ ପତ୍ର ହଲି ଉଠିଲା । ନିଜ ଅଜାଣତରେ ସେ ଡାକି ଉଠିଲେ—"କିଏ ?" ନିସ୍ତବ୍ଧ ପ୍ରାସାଦ ଭିତରୁ ପ୍ରତିଧ୍ୱନି ଆସିଲା "କିଏ ?"

ତାର ବାପା ଏଠାରେ ଅପେକ୍ଷା କରିବେ ବୋଲି କହିଥିଲେ । ତେଣୁ ସାମନ୍ତ ବାପାଙ୍କ କଥା ମନେପକାଇ ଲୁହଭରା ଆଖିରେ ଭଗ୍ନ ଦୁର୍ଗର ଗୃହଆଡ଼କୁ

ଗୁହିଁ "ବାପା, ବାପା" ବୋଲି ପାଟି କରି ଉଠିଲେ । ଏ ଡାକର ପ୍ରତିଧ୍ୱନି ମାତ୍ର ଶୁଣାଯାଇ ନିସ୍ତବ୍ଧତା ଭିତରେ ମିଳେଇଗଲା । ଓଠକୁ ଗ୍ଡୁଡ଼ ଦେଇ ସାମନ୍ତ ମନ୍ଦିର ଭିତରକୁ ଗଲେ । ମନ୍ଦିରର ଧ୍ୱଜା-ସ୍ତମ୍ଭ କେହି ଭାଙ୍ଗିଥିବାର ଦେଖି କ୍ରୋଧ ତଥା ଭୟରେ ସେ ଥରି ଉଠିଲେ । ମନ୍ଦିର ଉପରେ ଥିବା ସୁନାର ଗମ୍ବୁଜଟି ଭାଙ୍ଗି ଯାଇଛି । ମନ୍ଦିର ଭିତରେ ଥିବା ମୁଗୁନି ପଥରର ସୁନ୍ଦର ବୃଷଭ ମୂର୍ତ୍ତିଟି ମଧ୍ୟ ଭଙ୍ଗା ହୋଇଛି ।

ସାରା ଦୁନିଆଟା ନଷ୍ଟ ହୋଇ ଗଲା ଭଳି ସାମନ୍ତ ଅନୁଭବ କଲେ । ଭୟ ଓ ଆଶଙ୍କାରେ ତାଙ୍କର ଆଖି ରକ୍ତାଭ ହୋଇ ଉଠିଲା ଓ ସେ ନିଶ୍ୱାସ ରୁଦ୍ଧ ହେଲା ଭଳି ଅନୁଭବ କଲେ ।

ତାଙ୍କର ମନେହେଲା ସେ ଯେପରି ଚେତନାହୀନ ହୋଇଯିବେ । ସାମନ୍ତ ମନ୍ଦିର ଭିତରକୁ ଯାଇ ନିରାଶ୍ରୟ ଭାବେ ପ୍ରଭୁ ସୋମନାଥଙ୍କୁ ଡାକଲେ ଓ 'ଶମ୍ଭୁ, ଶମ୍ଭୁ, ଶମ୍ଭୁ," ବୋଲି ଚିତ୍କାର କଲେ । ପ୍ରତ୍ୟୁତ୍ତରରେ କେବଳ ପ୍ରତିଧ୍ୱନି ଶୁଣା-ଗଲା "ଶମ୍ଭୁ, ଶମ୍ଭୁ, ଶମ୍ଭୁ" । ସେ ଭଗବାନଙ୍କ ମୂର୍ତ୍ତି ନିକଟକୁ ଗଲେ । ଆଖିରେ ଲୁହ ଏପରି ପୂରିଗଲା ଯେ, ସେ କିଛି ଦେଖି ପାରିଲେ ନାହିଁ । ବଂଶର ଇଷ୍ଟ ଦେବତାଙ୍କ ଶରଣାପନ୍ନ ହୋଇ ସାନ୍ତ୍ୱନା ଲାଭ ଲାଗି ସାମନ୍ତ ପ୍ରାର୍ଥନା କଲେ ଓ ଉଚ୍ଚସ୍ୱରରେ କାନ୍ଦି କାନ୍ଦି ବହୁ ସମୟ ପର୍ଯ୍ୟନ୍ତ ତଳେ ପଡ଼ିରହିଲେ । କିଛି ସମୟ ପରେ ସେ ପୁଣି ଉଠି ଠିଆହେଲେ ।

ମନ୍ଦିର ଭିତରେ ଘନ ଅନ୍ଧକାର । ସେହି ଅନ୍ଧକାର ଭିତରେ ଗୁରି-ଆଡ଼କୁ ଦୃଷ୍ଟି ପକାଇ ସାମନ୍ତ ଭୟଭୀତ ହୋଇ ପାଟି କରି ଉଠିଲେ ସୋମନାଥଙ୍କ ମୂର୍ତ୍ତି ଖଣ୍ଡ ଖଣ୍ଡ ହୋଇ ଭଙ୍ଗା ହୋଇଥିବାର ଦେଖି ସେ ପାଗଳ ପରି ଏ ପାଖ ସେ ପାଖ ହେଲେ ଓ ଚେତନାହୀନ ହେଲା ପରି ସେ ପଡ଼ିଗଲେ । କାନ୍ଥରେ ଭରା ଦେଇ ସାମନ୍ତ ଉଠିବାକୁ ଚେଷ୍ଟା କଲେ; କିନ୍ତୁ ପୁଣି ଥରେ ପଡ଼ିଗଲେ । ପଡ଼ିଗଲାବେଳେ ସେ ଅନୁଭବ କଲେ ଯେପରି ଜଣେ ବୃଦ୍ଧ ଭଙ୍ଗା ମୂର୍ତ୍ତିଟିର ପଛରେ ହାତରେ ଏକ ଦୀପ ଧରି ଠିଆ ହୋଇଛନ୍ତି । ଏହି ବୃଦ୍ଧଙ୍କୁ ପୂର୍ବରୁ କେଉଁଠାରେ ଦେଖିଥିଲା ପରି ତାଙ୍କର ମନେପଡୁଥିଲେ ସୁଦ୍ଧା, କେଉଁ-ଠାରେ ଓ କେଉଁ ଅବସ୍ଥାରେ ଦେଖିଛନ୍ତି ସେତେବେଳର ମାନସିକ ଅବସ୍ଥାରେ ସେ ଠିକ୍ ମନେ ପକାଇ ପାରିଲେ ନାହିଁ । ଗୋଟିଏ ବାଦୁଡ଼ି ତାଙ୍କ ଦେହରେ ବାଜି ଉଡ଼ି ଗ୍ଲିଗଲା । ସେ ଚିତ୍କାର କରି ପୁଣି ଥରେ ସଂଜ୍ଞାହୀନ ହୋଇ ପଡ଼ି-ଗଲେ ।

# ବିପନ୍ନ ଘୋଘାଗଡ଼

ସାମନ୍ତ ଏହି ଅବସନ୍ନ ଅବସ୍ଥାରେ କଳ୍ପନାରେ ଦେଖିଲେ, ଗୋଟିଏ ସୁନ୍ଦରୀ ଯୁବତୀ ଈଷତ୍ ହାସ୍ୟ ସହକାରେ ତାଙ୍କର କପାଳରେ ପବିତ୍ର ଶିତାଭସ୍ମ ଲଗାଇଦେଉଛି ଓ ତାହାର ମଧୁର କଣ୍ଠରେ କହୁଛି, "ହେ ମୋର ସାହସୀ ବନ୍ଧୁ, ଶୀଘ୍ର ଫେରିଆସ ।"

ସାମନ୍ତ ଚେତନା ଲଭି କରି ଅନୁଭବ କଲେ ତାଙ୍କର ମୁଣ୍ଡ ଏପର୍ଯ୍ୟନ୍ତ ବିଥାଉଛି, ଯଦ୍ୟପି ବ୍ୟଥା ଆଗପରି ସେତେ ନାହିଁ । ସେ ଅନୁଭବ କଲେ କିଏ ତାଙ୍କୁ କିଣ ପିଆଇବାକୁ ଚେଷ୍ଟା କରୁଛି । ଏହା କାହାର ହାତ ? ତାଙ୍କର ମୁଣ୍ଡ ବିଥାଉଥିବା ବେଳେ ତାହାଛଡ଼ା ଆଉ କିଏ ଶାନ୍ତି ଦେବାକୁ ଚେଷ୍ଟା କରିବ ? ସେ ଜୋର୍‌ରେ ହାତଟିକୁ ଧରିନେଲେ ଓ ଭାବିଲେ ଯେ ପର୍ଯ୍ୟନ୍ତ ସେ ବଞ୍ଚିଛନ୍ତି ଏହି ହାତ ଆଉ ଛାଡ଼ିବେ ନାହିଁ ।

ଜଣେ କିଏ ତାଙ୍କର କପାଳକୁ ଆଉଁସି ଦେବାପରି ମନେହେଲା । ସେ ଆଖି ଖୋଲି ଦେଖିବାକୁ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ । ସାମନ୍ତ ପୁଣି ଥରେ ସେହି ସୁନ୍ଦର ଉଜ୍ଜ୍ୱଳ ମୁଖଟିକୁ ଦେଖିବାକୁ ଚେଷ୍ଟା କଲେ । କିନ୍ତୁ ଦେଖିଲେ ତାଙ୍କର ଶୁଶ୍ରୂଷାକାରୀ ଜଣେ ଶୁକ୍ଳ-ଶ୍ମଶ୍ରୁ ବୃଦ୍ଧ । କେହି ଜଣେ ପରିଚିତ ବ୍ୟକ୍ତି ପରି ମନେହେଉଥାନ୍ତି । ବୃଦ୍ଧ ସ୍ନେହଭରା ଆଖିରେ ତାଙ୍କୁ ଚାହିଁଥାନ୍ତି । ଉଭୟଙ୍କ ଆଖିରେ ଲୁହ ।

ସାମନ୍ତ ବହୁ କଷ୍ଟରେ ଆଖି ଖୋଲି ଅନାଇ ବୃଦ୍ଧଙ୍କୁ ଚିହ୍ନିପାରିଲେ । ଏ ହେଉଛନ୍ତି ରାଜପରିବାରର ପୁରୋହିତ ଯାହାଙ୍କଠାରୁ ସେ ଲେଖା, ପଢ଼ା ତଥା କୌଳିକ ବିଦ୍ୟମାନ ଶିକ୍ଷା ପାଇଥିଲି । "ନନ୍ଦୀଦତ୍ତ,ରାଜଗୁରୁ !" ଏହି ସମ୍ବୋଧନ କରି ସାମନ୍ତ ବସିବାକୁ ଚେଷ୍ଟା କଲେ । କିନ୍ତୁ ଗୁଡିରେ ଭୀଷଣ କଷ୍ଟ । ନନ୍ଦୀଦତ୍ତ ତାଙ୍କୁ ଧରି ବସାଇବା ପରେ ସେ ଚାରିଆଡ଼କୁ ଭଯ୍ୟରେ ଚାହିଁଲେ ।

ସାମନ୍ତ ଚେତନା ଲଭିକରି ଭାବିଲେ—ସେ ବସିଥିବା ସ୍ଥାନଟି କଣ ଭାମୋରିଆ ଦୁର୍ଗ ? ଏ କଣ ସେହି ଶିବ ମନ୍ଦିର ? ଏ କଣ ସେହି ସ୍ଥାନ

ଯେଉଁଠାରେ ମୂର୍ତ୍ତିମାନ ଖଣ୍ଡବଖଣ୍ଡ ହୋଇଥିବା ସେ ଦେଖିଥିଲେ ? ବୃଦ୍ଧ ରାଜଗୁରୁ ତାଙ୍କୁ ଏକ ଧ୍ୟାନରେ ଗୃହିଁଥାନ୍ତି । ତାଙ୍କଛଡ଼ା ତ ସେଠାରେ ସବୁ ନିର୍ଜୀବ ।

ବୃଦ୍ଧ ରାଜଗୁରୁ କହିଲେ, "ବତ୍ସ ! ସ୍ଥିର ହୁଅ । ବହୁ ଘଟଣା ଘଟିଯାଇଛି ଏବଂ ଆଗରେ ଅନେକ ଗୁରୁ ଦାୟିତ୍ୱ । ଅଧୈର୍ଯ୍ୟ ହୁଅ ନାହିଁ ।"

ସାମନ୍ତ—ରାଜଗୁରୁ, କଣ ସବୁ ଘଟିଛି ମୋତେ କୁହନ୍ତୁ । ଦୁର୍ଗ ଓ ଶିବ-ମନ୍ଦରର ଆଜ ଏ ଅବସ୍ଥା କାହିଁକ ? ସବୁ କାହିଁକ ଭାଙ୍ଗିରୁଜ ଯାଇଛି ? କୁହନ୍ତୁ ଘୋଘାବାପାଙ୍କ ବାଣୀ କଣ ଆଉ ଶୁଣିବାକୁ ପାଇବ ନାହିଁ ?

ନନ୍ଦୀଦତ୍ତ—ବତ୍ସ ! ଧୈର୍ଯ୍ୟ ଧରିବା ଛଡ଼ା ଅନ୍ୟ ଉପାୟ ନାହିଁ । ସୃଷ୍ଟିରେ ପ୍ରଳୟ କାଳ ଆସି ପହଞ୍ଚିଛି । ଏ ବିନଷ୍ଟ ସୃଷ୍ଟିରେ କେବଳ ଆମେ ଦୁହେଁ ।

ସାମନ୍ତ—ଘୋଘାବାପା କେଉଁଠାରେ ଅଛନ୍ତି ମତେ କହନ୍ତୁ ।

ନନ୍ଦୀଦତ୍ତ—ମୋର ମୁନିବ ଶିର ଘୋଘାବାପା ବର୍ତ୍ତମାନ ସ୍ୱର୍ଗରେ ।

ସାମନ୍ତ—ଆଉ ଅନ୍ୟମାନେ ? ଆଜ ଏ ଦୁର୍ଗ କାହିଁକ ଏପରି ଶୂନ୍‌ଶାନ ? ଶୀଘ୍ର କହନ୍ତୁ ରାଜଗୁରୁ ।

ନନ୍ଦୀଦତ୍ତ—କହିବ ? ଶୁଣିବାକୁ ଧୈର୍ଯ୍ୟ ଅଛି ବାପ ?

ସାମନ୍ତ—କହନ୍ତୁ ରାଜଗୁରୁ—କଣ ସବୁ ହେଲା ମୁଁ ଶୁଣିବାକୁ ବ୍ୟଗ୍ର ।

ନନ୍ଦୀଦତ୍ତ—ତା ହେଲେ ଶୁଣ—ଏଭଳି କଥା ଶୁଣିବାକୁ ପଡ଼ିବ ଯାହାକ କଳ୍ପନା କରିନଥିବ । କନ୍ତୁ ତା ପୂର୍ବରୁ ପ୍ରଥମେ ଏହି ଔଷଧ ଖାଇଦଅ । ଏଥିରେ ଶାନ୍ତି ମିଳିବ । ନଅ, ପିଇଦଅ ବାପ ।

ନନ୍ଦୀଦତ୍ତଙ୍କ ନିର୍ଦ୍ଦେଶ ମତେ ସାମନ୍ତ ଔଷଧ ଖାଇଲେ । ସେ ଔଷଧତକ ଖାଇ ସାରିବା ପର୍ଯ୍ୟନ୍ତ ନନ୍ଦୀଦତ୍ତ ସ୍ନେହରେ ତାଙ୍କୁ ଗୃହିଁଥାଆନ୍ତି । ତାପରେ ସେ ସୁବିସ୍ତୃତଭାବେ ଅଶ୍ରୁତର ଘଟଣା କହିବାକୁ ଆରମ୍ଭ କଲେ ।

"ସାମନ୍ତ ! ଯାହାସବୁ ଘଟିଯାଇଛି ତାହା କହିଲା ବେଳକୁ ମୋ ଗ୍ରୁତି ଫାଟିଯାଉଛି, କନ୍ତୁ ତା ସତ୍ତ୍ୱେ ମୁଁ କହିବ । ବୋଧହୁଏ ଏଭଳି ଘଟଣା ପୂର୍ବରୁ କେବେ ଶୁଣାନଥିଲ ବା କୌଣସି ଗ୍ରନ୍ଥରେ ଲେଖାଯାଇନାହିଁ । ସୂର୍ଯ୍ୟବଂଶର ଗୌରବ ସବୁବେଳେ ସମ୍ପୂର୍ଣ୍ଣ ଅକ୍ଷୁଣ୍ଣ ରହି ଆସିଛି । କନ୍ତୁ ଘୋଘାବାପାଙ୍କ ଶିରତ୍ୱ ଆଗରେ ତାହା କିଛି ନୁହେଁ । ମୋର ଦୁର୍ଭାଗ୍ୟ ଯେ, ଏହି ହୃଦୟ-

ବିଦାରକ ଘଟଣା ନିଜ ଆଖିରେ ଦେଖିଲି ଓ ତୁମକୁ କହିବାକୁ ବାଞ୍ଛୁଛି ।"

ସାମନ୍ତ ଅଧୈର୍ଯ୍ୟ ହୋଇ ପୁଣି କହିଲେ, "ରାଜଗୁରୁ, ମୁଁ ଯିବା-ପରଠାରୁ ଯାହା ସବୁ ଘଟିଛି କୁହନ୍ତୁ ।"

ନନ୍ଦୀଦତ୍ତ—ତୁମକୁ ଓ ତୁମର ବାପାଙ୍କୁ ବିଦାୟ ଦେବାକୁ ମୁଁ ଆସିଥିଲି, ମନେ ଅଛି ? ତୁମକୁ ବିଦା କରି ଫେରିଯିବା ପରେ ଘୋଘାବାପାଙ୍କର ଓ ମୋର ବହୁ ସମୟ ଧରି ତୁମ ଦୁହିଙ୍କ ବିଷୟରେ କଥାବାର୍ତ୍ତା ହେଲା । ତୁମେ ଦୁହେଁ ଯେ ପରିବାରର ଯଶ ବଜାୟ ରଖିବ ଏ ବିଷୟରେ ବାପାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ।

ସାମନ୍ତ—ତାହାପରେ ?

ନନ୍ଦୀଦତ୍ତ—"କିଛି ଦିନ ପରେ ଆମେ ଶୁଣିଲୁ ପ୍ରଭୁ ସୋମନାଥଙ୍କ ମନ୍ଦିର ଧ୍ୱଂସ କରିବାକୁ ଗଜନୀର ହମୀର ବିରାଟ ସୈନ୍ୟବାହିନୀ ସହ ଆସୁଛି । ଏକଥା ଶୁଣି ଆମେ ଭାରି ହସିଲୁ···।" ଏତିକ କହିସାରି ରାଜଗୁରୁ ନିଶ୍ୱାସ ନେଇ ପୁଣି କହିଲେ, "ଏ ଖବର ଶୁଣି ଘୋଘାବାପା ତାଙ୍କ ନିଶ ମୋଡ଼ି,ବେଖାତିର ହସ ହସି କହିଲେ, 'ହଁ ଆ ବେଟା, ଆସିଲେ ଲୋହକୋଟରେ ଭୀମପାଳ ଅଛି ସ୍ୱାଗତ କରିବାକୁ । ମୁଲତାନରେ ଅଜୟ ସିଂହ ବସିଛି ତୋ କଥା ବୁଝିବ । ମରୁଭୂମି ଦ୍ୱାରରେ ମୁଁ, ସପ୍ତାଳଦକ୍ଷରେ ମୋ ମାଉସୀପୁଅ ଭାଇ ବାଲମଦେବ ଅଛି । ଏହା ସତ୍ତ୍ୱେ ଯେବେ ତୁ ଆସିବାକୁ ସାହସ କରିବୁ, ତେବେ ବେଶ୍ ସ୍ୱାଦ ଚଖାଇବି ।"

ସାମନ୍ତ—ତା' ପରେ ?

ନନ୍ଦୀଦତ୍ତ—"ଅଳ୍ପ କେତେ ଦିନ ଭିତରେ ପ୍ରଥମ ଦୁଃସମ୍ବାଦ ଆସିଲା ଯେ ଜୟପାଳର ପୁଅ କାପୁରୁଷ ଭୀମପାଳ ନିଜକୁ ମ୍ଳେଚ୍ଛ ପାଖରେ ବିକି, ବିନା ବାଧାରେ ତାର ରାଜ୍ୟ ଅତିକ୍ରମ କରିବାକୁ ହମୀରକୁ ବାଟ ଛାଡ଼ିଦେଲା ଓ ନିଜକୁ ରକ୍ଷା କରିବାକୁ ଯାଇ ଅନ୍ୟ ସମସ୍ତଙ୍କୁ ବିପଦରେ ପକାଇ ଦେଲା ।" ବୃଦ୍ଧ ଆସ୍ତେ ଆସ୍ତେ ମୁଣ୍ଡ ହଲାଇଲେ । ସାମନ୍ତ କିଛି କହିଲେ ନାହିଁ, କାରଣ ଏହିପରି କାପୁରୁଷତା ଅନ୍ୟ ଘଟଣାରୁ ସେ ଜାଣିଛନ୍ତି ।

ନନ୍ଦୀଦତ୍ତ କହିବାକୁ ଲାଗିଲେ—"ମୁଲତାନରେ ମଧ୍ୟ ଆକ୍ରମଣକାରୀଙ୍କୁ ସ୍ୱାଗତ କରାଗଲା । ସୂର୍ଯ୍ୟ ଓ ଚନ୍ଦ୍ରବଂଶୀମାନେ ନିର୍ଲଜ୍ଜ ଭାବେ ଆକ୍ରମଣ-

କାଖିର ଶରଣ ପଶିଲେ । ଗଜନୀର ହମୀର ମୁଲତାନରେ କିଛି ଦିନ ବିଶ୍ରାମ ନେଇ ବେଶ୍ ଆମୋଦ ପ୍ରମୋଦ କଲା । ରାଜପୁତମାନେ ନିଜର କର୍ତ୍ତବ୍ୟ, ଦେବତା ଓ ଗୋ-ବ୍ରାହ୍ମଣଙ୍କୁ ରକ୍ଷା କରିବା, ଭୁଲିଯାଇ ଶତ୍ରୁ ସାଙ୍ଗେ ଯୋଗ-ଦେଲେ । ତା ପରେ ଆକ୍ରମଣକାରୀ ହମୀର ଘୋଘାବାପାଙ୍କ ନିକଟକୁ ଖବର ଦେଲା ।”

ସାମନ୍ତ—କିଏ ଖବର ଦେଲା ?

ନନ୍ଦୀଦତ୍ତ—ଖବର ଆସି ପହଞ୍ଚିଲାବେଳକୁ ଆମେ ସମସ୍ତେ ରାଜାଙ୍କ ନିକଟରେ ଥିଲୁ । ଆକ୍ରମଣକାରୀ ମୁଲତାନରେ ପହଞ୍ଚିବା ଦିନଠାରୁ ଘୋଘାବାପା ନୀରବ ରହି କାହା ସହିତ କିଛି କଥାବାର୍ତ୍ତା କରୁନଥାନ୍ତି । ସେ ଯେତେବେଳେ ରାଗିଯାନ୍ତି କପର ଦିଶନ୍ତି ତାହା ତୁମେ ଜାଣିଛ । ତାଙ୍କ ଆଖି ଦୁଇଟି କ୍ରୋଧରେ ଲାଲ ଟହଟହ ଦିଶୁଥିଲେ ସୁଦ୍ଧା ସେ ମୁହଁ ବନ୍ଦ କରି ରହିଥାନ୍ତି । ତାଙ୍କର ଏପରି କ୍ରୋଧ ମୁହୂର୍ତ୍ତରେ ମୋ ଛଡ଼ା ତାଙ୍କ ସହିତ ଆଉ କେହି କଥାବାର୍ତ୍ତା କରିବାକୁ ସାହସ କରନ୍ତି ନାହିଁ । ସେ ଏଥର ଏପରି ରାଗିଥିଲେ ଯେ ମୁଁ ମଧ୍ୟ ତାଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ସାହସ କଲି ନାହିଁ ।

ସାମନ୍ତ—ଏହି ଖବର ଆସିବାବେଳେ କଣ ହେଲା ମୋତେ କହନ୍ତୁ ।

ନନ୍ଦୀଦତ୍ତ—ଦୁଇ ଜଣ ଲୋକ ଆସିଥାନ୍ତି । ଜଣେ ଉଚ୍ଚ କ୍ଷମତାଶାଳୀ ଓ ଉଦ୍ଧତ—ତା ନାଁ ହେଉଛି ଖାଲିର ମାସୁଦ ଓ ଅନ୍ୟ ବ୍ୟକ୍ତିଟି ନିଜ ଧର୍ମ ତଥା ଦେଶ ପ୍ରତି ବିଶ୍ୱାସଘାତକତା କରିଥିବା ଜଣେ ମଧ୍ୟମ ବୟସ୍କ ଲୋକ ।

ସାମନ୍ତ ସେ କଣ ରାଜପୁତ ?

ନନ୍ଦୀଦତ୍ତ—ନାଁ, ସେ ଜାତିରେ ନାପିତ । ହମୀର ପାଖରେ ରହି କିଛି ସମ୍ମାନ ପାଇଛି । ସେ ଦୋଭାଷୀର କାର୍ଯ୍ୟ କରେ । ତାର ନାମ ଥିଲା ତିଲକ ସେ ସିଧା ଆମ ପାଖକୁ ଆସି ହୀରା ନୀଳାରେ ପୂର୍ଣ୍ଣ ଗୋଟିଏ ବଡ଼ ସୁସଜ୍ଜିତ ଡାଲା ଘୋଘାବାପାଙ୍କ ଆଗରେ ରଖିଲା । ବହୁ ସମୟ ପର୍ଯ୍ୟନ୍ତ ଘୋଘାବାପା କିଛି କଥା କହି ନ ପାରି ତାକୁ ଚାହିଁ ରହିଲେ । ଏହି ଡାଲା ଆଣିବାର ଉଦ୍ଦେଶ୍ୟ କଣ ବୋଲି ମୁଁ ତିଲକକୁ ପଚାରିଲି । ଦୁଇ ହାତ ଯୋଡ଼ି ତିଲକ ଆସ୍ତେ ଆସ୍ତେ କହିଲା, ‘ଘୋଘାରାଣା, ଗଜନୀର ସୁଲତାନ ମୁହମ୍ମଦ୍ ଆପଣଙ୍କ ସମ୍ମାନାର୍ଥେ ଏହି ଉପହାର ପଠାଇଛନ୍ତି ।” ଏହା ଶୁଣି ଘୋଘାବାପାଙ୍କ ନିଶ ଟାଙ୍କୁରି ଉଠିଲା, କିନ୍ତୁ ତାଙ୍କ ମୁହଁରୁ ପଦେ ସୁଦ୍ଧା କଥା ବାହାରିଲା ନାହିଁ ।

ତାଙ୍କ ଆସିବାର ଉଦ୍ଦେଶ୍ୟ କଣ ମୁଁ ପଚାରିଲି । ତହୁଁ ତିଳକ ହାତ ଯୋଡ଼ି ଆସ୍ତେ ଆସ୍ତେ କହିଲା, "ଏହି ମରୁଭୂମି ଦେଇ ପ୍ରଭାସକୁ ଯିବା ଲାଗି ତାଙ୍କୁ ଅନୁମତି ଦିଆଯିବା ପାଇଁ ଗଜନୀର ହମୀର ଘୋଘାଗଡ଼ ଶାସକଙ୍କୁ ଅନୁରୋଧ କରିଛନ୍ତି ।"

ଲୋକଟି ତାହାର କଥା ସାରିଛି କି ନାହିଁ ଘୋଘାବାପା ନିଜ ନିଶରେ ହାତ ଦେଲେ । ତାଙ୍କର ଆଖି ଲାଲ ହୋଇଗଲା—ସତେ ଯେପରି ଅଗ୍ନି ଶିଖା ବାହାରିବ, ସେହିପରି ମୋତେ ଲାଗିଲା । ଅଶୀ ବର୍ଷ ଧରି ଯେଉଁ ଲୋକ କାହାର ଆଗରେ ମୁଣ୍ଡ ନୁଆଇଁ ନାହିଁ, ସେ ଆଜି ଜଣେ ବିଦେଶୀ ଆଗରେ କିପରି ବା ମୁଣ୍ଡ ନୁଆଇଁବ ?

ବାପା ତାଙ୍କର ନିଶ ମୋଡ଼ୁଥାନ୍ତି ଏବଂ ତିଳକ ଉତ୍ତର ପାଇବା ଆଶାରେ ହାତ ଯୋଡ଼ି ଠିଆ ହୋଇଥାଏ । କିଛି ସମୟ ପାଇଁ ସମସ୍ତେ ନୀରବ ରହିଲେ- କେହି ପାଟି ଫିଟାଇ ପଦେ ହେଲେ କିଛି କହିଲେ ନାହିଁ । ଠିକ୍ ଝଡ଼ ହେବା ପୂର୍ବରୁ ଯେପରି ଘଡ଼ଘଡ଼ି ମାରେ ସେହିପରି ସ୍ୱରରେ ଘୋଘାବାପା କହିଲେ, "ପ୍ରଭୁ ସୋମନାଥଙ୍କୁ ଧ୍ୱଂସ କରିବା ପାଇଁ ତୋ ହମୀର ମୋ ରାଜ୍ୟ ଭିତର ଦେଇ ଯିବାକୁ ଅନୁମତି ଚାହେଁ ଏବଂ ସେଥିପାଇଁ ମୋତେ ଏହି ସବୁ ଜିନିଷ ଲାଞ୍ଚ ସ୍ୱରୂପ ପଠାଇଛି, ନା ?"

ସାଲାର ମାସୁଦ ତାର ନିଶ ମୋଡ଼ୁଥାଏ । ତିଳକ ଜବାବ ଦେଲା, "ହଁ ବାପା !"

ତା ପରେ ଘଡ଼ଘଡ଼ି ମାରିଲା ପରି ଘୋଘାବାପା ପାଟି କରି ଉଠିଲେ, "ଯା, ତୋ ମୁନିବକୁ କହିବୁ, ଯେ ପର୍ଯ୍ୟନ୍ତ ଘୋଘାବାପା ଶରୀରରେ ବିନ୍ଦୁଏ ମାତ୍ର ରକ୍ତ ଥିବ ସେ ପର୍ଯ୍ୟନ୍ତ ସେ ଏହି ମରୁଭୂମି ଦେଇ ଯିବାକୁ ତାଙ୍କୁ ଅନୁମତି ଦେବ ନାହିଁ ।" ଏହା କହି ତାଙ୍କ ଆଗରେ ଥୁଆ ହୋଇଥିବା ହୀରା, ନୀଳା ପ୍ରଭୃତିର ଡାଲିକୁ ସେ ପଦାଘାତ କଲେ ।

ସାମନ୍ତ—ଠିକ୍ କରିଛନ୍ତି ।

ନନ୍ଦୀଦତ୍ତ—ସେତେବେଳେ ଘୋଘାବାପାଙ୍କ ଚେହେରା ସୃଷ୍ଟିର ସଂହାରକର୍ତ୍ତା ଶିବଙ୍କ ପରି ଠିକ୍ ଦିଶୁଥାଏ । ତାଙ୍କ ଆଖି ଦୁଇଟି ରକ୍ତ ପରି ଲାଲ । ମୁହଁ ଠିକ୍ ପଥରପରି ଶକ୍ତ ଦିଶୁଥାଏ ଏବଂ ହାତରେ ଯୁଦ୍ଧୋନ୍ମତ୍ତ ପରଶୁରାମଙ୍କ ପରି ଶକ୍ତି ପରିପୂର୍ଣ୍ଣ ହୋଇଯାଇଥାଏ । ସେ ଆଉ ପଦେ ସୁଦ୍ଧା କଥା ନ କହି

ସବୁ ଗ୍ରୁଡ଼ ଗ୍ଲଲିଗଲେ । ପ୍ରହରୀମାନେ ପରସ୍ପରକୁ ଗ୍ଲହିଁ ଅସ୍ୱସ୍ତି ଅନୁଭବ କଲେ ।

ପନ୍ଦରଦିନଯାଏ ଆଗତ ପ୍ରାୟ ଯୁଦ୍ଧ ପାଇଁ ଆମେ ପ୍ରସ୍ତୁତ ହେଲୁ । ଦୁର୍ଗକୁ ମରାମତି କରି ନିଜ ନିଜର ଅସ୍ତ୍ରଶସ୍ତ୍ର ପଜାଇ ପ୍ରସ୍ତୁତ କଲୁ । ଭାଟମାନେ ଆମର ଅତୀତ ଗୌରବ ବର୍ଣ୍ଣନା କରି ଗୀତ ଗାଇ ବୁଲିଲେ ଏବଂ ଆମେ ତାହା ଶୁଣିଲୁ । ଯୋଦ୍ଧାମାନେ ଯୁଦ୍ଧ ଭୂମିକୁ ଯିବାକୁ ପ୍ରସ୍ତୁତ ହୋଇଗଲେ । ଯୁବତୀ-ମାନେ ନିଜ ନିଜର ସ୍ୱାମୀମାନଙ୍କୁ ଶତ୍ରୁଙ୍କର ସହିତ ଯୁଦ୍ଧ କରିବା ପାଇଁ ଉତ୍ସାହିତ କରିବା ବିଗରେ ପରସ୍ପର ସହ ପ୍ରତିଯୋଗିତା କଲେ । ଯୁଦ୍ଧରେ ବିଜୟ ଲାଭ ପାଇଁ ମୁଁ ମନ୍ଦିରରେ ପ୍ରାର୍ଥନା କଲି ।

ଦିନେ ଆମେ ମୁଲତାନ ଆଡ଼କୁ ଗ୍ଲହିଁ ଦୁର୍ଗ ଉପରେ ଠିଆ ହୋଇଛୁ । ଠିକ୍ ଏହି ସମୟରେ ଗଜନୀର ହମୀରର ବିରାଟ ସୈନ୍ୟବାହିନୀ ଆସୁଥିବା ଦୂର ଦିଗ୍‌ବଳୟରେ ଦେଖାଗଲା । ମୁଁ ଏହା ଦେଖି ଡରିଗଲି । ଏତେ ବଡ଼ ସୈନ୍ୟ ବାହିନୀ କାହାରି ଥିବା ମୁଁ କଳ୍ପନା କରି ନ ଥିଲି । ମୁଁ ଘୋଘାବାପାଙ୍କୁ ଗ୍ଲହିଁଲି । ତାଙ୍କ ଆଖି ଲାଲ ହୋଇଗଲା । ତାଙ୍କ ଡାହାଣ ହାତ ଖଣ୍ଡା ଉପରେ ଯାଇ ପଡ଼ିଲା । ମୁଁ କହିଲି, "ବାପା, ହମୀରର ସୈନ୍ୟବାହିନୀ ଏତେ ବଡ଼ ବୋଲି ମୁଁ ଭାବି ନଥିଲି ।"

ଘୋଘାବାପା ବଡ଼ ହସଟାଏ ହସି କହିଲେ, "ନନ୍ଦୀଦତ୍ତ, ଯେ ପର୍ଯ୍ୟନ୍ତ ପ୍ରଭୁ ଆମକୁ ସାହାଯ୍ୟ କରୁଛନ୍ତି ଆମର କିଏ କଣ କରିପାରିବ !" ଶତ୍ରୁ ସୈନ୍ୟ ଆସୁଥିବା ଦିଗକୁ ଅନାଇ ମୋ ହାତ ଧରି ସେ କହିଲେ, "ବ୍ରାହ୍ମଣ ଦେବତା, ତୁମେ ହେଉଛ ଆମର କୁଳ ପୁରୋହିତ । ତୁମ କଲ୍ୟାଣରୁ ଆମ ପରିବାରର ଉନ୍ନତି ହୋଇଛି । ଗୋଟିଏ କାମ ପାଇଁ ମୋତେ ଜବାବ ଦିଅ ।"

ମୁଁ ପ୍ରତିଶ୍ରୁତି ଦେଲି । ତା ପରେ ଘୋଘାବାପା ମୋତେ ଆସ୍ତେ ଆସ୍ତେ କହିଲେ, "ଯାହା କିଛି ହେଉ ପଛକେ ନିଜର ନିଷ୍ପତ୍ତି ମୁଁ ବଦଳାଇବି ନାହିଁ । ହମୀରକୁ ମୋ ରାଜ୍ୟ ଦେଇ ଯିବାକୁ ଚକେ ସୁଦ୍ଧା ଜମି ଛାଡ଼ିବି ନାହିଁ । ମୋର ଯେବେ ମୃତ୍ୟୁ ହୁଏ, ତା ହେଲେ ମୋର ଦାହର ବ୍ୟବସ୍ଥା କରିବ ଏବଂ ମୋର ପୁଅ ସଜ୍ଜନ ଓ ନାତି ସାମନ୍ତକୁ ଗୟାରେ ମୋର ପିଣ୍ଡ ଦେବାପାଇଁ କହିବ ।"

ମୁଁ ଜବାବ ଦେବାକୁ କୁଣ୍ଠା ବୋଧ କଲି । ଯାହାଙ୍କ ପାଖରେ ମୁଁ ଜୀବନବ୍ୟାପୀ ସେବା କରିଛି ତାଙ୍କର ଯେବେ ମୃତ୍ୟୁ ହୁଏ, ମୁଁ ବା କାହିଁକି ବଞ୍ଚି ରହିବି ? କିନ୍ତୁ ମୁଁ ଘୋଘାବାପାଙ୍କ କଥା ଅମାନ୍ୟ କରିପାରିଲି ନାହିଁ । ତେଣୁ ସେ ଚାହୁଁଥିବା ପ୍ରତିଶ୍ରୁତି ମୁଁ ତାଙ୍କୁ ଦେଲି । ସେ ଆନନ୍ଦ ମନରେ ନାଚି ନାଚି ସୈନ୍ୟ ସଜ୍ଜା କରିବାକୁ ଚାଲିଲେ ।

"ତାପରେ କଣ ହେଲା ?" —ସାମନ୍ତ ପଚାରିଲେ ।

ନନ୍ଦୀଦତ୍ତ—ବିଧିର ବିଧାନକୁ କିଏ ରୋଧ କରିପାରିବ ? ଦୁର୍ଗ ମଧ୍ୟରେ ଆଠଶହ ରାଜପୁତ, ଅନ୍ୟମାନେ ତିନିଶହ ଏବଂ ସାତଶହ ନାରୀ ଥିଲେ । ଏହାଙ୍କ ବିରୋଧରେ ସହସ୍ର ସହସ୍ର ଶତ୍ରୁ ସୈନ୍ୟ । ହମୀର ପୁଣି ଥରେ ଘୋଘାବାପାଙ୍କ ନିକଟକୁ ମଧ୍ୟସ୍ଥ ପଠାଇଲା । ମଧ୍ୟସ୍ଥ ଯୁକ୍ତି କଲା, "ତୁମେ ଜାଣି ଜାଣି କାହିଁକି ଯମ ମୁହଁକୁ ଟାଣି ହୋଇ ଯାଉଛ ।" କିନ୍ତୁ ଘୋଘାବାପା ନିଜର ପ୍ରତିଜ୍ଞା ଭଙ୍ଗ କରିବା ବ୍ୟକ୍ତି ନୁହନ୍ତି । ସେ ଉତ୍ତର କଲେ, "ମୁଁ ଜନ୍ମ ହେବା ମୁହୂର୍ତ୍ତରୁ ମୃତ୍ୟୁ ପାଇଁ ପ୍ରସ୍ତୁତ ଅଛି । ଯଦି ତୁମର ସାହସ ଅଛି ଯୁଦ୍ଧକୁ ତେଇଁପଡ଼ ।"

ତାପରେ ଦୁର୍ଗ ଦ୍ୱାର ଅବରୁଦ୍ଧ କରି ଦିଆଗଲା । ତଳ ସମଭୂମିରେ ରହି ହମୀର ନିଜର କର୍ତ୍ତବ୍ୟ ଆଲୋଚନା କଲା । ସମଗ୍ର ଶତ୍ରୁ ସେନା ଘୋଘାବାପାଙ୍କ ଦୁଃସାହସିକ ନିଷ୍ପତ୍ତିରେ ସ୍ତମ୍ଭୀଭୂତ ହୋଇଗଲେ । କ୍ରମେ ସନ୍ଧ୍ୟା ହେଲା ଏବଂ ହମୀର ଏହାପରେ କଣ କରିବ ସମସ୍ତେ ଭାବିଲେ । ଘୋଘାବାପାଙ୍କୁ ସମ୍ମୁଖ ରଣରେ ଭେଟିବାକୁ କାହାର ଧୈର୍ଯ୍ୟ ନଥିଲା । କୌଣସି ହାତୀ ବା ଘୋଡ଼ା ସମତଳରୁ ଦୁର୍ଗ ପାର୍ଶ୍ୱରେ ଉପରକୁ ଉଠି ପାରିବେ ନାହିଁ, କିମ୍ବା ଦୁର୍ଗର ଉଚ୍ଚ ପ୍ରାଚୀର ଅତିକ୍ରମ କରି ସୈନ୍ୟମାନେ ଶର ବର୍ଷଣ କରିପାରିବେ ନାହିଁ । ଆମେ ଦେଖିଲୁ ହମୀର ମହା ଅଡୁଆରେ ପଡ଼ିଛି । ଏପରି ଅବସ୍ଥାରେ ଘୋଘାଗଡ଼ ଜୟ କରିବାକୁ ବହୁବର୍ଷ ଲାଗିଯିବ । ଫଳରେ ସୋମନାଥ ମନ୍ଦିର ଆକ୍ରମଣ ସମ୍ଭବ ହେବନାହିଁ । ରାତିସାରା ଶିବିରରେ ନାନା ଆନ୍ଦୋଳନ ଚାଲିଥିଲା ଭଳି ମନେ ହେଲା । ପାହାନ୍ତିଆ ବେଳକୁ ହମୀରର ସେ ବିଶାଳ ସେନା ଦୁର୍ଗ ପାର୍ଶ୍ୱ ଦେଇ ମରୁଭୂମି ଅଭିମୁଖେ ଗତି କରିବା ଦେଖାଗଲା । ହମୀର ପରାଜୟ ସ୍ୱୀକାର କରିଅଛି । ଘୋଘାଗଡ଼ ପୂର୍ବବତ୍ ଅଜେୟ ହୋଇ ରହିଲା ।

ଦୁର୍ଗ ଭିତରେ ସମସ୍ତେ ଯେଉଁ 'ହର ହର ମହାଦେବ' ଶବ୍ଦ ଉଚ୍ଚାରଣ କଲେ, ସେହି ଶବ୍ଦ ବୋଧହୁଏ ମୁସଲମାନ ସୈନ୍ୟବାହିନୀକୁ ଭୟଭୀତ କଲା ।

ଘୋଘାବାପାଙ୍କ କ୍ରୋଧର ଆଉ ସୀମା ରହିଲା ନାହିଁ । ସେ ତାଙ୍କ ନିଶ ମୋଡ଼ି ଓ ଖଣ୍ଡା ଧରି କହିଲେ, "କାପୁରୁଷ ଗୁଡ଼ାକ ! ତୁମେ ଏପରି ରକ୍ଷା ପାଇଯିବାକୁ ଚାହଁ ?"

ସେ କାହିଁକି ରାଗିଲେ ଆମେ ଜାଣିପାରିଲୁ । ସେ ହମୀରର ସୈନ୍ୟ ବାହିନୀକୁ ଆକ୍ରମଣ କରି ତାହାକୁ ଧ୍ୱଂସ କରିବାକୁ ଚାହୁଁଥିଲେ । ମହିଳାମାନେ ଭୟଭୀତ ହୋଇଗଲେ ଓ ଚୌହାନ ଯୋଦ୍ଧାଗଣ ଚକିତ ହୋଇଗଲେ । ଆମେ ମନେ ମନେ ଭାବିଲୁ, ଆମ ସଂଖ୍ୟା ଖୁବ୍ ଅଳ୍ପ ଓ ଆମ ସଂଖ୍ୟାର ହଜାର ଗୁଣ ଅଧିକ ମୁସଲମାନ ସୈନ୍ୟବାହିନୀ । ତଥାପି ପ୍ରଭୁ ମହାଦେବ ଆମକୁ ରକ୍ଷା କରିଛନ୍ତି । ଆମେ କାହିଁକି ମୃତ୍ୟୁ ବରଣ କରିବୁ ? ମୁଁ କିଛି ଉପାୟ ଭାବି ନ ପାରି ତାଙ୍କ ଭକ୍ତମାନଙ୍କୁ ରକ୍ଷା କରିବା ପାଇଁ ପ୍ରଭୁ ଶିବଙ୍କ ନିକଟରେ ପ୍ରାର୍ଥନା ରତ ହେଲି ।

## ୧୯

## ଘୋଘାବାପାଙ୍କ ଚରମ ତ୍ୟାଗ

ଘୋଘାବାପାଙ୍କ ପରିବାରର ପୁରୋହିତ ନନ୍ଦୀଦତ୍ତ କହି ଚାଲିଲେ— ସତେ ଯେପରି ପ୍ରଭୁ ସୋମନାଥ ତାଙ୍କ ସାହସ ଦେଇଛନ୍ତି, ସେହିପରି ଭାବେ ଘୋଘାବାପା କହିଲେ, "ନବେ ବର୍ଷ ଧରି ମୁଁ ପ୍ରଭୁ ସୋମନାଥଙ୍କର ସେବା କରି ଆସିଛି । ସତୁରି ବର୍ଷ ଧରି ଏହି ମରୁଭୂମି ଶାସନ କରି ଆସିଛି । ଚଢ଼େଇଟିଏ ସୁଦ୍ଧା ମୋ ବିନା ଅନୁମତିରେ ମୋ ରାଜ୍ୟରେ ଉଡ଼ିବାକୁ ସାହସ କରେ ନାହିଁ । ମୋ ସାମନାରେ ପ୍ରଭୁ ସୋମନାଥଙ୍କୁ ଧ୍ୱଂସ କରିବାକୁ ଏହି ଅଧମକୁ ସୁଯୋଗ ଦେବି ବୋଲି କଣ ତୁମେମାନେ ଭାବିଛ ? ତୁମେ ସବୁ ବଂଶର ବିରାଟ ଐତିହ୍ୟ ପ୍ରତି କଳଙ୍କ । ତୁମେମାନେ ଏଠି ନିଷ୍କ୍ରିୟ ରହି କାପୁରୁଷତାର ପ୍ରମାଣ ଦେଇପାର । ମୁଁ ଜୀବନବ୍ୟାପୀ ପ୍ରଭୁ ସୋମନାଥଙ୍କର ଜୟଗାନ କରିଆସିଅଛି ଏବଂ ବଞ୍ଚିଥିବା ପର୍ଯ୍ୟନ୍ତ ତାଙ୍କର ଜୟଗାନ କରୁଥିବି ।"

ଦୁର୍ଗର ସେନାପତି ହାତ ଯୋଡ଼ି କହିଲେ, "ବାପା ! ଶତ୍ରୁର ଏତେ ସୈନ୍ୟ ଅଛନ୍ତି ଯେ, ମୁହୂର୍ତ୍ତକ ମଧ୍ୟରେ ସେ ଆମକୁ ଧ୍ୱଂସ କରିଦେବ ।"

ସେନାପତିଙ୍କ କଥା ମୃଗପୁର ସତ୍ୟ ଥିଲା । କିନ୍ତୁ ଏହା ଶୁଣି ଘୋଘାବାପା କଲେ କଣ ? ସେ ଏପରି ଭାବେ ସିଧା ହୋଇ ଠିଆ ହେଲେ ଯେପରିକି କାହାକୁ ମାରିବେ—ସେହିପରି ମୋତେ ଲାଗିଲା । ସିଂହ ପରି ଗର୍ଜିଉଠି କହିଲେ, "ବୋକା ! ଶତ୍ରୁର ସୈନ୍ୟ ଅଧିକ ଆଉ ଆମର ଅଳ୍ପ—ଏହା କେବଳ କାପୁରୁଷ କହେ । ହମୀର ଆଜ ମତେ ଲୁଚି ପଳାଇ ଯାଉଛି । ଯେଉଁ ଦାୟିତ୍ୱ ଆମକୁ ପ୍ରଭୁ ସୋମନାଥ ଦେଇଛନ୍ତି ତାହା ଆଜ ଯଦି ଆମେ ପାଳନ ନକରୁ ତା ହେଲେ ତୁମର ବା ମୋର ବଞ୍ଚିବାର କି ଅଧିକାର ଅଛି ? ଭଗବାନ ଆମକୁ ଏଠାକୁ ପଠାଇଛନ୍ତି ଏବଂ ସେ ଆମକୁ ଡାକୁଛନ୍ତି; ପ୍ରସ୍ତୁତ ହୁଅ !"

ଏହିପରି କହି ଘୋଘାବାପା ନିଜର ଖଣ୍ଡା ବାହାର କରିବାରୁ ଅନ୍ଧାରରେ ଆଲୁଅ ଜଳିଲା ପରି ଦେଖାଗଲା । ଘୋଘାବାପାଙ୍କୁ ଜବାବ ଦେବାକୁ କାହାରି ସାହସ ହେଲା ନାହିଁ । ଦୁର୍ଗର ପ୍ରତ୍ୟେକ ବ୍ୟକ୍ତି ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ରହିଲେ । ନାରୀମାନେ ସମବେତ କଣ୍ଠରେ ବିଜୟ ଆହ୍ୱାନ ଦେଲେ । ମୁଁ ଶିବଙ୍କ ନାମ ଉଚ୍ଚାରଣ କରି ସମସ୍ତଙ୍କୁ ରକ୍ଷା କରିବା ନିମିତ୍ତ ପ୍ରାର୍ଥନା କଲି ।

ବାଜା ବାଜି ଉଠିଲା ଏବଂ ସମସ୍ତେ ସଜିଯୁ ହୋଇ ଉଠିଲେ । ଯୋଦ୍ଧାମାନଙ୍କୁ ଅସ୍ତ୍ର ଧାରଣ ପାଇଁ ଆହ୍ୱାନ ଦିଆଗଲା । ଘୋଡ଼ା ଓ ଓଟମାନେ ଯେପରି ଆନନ୍ଦରେ ନାଚିଲେ ! ସାମନ୍ତ, ସେହି ଦୃଶ୍ୟ କେବଳହିଁ ଦେବତା-ମାନଙ୍କର ଦେଖିବା କଥା । ମୋ ଆଖିରେ ଆନନ୍ଦାଶ୍ରୁ ଆସିଲା ଏବଂ ତହିଁରେ ମୁଁ ଦେଖିଲି ସତେ ଯେପରି ଉଭୟ ଶିବ ଓ ପାର୍ବତୀ ସ୍ୱର୍ଗରୁ ପୁଷ୍ପ ବର୍ଷଣ କରୁଛନ୍ତି ।

ଘୋଘାବାପା ତାଙ୍କର ସର୍ବୋତ୍କୃଷ୍ଟ ପୋଷାକ ପରିଧାନ କରି ମୁଣ୍ଡରେ ନାରଙ୍ଗୀ ରଙ୍ଗର ପଗଡ଼ି ବାନ୍ଧିଲେ ଏବଂ ବେକରେ ଗୋଟିଏ ଲାଲ ଫୁଲମାଳ ପକାଇଲେ । ପ୍ରତ୍ୟେକ ଚୌହାନ ବୀର ଆପଣାର ସାମରିକ ପୋଷାକ ପିନ୍ଧିଲେ । ମୁଁ ଭଗବାନଙ୍କ ନିକଟରେ ଆରାଧନା କରି ଯୁଦ୍ଧ ଭୂମିକୁ ଯାତ୍ରା କରୁଥିବା ପ୍ରତ୍ୟେକ ବୀରଙ୍କ ମୁଣ୍ଡରେ ସିନ୍ଦୂର ଟୋପା ଦେଇ ସେମାନଙ୍କୁ ଆଶୀର୍ବାଦ ଦେବା ସଙ୍ଗେ ସଙ୍ଗେ ଘୋଘାବାପାଙ୍କର ଜୟ କାମନା କଲି ।

ସେମାନେ ଦୁର୍ଗର ଦ୍ୱାରଦେଶରେ ପହଞ୍ଚିବା ପରେ ବାପା ମୋତେ ଡାକି ସମସ୍ତେ ଶୁଣିବା ଭଳି ବଡ଼ ପାଟି କରି କହିଲେ, "ନନ୍ଦୀଦତ୍ତ ! ମୁଁ ଯେତେବେଳେ

ସିଂହାସନ ଆରୋହଣ କଲି ସେତେବେଳେ ତୁମ ବାପା ମୋ ମୁଣ୍ଡରେ ଦେଇଥିଲେ ଶୁଭ ଟିକା । ଆଜ ମୋର ସ୍ୱର୍ଗ ଯାତ୍ରା ସମୟରେ ତୁମେ ତାହା ଦେଇଛ । ଗୋଟିଏ କଥା ତୁମେ ମୋତେ କବାବ ଦିଅ । ତା ହେଉଛି—ଚୌହାନ ବୀରମାନଙ୍କର ଯେତେବେଳେ ମୃତ୍ୟୁ ହେବ ସେମାନଙ୍କ ସ୍ତ୍ରୀମାନେ ଯେପରି ଅଗ୍ନି ଦେବତାଙ୍କ ଗର୍ଭରେ ଝାସ ଦେଇ ନିଶ୍ଚିତ ଭାବେ ସତୀ ହୁଅନ୍ତୁ ।”

ତାପରେ ପ୍ରାସାଦର ପ୍ରସାରିତ ଦ୍ୱାରଦେଶମାନଙ୍କରେ ସମବେତ ନାରୀ-ମାନଙ୍କୁ ଲକ୍ଷ୍ୟ କରି ସେ କହିଲେ, “କନ୍ୟାଗଣ, ମୋ ସହିତ ପ୍ରଭୁଙ୍କର ଆବାସ ସ୍ଥଳ କୈଳାସକୁ ଗମନ କରିବାପାଇଁ ସାହସ ଧରି ରହ ।”

ସତେ ଯେପରି କୌଣସି ବିବାହ ଉତ୍ସବକୁ ନିମନ୍ତ୍ରଣ କରୁଛନ୍ତି—ସେହିପରି ଆନନ୍ଦ ମନରେ ସେ ସମସ୍ତଙ୍କୁ ଏହା କହିଲେ । ନାରୀମାନଙ୍କର ସୁନ୍ଦର ମୁହଁରେ ଏହି ନିମନ୍ତ୍ରଣ ଗ୍ରହଣ କରିବାର ଆନନ୍ଦ ସ୍ପଷ୍ଟରୂପେ ଦେଖା-ଦେଲା । ପ୍ରତ୍ୟେକଙ୍କ ଆଖି ଆନନ୍ଦାଶ୍ରୁରେ ଭରିଗଲା । ସାହସୀ ଯୋଦ୍ଧାବୃନ୍ଦ ‘ଜୟ ସୋମନାଥ’ ଧ୍ୱନି ଉଚ୍ଚାରଣ କରି ଆଗକୁ ଚାଲିଲେ ।

ଚୌହାନ ଯୋଦ୍ଧାଗଣ ଯେପରି ଶୀଘ୍ର ବାହାରକୁ ଯାଆନ୍ତି ସେଥିପାଇଁ ଦୁର୍ଗର ଦ୍ୱାର ପୂରା ଖୋଲି ଦିଆଗଲା । ଉଦୀୟମାନ ସୂର୍ଯ୍ୟଙ୍କର ସୁନେଲି କିରଣ ସେମାନଙ୍କ ପଗଡ଼ି ଉପରେ ପଡ଼ି ଦାଉ ଦାଉ ଦେଖାଯାଉଥାଏ । ଏହିପରି ଅବସ୍ଥାରେ ସେମାନେ ନିଜ ନିଜ ଘୋଡ଼ା ଓ ଓଟ ଚଢ଼ି ଯାତ୍ରା ଆରମ୍ଭ କଲେ । ବୁଢ଼ା ହିନେ ମୋ ନିଜ ଆଖିରେ ଏହି ବିଜୟ ତଥା ମୃତ୍ୟୁ ଯାତ୍ରାର ଦୃଶ୍ୟ ଦେଖିଛି । ନିଜର ସମ୍ମାନ ପାଇଁ ମରୁଭୂମିର ଶାସକ ସାହସୀ ଘୋଘାବାପା ନିଜର ବଂଶକୁ ରଣଯଜ୍ଞରେ ଆହୁତି ଦେବାକୁ ନିଷ୍ପତ୍ତି କରି ଠିକ୍ କରିଛନ୍ତି ବୋଲି ମୁଁ ମନେମନେ ଭାବିଲି ।

ସତେ ଯେପରି ଦେବତାମାନେ ଏହି ବୀର ଯୋଦ୍ଧାମାନଙ୍କ ଉପରେ ପୁଷ୍ପ ଓ ଆଶୀର୍ବାଦ ବର୍ଷଣ କରୁଛନ୍ତି, ଠିକ୍ ସେହିପରି ଦୃଶ୍ୟ ଦେଖାଯାଉଥାଏ । ଏ ଅବସ୍ଥାରେ ସୈନ୍ୟବାହିନୀ ପରିଚାଳନା କରୁଥିବା ଘୋଘାବାପା ବୁଲିପଡ଼ି ମୋତେ ଚାହିଁଲେ ।

ହମୀରର ବିରାଟ ସୈନ୍ୟବାହିନୀ ଏହି ଦୃଶ୍ୟକୁ ବିସ୍ମିତ ଭାବେ ଦେଖୁଥାନ୍ତି । ଘୋଘାବାପା ସେମାନଙ୍କ ପଛରେ କାହିଁକି ଲାଗିଛନ୍ତି ତାହା ସେମାନେ ପ୍ରଥମେ ବୁଝିପାରୁ ନଥିଲେ ସୁଦ୍ଧା, ଅଳ୍ପ ସମୟ ପରେ ଜାଣିପାରିଲେ ଯେ, ଚୌହାନ

ବୀରମାନେ ସେମାନଙ୍କୁ ହୁଏତ ମାରିବାକୁ କିମ୍ବା ସେମାନଙ୍କ ହାତରେ ନିଜେ ମରିବାକୁ ପଣ କରି ଆସୁଛନ୍ତି । ଶତ୍ରୁମାନେ "ଆଲ୍ଲା ହୋ ଆକ୍‌ବର' ଧ୍ୱନି କରି ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଗଲେ ।

ସବୁଜ ରଙ୍ଗ ପଗଡ଼ି ପିନ୍ଧି ନାଲିଦାଢ଼ିଆ ହମୀର ନିଜର ହାଣ୍ଡି ଉପରେ ଚଢ଼ି ହୋଇ ପଡ଼ୁଥାଏ । ଘୋଘାବାପା ଯୁଦ୍ଧ ଡାକରା ଦେଇ ଶତ୍ରୁ ଆଡ଼କୁ ଅଗ୍ରସର ହେବା ସମୟରେ ଆଗରେ ଯେ ପଡ଼ିଲା, ତାକୁ ମାରି ଚାଲିଲେ । ସେ ଯେଉଁ ଆଡ଼କୁ ଗଲେ ସେ ଆଡ଼ରେ ଆତଙ୍କର ଚହଲ ପଡ଼ିଗଲା । କିନ୍ତୁ କେତେ କାଳ ? ଘୋଘାବାପା ଦୁର୍ବଳ ହୋଇ ପଡ଼ିଲେ ।

ଏହା କହୁ କହୁ ନନ୍ଦୀଦତ୍ତ କୋହ ଉଠାଇ କାନ୍ଦିବାକୁ ଆରମ୍ଭ କଲେ। ସାମନ୍ତ ମଧ୍ୟ ଏହା ଶୁଣି ଉତ୍ତେଜନାରେ ଥରିଗଲେ ।

ନନ୍ଦୀଦତ୍ତ ପୁଣି କହିବାକୁ ଲାଗିଲେ—ସେ ପଡ଼ିଯିବା ସଙ୍ଗେ ସଙ୍ଗେ ଶତ୍ରୁ ପକ୍ଷର ଏକାଧିକ ଖଣ୍ଡା ଚୋଟ ତାଙ୍କ ଶରୀରରେ ପଡ଼ିଲା । ଏହା ଦେଖି ମୁଁ ନିଜର ପ୍ରତିଶ୍ରୁତି ମୁତାବକ କାର୍ଯ୍ୟ କରିବାକୁ ବାହାରିଲି । ପ୍ରଭୁ ସୋମନାଥଙ୍କ ମନ୍ଦିରରେ ସମସ୍ତେ ଏକାଠି ହୋଇଥିବାରୁ ମୁଁ ସିଧା ସେଠାକୁ ଗଲି । ସମବେତ ଲୋକଙ୍କ ମଧ୍ୟରେ ଥିଲେ ଭୟଭୀତ ସାହୁକାର ଏବଂ ଗୁରୁଙ୍କର ଦଳ । ଗୁପ୍ତ ପଛଦ୍ୱାର ବାଟେ ସେମାନେ ଯେପରି ଚାଲିଯାନ୍ତି, ତାହାର ବ୍ୟବସ୍ଥା କଲି । ମୋର ନିଜ ପୁଅ—ସେ ଅସ୍ତ୍ର ଧରିବା ଜାଣି ନଥିଲେ ସୁଦ୍ଧା ଘୋଘାବାପାଙ୍କ ସହିତ ତାକୁ ଯୁଦ୍ଧ କ୍ଷେତ୍ରକୁ ପଠାଇଥିଲି । ଶିଷ୍ୟମାନେ ବଞ୍ଚିଥିବାବେଳେ ଗୁରୁଙ୍କର କାମ ହେଉଛି ସେମାନଙ୍କୁ ସ୍ୱର୍ଗ ଲାଭର ରାସ୍ତା ବତାଇବା । ସେମାନଙ୍କ ମୃତ୍ୟୁ ସମୟରେ ସେମାନଙ୍କୁ ସାହାଯ୍ୟ ଦେବା କଣ ତାଙ୍କର କାମ ନୁହେଁ ?

ବର୍ତ୍ତମାନ ମୁଁ ଦୁର୍ଗରେ ଏକମାତ୍ର ଜୀବିତ ମଣିଷ । ଯେତେ ଅପ୍ରିୟ ହେଲେ ସୁଦ୍ଧା ନିଜର କର୍ତ୍ତବ୍ୟ ମୁଁ କଲି । ମୋ ହୃଦୟକୁ ପଥର ପରି ଟାଣ କରିଦେଲି । ଏହି ଭୟାବହ ଦୃଶ୍ୟ ଦେଖିବାକୁ ବଞ୍ଚି ରହିବା ମୋ ଭାଗ୍ୟରେଥିଲା

ସେ ଭୟାବହ ଦୃଶ୍ୟ ମନେପଡ଼ି ନନ୍ଦୀଦତ୍ତଙ୍କର ପୁଣି କୋହ ଉଠିଲା । ସାମନ୍ତ ଦୁଃଖରେ ଅଭିଭୂତ ହୋଇପଡ଼ିଲେ । ଧାର ଧାର ହୋଇ ଲୁହ ତାଙ୍କ ଆଖିରୁ ବୋହିବାକୁ ଲାଗିଲା ।

କିଛି ସମୟ ପରେ ନନ୍ଦୀଦତ୍ତ ପ୍ରକୃତିସ୍ଥ ହୋଇ କହିଲେ, ବତ୍ସ, ଅଗ୍ନିର ହାତରେ ମୁଁ ମୋର କର୍ତ୍ତବ୍ୟ କରିଚାଲିଥାଏ । ନିଆଁ ଜାଳିବା ପାଇଁ ମନ୍ଦିର ଅଗଣାରେ ଚନ୍ଦନ କାଠ ଗଦା ହୋଇଥିଲା । ଯେଉଁ ଯୁବତୀ ସ୍ତ୍ରୀମାନଙ୍କ ବିବାହରେ ମୁଁ ପୌରୋହିତ୍ୟ କରିଥିଲି,ଯେଉଁମାନଙ୍କ ପିଲାମାନଙ୍କୁ ମୁଁ ନିଜେ ପାଠ ପଢ଼ାଇଛି,

ସେମାନେ ଆପଣାର ସର୍ବଶ୍ରେଷ୍ଠ ବସ୍ତ୍ର ପିନ୍ଧି ଓ ବେଶ ହୋଇ ଆସି ମୋ ପାଦ ଛୁଇଁଲେ । ମୋ ଆଖି ଦୁଇଟି ଲୁହରେ ଅନ୍ଧ ହୋଇ ଯାଇଥାଏ । ମୁଁ ସେମାନଙ୍କୁ ଦେଖି ପାରୁ ନଥିଲେ ବି ସେମାନଙ୍କ ମୁଣ୍ଡ ଓ ଗାଲରେ ସିନ୍ଦୂର ଟିକା ଦେଲି ।

ସେମାନେ କୁଳଦେବତା ସୂର୍ଯ୍ୟଙ୍କୁ ଆରାଧନା କରି ହସି ହସି ନିଆଁ ଭିତରେ ପଶିଲେ । ଏହି ବୀରାଙ୍ଗନା ନାରୀମାନେ ଆନନ୍ଦମନରେ ସତୀତ୍ୱ ବରଣ କଲେ । ଭଗବାନ, ସେମାନଙ୍କ ଗୁରୁ ଓ ପିତୃତୁଲ୍ୟ ହୋଇ ଏହି କାର୍ଯ୍ୟ କରିବା ମୋ ଭାଗ୍ୟରେ ଥିଲା ! ମୁଁ ଶମ୍ଭୁଙ୍କ ନାମ ବାରମ୍ବାର ଉଚ୍ଚାରଣ କରି ନିଜର କର୍ତ୍ତବ୍ୟ ଶେଷ କରିବା ପର୍ଯ୍ୟନ୍ତ ମୋତେ ଶକ୍ତି ଓ ସାହସ ଦେବା ନିମିତ୍ତ ପ୍ରାର୍ଥନା କଲି । ମୁହୂର୍ତ୍ତକ ମଧ୍ୟରେ ସେହି ବୀରତ୍ୱ ଓ ସୌନ୍ଦର୍ଯ୍ୟ ଯାହା କିଛି ଥିଲା ତାହା ପାଉଁଶରେ ପରିଣତ ହେଲା । ଏହି ଦୃଶ୍ୟ ଆଉ ସହ୍ୟ କରି ନପାରି ମନ୍ଦିରକୁ ଯାଇ ପ୍ରଭୁ ସୋମନାଥଙ୍କ ପାଦତଳେ ପଡ଼ିଗଲି । ଇଚ୍ଛା ହେଲା ସେଇଠାରେ ହେଲେ ମରିଯାଇଥାନ୍ତି ! କିନ୍ତୁ ଘୋଘାବାପା ମୋଠାରୁ ଗୋଟିଏ ପ୍ରତିଶ୍ରୁତି ନେଇଥିଲେ । ତଦନୁଯାୟୀ ମୁଁ ତୁମକୁ ଓ ତୁମ ବାପାଙ୍କୁ ସବୁ ଘଟଣା ଜଣାଇବା ନିମନ୍ତେ ବଞ୍ଚିଛି । ଭଗବାନ, ମୋତେ କାହିଁକି ତୁମ ପାଖକୁ ସେହି ମୁହୂର୍ତ୍ତରେ ନ ନେଇ ଏହି ପ୍ରତିଶ୍ରୁତି ପାଳନ କରିବାକୁ ରକ୍ଷା କଲ ?

ନନ୍ଦୀଦତ୍ତ ଆଉ କଥା କହି ପାରିଲେ ନାହିଁ । କିଛି ସମୟ ପରେ ନିଜକୁ ଆୟତ୍ତ କରି ପୁଣି କହିବାକୁ ଲାଗିଲେ—ସାମନ୍ତ ! ତାପରେ ମୁଁ ଦୁର୍ଗ ଉପରକୁ ଯାଇ ଦେଖେତ ତଳେ ଘୋଘାବାପାଙ୍କର ବୀରମାନଙ୍କ ମଧ୍ୟରୁ ଜଣେ ସୁଦ୍ଧା ଜୀବନରେ ନାହାନ୍ତି । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ପ୍ରାଣ ବିସର୍ଜନ କରିବା ପୂର୍ବରୁ ନିଜ ନିଜର ପରମ ବୀରତ୍ୱର ନିଦର୍ଶନ ଦେଖାଇଛନ୍ତି । ହମୀରଙ୍କର ଦଳେ ସୈନ୍ୟ ଦୁର୍ଗ ଦଖଲ କରିବାକୁ ପ୍ରସ୍ତୁତ ହୋଇଥାନ୍ତି । ମୋର ଶେଷ ସମୟ ଆସିଲା ବୋଲି ମୁଁ ଭାବିଲି । କିନ୍ତୁ ହଠାତ୍ ମୋର ମନେପଡ଼ିଲା ଯେ, ବାହାରକୁ ଯିବା ପାଇଁ ଗୋଟିଏ ଗୁପ୍ତ ବାଟ ଅଛି । ମୁଁ ସେଇ ବାଟେ ଯାଇ ଗୋପନରେ ଲୁଚି ରହିଲି ।

ଶତ୍ରୁ ସୈନ୍ୟମାନେ 'ଆଲ୍ଲା ହୋ ଆକବର' ଧ୍ୱନି ଦେଇ ଆସିଲେ । ସେମାନେ ବୋଧହୁଏ ଦୁର୍ଗରେ କେହି ଲୋକ ଅଛନ୍ତି ବୋଲି ଭାବୁଥିବାରୁ ସାବଧାନ ହୋଇ ଆସ୍ତେ ଆସ୍ତେ ଆସୁଥାନ୍ତି । କିନ୍ତୁ ଦୁର୍ଗ ଶୂନ୍ୟ ପଡ଼ିଥିବା ଦେଖି ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ । ସୈନ୍ୟମାନେ ଦୁର୍ଗ ଭିତରେ ଘୂରିଆଡ଼େ

ଖେଳଯାଇ ଶେଷକୁ ମନ୍ଦିର ଅଗଣାକୁ ଗଲେ । ମୁଁ ଏକ ଗ୍ରେଷ୍ଠ ରନ୍ଧ୍ର ବାଟେ ସବୁ ଦେଖୁଥାଏ । ସେମାନେ ଜଳୁଥିବା ନିଆଁକୁ ଏବଂ ସାତଶହ ବୀର ରମଣୀଙ୍କ ଶବକୁ ଦେଖିଲେ । ଏହି ଦୃଶ୍ୟ ଏତେ ହୃଦୟବିଦାରକ ଥିଲା ଯେ, ସେମାନେ ତାହା ଦେଖି ନପାରି ପଳାଇଗଲେ । କିନ୍ତୁ ତାଙ୍କ ଭିତରୁ ଦୁଇଜଣ ସାହସ ଧରି ଆଗକୁ ଗଲେ । ସେ ଦୁହେଁ ମନ୍ଦିରକୁ ଯାଇ ଠାକୁରଙ୍କର ମୂର୍ତ୍ତିଟି ଭାଙ୍ଗିଦେଲେ । ପ୍ରଭୁ ଶଙ୍କର ! ମୋର ପ୍ରଭୁ ! ଏହି ଦୃଶ୍ୟ ଦେଖିବାପାଇଁ ମୋତେ ବଞ୍ଚାଇ ଥିଲ ? ନନ୍ଦୀଦତ୍ତ କାନ୍ଦି କାନ୍ଦି ଭାଙ୍ଗି ପଡ଼ିଲେ ।

ଶେଷରେ ସେମାନେ ଚାଲିଗଲେ ଏବଂ ଶତ୍ରୁର ସୈନ୍ୟବାହିନୀ ମଧ୍ୟ ଆଗକୁ ଚାଲିଲା । ମୋର ଆଉ କିଛି କାମ ବାକି ଥିବାରୁ ମୁଁ ଉପରେ ଥରି ଥରି ବାହାରକୁ ଆସିଲି । ବନ୍ଧୁ ସାମନ୍ତ, ଆମର ପ୍ରିୟ ଘୋଘାଗଡ଼ ହୋଇଗଲା ଠିକ୍ ଏକ ଶ୍ମଶାନ ପରି । ଆମର ଯାହା କିଛି ପ୍ରିୟ ବସ୍ତୁ ଥିଲା, ତାହା ସବୁ ପାଉଁଶ ହୋଇଗଲା । ତେବେ ଘୋଘାବାପାଙ୍କ ଶବର ଯେପରି ଉଚିତ ସତ୍କାର ହୁଏ ତାହା ଦେଖିବା ଥିଲା ମୋର କର୍ତ୍ତବ୍ୟ । ସେ ନିଜର କର୍ତ୍ତବ୍ୟ ପାଳନ କରି ଭଗବାନଙ୍କ ପାଇଁ ନିଜର ଜୀବନ ବଳି ଦେଇଛନ୍ତି । ବର୍ତ୍ତମାନ ମୋର କର୍ତ୍ତବ୍ୟ ତାଙ୍କର ଶବ ସଂସ୍କାର କରିବା ।

ଲୁଚି ଥିବା ଜାଗାରୁ ବାହାରି ମୁଁ ଆସ୍ତେ ଆସ୍ତେ ଦୁର୍ଗ ଭିତରକୁ ଗଲି । ଶହ ଶହ ଶାଗୁଣା ଶବରାଶି ଉପରେ ଉଡ଼ୁଥାନ୍ତି । ବୀର ରାଜପୁତମାନେ କିପରି ମୃତ୍ୟୁ ବରଣ କରିଛନ୍ତି ମୁଁ ତାହା ଜାଣିଲି । ପ୍ରତେକ ରାଜପୁତ ନିଜେ ମରିବା ପୂର୍ବରୁ ବହୁ ସଂଖ୍ୟକ ଶତ୍ରୁ ସୈନ୍ୟ ମାରିଥିଲେ । ବହୁ ଖୋଜା ଖୋଜି କରି ଘୋଘାବାପାଙ୍କ ଶବ ପାଇଲି ଓ ଦୁର୍ଗରୁ ଚନ୍ଦନ କାଠ ନେଇ ଘୋଘାବାପାଙ୍କୁ ଦାହ କଲି । ମାତ୍ର ସେଠାରେ ବେଶୀ ସମୟ ରହି ପାରିଲି ନାହିଁ ।

ଏହି ହୃଦୟ ବିଦାରକ ପରିବେଶରେ ମୁଁ ଥିଲି ଏକମାତ୍ର ଜୀବିତ ବ୍ୟକ୍ତି । ମୋର ମରିବା ଯୋଗ ନ ଥିଲା । ମୁଁ ସେଠାରୁ ପ୍ରାଣ ବିକଳରେ ପଳାଇଗଲି । ବାଟରେ କେତେକ ଶରଣାର୍ଥୀ ଗରିବ ବ୍ରାହ୍ମଣ ବୋଲି ମୋତେ ଦୟାକରି ଖମ୍ଭୋଇଆକୁ ନେଇ ଆସିଲେ ।

ସାମନ୍ତ ପଚାରିଲେ, "ଆଉ ଯବନ ସେନା ?"

ନନ୍ଦୀଦତ୍ତ—ଯବନ ସେନା ଖମ୍ଭୋଇଆକୁ ନ ଆସି ପ୍ରଧାନ ରାସ୍ତାରେ ସିଧା ସପାଲଦକ୍ଷ ଗଲେ । ହୁଏତ ତାଙ୍କ ଭିତରୁ ଅଳ୍ପ କେତେକ ଏଠାକୁ

ଆସିଥିବେ । କାହିଁକି ନା ତାଙ୍କ ଛଡ଼ା ଅନ୍ୟ କେହି ଏହି ମନ୍ଦିର ଧ୍ୱଂସ କରି ନାହାନ୍ତି । ତୁମେ ଓ ତୁମ ବାପା ଏଠାକୁ ନିଶ୍ଚୟ ଆସିବ ବୋଲି ଜାଣିଥିବାରୁ ମୁଁ ଏହିଠାରେ ଅପେକ୍ଷା କରି ରହିବାକୁ ଠିକ୍ କଲି ।

ସାମନ୍ତ କାନ୍ଦି କାନ୍ଦି କହିଲେ, "ତା' ହେଲେ ଘୋଘାବାପାଙ୍କ ପରିବାରର ଆମେ ଦୁଇଜଣ ମାତ୍ର ବଞ୍ଚିଛୁ ।"

ନନ୍ଦୀ ଦତ୍ତ ଦୁଃଖରେ କହିଲେ, "ହଁ ବାପା, ତୁମେ ଦୁଇଜଣ ମାତ୍ର ବଞ୍ଚିଛ ।"

ବୃଦ୍ଧ ଓ ଯୁବକ ଉଭୟେ କୁଣ୍ଢାକୁଣ୍ଢି ହୋଇ କାନ୍ଦିଲେ ।

ସାମନ୍ତ ରାତିସାକ ଦରି ଭଙ୍ଗା ମନ୍ଦିର ଆଗରେ ଏ ପାଖ ସେ ପାଖ ବୁଲୁଥାନ୍ତି । ନିଜ ବାପାଙ୍କ ପ୍ରତି ସ୍ନେହ, ହୃଦୟର ଦୁଃଖ, ଶତ୍ରୁ ଉପରେ ରାଗ ଏବଂ ପ୍ରତିଶୋଧ ନେବା ପାଇଁ ଏକାନ୍ତ ଇଚ୍ଛା, ତାଙ୍କର ଆତ୍ମାକୁ ଆନ୍ଦୋଳିତ କରୁଥାଏ ।

ଶେଷକୁ ପ୍ରଭୁ ସୋମନାଥ ଏହି ଦୁଃଖୀ ଯୁବକକୁ ଦୟା କଲେ । ସାଙ୍ଗେ ସାଙ୍ଗେ ତାଙ୍କ ବାତୁଳତା ଦୂର ହୋଇଗଲା । ସକାଳ ହେଲା ବେଳକୁ ରାତିସାରା ଉଜାଗର ଥିବା ସାମନ୍ତଙ୍କ ମନରେ ସାହସ ଆସିଲା ।

ନନ୍ଦୀଦତ୍ତ ତାଙ୍କ ନିକଟକୁ ଆସ୍ତେ ଆସ୍ତେ ଯାଇ ସେ କଣ ଭାବୁଛନ୍ତି ପଚାରିଲେ । ରାତିକ ଭିତରେ ଯଥେଷ୍ଟ ପରିପକ୍ୱତା ହାସଲ କରି ଯୁବକ ନିରାନନ୍ଦ ଓ ଶୁଷ୍କ ହାସ୍ୟ ମୁଖରେ କହିଲେ, "ମୁଁ ଆଉ କାହା ବିଷୟ ଭାବିବି ? ବାପାଙ୍କୁ ଖୋଜିବାକୁ ଯିବା ପାଇଁ ଭାବୁଛି । ଆପଣ ବର୍ତ୍ତମାନ କଣ କରିବାକୁ ଭାବୁଛନ୍ତି ?"

ନନ୍ଦୀଦତ୍ତ—ତୁମେ ଯଦି ନେଇଯିବ, ତାହେଲେ ତୁମ ସାଙ୍ଗରେ ଯିବାକୁ ଚାହେଁ । ତୁମ ପାଇଁ ମୋର ବଞ୍ଚିବା ସାର୍ଥକ ହୋଇଛି । ଯେବେ ଭଗବାନ ଦୟା କରନ୍ତି, ତା ହେଲେ ମୋର ଏକମାତ୍ର କାମନା ହେଉଛି ପ୍ରଭାସ ଯାଇ ମୋର ଜୀବନର ଅବଶିଷ୍ଟ ସମୟ ପ୍ରଭୁ ସୋମନାଥଙ୍କ ଆରାଧନାରେ କଟାଇବି ।

ସାମନ୍ତ – ମୋ ସାଙ୍ଗରେ ଆସନ୍ତୁ । ଆମ ଉଭୟଙ୍କର ଲକ୍ଷ୍ୟ ଏକ । ସୋମନାଥଙ୍କ ନିକଟରେ ପହଞ୍ଚିବା ପୂର୍ବରୁ ବାଟରେ ନିଶ୍ଚୟ ହମୀର ସହିତ ଦେଖା ହେବ । ସେତେବେଳେ ପ୍ରଶ୍ନ ଉଠିବ, ସେ ବା ମୁଁ କିଏ ବଞ୍ଚିବ ?

ଘଣ୍ଟାଏ ଦୁଇଘଣ୍ଟା ମଧ୍ୟରେ ସଜ୍ଜନ ଚୌହାନ ଓ ହମୀରର ସୈନ୍ୟବାହିନୀ ଉଭୟଙ୍କ ଅନ୍ୱେଷଣରେ ଯିବା ନିମନ୍ତେ ସେମାନେ ପ୍ରସ୍ତୁତ ହୋଇଗଲେ । ସାମନ୍ତ ଯେଉଁ ବାଟେ ଭମୋରିଆ ଆସିଥିଲେ, ସେ ବାଟେ ସେମାନେ ଗଲେ ନାହିଁ । ସାମନ୍ତଙ୍କର ମନେପଡ଼ିଲା ରଣଥମ୍ଭି ଠାକୁରାଣୀଙ୍କ ମନ୍ଦିରଠାରୁ ଭମୋରିଆ ଯିବା ପାଇଁ ଆଉ ଗୋଟିଏ ସିଧା ରାସ୍ତା ଥିବା କଥା ବାପା କହୁଥିଲେ । ସେ ସେହି ବାଟେ ଯିବାକୁ ଠିକ୍ କଲେ ।

ନନ୍ଦୀଦତ୍ତ ମଧ୍ୟ ସେହି ବାଟେ ଯିବାକୁ ରାଜି ହେଲେ । ତାଙ୍କର ମଧ୍ୟ ମନେ ପଡ଼ିଲା ଯେ, ସେ ଯୁବକ ଥିବା ସମୟରେ ଥରେ ଘୋଘାବାପା ତାଙ୍କ ବାପାଙ୍କ ସହିତ ସେହି ବାଟେ ସୋମନାଥ ଦର୍ଶନକୁ ଯାଇଥିଲେ ।

ସଜ୍ଜନ କେଉଁଠି ଅଛନ୍ତି—ସେ କାହିଁକି ଏ ପର୍ଯ୍ୟନ୍ତ ପହଞ୍ଚି ନାହାନ୍ତି—ଏହି କଥା ଭାବି ଭାବି ଉଭୟଙ୍କର ମନରେ ଗୋଟିଏ ମାତ୍ର ଯୁକ୍ତିପ୍ରଦ ଉତ୍ତର ଦେଖାଦେଲା ।

## ୨୦

# ପ୍ରଭୁଙ୍କର ତୃତୀୟ ଚକ୍ଷୁ

ସଜ୍ଜନ ଚୌହାନଙ୍କର ବାଟ ଦେଖାଇବା ଅନୁଯାୟୀ ହମୀର ମହମ୍ମଦର ସୈନ୍ୟବାହିନୀ ପଶ୍ଚିମ ଦିଗକୁ ଚାଲିଥାଏ । ଦିନ ପରେ ଦିନ ଚାଲି ଚାଲି ଚତୁର୍ଥ ଦିନ ହେବାରୁ ସାଙ୍ଗରେ ଯାଉଥିବା ସୈନ୍ୟମାନେ ପ୍ରତିବାଦ କଲେ । ସେମାନେ କହିଲେ ଯେ, ଏହି ବାଟ ଠିକ୍ ବାଟ ନୁହେଁ ଏବଂ ଏହିବାଟେ ଗଲେ ମରୁଭୂମି ମଧ୍ୟରେ ପହଞ୍ଚିବାକୁ ପଡ଼ିବ, ଯେଉଁଠାରୁ କି ପୂର୍ବରୁ କେହି ଫେରିବା କଥା ଜଣା ନାହିଁ ।

ଏହି ପ୍ରତିବାଦ ସାଲାର ମାସୁଦଙ୍କ କାନରେ ପଡ଼ିଲା । ସେ ସାଙ୍ଗେ ସାଙ୍ଗେ ସଜ୍ଜନଙ୍କୁ ଡାକି କୈଫିୟତ୍ ମାଗିଲେ । ସଜ୍ଜନ ଦୃଢ଼ତାର ସହ କହିଲେ, ସେ ଯେଉଁ ବାଟେ ନେଉଛନ୍ତି ତାହା ଠିକ୍ ବାଟ ଏବଂ ଯେବେ ସେମାନେ ତାଙ୍କ ସହିତ ଯିବାକୁ ନ ଚାହାନ୍ତି ତେବେ ନିଜ ଇଚ୍ଛାମୁତାବକ ରାସ୍ତାରେ ଯାଇ ପାରନ୍ତି ।

ସଜ୍ଜନଙ୍କର ଦୃଢ଼ତା ଦେଖି ମାସୁଦ ପୂର୍ବପରି ତାଙ୍କ ଉପରେ ନିର୍ଭର କରିବା ବ୍ୟତୀତ ତାର ଅନ୍ୟ ବାଟ ନଥିଲା ।

ପଞ୍ଚମ ଦିନ ସୂର୍ଯ୍ୟଙ୍କର ଉତ୍ତାପ ଅସହ୍ୟ ହେଲା । ଘୋଡ଼ାମାନେ ପ୍ରାୟ ହାଲିଆ ହୋଇଗଲେ । ସୈନ୍ୟବାହିନୀର ସର୍ବାଧିକ ବଳଶାଳୀ ଲୋକମାନେ ମଧ୍ୟ କ୍ଳାନ୍ତ ଅନୁଭବ କଲେ । ସୈନ୍ୟବାହିନୀରେ ଏପରି ଅସନ୍ତୋଷ ଦେଖା ଦେଲା ଯାହା ଫଳରେ ପରିସ୍ଥିତିକୁ ଉପେକ୍ଷା କରିବା ସୁଲତାନଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ତେଣୁ ସଜ୍ଜନଙ୍କୁ ତାଙ୍କ ନିକଟରେ ହାଜର କରିବା ନିମନ୍ତେ ସେ ହୁକୁମ ଦେଲେ । ସଜ୍ଜନ ପୂର୍ବପରି ସେ ବତାଉଥିବା ବାଟ ଠିକ୍ ବୋଲି ଦୃଢ଼ତାର ସହିତ କହିଲେ । ତାଙ୍କୁ ଜେରା କରିବା ପାଇଁ ଅଭିଜ୍ଞ ପଥ ପ୍ରଦର୍ଶକ ମାନଙ୍କୁ ଅଣାଯିବାରୁ ମରୁଭୂମି ବାଟ ସଂପର୍କରେ ସଜ୍ଜନଙ୍କ ଜ୍ଞାନ ସେମାନଙ୍କଠାରୁ ଯଥେଷ୍ଟ ଅଧିକ ବୋଲି ସେମାନେ ସ୍ୱୀକାର କଲେ ।

ଷଷ୍ଠ ଦିବସରେ ସଜ୍ଜନଙ୍କ ଉପରୁ ପ୍ରତ୍ୟେକ ଲୋକର ବିଶ୍ୱାସ ତୁଟିଗଲା, ଏପରିକି ଓଟମାନେ ମଧ୍ୟ ଆଗକୁ ଯିବାକୁ ମଙ୍ଗିଲେ ନାହିଁ । ସୈନ୍ୟବାହିନୀ ସାଙ୍ଗରେ ଥିବା ପେଷାଦାର ପଥପ୍ରଦର୍ଶକମାନେ ଜୋର୍ ଦେଇ କହିଲେ ଯେ, ସେମାନେ ପୂର୍ବରୁ ଯାହା କହୁଥିଲେ ତାହା ଠିକ୍ । ଏ ବାଟ ଦେଇ ଗଲେ ଯେଉଁ ଅଞ୍ଚଳରେ ପହଞ୍ଚିବାକୁ ହେବ ସେଠାରେ କେବଳ ଧଳା ଝଡ ହୁଏ । ସୈନ୍ୟ ବାହିନୀ ମଧ୍ୟରେ ହତାଶା ଓ ଅସନ୍ତୋଷ ଦେଖାଦେଲା । ଉତ୍ତରରୁ ଆସୁଥିବା ସୈନ୍ୟମାନେ ଆଗକୁ ଯିବାକୁ ଚାହିଁଲେ ନାହିଁ । ସତେ ଯେପରି ସୈନ୍ୟବାହିନୀ ମଧ୍ୟରେ ବିଦ୍ରୋହ ହେବ, ସେହିଭଳି ଜଣାଗଲା ।

ଏ ସବୁ ସତ୍ତ୍ୱେ ନିଜର ଦ୍ରୁତଗାମୀ ଓଟ ପଦମଣ୍ଡୀ ନିକଟରେ ସଜ୍ଜନ ଦୃଢ଼, ଶାନ୍ତ ତଥା ସ୍ଥିର ଭାବେ ଠିଆ ହୋଇଥାନ୍ତି । ସେମାନେ ଯାଉଥିବା ରାସ୍ତା ଯେ ଅନହିଲୱାଡ଼କୁ ଠିକ୍ ରାସ୍ତା, ଏ ସଂପର୍କରେ ତାଙ୍କର କୌଣସି ସନ୍ଦେହ ନାହିଁ । କିନ୍ତୁ ଏବେ ସାଲାର ମାସୁଦଙ୍କ ଛଡ଼ା ଅନ୍ୟ କେହି ତାଙ୍କୁ ବିଶ୍ୱାସ କରୁ ନାହାନ୍ତି । ସନ୍ଧ୍ୟା ବେଳେ ଖୁବ୍ ପବନ ହେବାରୁ ଦିଗ୍‌ବଳୟରେ ବାଲି ସ୍ତୂପ ଆକାରରେ ଜମା ହେଲା । ହାତୀମାନେ ଆଗକୁ ଯାଇ ନ ପାରି ବସି ପଡ଼ିଲେ । ଭଲ ଭଲ ଘୋଡ଼ାମାନଙ୍କର ମଧ୍ୟ ସେହି ଦଶା ହେଲା । ଓଟମାନେ ଚପେଇବାକୁ ଚାହିଁଲେ ଓ ମଣିଷମାନେ 'ପାଣି ପାଣି' ବୋଲି ଚିତ୍କାର କଲେ ।

ଶେଷକୁ ସୁଲତାନ୍ ଯାତ୍ରା ବନ୍ଦ କରିବାକୁ ହୁକୁମ ଦେଲେ । ସଜ୍ଜନ ଏବଂ କେତେକ ପଥ ପ୍ରଦର୍ଶକଙ୍କୁ ସାଙ୍ଗରେ ନେଇ ଦିନକରେ ଅତିକ୍ରମ କରିବା ଭଳି ବାଟ ଆଗକୁ ଯିବା ନିମନ୍ତେ ସେ ମାସୁଦଙ୍କୁ କହିଲେ । ତାଙ୍କ ପଛେ ପଛେ ସୈନ୍ୟବାହିନୀ ତିନି ଦଳରେ ବିଭକ୍ତ ହୋଇ ପଛକୁ ପଛ ଯିବା କଥା ସ୍ଥିରହେଲା । ଶେଷ ଦଳ ସହିତ ହାତୀ ଓ ଘୋଡ଼ା ଯିବେ । ଏହି ବ୍ୟବସ୍ଥା ସଜ୍ଜନଙ୍କ ମନକୁ ପାଉ ନ ଥିଲେ ସୁଦ୍ଧା, ତାଙ୍କର କିଛି କରିବାର ଉପାୟ ନ ଥିଲା । ପଶ୍ଚିମ ଆକାଶରେ ବୋଝେଇ ହୋଇ ରହିଥିବା ବାଦଲକୁ ଅନାଇ ସେ ପ୍ରାର୍ଥନା କଲେ, 'ପ୍ରଭୁ ସୋମନାଥ, ତୁମର ବାଲିଝଡ଼ କାହିଁ ? ଏହି ମୁହୂର୍ତ୍ତରେ କାହିଁକି ପଠାଉ ନାହଁ ?''

ସାଲ୍ଗର ମାସୁଦ୍ ଏବଂ ସଜ୍ଜନ ସେମାନଙ୍କ ଗନ୍ତବ୍ୟ ପଥରେ ଚାଲିଲେ । ଘଣ୍ଟାଏ ସମୟ ଚାଲିଛନ୍ତି କି ନାହିଁ, ଦେଖା ଦେଲା ବିପଜ୍ଜନକ ବାଲିଝଡ଼ । ବହୁ କଷ୍ଟରେ ଓଟମାନଙ୍କୁ ଆୟତ୍ତ କରି ସେମାନେ ଆପଣାକୁ ଶ୍ୱାସରୁଦ୍ଧ ହେବାରୁ ରକ୍ଷା କଲେ । ବର୍ତ୍ତମାନ ସାଲ୍ଗର ମାସୁଦ ବୁଝିଲେ ଯେ ଅନ୍ୟ ପଥପ୍ରଦର୍ଶକ-ମାନେ କହୁଥିବା କଥା ଠିକ୍ । ତଥାପି ସଜ୍ଜନ ନିଜ କଥାରେ ଦୃଢ଼ ଥିଲେ । କିନ୍ତୁ ମାସୁଦଙ୍କର ବିଶ୍ୱାସ ଦୁର୍ବଳ ହେବାକୁ ଆରମ୍ଭ କଲା ।

ପଦମଣ୍ଡୀ ମଧ୍ୟ ଅବସ୍ଥା ବୁଝିଥିବା ପରି ଜଣାଗଲା । ଅନ୍ୟ ଓଟମାନେ ଯିବାକୁ ଅମଙ୍ଗ ହେଉଥିବା ବେଳେ ସେ ପୂରା ଦମ୍‌ରେ ଆଗକୁ ଚାଲିଲା । ଏହା ଫଳରେ ସଜ୍ଜନଙ୍କୁ ଅନ୍ୟ ପଥ ପରିଚାଳକମାନଙ୍କ ସହିତ ଯୁକ୍ତି କରିବାକୁ ସୁବିଧା ମିଳିଗଲା—ଯେବେ ପଦମଣ୍ଡୀ ଆଗକୁ ଯାଇପାରେ ତା ହେଲେ ସେମାନଙ୍କ ଓଟସବୁ ଯିବାରେ ଭୟ କଣ ?

ପଶ୍ଚିମ ଦିଗରୁ ଅଧିକରୁ ଅଧିକ ମାତ୍ରାରେ ଭୟଙ୍କର ଭାବେ ବାଲିଝଡ଼ ମାଡ଼ି ଆସୁଥାଏ । ମାସୁଦ୍ ବଡ଼ ବଡ଼ ଆଖିରେ ସଜ୍ଜନଙ୍କୁ ଚାହିଁ ସୁଦ୍ଧା ଧୈର୍ଯ୍ୟ ହରାଇ ନଥାନ୍ତି । "ମୁଁ ସାମନାରେ କଣ ଦେଖୁଛି ତୁମେ ଜାଣି ପାରୁଛ ?"— ମାସୁଦ୍ ପଚାରିବାରୁ ସଜ୍ଜନ ଗମ୍ଭୀର ଭାବେ ଉତ୍ତର ଦେଲେ, "ହଁ, ବାଲିଝଡ଼, ଅଳ୍ପ ସମୟ ପରେ ଶେଷ ହୋଇଯିବ ।"

କ୍ରମେ ଆହୁରି ଅଧିକ ଜୋର୍‌ରେ ଗରମ ପବନ ବହିଲା । ସେମାନଙ୍କ ଉପରେ ବାଲିକଣା ଆସି ଗଦାହେଲା । ଏହା ଦେଖି ମାସୁଦ୍ ନିଶ୍ଚିତ ଭାବେ ବୁଝିଲା ଯେ, ତାଙ୍କୁ ସଜ୍ଜନ ଠକିଛନ୍ତି ।

ତହୁଁ ମାସୁଦ୍ ନିଜର ଖଣ୍ଡା କାଢ଼ି ସଜ୍ଜନଙ୍କ ଉପରକୁ ଉଞ୍ଚାଇ ଉଚ୍ଚ ସ୍ୱରରେ କହିଲା, "ବଦମାସ୍, ତୁ କିଏ ?"

ସଜ୍ଜନ ହସି ହସି ଜବାବ୍ ଦେଲେ, "ମୁଁ କିଏ ? ଜାଣିକି ? ମ୍ଳେଚ୍ଛ, ମୁଁ ଏହି ମରୁଭୂମିର ଶାସକ ଘୋଘାବାପାଙ୍କ ପୁଅ । ଏଇ ଦେଖ, ଯେଉଁଠି ପ୍ରଭୁ ସୋମନାଥଙ୍କର ତୃଷ୍ଣାପ୍ତ ଆଖି ସମସ୍ତ ଧ୍ୱଂସ କରିବାକୁ ମେଲା ହୋଇଛି ।" ଏହା କହି ସେ ଦୂରର ବାଲିଝଡ଼କୁ ଦେଖାଇଦେଲେ ।

ସଜ୍ଜନ କହୁଥିବା ବିଷୟ ମାସୁଦ୍‌ର ପାଖରେ ଥିବା ପଥପରିଚାଳକ ଭାଷାନ୍ତର କରି ବୁଝାଇ ଦେଲା । ଏହା ଶୁଣି ମାସୁଦ୍‌ର ରାଗ ସୀମା ଟପିଲେ ସୁଦ୍ଧା, ତାର ଓଟ ଆଗକୁ ନଯାଇ ପଛକୁ ଫେରୁଥିବାରୁ, ସେ କିଛି କରି ପାରିଲା ନାହିଁ । ତା ଦେଖାଦେଖି ଅନ୍ୟ ଓଟମାନେ ମଧ୍ୟ ପଛକୁ ଫେରିଲେ ।

ସଜ୍ଜନଙ୍କ ଦୃଢ଼ ଆଦେଶରେ ପଦମଣ୍ଡୀ ନିର୍ଭୟରେ ଝଡ଼କୁ ସମ୍ମୁଖ କରି ଠିଆ ହୋଇଥାଏ । ସଜ୍ଜନ ମଧ୍ୟ ଓଟମାନଙ୍କୁ ଅନାଇ ରହିଥାନ୍ତି । ଏହା ପରେ କଣ କରିବେ ତାହା ନିଷ୍ପତ୍ତି କରିବାକୁ ସେ ସମୟ ପାଇଲେ ନାହିଁ । ଯେଉଁ ଆଡ଼କୁ ଅନାଉଥାନ୍ତି ମୃତ୍ୟୁର ସମ୍ମୁଖୀନ ହେଲାଭଳି ତାଙ୍କୁ ଲାଗୁଥାଏ । ସେ ଯେବେ ମାସୁଦ୍‌ର ପଛେ ପଛେ ଯାଆନ୍ତି ତା ହେଲେ ତାଙ୍କୁ ମାରିଦିଆଯିବ, ଯେବେ ଝଡ଼ ଭିତରକୁ ଯାଆନ୍ତି, ତା ହେଲେ ମଧ୍ୟ ମୃତ୍ୟୁ ଅବଶ୍ୟମ୍ଭାବୀ । ପଦମଣ୍ଡୀ ଯେପରି ଅସ୍ଥିର ହୋଇ ଚିତ୍କାର କଲା ତହିଁରୁ ସେ ବୁଝିପାରିଲେ ଯେ, ପ୍ରାୟ ତିନିଶହ ହାତ ଉଚ୍ଚରେ ଝଡ଼ ଆସୁଛି ଓ ସେ ଯେବେ ଯାଆନ୍ତି ତାହେଲେ ଉଭୟେ ଝଡ଼ ଭିତରେ ପଡ଼ି ଶେଷ ହୋଇଯିବେ । ପଦମଣ୍ଡୀ ଅସ୍ଥିର ହୋଇ ଗୁରିଗୋଡ଼ରେ ଡେଇଁବାକୁ ଲାଗିଲା ।

ଏହି ବିପଦ ସମୟରେ ସଜ୍ଜନଙ୍କ ମନରେ ନାନାପ୍ରକାର କଳ୍ପନା ରୂପ ନେଲା । ତାଙ୍କର ନବେ ବର୍ଷ ବୟସ୍କ ବାପା ଘୋଘାବାପା ନିଜ ପୁଅର ଅଦ୍ଭୁତ ସାହସର ପରିଚୟ ପାଇ ଆନନ୍ଦରେ ଠିଆ ହୋଇଛନ୍ତି । ତାଙ୍କ ସ୍ତ୍ରୀ ତାଙ୍କର ଆଗମନ ପାଇଁ ଅପେକ୍ଷା କରି ରହିଛି । ଯେଉଁ ପୁଅ ସାମନ୍ତକୁ ସେ ଜୀବନ ଅପେକ୍ଷା ଅଧିକ ଭଲ ପାଆନ୍ତି, ସେ ତାଙ୍କର ନିରାପତ୍ତା ପାଇଁ ଉଦ୍‌ବିଗ୍ନ ହୋଇ ଅପେକ୍ଷା କରି ରହିଛି । ପ୍ରଭୁ ସୋମନାଥଙ୍କ ମନ୍ଦିରରେ ଗଙ୍ଗସର୍ବଜ୍ଞ ଘଟଣା ଜାଣିବା ପାଇଁ ଚିନ୍ତିତ ଭାବେ ଅପେକ୍ଷା କରି ରହିଛନ୍ତି ଓ ସର୍ବୋପରି ପ୍ରଭୁ ସୋମନାଥଙ୍କ ରକ୍ଷା ପାଇଁ ସେ ନିଜର ଜୀବନ ଦେବାକୁ ପ୍ରସ୍ତୁତ ହୋଇଛନ୍ତି ।

ପ୍ରଭୁ ସୋମନାଥ ତାଙ୍କର ବିରାଟ ମନ୍ଦିରରେ ବିଜେ କରିଛନ୍ତି । ଏହିସବୁ ଦୃଶ୍ୟ ତାଙ୍କ ଆଖି ଆଗରେ ସତଭଳି ନାଚିଉଠୁଥିଲା ।

ଏହିସବୁ କଥା କଳ୍ପନା କରି ତାଙ୍କ ହୃଦୟ ଗର୍ବରେ ଫୁଲିଉଠିଲା । ଯାହା ଏପର୍ଯ୍ୟନ୍ତ କେହି କରି ନାହାନ୍ତି, ସେ ତାହା ଏକାକୀ କରିପାରିଲେ । ତାଙ୍କ ଯୋଗୁ ହମୀରର ସୈନ୍ୟବାହିନୀର ବହୁ ସଂଖ୍ୟକ ସୈନ୍ୟ ଆଜି ଧ୍ୱଂସ ହେବେ । ତାଙ୍କର ଏହି ବୀରତ୍ୱ କାହାଣୀ କାନରେ ପଡ଼ିଲେ ସମସ୍ତେ ଉଚ୍ଚ ପ୍ରଶଂସା କରିବେ । ଏହି ବୀରତ୍ୱର କାହାଣୀ ଦେଶସାରା ବ୍ୟାପ୍ତ ହେବ ଏବଂ ଦୁନିଆରେ ସାହସ ଓ ବୀରତ୍ୱର ଆଲୋଚନା ବେଳେ ଲୋକେ ତାଙ୍କର ଉପମା ଦେବେ ।

ଆଗତ ପ୍ରାୟ ବାଲିଝଡ଼ ସଜ୍ଜନଙ୍କ ମନରେ ନାନା ପ୍ରକାର ରେଖାପାତ କରିବାକୁ ଆରମ୍ଭ କଲା । ପଦମଡ଼ୀ ଅଧୈର୍ଯ୍ୟ ହୋଇ ଉଠିଛି । ସେମାନେ ବଞ୍ଚିବେ ନା ମରିବେ ? ହମୀରର ଲମ୍ବା ଦାଢ଼ି ଓ ସବୁଜ ପଗଡ଼ି ସହ ଭୟଙ୍କର ମୁହଁ, ବାଲିଝଡ଼ରେ ଅଣନିଶ୍ୱାସୀ ହୋଇଯାଉଥିବା ତାର ବିରାଟ ସୈନ୍ୟବାହିନୀ ଖାଦ୍ୟ ନପାଇ ମରିଯାଉଥିବା ଏବଂ ସେମାନଙ୍କ ଉପରେ ଶାଗୁଣା ଉଡୁଥିବାର କାଳ୍ପନିକ ଚିତ୍ର ସେ ଦେଖିଲେ ।

ଏହି ସବୁ ଦିବାସ୍ୱପ୍ନ ଶେଷ କରି ଈଷତ୍ ହାସ୍ୟ ସହ ସେ ତଳକୁ ମୁହଁ ପୋତି ଓ ପଦମଡ଼ୀକୁ ଗେଲ କରି ସ୍ନେହଭରା ସ୍ୱରରେ କହିଲେ, "ପଦମଡ଼ୀ ବୋହି, ପଛକୁ ଫେର ମା ମୋର ! ତ୍ରିଜଗତର ପ୍ରଭୁ ସୋମନାଥଙ୍କର ତୁ ତୃଷ୍ଣାୟୁ ଆଖି ହୁଅ ।" ଏହା କହି ସେ ବାଲିଝଡ଼ ଆସୁଥିବା ଦିଗରୁ ପଦମଡ଼ୀର ମୁହଁକୁ ଫେରାଇଲେ ଏବଂ ଶେଷ ମୁହୂର୍ତ୍ତରେ ଝଡ଼କୁ ଅତିକ୍ରମ କରିବାକୁ ଠିକ୍ କଲେ ।

ମାସୁଦ୍‌ର ସୈନ୍ୟବାହିନୀର ଦୁଇଟି ଓଟ ପଡ଼ିଗଲେ ସୁଦ୍ଧା ସେଇ ଦୁଇଟି ଦୁର୍ଭାଗା ଉଷ୍ଟ୍ରାରୋହୀଙ୍କ ତତ୍ତ୍ୱ ନେବାକୁ ତାର ସମୟ ନ ଥିଲା । ତାର ଏକମାତ୍ର ଧ୍ୟାନ କିପରି ଯେତେ ଶୀଘ୍ର ପାରେ ସୈନ୍ୟବାହିନୀକୁ ଝଡ଼ ମୁହଁରୁ ରକ୍ଷା କରିବ । ସାଙ୍ଗେ ସାଙ୍ଗେ ସୈନ୍ୟବାହିନୀର ମୁଖ୍ୟ ଅଂଶ ସଙ୍ଗେ ସମ୍ପର୍କ ପ୍ରତିଷ୍ଠା କରି ପଛକୁ ଫେରିଯିବା ପାଇଁ ସେ ନିର୍ଦ୍ଦେଶ ଦେଲା ଓ ବାହିନୀର ଦକ୍ଷିଣ ଅଂଶକୁ ଖବର ଦେବା ପୂର୍ବରୁ ଓଟ ବଦଳାଇବା ପାଇଁ ସେ କିଛି ସମୟ ନେଲା ।

ସୁଲତାନ ନିଜେ ସୈନ୍ୟବାହିନୀର ଦ୍ୱିତୀୟ ଦଳରେ ଥିଲେ । ମାସୁଦ ଯଥା ଶୀଘ୍ର ତାଙ୍କୁ ପ୍ରକୃତ ଅବସ୍ଥା ବୁଝାଇଦେଲେ । ଏବେ ଫେରିଯିବା ଛଡ଼ା ଅନ୍ୟ ଉପାୟ ନଥିଲା । ସୁଲତାନ ନିଜେ ଜଣେ ଦକ୍ଷ ସେନାପତି । ଆସନ୍ନ ବିପଦ ବୁଝିବାରେ ତାର କୌଣସି ବିଳମ୍ବ ହେଲନାହିଁ ଏବଂ ସଙ୍ଗେ ସଙ୍ଗେ ସୈନ୍ୟବାହିନୀ ଫେରିଯିବା ପାଇଁ ବ୍ୟବସ୍ଥା କରାଗଲା । ସୈନ୍ୟମାନେ ଯେପରି ଉତ୍ସାହିତ ହେବେ, ସେଥିପାଇଁ ସେ ନିଜେ ମଧ୍ୟ ତାଙ୍କ ସଙ୍ଗେ ଗଲେ ।

ସୈନ୍ୟବାହିନୀର ଦ୍ୱିତୀୟ ଦଳଟି ଏକ ପ୍ରକାର ଶୃଙ୍ଖଳିତ ଭାବେ ପଛକୁ ଫେରିଲା । ତୃତୀୟ ଦଳକୁ ମଧ୍ୟ ସାଙ୍ଗେ ସାଙ୍ଗେ ପଛକୁ ଶୃଙ୍ଖଳିତ ଭାବେ ଫେରିଯିବା ପାଇଁ ଆଦେଶ ଦିଆଗଲା ।

କେବଳ ପ୍ରଥମ ଦଳରେ ପୂରାପୂରି ବିଶୃଙ୍ଖଳା ଦେଖାଦେଲା । ସୁଲତାନ ଏବଂ ମାସୁଦ୍ ଶୃଙ୍ଖଳା ପ୍ରତିଷ୍ଠା କରିବାକୁ ଯେତେ ଚେଷ୍ଟା କଲେ ସୁଦ୍ଧା ସେମାନଙ୍କ କଥା ଶୁଣିବା ଅବସ୍ଥାରେ କେହି ନଥିଲେ । ବାଲଝଡ଼ ଦ୍ରୁତଗତିରେ ସେମାନଙ୍କ ପାଖକୁ ମାଡ଼ି ଆସୁଥାଏ । ସୁଲତାନ ନିଜକୁ ଆସନ୍ନ ବିପଦରୁ ରକ୍ଷା କରିବା ପାଇଁ ପ୍ରଥମ ଦଳକୁ ଶୃଙ୍ଖଳିତ କରିବାର ଚେଷ୍ଟା ତ୍ୟାଗ କରି ଦ୍ୱିତୀୟ ଦଳକୁ ଫେରିଗଲେ ।

ସେମାନେ ଯାଉଥିବା ସମୟରେ ଝଡ଼ ତାଙ୍କ ପଛେ ପଛେ ଆସୁଛି କି ନାହିଁ ତାହା ଜାଣିବା ପାଇଁ ସେମାନେ ପଛକୁ ନ ଚାହିଁ ରହି ପାରିଲେ ନାହିଁ । ଉଜ୍ଜ୍ୱଳ ବାଲିକଣାର ପରଦା ପରି ଗୋଟିଏ ଦୃଶ୍ୟରେ ସୂର୍ଯ୍ୟଦେବତାଙ୍କ ଭଳି ଗୋଟିଏ ଭୟାବହ ମୂର୍ତ୍ତି ସୁନାରଙ୍ଗର ଓଟରେ ଚଢ଼ି ସେମାନଙ୍କ ନିକଟକୁ ଆସୁଥିବା ସେମାନେ ଦେଖିପାରିଲେ । ଓଟ ଉପରେ ଚଢ଼ିଥିବା ବ୍ୟକ୍ତିଟି ଖୋଲା ତରବାରି ଚମକାଇ ଭୟଙ୍କର ବେଗରେ ମାଡ଼ିଆସୁଥାଏ । ହିନ୍ଦୁମାନେ "ସୂର୍ଯ୍ୟନାରାୟଣ" ଓ ମୁସଲମାନମାନେ "ସୈତାନ୍" ବୋଲି ଧ୍ୱନି ଦେଲେ ଏବଂ ସମସ୍ତେ ଏହି ଧ୍ୱଂସରୁ ରକ୍ଷା କରିବା ନିମନ୍ତେ ତଳକୁ ମୁହଁ ପୋତି ପ୍ରାର୍ଥନା କଲେ ।

ବାଲିଝଡ଼ର ଦେବତା ସଦୃଶ ଦେଖାଯାଉଥିବା ଏହି ମୂର୍ତ୍ତି କାହାରିକୁ ଅପେକ୍ଷା ନ କରି ବାରମ୍ବାର "ଜୟ ସୋମନାଥ" ଧ୍ୱନି ଦେଇ ଦ୍ରୁତଗତିରେ ଆସୁଥାଏ । ଏକ ମୁଣ୍ଡିଆ ଉପରେ ଠିଆହୋଇ ସୁଲତାନ ମହମ୍ମଦ ଏହାକୁ

ଦେଖି ଚକ୍କାର କରି କହିଲା, "କିଏ ଏ ? ସୈତାନ୍ ?" ମାସୁଦ ଜବାବ ଦେଲା, "ନାଁ ଆଲ୍ଲା ! ସେ ଘୋଘାବାପାର ପୁଅ ।"

ଗଜନୀର୍ ହମୀର ନିଜେ ଜଣେ ଯୋଦ୍ଧା । ତେଣୁ ଏହା ଶୁଣି ପ୍ରଶଂସାରେ ସେ ବାକ୍ଶକ୍ତିହୀନ ହୋଇଗଲା । ତାର ବିରାଟ ସୈନ୍ୟବାହିନୀର ଗୋଟିଏ ପୂରା ଦଳ ଝଡ଼ରେ ଧ୍ୱଂସ ହୋଇଥିବାର ସେ ନିଜେ ଦେଖିଲା । ସେ ଏକ ନିଶ୍ୱାସ ପକାଇ କହିଲା, "ଆଲ୍ଲାଙ୍କ ଦୟାରୁ ମୋ ସୈନ୍ୟବାହିନୀକୁ ତିନି ଦଳରେ ବିଭକ୍ତ କରିଥିବାରୁ ଅନ୍ତତଃ ଦୁଇଟି ଦଳ ରକ୍ଷାପାଇଗଲେ ।" ହମୀର ଏହା କହି ତାର ଓଠରୁ ଓହ୍ଲାଇପଡ଼ି ଆଣ୍ଠୁ ପକାଇ ଭଗବତ୍ ଦୟା ପାଇଁ ପ୍ରାର୍ଥନା କଲା ।

ଝଡ଼ କମିଯାଇ ସବୁ ଶାନ୍ତ ହୋଇ ଯିବା ପରେ ସତ ଯେପରି କିଛି ବିପଦ ଘଟି ନ ଥିଲା ସେହିପରି ଜଣାଗଲା । ଗୃହଆଡ଼େ ସ୍ତୂପ ଆକାରରେ ବାଲି ଗଦା ହୋଇଥାଏ ଏବଂ ଏହି ବାଲି ଗଦା ତଳେ ପୋତି ହୋଇ ପଡ଼ିଥିବା ଶହ ଶହ ସୈନ୍ୟଙ୍କ ମଧ୍ୟରେ ଥିଲା ସଜ୍ଜନ ଓ ତାଙ୍କ ପ୍ରିୟ ପଦମଡ଼ୀର ଶବ । ସଜ୍ଜନ ପଦମଡ଼ୀର ବେକକୁ କୁଣ୍ଢାଇ ଧରି ମରି ପଡ଼ିଥାନ୍ତି ।

## ୨୧

## ସାମନ୍ତ ଓ ସୁଲତାନ୍

ସୁଲତାନର ଅଦ୍ଭୁତ ବ୍ୟକ୍ତିତ୍ୱ ଫଳରେ ସଙ୍ଗେ ସଙ୍ଗେ ସୈନ୍ୟବାହିନୀ ପୁନର୍ଗଠିତ ହୋଇ ଶୃଙ୍ଖଳିତ ରୂପେ ଆଗକୁ ଚାଲିଲା । ପ୍ରତିଦିନ କିଛି କିଛି ବାଟ ଯାଇ ପାଖରେ ଥିବା ପାଣି ଓ ଖାଦ୍ୟ ଦ୍ରବ୍ୟ ଅତି ସଂଯତଭାବେ ଅଳ୍ପ ଅଳ୍ପ ଖର୍ଚ୍ଚ କରି, ଦିନ ରାତି ପ୍ରାର୍ଥନା କରି, ଖୁରାସାନୀ ସୈନ୍ୟବାହିନୀର ସାହାଯ୍ୟ ନେଇ ଓ ଅନ୍ୟାନ୍ୟ ନାନା ଉପାୟରେ ସୈନ୍ୟବାହିନୀ ମଧ୍ୟରେ ଶୃଙ୍ଖଳା ପ୍ରତିଷ୍ଠା କରାଗଲା ।

ଏହି ସଙ୍କଟ ତଥା ବିପଜ୍ଜନକ ସମୟରେ ସୁଲତାନ ମହମ୍ମଦର ବାସ୍ତବ ବ୍ୟକ୍ତିତ୍ୱର ମହନୀୟତା ପ୍ରକାଶ ପାଇଲା । କୌଣସି ବିପଦ ତା ମନରେ

ଅବସାଦ ଆଣି ନଥିଲା । ଯେତେ ବଡ଼ ପ୍ରତିକୂଳ ଅବସ୍ଥା ଦେଖା ଦେଲେ ସୁଦ୍ଧା ତାହାର ଆତ୍ମବିଶ୍ୱାସ ଥିଲା ଅକ୍ଷୁଣ୍ଣ । ତାହାର ଲକ୍ଷ୍ୟ ବିଚ୍ୟୁତ ଘଟିବା ପାଇଁ ଯଥେଷ୍ଟ ଘଟଣା ଘଟିଥିଲେ ସୁଦ୍ଧା, ସେ ତାହା ଅପରିବର୍ତ୍ତିତ ରଖିଥିଲା ।

ସୁଲତାନ କୌଣସି ପ୍ରକାର ବିଶ୍ରାମ ନ ନେଇ ଦିନ ରାତି ସୈନ୍ୟ-ବାହିନୀ ମଧ୍ୟରେ ବୁଲି, କେଉଁଠାରେ ଥଟ୍ଟା ପରିହାସ ବା ବ୍ୟଙ୍ଗୋକ୍ତି କରି, କେଉଁଠି ଧର୍ମ ପ୍ରସଙ୍ଗ ଆଲୋଚନା କରି ଏବଂ ଅନ୍ୟ କୌଣସିଠାରେ କ୍ରୋଧ ପ୍ରକାଶ କରି ସୈନ୍ୟବାହିନୀ ମଧ୍ୟରେ ଉତ୍ସାହ ସୃଷ୍ଟି କରୁଥିଲା । ସେ ଯେଉଁଠାକୁ ଯାଉଥିଲା, ସେଠାରେ ଉତ୍ସାହ ଖେଳିଯାଉଥିଲା ।

କେବଳ ହିନ୍ଦୁ ସୈନ୍ୟମାନଙ୍କ ମଧ୍ୟରେ ଉତ୍ସାହ ନ ଥିଲା । ସେମାନେ ପରସ୍ପରକୁ ପଚାରୁଥିଲେ—ଯେତେବେଳେ ସୂର୍ଯ୍ୟ ଦେବତା ନିଜେ ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛନ୍ତି, ସେତେବେଳେ ମଣିଷ ବା କଣ କରିପାରିବ ? ସେମାନଙ୍କ ମଧ୍ୟରୁ କେତେକ ମହମ୍ମଦର ଲୁଣ୍ଠନ ଦ୍ରବ୍ୟରୁ ଭାଗ ପାଇବା ଆଶାରେ ଏବଂ ଅନ୍ୟମାନେ କାପୁରୁଷ ହିନ୍ଦୁ ଶାସକମାନଙ୍କର ଆଦେଶରେ ଏ ସୈନ୍ୟବାହିନୀରେ ଯୋଗ ଦେଇଥିଲେ । କିନ୍ତୁ ଏବେ ସେମାନେ ବୁଝୁଥିଲେ ଯେ, ଯାହାର ସୈନ୍ୟବାହିନୀରେ ସେମାନେ ଯୋଗ ଦେଇଛନ୍ତି, ସେ କୌଣସି ମଣିଷ ସହିତ ଯୁଦ୍ଧ ନକରି ଯୁଦ୍ଧ କରିବ ଭଗବାନଙ୍କ ସହିତ । ତେଣୁ ସେମାନଙ୍କ କର୍ତ୍ତବ୍ୟ ଭିନ୍ନ ବୋଲି ବୁଝିପାରି ସେମାନଙ୍କ ମଧ୍ୟରେ ଅଧିକରୁ ଅଧିକ ଅସନ୍ତୋଷ ପ୍ରକାଶ ପାଉଥିଲା । ତେବେ କେବଳ ଅସନ୍ତୁଷ୍ଟ ହେବା ବ୍ୟତୀତ ସେମାନଙ୍କ ପକ୍ଷରେ ଅନ୍ୟଉପାୟ କିଛି ନଥିଲା ।

ପରଦିନ ସେନାପତିମାନେ ସୁଲତାନଙ୍କ ସହିତ ଦେଖାକରି ପ୍ରତ୍ୟେକେ କିଛି ନା କିଛି ଅଭିଯୋଗ କଲେ । ହାତୀମାନେ ଆଗକୁ ଚାଲି ପାରୁ ନାହାନ୍ତି, ଦାନା ଓ ପାଣି ଅଭାବରେ ଘୋଡାମାନେ ମରିବାକୁ ବସିଲେଣି, ହିନ୍ଦୁମାନଙ୍କର ଏଥିରେ ଆନ୍ତରିକତା ନାହିଁ, ମୁସଲମାନମାନଙ୍କର ଆଉ ପୂର୍ବ ପରି ଆଗ୍ରହ ଓ ଉତ୍ସାହ ନାହିଁ, ପଥନିର୍ଦ୍ଦେଶକମାନେ ଆଗକୁ ରାସ୍ତା ବତାଇ ପାରୁ ନାହାନ୍ତି, ଆଗକୁ ଗୋଟିଏ ସନ୍ଧି ସ୍ଥାନରେ ରାଜପୁତ ସୈନ୍ୟବାହିନୀ ଜଗି ରହିଛନ୍ତି—ଏହିପରି ନାନା କଥା ସେମାନେ କହିଲେ ।

ସୁଲତାନ ଗଦିକୁ ଆଉଜି ବସି ପ୍ରତ୍ୟେକଙ୍କ କଥା ଶୁଣୁଥାଏ । ପ୍ରତ୍ୟେକ ଲୋକ ନିଜ ନିଜର କଥା କହୁଥିବା ବେଳେ ସେ ତାର ବଡ଼ ବଡ଼ ଆଖିର ଭ୍ରୂଲତା ଉପରକୁ କରି କଟାକ୍ଷରେ ଅନାଇ ସବୁ ଶୁଣୁଥାଏ । କେବଳ ମାହମୁଦର ଏ ପର୍ଯ୍ୟନ୍ତ ପୂର୍ବପରି ଆଗ୍ରହ ଓ ଉତ୍ସାହ ଅଛି ଏବଂ ପ୍ରତ୍ୟେକ ଅଭି-

ଯୋଗର ଉତ୍ତରରେ କୋରାନ୍‌ରୁ ଆବଶ୍ୟକୀୟ ପଂକ୍ତି ଉଦ୍ଧାର କରି ସେ ଠୋକ୍‌ଠୋକ୍ ଜବାବ ଦେଉଥାଏ ।

ଠିକ୍ ଏତିକି ବେଳେ ମୁଲତାନର ମୁଖୀଙ୍କଠାରୁ ବାର୍ତ୍ତା ନେଇ ଦୁଇ ଜଣ ବ୍ୟକ୍ତି ଆସିଛନ୍ତି ବୋଲି ଗୋଟିଏ ପ୍ରହରୀ ଖବର ଦେଲା । ତମ୍ବୁ ଭିତରେ ଥିବା ପ୍ରତ୍ୟେକ ଲୋକ ଉପରେ ଏହା ଭିନ୍ନ ଭିନ୍ନ ପ୍ରକାରର ପ୍ରତିକ୍ରିୟା ସୃଷ୍ଟି କଲା । ଆଶାବାଦୀମାନେ ଏହାକୁ ଶୁଭ ସଂବାଦ ବିଚାରିଲେ । ବିପଦ ଆଶଙ୍କା କରୁଥିବା ବ୍ୟକ୍ତିମାନେ ଏଥିରେ ବିପଦର ସଂକେତ ଦେଖିଲେ । ସୁଲତାନ ସଙ୍ଗେ ସଙ୍ଗେ ବସିପଡ଼ି ସେମାନଙ୍କୁ ଆସିବା ପାଇଁ ହୁକୁମ ଦେଲେ । ମାସୁଦ୍ ଆନନ୍ଦ ଉତ୍ସାହରେ ନବାଗତମାନଙ୍କୁ ସ୍ୱାଗତ କରିବାକୁ ଗଲା ।

ଅଳ୍ପ ସମୟ ମଧ୍ୟରେ ସାମନ୍ତ ଓ ନନ୍ଦୀଦତ୍ତଙ୍କ ସହ ମାସୁଦ୍ ଫେରି ଆସିଲା । ଗୁଜରାଟ ଯିବା ପାଇଁ କେଉଁ ବାଟ ସିଧା ତାହା ଖୋଜି ଖୋଜି ସେ ଦୁହେଁ ଏଠାରେ ଆସି ପହଞ୍ଚିଛନ୍ତି । ଏହି ବିରାଟ ଛାଉଣୀ ଦେଖି ଲୁଚି ପଳାଇ ଯିବା ପାଇଁ ନନ୍ଦୀଦତ୍ତ ସାମନ୍ତଙ୍କୁ ପରାମର୍ଶ ଦେଇଥିଲେ, କିନ୍ତୁ ସାମନ୍ତ ତାଙ୍କ କଥା ନ ମାନି ଦୃଢ଼ତା ସହ ସିଧାସଳଖ ଛାଉଣୀକୁ ଯାଇ ସୁଲତାନଙ୍କୁ ଦେଖା କରିବା ନିମିତ୍ତ ପ୍ରହରୀଙ୍କୁ କହିଲେ ।

ପ୍ରହରୀ ମାନଙ୍କର ସନ୍ଦେହ ହେଲା, କାରଣ ଜଣେ ହିନ୍ଦୁ ପଥଚାରୀ ସିଧାସଳଖ ସୁଲତାନ ସଙ୍ଗରେ ଦେଖାସାକ୍ଷାତ ଚାହିଁବା ସେମାନେ କେବେ ଶୁଣି ନଥିଲେ । କିନ୍ତୁ ମୁଲତାନର ମୁଖୀଙ୍କଠାରୁ ବାର୍ତ୍ତା ନେଇ ଝାଲୋରରୁ ସେ ଆସିଛନ୍ତି ବୋଲି ସାମନ୍ତ କହିଲେ । ଏକଥା ପ୍ରହରୀ ନାୟକକୁ ଓ ନାୟକ ତା ଉପରସ୍ଥ ବ୍ୟକ୍ତିଙ୍କୁ କହିବା ଫଳରେ ଅନୁମତି ପାଇଁ ସାମନ୍ତ ସେଠାରେ ଉପସ୍ଥିତ ହୋଇଥାନ୍ତି ।

ଏକୋଇଶ ବର୍ଷ ବୟସ୍କ ସାମନ୍ତ ଏ ସମୟରେ ଭୟଙ୍କର ଦେଖା ଯାଉ ଥାନ୍ତି । ତାଙ୍କର ଆଖି ସ୍ଥିର ଓ ମତ୍ତ । ତାଙ୍କ ମୁଖର କୋମଳତା ନଷ୍ଟ ହୋଇ କପାଳରେ ରେଖା ପଡ଼ିଯାଇଥାଏ । ବୃଦ୍ଧ ନନ୍ଦୀଦତ୍ତ ସାମନ୍ତଙ୍କ ପାଖ ଛାଡ଼ିବେ ନାହିଁ ବୋଲି ପଣ କରିଥିବାରୁ ଦୃଢ଼ମନାହୋଇ ତାଙ୍କ ସଙ୍ଗେ ଅବିଚ୍ଛେଦ୍ୟ ସାଥୀ ରୂପେ ରହିଥାନ୍ତି ।

ସେ ଦୁହେଁ ସୁଲତାନ ନିକଟରେ ଆସି ପହଞ୍ଚିବା ମାତ୍ରେ କଣ ସଂବାଦ ଆସିଛି ଜାଣିବା ନିମନ୍ତେ ସମସ୍ତଙ୍କ ମନରେ ଉଦ୍‌ବେଗ ଦେଖାଦେଲା । ସୁଲତାନ ଆଗନ୍ତୁକ ଦୁହିଁଙ୍କୁ ସିଧା ତା ନିକଟକୁ ଆଣିବା ନିମନ୍ତେ ଉଚ୍ଚ ସ୍ୱରରେ

ମାସୁଦ୍‌କୁ ନିର୍ଦ୍ଦେଶ ଦେଲା । ସେମାନେ କେଉଁଠାରୁ ଆସିଛନ୍ତି ବୁଝିବା ପାଇଁ ଦୋଭାଷୀ ତିଲକଙ୍କୁ ଆଦେଶ ଦିଆଗଲା । ସୁଲତାନର ପ୍ରଶ୍ନ ଅନୁସାରେ ତିଲକ ପଚାରି ଚାଲିଥାଏ—

"କେଉଁଠୁ ଆସିଲ ?"

"ଝାଲୋର ଓ ମାରୱାଡ଼ ରାସ୍ତାରୁ ।"

"କିଏ ପଠାଇଛି ?"

"ମୁଲତାନର ମୁଖୀ ।"

"କି ବାର୍ତ୍ତା ଆଣିଛ ?"

ସାମନ୍ତ ଦୃଢ଼ତା ଓ ନମ୍ରତାର ସହିତ କହିଲେ, "ଆଣିଥିବା ବାର୍ତ୍ତା କେବଳ ହମୀର୍‌ଙ୍କୁ ଜଣାଇବାକୁ ମୋତେ କୁହାଯାଇଛି ।"

"ମୁଖୀ କେଉଁଠି ?"

"ଏତେ ଲୋକଙ୍କ ଉପସ୍ଥିତିରେ ଏହାର ଉତ୍ତର ଦେବି ?"

"ହଁ, ଏହା ହେଉଛି ସୁଲତାନଙ୍କର ଆଦେଶ; ଭଗବାନ ତାଙ୍କୁ ରକ୍ଷା କରନ୍ତୁ ।"

"ମୁଖୀ ଏହି ସଂସାରରୁ ବିଦାୟ ନେଲେଣି ।"

ଏକାଧିକ ସର୍ଦ୍ଦାର ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କେବେ ?"

ସୁଲତାନ ସାଙ୍ଗେ ସାଙ୍ଗେ ଠିଆ ହୋଇପଡ଼ି ପଚାରିଲେ, "କେଉଁଠି ? କିଏ ମାରିଲା ତାଙ୍କୁ ?"

ସାମନ୍ତ ସଙ୍ଗେ ସଙ୍ଗେ ଜବାବ ଦେଲେ, "କେତେକ ରାଜପୁତ୍—ପ୍ରାୟ କୋଡ଼ିଏ ଦିନ ପୂର୍ବେ ଝାଲୋରରୁ ଆସିଥିବା ରାସ୍ତାରେ ତାଙ୍କୁ ମାରି ଦିଆ ହୋଇଛି ।"

ପରବର୍ତ୍ତୀ ପ୍ରଶ୍ନ ହେଲା, "ତୁମେ ସତ କହୁଛ ବୋଲି ଆମେ କିପରି ଜାଣିବୁ ?"

ସାମନ୍ତ ତତ୍‌କ୍ଷଣାତ୍ ନିଜ ଖୋଲରୁ ହୀରକ ଖଚିତ ଖଣ୍ଡାଟି ବାହାର କରି ମାସୁଦ୍‌କୁ ଦେଖାଇ କହିଲେ, "ଆପଣ ଯେବେ ପ୍ରମାଣ ଚାହାଁନ୍ତି ତାଙ୍କ ଖଣ୍ଡା ଦେଖନ୍ତୁ ।"

ମାସୁଦ୍ ଖଣ୍ଡାଟିକୁ ନେଇ ତିଲକ ନିକଟକୁ ଯାଇ ଭଲ ରୂପେ ଦେଖିଲା । ଏହା ଯେ ମୁଖୀକୁ ଉପହାର ସ୍ୱରୂପ ସୁଲତାନ ଦେଇଥିବା ଖଣ୍ଡା ଏ ବିଷୟରେ କୌଣସି ସନ୍ଦେହର ଅବକାଶ ନ ଥିଲା । ଏହି ପ୍ରମାଣ ପାଇ ସୁଲତାନ ତଥା ଅନ୍ୟମାନେ ନିର୍ବାକ୍ ହୋଇଗଲେ । ସେମାନେ ସାମନ୍ତର ନିର୍ଭିକ ତଥା ଶାନ୍ତ

ମୁଖମଣ୍ଡଳକୁ ଅନାଇ ରହିଲେ । କାହାର ମୁହଁରୁ ପଦେ ସୁଦ୍ଧା କଥା ବାହାରିଲା ନାହିଁ ।

ସୁଲତାନର ନିର୍ଦ୍ଦେଶ କ୍ରମେ ତିଲକ ପଚାରିଲା, "ତମେ କିଏ ?"

ସାମନ୍ତ—ମୁଁ ଜଣେ ରାଜପୁତ ।

ତିଲକ—ସେ କଣ ଖବର ଦେଇଛନ୍ତି ?

ସାମନ୍ତ – ଏ ସମସ୍ତଙ୍କ ଉପସ୍ଥିତିରେ ଉକ୍ତ ଖବର ମୁଁ କହିବା ଆପଣ ଚାହାଁନ୍ତି ?

ସୁଲତାନ ଅଧୀରତା ପ୍ରକାଶ କରି କହିଲେ, "ହିଁ, ହିଁ, ହିଁ, ଆଲ୍ଲାଙ୍କ ରାଣ —କୁହ ।"

ସାମନ୍ତ ସୁଲତାନଙ୍କୁ ଏକ ଲୟରେ ଚାହିଁ ଆସ୍ତେ ଆସ୍ତେ ଅଥଚ ଦୃଢ଼ ଭାବରେ କହିଲେ, "ଆପଣ ମୁଖୀଙ୍କୁ ମାରଓ୍ୱାଡ଼ ତଥା ଝାଲୋରର ଶାସକମାନଙ୍କୁ କରଗତ କରିବାକୁ ପଠାଇଥିଲେ ।" ଏହି ଯୁବକ ଯେଉଁଭଳି ଦାମ୍ଭିକତା ପ୍ରକାଶ କରି କଥା କହୁଥାଏ, ତହିଁରେ ସମସ୍ତେ ଅବାକ୍ ହୋଇଗଲେ । ଏଥିପ୍ରତି ସୁଲତାନ୍‌ଙ୍କର କଣ ପ୍ରତିକ୍ରିୟା ହେଉଛି ତାହା ଦେଖିବାକୁ ସମସ୍ତେ ଅପେକ୍ଷା କରି ରହିଥାନ୍ତି । ସାମନ୍ତ ମୃତ୍ୟୁକୁ ଭୟ କରୁ ନଥିବାରୁ ତାଙ୍କର ଆଉ କୌଣସି ପ୍ରକାର ଭୟର କାରଣ ନ ଥାଏ ।

ସୁଲତାନ କ୍ରୋଧାନ୍ୱିତ ହୋଇ କହିଲା, "କଣ ହେଲା ?"

ସାମନ୍ତ ଆସ୍ତେ ଆସ୍ତେ ଏବଂ ପରିଷ୍କାର ଭାବେ କହିଲେ, "ଝାଲୋର ଓ ମାରଓ୍ୱାଡ଼ର ଶାସକଦ୍ୱୟ ତୁମର ଶିକାର ହେବାକୁ ଅସ୍ୱୀକାର କଲେ । ଖାଲି ସେତିକି ନୁହେଁ, ଏହି ଦୁଇ ରାଜ୍ୟର ସୈନ୍ୟବାହିନୀ ଗୁଜୁରାଟର ଅନ୍ୟ ଶାସକମାନଙ୍କ ସହିତ ଯୋଗ ଦେଇ ଆପଣଙ୍କ ସହିତ ଯୁଦ୍ଧ କରିବା ନିମନ୍ତେ ଅପେକ୍ଷା କରି ରହିଛନ୍ତି ।" ସେ କହୁଥିବା ପ୍ରତ୍ୟେକ ଶବ୍ଦ ଉପସ୍ଥିତ ଶ୍ରୋତୃ ମଣ୍ଡଳୀଙ୍କ ପକ୍ଷରେ ଠିକ୍ ଗୋଟିଏ ଗୋଟିଏ ଗୁଳି ପରି ବୋଧ ହେଉଥିଲା ।

ପ୍ରଥମ ଥର ପାଇଁ ସୁଲତାନ ଅସହିଷ୍ଣୁ ହୋଇ ପଡ଼ିଲା । ତା ଚାରି ପାଖରେ ଘେରି ବସିଥିବା ଦର୍ଶକମଣ୍ଡଳୀଙ୍କ ମୁଖ ନିସ୍ତବ୍ଧ ହୋଇଗଲା । ସାମନ୍ତ କହୁଥିବା ସମୟରେ ସୁଲତାନଙ୍କ ଆଖି ବୁଜି ହୋଇଗଲା । ସାମନ୍ତ କହି ଲାଗିଲେ, "ଆପଣ ଯେଉଁଠାରୁ ଆସିଛନ୍ତି, ଯେତେ ଶୀଘ୍ର ପାରନ୍ତି ସେଠାକୁ ଫେରିଯିବାକୁ ଆପଣଙ୍କୁ କହିବା ନିମନ୍ତେ ମରିବା ପୂର୍ବରୁ ମୁଖୀ ମୋ ହାତରେ ଖବର ଦେଇଛନ୍ତି ।"

କିଛି ସମୟ ପାଇଁ ସମସ୍ତେ ଚୁପ୍‌ଚାପ୍ ହୋଇଗଲେ, ଯେପରି କୌଣସି ଆକସ୍ମିକ ବିପଦ ଘଟିଯାଇଛି । କେବଳ ସାମନ୍ତଙ୍କ ବ୍ୟକ୍ତିତ ଅନ୍ୟ ସମସ୍ତଙ୍କ ଚେହେରା ନିର୍ଜୀବ ଦେଖାଗଲା । ନୀରବତା ଭାଙ୍ଗି ପ୍ରଥମେ ସୁଲତାନ ବାକ୍ୟ ଉଚ୍ଚାରଣ କରି କହିଲା, "ହେ ଆଲ୍ଲା ! !"

ସାମନ୍ତ ସୁଯୋଗ ପାଇଲେ । ତାଙ୍କର ପ୍ରକୃତ ଉଦ୍ଦେଶ୍ୟ କଣ ତାହା ଅନ୍ୟମାନେ ହୃଦୟଙ୍ଗମ କରିବା ପୂର୍ବରୁ ସେ ନିକଟରେ ଠିଆହୋଇଥିବା ମାସୁଦ୍ ଓ ତିଲକକୁ ପଛ କରି ନିଜର ଖଣ୍ଡା ବାହାର କରି ସୁଲତାନର ବେକକୁ ଲକ୍ଷ୍ୟକରି ଆଘାତ କଲେ । ସମସ୍ତେ ଚିତ୍କାର କରି ଠିଆହୋଇଗଲେ ।

ସୁଲତାନ ପଲକମାତ୍ରେ ନିଜର ଡାହାଣ ହାତ ବଢ଼ାଇ ସାମନ୍ତଙ୍କର ଡାହାଣ ହାତ ଗଣ୍ଠିକୁ ଏପରି ଜୋର୍‌ରେ ଧରିନେଲା ଯେ ସାମନ୍ତଙ୍କର ଖଣ୍ଡା ତା ବେକରେ ଯେଉଁଠି ଛୁଇଁଥିଲା ସେଠାରେ ସେହିପରି ଅଟକିଗଲା ଏବଂ ବାମ ହାତରେ ଗୋଟିଏ ପିଲାକୁ ଉଠାଇଲା ଭଳି ସାମନ୍ତକୁ ଉଠାଇ, ତାଙ୍କ ଡାହାଣ ହାତ ମୋଡ଼ି ଧରିଲା । ସୁଲତାନ କ୍ରୋଧରେ ଗର୍ଜି ଉଠିଲା, "ମହମ୍ମଦକୁ ମାରିବା ପିଲାଖେଳ ନୁହେଁ । ଆଲ୍ଲାଙ୍କର ଜୟ ହେଉ ।" ତାପରେ ସେ ସାମନ୍ତଙ୍କର ଡାହାଣ ହାତକୁ ଆହୁରି ଜୋର୍‌ରେ ମୋଡ଼ି ଦେବାରୁ ତାଙ୍କ ହାତରୁ ଖଣ୍ଡାଟି ଖସିପଡ଼ିଲା ।

ହମୀର ହସି ହସି ସାମନ୍ତକୁ ମୁଣ୍ଡ ଉପରକୁ ଉଠାଇ ଗୋଟିଏ ପୁଡ଼ିଆପରି ତଳେ ପକାଇଦେଲା । କ୍ଷଣକ ମଧ୍ୟରେ ସୁଲତାନ ନିଜ ଶାରୀରିକ ଅଦ୍ଭୁତ ପରିଚୟ ଦେଲା । ସାମନ୍ତ ଠିଆ ହେବାକୁ ଚେଷ୍ଟା କଲେ, କିନ୍ତୁ ତାଙ୍କୁ ଆଘାତ କରିବା ପାଇଁ ଏକାଧିକ ଖଣ୍ଡା ପ୍ରସ୍ତୁତ ହୋଇ ରହିଥିଲା । "ଖବରଦାର୍" ସୁଲତାନ ହୁକୁମ ଦେଲା "ତରବାରି ବନ୍ଦ କର" । ତାର ଆଜ୍ଞା ସଙ୍ଗେ ସଙ୍ଗେ ପାଳିତ ହେଲା ।

ସାମନ୍ତ ଠିଆ ହେଲେ । ତାଙ୍କ ମୁହଁରେ ଭୟର କୌଣସି ଲକ୍ଷଣ ନଥିଲା । ଏ ପରିସ୍ଥିତିରେ ସେ ଯେଉଁଭଳି ଧୀର ସ୍ଥିର ଭାବରେ ଠିଆ ହେଲେ ତାହା ସମସ୍ତଙ୍କୁ ବିସ୍ମିତ କଲା । ସେ ଓ ସୁଲତାନ ଉଭୟେ ପରସ୍ପରକୁ ଚାହାଁଚାହିଁ ହେଲେ । ସୁଲତାନ ପ୍ରଶଂସାମୁଗ୍ଧ ଦୃଷ୍ଟିରେ ସାମନ୍ତଙ୍କୁ ଦେଖୁଥାଏ ।

ସୁଲତାନ କହିଲା, "କେହି ତାଙ୍କୁ ଛୁଇଁବେ ନାହିଁ । ଭଗବାନ ହିଁ ବଡ଼ଲୋକ । ସେ ତାଙ୍କ ଭକ୍ତଙ୍କୁ ଏପରି ରକ୍ଷା କରନ୍ତି ।"

ତିଲକ କପାଳରେ ହାତ ପିଟି କହିଲା, "ଜାହାଁପନା, ଏହି ବୁଢ଼ା କିଏ ମୁଁ ବର୍ତ୍ତମାନ ବୁଝିଲି । ସେ ହେଉଛନ୍ତି ଘୋଘାରାଣାଙ୍କ ପରିବାରର ପୁରୋହିତ । ମୁଁ ତାଙ୍କୁ ପ୍ରଥମେ ଯେଉଁଠି ଦେଖିଥିଲି ତାହା ବର୍ତ୍ତମାନ ମୋର ମନେପଡ଼ୁଛି । ମୁଁ ପ୍ରଥମେ ଘୋଘାଗଡ଼ ଯିବା ସମୟରେ ତାଙ୍କୁ ସେଠାରେ ଦେଖିଥିଲି ।"

ନନ୍ଦୀଦତ୍ତ ଉପରକୁ ଚାହିଁଲେ । ସେ ଶିବିରରେ ପ୍ରବେଶ କରିବା ସଙ୍ଗେ ସଙ୍ଗେ ତିଳକକୁ ଚିହ୍ନିଥିଲେ । ମାସୁଦ୍ ଆଶ୍ଚର୍ଯ୍ୟ ହୋଇ କହିଲା, "ଘୋଘାରାଣା ? ତାର ଜଣେ ପୁଅ ଯୋଗୁ ଗତ ଦୁଇଦିନ ତଳେ ଆମର ହଜାର ହଜାର ସୈନ୍ୟଙ୍କର ମୃତ୍ୟୁ ହୋଇଛି ।"

ଶତ୍ରୁ ପକ୍ଷର ବିଦେଶୀ ଭାଷା ସେ ବୁଝି ପାରୁ ନଥିଲେ ସୁଦ୍ଧା ଘୋଘାରାଣାଙ୍କ ନାମ ବାରମ୍ବାର ଶୁଣୁଥିବା ହେତୁ ସାମନ୍ତ ମୋଟାମୋଟି କଥାଟା ବୁଝିଥିଲେ । ସେ ଗର୍ବିତ ହୋଇ କହିଲେ, "ଘୋଘାବାପା ! ହଁ ମୁଁ ତାଙ୍କ ନାତି । ତମେମାନେ ମୋର ସାରା ବଂଶ ନାଶ କରିଛ ଏବଂ ମୁଁ ଏକମାତ୍ର ଜୀବିତ ରହିଛି । ବର୍ବର ଯବନ, ଖଣ୍ଡା ଚଳାଅ—ମୁଁ ଶୀଘ୍ର ମୋ ପିତୃଲୋକରେ ଯେପରି ପହଞ୍ଚିବ ।" ସାମନ୍ତର ଭାଷା ବୁଝି ପାରୁଥିବା ଲୋକେ ଏହି ଯୁବକର ସାହସପୂର୍ଣ୍ଣ କଥା, ଦୃଢ଼ତା ଏବଂ ରୂପସୌନ୍ଦର୍ଯ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସୁଲତାନର ଆଦେଶ ପାଇବା ମାତ୍ରେ ଯେପରି ସାମନ୍ତକୁ ହତ୍ୟା କରିବ, ସେଥିପାଇଁ ମାସୁଦ୍ ଖଣ୍ଡା ଧରି ପ୍ରସ୍ତୁତ ହୋଇ ରହିଲା । ତିଳକ ସାମନ୍ତର କଥା ଅନୁବାଦ କରି ସୁଲତାନକୁ ବୁଝାଇଦେଲା ।

ସୁଲତାନ ଆଜି ଯେଉଁ ପଦବୀର ଅଧିକାରୀ ତାହା କେବଳ ନିଜ ଜନ୍ମ ଯୋଗୁଁ ନୁହେଁ । ତାହାଠାରେ ଠିକ୍ ମୁହୂର୍ତ୍ତରେ ବିଚାର କରି ଉଚିତ କାର୍ଯ୍ୟ କରିବା, ଲୋକଙ୍କ ହୃଦୟ ଜିଣିବା ଏବଂ ପ୍ରୟୋଜନ ବେଳେ ଉଦାହରଣ ସ୍ଥାପନ କରିବାର ଅଦ୍ଭୁତ ଭଗବତ୍ ଦତ୍ତ ଶକ୍ତି ଥିଲା । ଏହାହିଁ ହେଉଛି ସେହିପରି ଗୋଟିଏ ମୁହୂର୍ତ୍ତ । ହସି ହସି ଏବଂ ପ୍ରଶଂସା ମୁଗ୍ଧ ଦୃଷ୍ଟି ଦେଇ ସେ ଆଗକୁ ଆସିଲା । ସେ ଗୋଟିଏ ହାତରେ ସଂକେତ ଦେଇ ମାସୁଦ୍ ଓ ତିଳକକୁ ଦୂରକୁ ଘୁଞ୍ଚିଯିବାକୁ ନିର୍ଦ୍ଦେଶ ଦେଲା ଓ ଅନ୍ୟ ହାତଟି ରଖିଲା ସାମନ୍ତର କାନ୍ଧ ଉପରେ ।

ଉପସ୍ଥିତ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଏହି ଦୃଶ୍ୟ ଦେଖୁଥାନ୍ତି । ହମୀର କହିଲା, "ତିଳକ ତାଙ୍କୁ କହ ଘୋଘାରାଣା, ତାର ପୁଅ ଏବଂ ତାର ପରିବାର ଅବ ଦୁଲ କାଶୀମ ମହମ୍ମଦର ନାମକୁ ମଧ୍ୟ ନିଜର ଶୌର୍ଯ୍ୟ ଦ୍ୱାରା ମ୍ଲାନ କରିଦେଇଛନ୍ତି

କରି ଦେଇଛନ୍ତି । ମୁଁ ଘୋଘାରଣାର ବନ୍ଧୁତା କାମନା କରିଥିଲେ ସୁଦ୍ଧା, ସେ ମୋର ହଜାର ହଜାର ସୈନ୍ୟ ନିହତ କରିଛି । ଦୁଇ ଦିନ ଆଗରୁ ତାର ପୁଅ ମୋ ସୈନ୍ୟ ବାହିନୀକୁ ପୂରାପୂରି ଧ୍ୱସ୍ତବିଧ୍ୱସ୍ତ କରିଦେଇଛି ଏବଂ ଆଜି ଅଦ୍ଭୁତ ସାହସର ପରିଚୟ ଦେଇ ସେ ମୋତେ ମାରିବାକୁ ଚେଷ୍ଟା କରିଥିଲେ ମଧ୍ୟ ମାରି ପାରି ନାହିଁ ।

ତିଲକ ଏହା ସାମନ୍ତଙ୍କୁ ବୁଝାଇ କହିବାରୁ ସେ ଉଦ୍‌ବିଗ୍ନ ହୋଇ ପଚାରିଲେ, "ଘୋଘାରଣାଙ୍କ ପୁଅ କାହାଁନ୍ତି ? ସେ ମୋର ବାପା !" ଏ ପର୍ଯ୍ୟନ୍ତ ଧୀର ସ୍ଥିର ହୋଇ ଠିଆ ରହିଥିବା ସାମନ୍ତ ବର୍ତ୍ତମାନ ଭାବପ୍ରବଣତାରେ ଥରିବାକୁ ଲାଗିଲେ ।

ସୁଲତାନ ପୁଣି କହିଲା, "ଯାହା ସବୁ ଘଟିଛି ତାକୁ କୁହ । ମୁଁ ମୋ ଜୀବନରେ ଏପରି ବୀର ଦେଖିନଥିଲି । ଏକାକୀ ଆମକୁ ସେ ଭୁଲ ବାଟରେ ଚଳାଇ ମରୁଭୂମି ଭିତରକୁ ନେଇଗଲା । ମରି ପଡ଼ିଥିବା ମୋର ୧୦ ହଜାର ସୈନ୍ୟଙ୍କର ଶବ ଭିତରେ ତାର ଶବ ପଡ଼ିଛି ।"

ଏହା ଶୁଣି ନନ୍ଦୀଦତ୍ତଙ୍କ ଆଖିରୁ ଆନନ୍ଦରେ ଲୁହ ଗଡ଼ିଲା ଏବଂ ସେ ଚୁପ୍ ଚୁପ୍ କରି କହିଲେ, "ଠିକ୍ କରିଛି, ଠିକ୍ କରିଛି ।"

ସାମନ୍ତ ନିଜକୁ ସମ୍ଭାଳି କହିଲେ, "ତୁମେ ମୋର ଜେଜେଙ୍କୁ, ବାପାଙ୍କୁ ତଥା ଆତ୍ମୀୟମାନଙ୍କୁ ମାରିଛ । ମୋତେ କେତେବେଳେ ମାରିବ କୁହ ?"

ସୁଲତାନ କହିଲା, "ମହମ୍ମଦ ନିଜେ ସାହସୀ ହୋଇଥିବାରୁ ସେ ସାହସକୁ ପସନ୍ଦ କରେ । ଯା, ମୁଁ ତୋତେ ଖଲାସ କରି ଦେଲି । କିନ୍ତୁ ମନେରଖ ଯୁବକ, ଭଗବାନ ମୋର ପକ୍ଷରେ ।"

ମହମ୍ମଦର କଥାର ଅର୍ଥ ବୁଝିବା ପରେ ଘୋଘାବାପାଙ୍କ ବଂଶଧର ରାଗରେ ପାଟିକରି କହି ଉଠିଲା; "ହମୀର, ବିଜଗତର ନାଥ ତୁମକୁ ଧ୍ୱଂସ କରିବାକୁ ବଦ୍ଧପରିକର । ତୁମର ଏହି ଆସ୍ଫାଳନର ମୂଲ୍ୟ କଣ ?"

ଏହା ଶୁଣି ସୁଲତାନ ହସି ହସି କହିଲା, "ମାସୁଦ୍, ଏହି ଯୁବକ ଓ ବୃଦ୍ଧକୁ ନେଇ ଯାଅ । ତାକୁ ସବୁଠାରୁ ଭଲ ଦୁଇଟି ଓଟ ଓ ୧୦ ଦିନର ଖାଦ୍ୟ ତଥା ପାଣି ଦେଇ ବିଦାକର । ସେମାନେ ତାଙ୍କ ଇଚ୍ଛାନୁସାରେ ଯୁଆଡ଼େ ଯାଆନ୍ତୁ ।" ଉପସ୍ଥିତ ସୈନ୍ୟବାହିନୀ ପ୍ରତି ଲକ୍ଷ୍ୟ କରି ସେ କହିଲା, "ଯେ ପର୍ଯ୍ୟନ୍ତ ଆଲ୍ଲା ମୋ ପକ୍ଷରେ ଅଛନ୍ତି, ମୁଁ ଏଭଳି ସାହସୀ ଶତ୍ରୁକୁ ବରାବର ସ୍ୱାଗତ କରୁଥିବି ।"

ତା ପରେ ସେ ମାସୁଦ୍‌କୁ ଡାକି ଦ୍‌ କରି କହିଲ, "ମାସୁଦ୍, ଯେବେ କେହି ଲୋକ ଏହି ଯୁବକକୁ ଆଘାତ କରିବାକୁ ସାହସ କରେ, ତାକୁ ସାଙ୍ଗେ ସାଙ୍ଗେ ମାରି ଦିଆ ଯିବ ।" ମହମ୍ମଦର ଉଦାରତାର ଏହା ଥିଲ ଶ୍ରେଷ୍ଠ ନିଦର୍ଶନ ।

ସାମନ୍ତ ଓ ନନ୍ଦୀଦତ୍ତଙ୍କ ସହ ମାସୁଦ୍ ଗଲ । ସୁଲତାନ ପୁଣି ଥରେ ତାର କର୍ମଚାରୀମାନଙ୍କ ଆଡ଼କୁ ଅନାଇ, ଏହି ଶୁଭ ମୁହୂର୍ତ୍ତର ସୁଯୋଗ ନ ହରାଇ ସ୍ନେହରେ କହିଲ, "ବନ୍ଧୁଗଣ, ଆଲ୍ଲା ପୁଣି ଥରେ ମୋର ଜୀବନ ରକ୍ଷା କରିଛନ୍ତି । ଏଥିରୁ ଜଣାପଡୁଛି ଯେ ଆମର ସବୁବେଳେ ଜୟ ହେବ । ଶତ୍ରୁର ସୈନ୍ୟମାନେ ଆମ ସୈନ୍ୟବାହିନୀ ପଛରେ ଲାଗିଛନ୍ତି । ଏହି ଯୁବକ ଯେବେ ସତ୍ୟ କହୁଥାଏ, ତା ହେଲେ ଝାଲୋର, ମାରୱାଡ଼ ଏବଂ ଗୁଜୁରାଟର ସୈନ୍ୟମାନେ ଆମର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହେଉଛନ୍ତି । ଆଗକୁ ଯାଇ ମୂର୍ତ୍ତିପୂଜକମାନଙ୍କର ମୂର୍ତ୍ତିମାନ ଧ୍ୱଂସ କରି ସେମାନଙ୍କ ଧନ ସମ୍ପଦ ଠୁଳ କରିବାକୁ ମୁଁ ବଦ୍ଧପରିକର । ଯେବେ ତୁମ ମାନଙ୍କ ମଧ୍ୟରୁ କେହି ମୋ ସାଙ୍ଗରେ ନ ଆସ, ତା ହେଲେ ମଧ୍ୟ ମୁଁ ଆଗକୁ ଯିବାକୁ ପ୍ରସ୍ତୁତ ଅଛି । ନ ହେଲେ ଇଚ୍ଛା ଅନୁଯାୟୀ ଅନ୍ୟମାନେ ଯାଅ । ତୁମେମାନେ କଣ କହୁଛ ?"

ଏହି କିଛି ସମୟ ମଧ୍ୟରେ ଅବସ୍ଥା ପୁରାପୁରି ବଦଳି ଗଲ । ଏହି ପ୍ରଶ୍ନର ଯାହା ଉତ୍ତର ହେବାର କଥା, ସମସ୍ତେ ସୁଲତାନର ଗୋଡ଼ ଛୁଇଁ ଉତ୍ସାହର ସହିତ ତାହା ଜଣାଇ ଦେଲେ । ପରିସ୍ଥିତିର ଏହି ଅଦ୍ଭୁତ ପରିବର୍ତ୍ତନରେ ସୁଲତାନର ମୁହଁରେ ଆନନ୍ଦର ଢେଉ ଖେଳିଗଲ ।

## ୨୨

## ସତର୍କବାଣୀ

ଦୁର୍ଗ ରକ୍ଷକ ଅର୍ଜୁନ ଗାନ୍ଧର୍ଭ ତା ଖଟରେ ଖୋଲାରେ ଶୋଇଛି । ସେ ଏପରି ଘୁଙ୍ଗୁଡ଼ି ମାରୁଛି ଯେ, ସେ ଉପସ୍ଥିତ ଥିବାର ସଙ୍କେତ ଦୁର୍ଗ ବାସୀମାନେ

ସହଜରେ ପାଇପାରୁଛନ୍ତି। ରାତି ଅଧ ହେଲାଣି । ନାଲମ୍ ଦୁର୍ଗରେ ଯେଉଁ କେତେକ ସ୍ତ୍ରୀ ଓ ପୁରୁଷ ଅଛନ୍ତି, ସେମାନେ ସମସ୍ତେ ଶୋଇପାଇଛନ୍ତି ।

ପାଠଣ ଶାସକଙ୍କ ରାଜ୍ୟ ସୀମାରେ ଅବସ୍ଥିତ ନାଲମ୍ ଗଡ଼ । ଏହାର ଚାରିପାଖରେ ଘୋର ଜଙ୍ଗଲ ବେଢ଼ି ରହିଛି । ସେହି ଜଙ୍ଗଲ ଭିତର ଦେଇ ଆସୁଥିବା ପବନରୁ ନିତି ରାତିରେ ଏକ ଅଦ୍ଭୁତ ଶବ୍ଦ ବାହାରେ; ଜଣାପଡ଼େ ଯେପରି କେତେକ ଲୋକ ଏକ ସଙ୍ଗରେ କାନ୍ଦି ଉଠୁଛନ୍ତି । ବହୁ ବର୍ଷ ଧରି ଏହି ଅଦ୍ଭୁତ ଶବ୍ଦ ପ୍ରତ୍ୟେକ ରାତିରେ ଅର୍ଜନ ଗାନ୍ଧଭିର ଘୁଂଗୁଡ଼ି ସହିତ ମିଶି ଗୋଟିଏ ପ୍ରକାର ଅଦ୍ଭୁତ ଶବ୍ଦ ସୃଷ୍ଟି କରିଥାଏ ।

ଜଙ୍ଗଲରୁ ବୋହି ଆସୁଥିବା ପବନ ଏବଂ ଘୁଂଗୁଡ଼ିର ମିଶ୍ରଣରେ ସୃଷ୍ଟି ହୋଇଥିବା ଶବ୍ଦ ସାଙ୍ଗକୁ ଆଜି ପଶୁମାନଙ୍କ ଖୁରା ଶବ୍ଦ ଅଧିକା ଶୁଭୁଛି । ଗାନ୍ଧଭି ଏହି ଶବ୍ଦ ଶୁଣି ହଠାତ୍ ଉଠିପଡ଼ିଲା । କି ଅଦ୍ଭୁତ ! ଦୁର୍ଗରୁ ଅଳ୍ପ କେତେ କୋଶ ଦୂରରେ ଗୋଟିଏ ବିଶ୍ରାମ ଘର ଅଛି ଏବଂ ଏହାର ସୁଖ ସ୍ୱାଚ୍ଛନ୍ଦ୍ୟ ଛାଡ଼ି କେହି ଏ ପର୍ଯ୍ୟନ୍ତ ରାତି ଅଧରେ ଏହି ବିପଜ୍ଜନକ ଜଙ୍ଗଲ ଦେଇ ଆସିବାକୁ ସାହସ କରନ୍ତି ନାହିଁ ; ପୁଣି ଏତେ ଶୀଘ୍ର ଶୀଘ୍ର ! କିଏ ଆସୁଛି ?

ଅର୍ଜନ ଗାନ୍ଧଭି ଉଠିପଡ଼ି ଏକ ମନରେ ସେହି ଶବ୍ଦ ଶୁଣିଲା । ଏହା ତ ଓଟ ଖୁରାର ଶବ୍ଦ ! ଗୋଟିଏ ବା ଦୁଇଟି ନୁହେଁ, ତିନୋଟି ଓଟ ପାଖାପାଖି ରହି ଦୁର୍ଗ ଆଡ଼କୁ ଆସୁଛନ୍ତି । ଗାନ୍ଧଭି ଖଣ୍ଡା କାଢ଼ିଲା ଓ ନିଜର ଧନୁଶର ପ୍ରସ୍ତୁତ କଲା । ତା କାନକୁ କେବଳ ଓଟ ଖୁରାର ଶବ୍ଦ ଶୁଭୁଥିଲା ।

ମରୁଭୂମି ଦିଗରୁ କିଏ ଆସୁଛି ଦେଖିବା ପାଇଁ ଗାନ୍ଧଭି ଗଲା ଦୁର୍ଗ ଉପରକୁ । ମିଞ୍ଜି ମିଞ୍ଜି ତାରା ଆଲୁଅରେ ସେ କିଛି ଦେଖି ପାରୁ ନ ଥିଲେ ସୁଦ୍ଧା ଓଟ ଆସୁଥିବା ଶବ୍ଦ ଅଧିକରୁ ଅଧିକ ସ୍ପଷ୍ଟରୂପେ ତାକୁ ଶୁଭୁଥିଲା ।

ବୃଦ୍ଧ ଦୁର୍ଗରକ୍ଷକକୁ ଅନ୍ଧକାରରେ ଭଲ ଦିଶୁ ନଥିଲେ ସୁଦ୍ଧା ସେହି ମିଞ୍ଜିମିଞ୍ଜି ତାରା ଆଲୁଅରେ ସେ କ୍ଷୀଣ ଭାବେ ଅନାଇଲା ଏବଂ ଭୂତ ଭଳି ତିନିଟି ଛାଇ ଅଧିକରୁ ଅଧିକ ନିକଟକୁ ଆସୁଥିବାର ସେ ଦେଖିଲା । ଏହା ଦେଖି ତାର ମନରେ ଭୟ ଜାତ ହେଲା। ସେ ଅନ୍ୟ ଲୋକମାନଙ୍କୁ ଉଠାଇଲା । ସେତେବେଳକୁ ଭୂତବୋଲି ତାର ମନରେ ଭ୍ରମ ଜାତ କରୁଥିବା ଓଟମାନେ ଦୁର୍ଗ ପାଖରେ ଆସି ପହଞ୍ଚିଲେଣି । ସେମାନଙ୍କର ମୁହାଁମୁହିଁ ହେବାକୁ ଆଠଜଣ ଲୋକ ଧନୁଶର ସହ ପ୍ରସ୍ତୁତ ରହିଥିଲେ ସୁଦ୍ଧା ସେମାନଙ୍କ ହାତ ଥରୁଥିଲା ।

ଅର୍ଜନ ପଚାରିଲା, "କିଏ ?"

ଗମ୍ଭୀର ସ୍ୱରରେ ଉତ୍ତର ମିଳିଲା, "ମୁଁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ପ୍ରଭାସ ପାଟଣ ଯାଉଛି ।"

ଅର୍ଜନ—"ପରିଚୟ ?"

ଆଗନ୍ତୁକ ଅଧୀରତାସହ ହୁକୁମ୍ ଦେବା ଭଳି କହିଲା, "ମୁଁ ଜଣେ ଚୌହାନ । ଶୀଘ୍ର ଦ୍ୱାର ଖୋଲ ମୋତେ ଭଲ ନୂଆ ଓଟ ଦିଅ ।" ଗାନ୍ଧଭ ଦରଜା ଖୋଲି ଦେବା ପାଇଁ କହିଲା । ନବାଗତ ବ୍ୟକ୍ତିମାନଙ୍କ ମଧ୍ୟରୁ ପ୍ରଥମ ବ୍ୟକ୍ତି ତା ଓଟ ଉପରୁ ଓହ୍ଲାଇ ଦୁର୍ଗ ଭିତରକୁ ଆସିଲା । ଅର୍ଜନ ଗାନ୍ଧଭର ଭୟ ଓ ଆଶଙ୍କା ଏ ପର୍ଯ୍ୟନ୍ତ ପୂରାପୂରି ଲୋପ ପାଇନାହିଁ । ଆସିଥିବା ବ୍ୟକ୍ତି ତଥା ତାଙ୍କ ଓଟମାନେ ଭୂତ ବୋଲି ସେ ଏ ପର୍ଯ୍ୟନ୍ତ ସୁଦ୍ଧା ଭାବୁଛି ।

ତାର ମନକୁ ଆଉ କୌଣସି ଗୁରୁତର କଥା ପଚାରିବାକୁ ନ ଆସିବାରୁ ସେ ହଠାତ୍ ପଚାରିଲା, "ଏ ଅସମୟରେ ଏତେ ତରତରରେ କାହିଁକି ଆସିଲ ?" ଶ୍ମଶାନରୁ ଉଠି ଆସିଥିଲା ଭଳି ବିବର୍ଣ୍ଣ ଓ ବିଷାଦଗ୍ରସ୍ତ ଜଣେ ଯୁବକ ତା ଆଗରେ ଠିଆହୋଇଥିବାର ସେ ଦେଖିଲା । ତାର ଆଖି ଯୋଡ଼ିକ ପଶି ଯାଇଥିଲେ ସୁଦ୍ଧା ଖୁବ୍ ଉଜ୍ଜ୍ୱଳ ଦେଖାଯାଉଛି । ଅର୍ଜନ ପୁଣି ଶୁଣିଲା, "ଭଲୋଟିଏ ଓଟ ଚଞ୍ଚଳ ଦିଅ । ମୁଁ ପ୍ରଭାସ ପାଟଣ ଯିବା ଦରକାର । ଆଉ ତମେ ଯେତେ ଶୀଘ୍ର ପାର ଗଡ଼ ଛାଡ଼ି ଚାଲିଯାଅ ।"

ଗାନ୍ଧଭ ହସି ହସି କହିଲା, "ମୁଁ ଗଡ଼ ଛାଡ଼ି ଚାଲିଯିବ ! ମୁଁ କଣ ହାତରେ ଚୂଡ଼ି ପିନ୍ଧିଛି ? ଗଜନୀର ହମୀର ଆସୁଛି ବୋଲି ଭୟରେ ?"

ଯୁବକ ଉତ୍ତର ଦେଲା—ଏଭଳି ବୋକାମି କରନାହିଁ । ଗଜନୀର ହମୀର କିଏ ଜାଣିଛ ? ସେ ଦାବାନଳ ପରି ଦଶ ଦିନ ଭିତରେ ଏଠାରେ ପହଞ୍ଚିବ, ଆଉ ସବୁ ପୋଡ଼ି ଧ୍ୱଂସ କରିଦେବ । ମୋ କଥା ମାନ ଯେତେ ଶୀଘ୍ର ପାର ଜଙ୍ଗଲକୁ ପଳାଅ ।"

ବେଖାତିର ଭାବେ ଗାନ୍ଧଭ ଜବାବ ଦେଲା, "ବାବୁ, ଆମେ ପୁରୁଣା ଦୁର୍ଗପାଳ । ଆଜି କାଲିର ତୁମ ଟୋକାଙ୍କ ଭଳି କାପୁରୁଷ ନୁହଁ ।"

ଯୁବକ ହସିଲା । ତାର ହସରେ ପୂରି ରହିଥିଲା କର୍କଶତା ଏବଂ ଭୟଙ୍କରତା । ଏ ପର୍ଯ୍ୟନ୍ତ ଅର୍ଜନ ଏକ ଭୂତ ସହିତ କି ମଣିଷ ସହିତ କଥାବାର୍ତ୍ତା କରୁଛି ନିଶ୍ଚିତ ଭାବେ ଜାଣି ନ ଥିବାରୁ, ସେ ଯୁବକର ହସରେ ଥରିଉଠିଲା ।

ଯୁବକ କହିଲା, "କାପୁରୁଷ ? ମୁଁ ?"

ଯୁବକ ପୁଣି ହସି କହିଲା –"ତୁମେ ଘୋଘାବାପାଙ୍କ ନାମ ଶୁଣିଛ ?"

ଅର୍ଜନ ଗାନ୍ଧର୍ଭ ଘୋଘାବାପାଙ୍କର ଅନୁରକ୍ତ ଥିଲା । ନିଜ ମୁନିବଙ୍କ ରାଜ୍ୟର ଦୂରତମ ସୀମାନ୍ତର ଜଗୁଆଳି ହିସାବରେ ତାର ଜୀବନଟାଯାକ ସେ ମରୁଭୂମିର ଶାସକ ଘୋଘାବାପାଙ୍କର ଗୌରବମୟ ଅଧ୍ୟାୟମାନ ସ୍ମରଣ କରି କଟାଇଛି । ବହୁ ବର୍ଷ ପୂର୍ବେ ମୂଳରାଜଦେବଙ୍କ ରାଜତ୍ୱ ସମୟରେ ସେ ଘୋଘାବାପାଙ୍କ ସହିତ ଦେଖା କରିଥିବାରୁ ତାଙ୍କ ସହିତ ତାର ବ୍ୟକ୍ତିଗତ ସମ୍ପର୍କ ଅଛି ବୋଲି ସେ ଦାବୀ କରେ ।

ହଠାତ୍ ଗାନ୍ଧର୍ଭର ସ୍ମରଣ ଶକ୍ତି ପରିଷ୍କାର ହୋଇଗଲା । ପଚିଶ ବର୍ଷ ପୂର୍ବେ ସେ ଯୁବକ ଥିବା ସମୟରେ ଘୋଘାବାପାଙ୍କୁ ଦେଖିଥିଲା ଏବଂ ଆଜି ତା ଆଗରେ ଯେଉଁ ବ୍ୟକ୍ତି ଠିଆହୋଇଛି, ତାର ଚେହେରା ଠିକ୍ ଘୋଘାବାପାଙ୍କ ଚେହେରା ସହିତ ମିଶିଯାଉଛି । ବିଚରା ଗାନ୍ଧର୍ଭ ଭୟରେ ଥରି ଉଠିଲା । ଏହାର ତ ଠିକ୍ ସେହିପରି କପାଳ, ଆଖି ଓ ନାଶ; ଏ ନିଶ୍ଚୟ ଘୋଘାବାପାଙ୍କର ଭୂତ ହୋଇଥିବ । ତେଣୁ ସେ ନିଜ ହାତ ଯୋଡ଼ି ପାଟି କରି କହିଉଠିଲା, "ଘୋଘା-ବାପା ! ତୁମେ ଘୋଘାବାପା !"

ଯୁବକ ଠିଆହୋଇ ଦୂରକୁ ଚାହିଁ ରହି ଦୁଃଖରେ ହସୁଥାଏ ।

ସେ କହିଉଠିଲା, "ଘୋଘାବାପା ଏବେ ସ୍ୱର୍ଗରେ । ଗଜନୀର ହମୀର ହାତରେ ତାଙ୍କର ମୃତ୍ୟୁ ହୋଇଛି ଏବଂ ସେହି ପ୍ରଳୟ ସୃଷ୍ଟିକାରୀ ହମୀର ବାଟରେ ଯାହା ପାଉଛି ତାହା ଧ୍ୱଂସ କରି ଏଠାକୁ ଆସୁଛି । ତାହାର ଉଦ୍ଦେଶ୍ୟ ହେଲା ପ୍ରଭୁ ସୋମନାଥଙ୍କ ମନ୍ଦିର ଧ୍ୱଂସ କରିବା । ତାର ପଥ ରୋଧ କରିବାକୁ ଚେଷ୍ଟା କଲେ, ତୁମେ ସବୁ ମଧ୍ୟ ମରିବ । ତେଣୁ ମୋ କଥା ମାନି ଜଙ୍ଗଲକୁ ପଳାଇଯାଅ ଏବଂ ସେଠିାରୁ ତାକୁ ହଇରାଣ କର । ତୁମେମାନେ ବଞ୍ଚି ରହିଲେ ହିଁ ତାହା କରିପାରିବ ।"

ଗାନ୍ଧର୍ଭ—ବାପା ! ଆପଣ କୁଆଡ଼େ ଯାଉଛନ୍ତି ?

ସାମନ୍ତ—ମୁଁ ଯାଉଛି ପ୍ରଭୁ ସୋମନାଥଙ୍କ ସୁରକ୍ଷାର ବ୍ୟବସ୍ଥା କରିବାକୁ । ଜଲ୍‌ଦି ସ୍ଥାନ ତ୍ୟାଗ କର ।

ଘୋଘାବାପାଙ୍କ ଭୂତ ସହିତ ସେ ସେ କଥାବାର୍ତ୍ତା କରୁଛି ଏହା ଗାନ୍ଧର୍ଭର ପୂରା ବିଶ୍ୱାସ ହୋଇଗଲା । ଯୁବକ କଥାର ପ୍ରତିବାଦ କରିବାକୁ ତାର ସାହସ ହେଲା ନାହିଁ । ଗାନ୍ଧର୍ଭ ଯୁବକକୁ ନୂଆ ଓଟ ଦେବାର ବ୍ୟବସ୍ଥା

କଲା ଏବଂ ଯୁବକ ସାଙ୍ଗେ ସାଙ୍ଗେ ତାର ସାଥୀମାନଙ୍କୁ ନେଇ ଅନ୍ଧାର ରାତିରେ ଅନ୍ତର୍ଦ୍ଧାନ ହୋଇଗଲା । ଅର୍ଜନ ଗାନ୍ଧଭ ବହୁ ସମୟ ପର୍ଯ୍ୟନ୍ତ ସେଠାରେ ଠିଆ ହୋଇ ଯୁବକ ଚାଲିଯାଉଥିବା ଦିଗକୁ ଚାହିଁ ରହିଥାଏ ଏବଂ ତାର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ଉପରେ ଥରୁଥାଏ ।

ଗାନ୍ଧଭର ପୁଅ ପଚାରିଲା, "ବାପା, ସେ କିଏ ?"

ଗାନ୍ଧଭ ଉତ୍ତର ଦେଲା, "ପୁଅ, ଘୋଘାବାପା ! ଘୋଘାବାପା ପ୍ରଭୁ ସୋମନାଥଙ୍କୁ ରକ୍ଷା କରିବାକୁ ଆସିଛନ୍ତି ।"

ପୁଅ-- ଘୋଘାବାପା ?

ଗାନ୍ଧଭ—ହଁ, ଠିକ୍ ପଚାଶ ବର୍ଷ ପୂର୍ବେ ସେ ଯେପରି ଦେଖା ଯାଉ-ଥିଲେ ବର୍ତ୍ତମାନ ମଧ୍ୟ ଠିକ୍ ସେହିପରି ଦେଖାଯାଉଛନ୍ତି ।

ପୁଅ ବାପର ମୁହଁକୁ ଉଦ୍‌ବେଗର ସହିତ ଅନାଇ ରହିଲା । ବାପା ତାର ପାଗଳ ହୋଇ ନାହିଁ ତ ? ପୁଅର ମୁହଁ ଦେଖି ଅର୍ଜନ ତାର ମନୋଭାବ ଠିକ୍ ରୂପେ ବୁଝିପାରିଲା । ସେ କହିଲା, "ଘୋଘାବାପା ସ୍ୱର୍ଗରୁ ଆସିଛନ୍ତି । ଆ, ଚାଲି ଯିବା । ଆମକୁ ପ୍ରଭୁ ସୋମନାଥ ନିଜେ ତାଗିଦ୍ କରିଦେଲେଣି ।"

ମାରଓ୍ୱାଡ଼ ଏବଂ ପାଟଣ ଦେଇ ଯାଇଥିବା ବଡ଼ ରାସ୍ତାରେ ହମୀରର ସୈନ୍ୟବାହିନୀ ଦ୍ରୁତଗତିରେ ଆଗକୁ ମାଡ଼ି ଆସୁଥିବା ଖବର ଗାଁଏ ଗାଁଏ ବ୍ୟାପିଗଲା ।

ଗଜନୀର ହମୀର ସାଙ୍ଗେ ସାଙ୍ଗେ ଆସି ଗାଏଁ ଗାଏଁ ଆକ୍ରମଣ କରିବ ବୋଲି ଶୁଣାଗଲା । ମାରଓ୍ୱାଡ଼୍ ଅଞ୍ଚଳରୁ ଆସୁଥିବା ପଥିକମାନେ ହମୀରର ସୈନ୍ୟବାହିନୀ ସମ୍ପର୍କରେ ନାନା ପ୍ରକାର କଥା ପ୍ରଚାର କଲେ । ହମୀର ପ୍ରକୃତରେ ଆସିବ ବୋଲି କେତେକ ଲୋକ ବିଶ୍ୱାସ କଲେ ଏବଂ ଅନ୍ୟ କେତେକ 'ପ୍ରଭୁ ସୋମନାଥଙ୍କୁ ଆକ୍ରମଣ କରିବା ପାଇଁ କିଏ ସାହସ କରିବ' ବୋଲି କହି ଏ କଥାକୁ ହସରେ ଉଡ଼ାଇ ଦେଲେ ।

ବର୍ତ୍ତମାନ ଅର୍ଜନ ଗାନ୍ଧଭର ଲୋକେ ନୂଆ କଥାମାନ ପ୍ରଚାର କରିବାରେ ଲାଗିଲେ । ଯେଉଁମାନେ ଶୀଘ୍ର ଚାଲି ନ ଯାଆନ୍ତି, ହମୀରର ସୈନ୍ୟବାହିନୀ ଆସି ତାଙ୍କୁ ଧ୍ୱଂସ କରି ଦେବେ ବୋଲି ଘୋଘାବାପାଙ୍କ ଭୂତ ଆସି ଅର୍ଜନ ଗାନ୍ଧଭଙ୍କୁ ତାଗିଦ୍ କରିଦେଇଥିବା କଥା ପ୍ରଚାରିତ ହେଲା ।

ଦଳେ ବରଯାତ୍ରୀଙ୍କ ମଧ୍ୟରେ ଗାନ୍ଧଭ ସହିତ ଦେଖା ହେଲା ବେଳେ, ତା ନିଜ ମୁହଁରୁ ଏହି କଥା ଶୁଣିଥିବା କେହି କେହି ପ୍ରଚାର କଲେ । ମୁଲରାଜଙ୍କ ରାଜତ୍ୱ ସମୟରେ ଗାନ୍ଧଭର ଘୋଘାବାପାଙ୍କ ସହିତ ଦେଖା ହୋଇଥିଲା । ଏହା ପଚାଶବର୍ଷ ପୂର୍ବର ଘଟଣା ଏବଂ ତାଙ୍କର ସେତେବେଳର ଚେହେରା ସହିତ ଏହି ଭୂତର ଚେହେରା ଅବିକଳ ମିଳିଯାଉଥିଲା । ତାଙ୍କ ଆଖି ଦୁଇଟି ଭୟଙ୍କର ଦିଶୁଥିଲା ଏବଂ ଚମ ପାଉଁଶିଆ ବର୍ଣ୍ଣ ହୋଇଯାଇଥିଲା । ତାଙ୍କ ବେକରେ ଗୋଟିଏ କଣ୍ଠା ଘାର ଚିହ୍ନ ଥିଲା । ଦେଖିବା ସାଙ୍ଗେ ସାଙ୍ଗେ ଗାନ୍ଧଭ ତାଙ୍କୁ ଚିହ୍ନିଥିଲା । ଘୋଘାବାପା ଥିଲେ ମରୁଭୂମିର ଶାସକ । ତାଙ୍କୁ ଯେବେ ମାତ୍ର ଦିଆଯାଇଛି ତା' ହେଲେ ହମୀର ଆଉ ଦୂରରେ ନାହିଁ । ସେ ସାଙ୍ଗେ ସାଙ୍ଗେ ଗୁଜରାଟରେ ପହଞ୍ଚିବ । କଣ କରାଯିବ ?

ଆଖପାଖ ଗାଁର ମୁଖିଆମାନେ ସେମାନଙ୍କ ଘର ପାଖ ଦେଇ ଓଟ ଯାଇଥିବାର ଦେଖିଛନ୍ତି ବୋଲି କହିଲେ । ସବୁଠାରୁ ଭଲ ଏକ ଓଟରେ ଘୋଘାବାପା ବସିଥିଲେ ଓ ଗମ୍ଭୀର ସ୍ୱରରେ କହୁଥିଲେ, "ଗଜମାର ହମୀର ଆସୁଛି—ସମସ୍ତଙ୍କୁ ଜୀବନରେ ମାରିଦେବ—ଯାଅ, ଗାଁର ସମସ୍ତଙ୍କୁ ନେଇ ଜଙ୍ଗଲକୁ ଚାଲିଯାଅ—ଯେବେ ସାହସ ଥାଏ, ତାହେଲେ ସେଇଠୁ ତାକୁ ହଇରାଣ କର ।"

ଆଉ ଗୋଟିଏ ଗାଁର ଜଣେ ସ୍ତ୍ରୀଲୋକ, ଗାଁମୁଣ୍ଡ କୂଅରୁ ପାଣି ମାଠିଆ ନେଇ ଘରକୁ ଆସୁଥିବା ବେଳେ ଘୋଘାବାପାଙ୍କୁ ଦେଖିଛି ଏବଂ ସେ ତାଠାରୁ ପାଣି ମାଗି ପିଇଛନ୍ତି ବୋଲି କହି ବୁଲିଲା । ତାଙ୍କ ଆଖିରେ ପଲକ ପଡ଼ୁ ନ ଥିବାରୁ ସେ ଡରିଗଲା । ମଲା ମଣିଷର ଆଖିରେ କଣ ପଲକ ପଡ଼େ ? ସେ ତାଠାରୁ ମାଠିଆକଯାକ ପାଣି ପିଇଥିଲେ ସୁଦ୍ଧା, ତାଙ୍କ ଶୋଷ ମଲା ନାହିଁ । ହମୀର ତାଙ୍କୁ ମାରିଦେଇଥିଲା । ମଲା ମଣିଷର ଶୋଷ କଣ କେବେ ମେଣ୍ଟେ ? ଘୋଘାବାପା ତାକୁ କହିଲେ, "ମାଉସୀ, ଗଜମାର ହମୀର ଆସୁଛି । ଗାଁ-ବାଲାଙ୍କୁ ଜଙ୍ଗଲକୁ ପଳାଇବା ପାଇଁ କୁହ ।"

ଏକା ଗପ, ଏକା ଖବର, ନାନା ପ୍ରକାରରେ ପ୍ରଚାରିତ ହେଲା । ଘୋଘା-ବାପାଙ୍କ ଛାତିରୁ ଠିକ୍ ଫୁଆରାରୁ ପାଣି ଝରିଲା ଭଳି ରକ୍ତ ଝରୁଥିବାର ନିଜ ଆଖିରେ ଦେଖିଛନ୍ତି ବୋଲି କେହି କେହି କହିଲେ । ତାଙ୍କ ଓଟ ଗୋଡ଼ରୁ ନିଆଁ ବାହାରୁଥିବା ଦେଖିଛି ବୋଲି ଆଉ କେହି କହିଲା । ଘୋଘାବାପା ଏବଂ ତାଙ୍କ ଲୋକମାନଙ୍କୁ ସେମାନେ ଖାଇବାକୁ ଦେଇଥିଲେ ସୁଦ୍ଧା ସେମାନେ ଖାଇ ନଥିବା

କଥା ଆଜ୍ଞ କେତେକ ଲୋକ କହିଲେ । ଭୂତ ବା କପଣ ଖାଇବ ? ଏହିପରି ନାନାକଥା ପ୍ରଚାରର ଫଳରେ ଲୋକମାନଙ୍କ ମନରେ ଭୟ ସଞ୍ଚାର ହେଲା । ସେମାନେ ନିଜ ନିଜର ଜିନିଷ ଯେତେ ପାରନ୍ତି ସାଙ୍ଗରେ ନେଇ ପାଖ ଜଙ୍ଗଲମାନଙ୍କୁ ପଳାଇ ଗଲେ । ଲୋକେ କେବଳ ଘୋଘାବାପା ଏବଂ ତାଙ୍କ ବତିଶ ଓଠ ବଷୟରେ କଥାବାର୍ତ୍ତା ହେଲେ । ଦୂରରେ ଧୂଳି ଉଡ଼ିବା ଯେବେ କେହି ଦେଖିଲା, ତେବେ ଘୋଘାବାପା ଓ ତାଙ୍କ ଦଳର ଭୂତମାନେ ଯିବା ଆସିବା କରୁଛନ୍ତି ବୋଲି ଭାବିଲା । ଏହିପରି ଘୋଘାବାପାଙ୍କ ସମ୍ବନ୍ଧରେ ନାନାପ୍ରକାର କମ୍ବଦନ୍ତୀ ସୃଷ୍ଟି ହେଲା ।

ପ୍ରଭାସ ପାଟଣରେ ଗଙ୍ଗ ସର୍ବଜ୍ଞ ନିଜର ପୂଜା ପାଠ ସାରି ପ୍ରଭୁ ସୋମନାଥଙ୍କ ବେଲପତ୍ର ଚଢ଼ାଇବାକୁ ମନ୍ଦିରକୁ ବାହାରିଛନ୍ତି । ତାଙ୍କର ସୌମ୍ୟ ମୁଖମଣ୍ଡଳ ସବୁ ଦିନ ପରି ଶାନ୍ତ ଓ ସୁସ୍ଥ ଦେଖାଯାଉଛି । ସେ ଗୋଟିଏ ହାତରେ ଧରିଛନ୍ତି ପୂଜା ଉପଚାର ପାତ୍ର ଏବଂ ଅନ୍ୟ ହାତରେ ଧରିଛନ୍ତି ନିଜେ ତୋଳିଥିବା ବେଲପତ୍ର ।

ଗଜନୀର ବିରାଟ ସୈନ୍ୟବାହିନୀ ସମ୍ପର୍କୀୟ ଜନରବ ପ୍ରଭାସ ପାଟଣରେ ପ୍ରଚାରିତ ହୋଇଥିଲେ ସୁଦ୍ଧା କାହାରି ମନରେ ଆତଙ୍କ ସୃଷ୍ଟି ହୋଇ ନାହିଁ । ବହୁ ଲୋକ ଥାଆନ୍ତି ଯେଉଁମାନେ ଜନରବ ସୃଷ୍ଟି କରିବାରେ ଆନନ୍ଦ ପାଆନ୍ତି । ଏହିଭଳି ଲୋକମାନେ ପ୍ରଚାର କଲେ—ମୂଲତାନରେ ହମୀରକୁ ମାରି ଦିଆ ଯାଇଛି—ସେ ବାଟ ବନ୍ଦ ହୋଇଛି । ଯେ ପର୍ଯ୍ୟନ୍ତ ପ୍ରଭୁ ସୋମନାଥ ଅଛନ୍ତି, ସୌରାଷ୍ଟ୍ର ଆସିବାକୁ କିଏ ସାହସ କରିବ ? ତା'ଛଡ଼ା, ମ୍ଳେଚ୍ଛ ଆକ୍ରମଣ କରିବାକୁ ଚେଷ୍ଟା କଲେ ଭୀମଦେବ ସୋଲଙ୍କି ତାହାକୁ ଖଣ୍ଡ ଖଣ୍ଡ କରି କାଟି ଦେବେ ନାହିଁ ? ତା ହେଲେ ଆଉ ଭୟ କଣ ?

ଦାମୋଦର ମେହ୍ତାଙ୍କ ଦେଇଥିବା ଖବର ମୁହୂର୍ତ୍ତକ ପାଇଁ ସର୍ବଜ୍ଞଙ୍କ ମନରେ ଉଦ୍‌ବେଗ ସୃଷ୍ଟି କରିଥିଲେ ସୁଦ୍ଧା ଏ ପର୍ଯ୍ୟନ୍ତ ସେ କୌଣସି ନିର୍ଦ୍ଦିଷ୍ଟ ଖବର ପାଇ ନ ଥିବାରୁ ଉଦ୍‌ବେଗର କୌଣସି କାରଣ ନାହିଁ ବୋଲି ଭାବୁଛନ୍ତି । ମରୁଭୂମି ମଧ୍ୟରେ ହମୀରର ସୈନ୍ୟବାହିନୀ ବିଲୁପ୍ତ ହୋଇଥିବା ଜନରବ ମଧ୍ୟ ସୃଷ୍ଟି ହୋଇଛି । ଯେଉଁ ଲୋକ ଭଗବାନଙ୍କ ସହିତ ଲଢ଼ିବାକୁ ଆସୁଛି, ତାର ବା ଆଉ କଣ ଦଶା ହୋଇପାରେ ?

ମନ୍ଦିର ତଥା ପ୍ରଭାସ ଆଖପାଖ ଅଞ୍ଚଳରେ ସ୍ୱାଭାବିକ ଶାନ୍ତିପୂର୍ଣ୍ଣ ଅବସ୍ଥା ପୂର୍ବପରି ରହିବା ପାଇଁ ସର୍ବଜ୍ଞ ଦୃଢ଼ପ୍ରତିଜ୍ଞ ହୋଇଛନ୍ତି । ବିଶ୍ୱ ସୃଷ୍ଟି ସମୟରେ ଯେଉଁ ଦେବତାର ଉତ୍ପତ୍ତି, ପ୍ରଳୟ କାଳରେ ହିଁ ତାର ବିଲୟ ହେବ । ଏହି ଶାନ୍ତ ଓ ଶକ୍ତିର ଅବିନଶ୍ୱରତାକୁ କୌଣସି ମ୍ଳେଚ୍ଛ କ୍ଷଣିକ ଆକ୍ରମଣରେ ନଷ୍ଟ କରି ପାରିବ ନାହିଁ ।

ମନ୍ଦିରରେ ସବୁଦିନ ପରି ପ୍ରାର୍ଥନା ଠିକ୍ ସମୟରେ ଚାଲିଛି । ନର୍ତ୍ତକୀ-ମାନେ ନୃତ୍ୟ କରୁଛନ୍ତି ଏବଂ ସବୁଦିନ ପରି ଆରତି ହେଉଛି । ସୂର୍ଯ୍ୟ ଉଦୟ ଏବଂ ଅସ୍ତ ହେଉଥିବା ସମୟରେ ଆରାଧନା କରିବାକୁ ବହୁ ସଂଖ୍ୟକ ଭକ୍ତ ଆସୁଛନ୍ତି ଏବଂ ପ୍ରଭୁ ସୋମନାଥଙ୍କ ଧଜା ମନ୍ଦିର ଉପରେ ସଗର୍ବେ ଉଡ଼ୁଛି ।

ଗଙ୍ଗ ସର୍ବଜ୍ଞ ମନ୍ଦିରକୁ ଯିବା ପାଇଁ କଠାଉ ମାଡ଼ି ଘରୁ ଗୋଟିଏ ପାହାଚ ଓହ୍ଲାଇଛନ୍ତି, ଜଣେ ଶିଷ୍ୟ ଆସି ଖବର ଦେଲା, "ଗୁରୁଦେବ, ଜଣେ ଆଗନ୍ତୁକ ।"

ଗଙ୍ଗ ସର୍ବଜ୍ଞ ଅନୁମତି ଦେବା ପୂର୍ବରୁ ପ୍ରେତ ପରି ବିବର୍ଣ୍ଣ ଓ ବଡ଼ ବଡ଼ ସ୍ଥିର ଚକ୍ଷୁ ନେଇ ଆଗନ୍ତୁକ ଘର ଭିତରକୁ ପଶିଆସି ଗଙ୍ଗ ସର୍ବଜ୍ଞଙ୍କ ଗୋଡ଼ ତଳେ ପଡ଼ିଗଲେ । ଏକ ଦୀର୍ଘନିଶ୍ୱାସ ନେଇ ଆଗନ୍ତୁକ କହିଲା,"ନମଃ ଶିବାୟ ।"

## ୨୩

## ଗୁରୁଦେବଙ୍କ ପ୍ରତିଜ୍ଞା

ସର୍ବଜ୍ଞ ଆଶୀର୍ବାଦ କରି କହିଲେ, "ଶିବାୟ ନମଃ । ଉଠ ବାପା । କିଏ ?"

ଆଗନ୍ତୁକ ଠିଆହେଲେ । ତାଙ୍କର କପାଳରେ ଆତୁରତା ସୂଚକ ରେଖାମାନ ପଡ଼ିଯାଇଥାଏ । ଆଖିରୁ ଲୁହ ଧାର ଧାର ହୋଇ ବୋହିଯାଉଥାଏ । ସେ ଧୀର ସ୍ୱରରେ କହିଲେ, "ଗୁରୁଦେବ ! ମୋତେ ଚିହ୍ନି ପାରୁ ନାହାନ୍ତି ?"

ସର୍ବଜ୍ଞ ଆଗନ୍ତୁକକୁ ଚିହ୍ନିପାରିଲେ । ପୂଜା ପାଇଁ ଆଣିଥିବା ଫୁଲ ଗୁଚ୍ଛିଟି ପାଖର ଜଣେ ଶିଷ୍ୟ ହାତକୁ ଦେଇ ସର୍ବଜ୍ଞ ଆଶ୍ଚର୍ଯ୍ୟ ହୋଇ କହିଲେ, "କିଏ ? ସଜ୍ଜନ ଚୌହାନର ପୁଅ ! ଏଠିକି କେଉଁଠୁ ଆସିଲୁ ?"

ସାମନ୍ତ ନିଜର ଦୁଃଖ ଗୁପିବାକୁ ଚେଷ୍ଟା କରି କମ୍ପିତ ଅଧରରେ କହିଲେ, "ହଁ ଗୁରୁଦେବ ! ମୁଁ ସଜ୍ଜନ ଚୌହାନଙ୍କ ପୁଅ ।"

ଗଙ୍ଗ ସର୍ବଜ୍ଞ ଯୁବକର କାନ୍ଧରେ ସ୍ନେହରେ ନିଜ ହାତ ରଖି ତାକୁ ଘର ଭିତରକୁ ନେଇଗଲେ ଏବଂ ଅନ୍ୟ କୌଣସି ଲୋକଙ୍କୁ ଭିତରକୁ ନ ଛାଡ଼ିବା ପାଇଁ ଶିଷ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ । ଘର ଭିତରେ ସାମନ୍ତକୁ ବସାଇ ଓ ନିଜେ ତାଙ୍କ ଆଗରେ ବସି ସେ ପଚାରିଲେ, "ବାପ, ସଜ୍ଜନ ଚୌହାନ କାହାନ୍ତି ? ଘୋଘାରାଣା କିପରି ଅଛନ୍ତି ? ତୁ କାହିଁକି ଫେରିଆସିଲୁ ?" ସେ ଅତ୍ୟନ୍ତ ଉତ୍କଣ୍ଠାର ସହିତ ଏହିପରି ନାନା ପ୍ରଶ୍ନ ପଚାରିଲେ ।

ସାମନ୍ତ ଏହି ସବୁ ପ୍ରଶ୍ନର ଉତ୍ତର ଭଗ୍ନ ସ୍ୱରରେ ଦେବାକୁ ଚେଷ୍ଟା କଲେ । ସେ ବହୁ କଷ୍ଟରେ କହିଲେ, "ଗୁରୁଦେବ ! ଆପଣ କହିଥିଲେ, ଯେ ପର୍ଯ୍ୟନ୍ତ ଘୋଘାରାଣା ପରିବାରର ଜଣେ ସୁଦ୍ଧା ଲୋକ ଜୀବିତ ଥିବ ତାର କର୍ତ୍ତବ୍ୟ ହେଉଛି ଶତ୍ରୁକୁ ବିନାଶ କରିବା । ଗୁରୁଦେବ, ମୋ ଛଡ଼ା ସମସ୍ତେ ଏହି ପ୍ରତିଜ୍ଞା ପାଳନ କରିଛନ୍ତି ।" ଏହା କହିବା ସଙ୍ଗେ ସଙ୍ଗେ ସାମନ୍ତ ଶିଶୁଭଳି କହିଁ କହିଁ ହୋଇ କାନ୍ଦି ଉଠିଲେ ।

ଗଙ୍ଗ ସର୍ବଜ୍ଞଙ୍କର ଉଦ୍‌ବେଗ ବଢ଼ିଗଲା । ସେ ପଚାରିଲେ, "କିପରି ?"

ସାମନ୍ତ କହିଲେ, "ଘୋଘାବାପା ଏବଂ ପରିବାରର ଅନ୍ୟ ସମସ୍ତଙ୍କର ଘୋଘାଗଡ଼ ଯୁଦ୍ଧରେ ମୃତ୍ୟୁ ହୋଇଛି ଏବଂ ପରିବାରର ବୀରାଙ୍ଗନାମାନେ ଅଗ୍ନିରେ ଝାସ ଦେଇଛନ୍ତି ।"

କିଛି ସମୟ ନୀରବ ରହି ସାମନ୍ତ ବାକ୍ ଶକ୍ତି ଫେରିପାଇ କହିଲେ, "ହମୀରର ଦଶ ହଜାର ସୈନ୍ୟଙ୍କୁ ମରୁଭୂମିରେ ମାରି ଅବଶେଷରେ ସେହି ମରୁଭୂମିରେ ବାପାଙ୍କର ମୃତ୍ୟୁ ହୋଇଛି ।" ସାମନ୍ତ ପୁଣି କହିଁ କହିଁ ହୋଇ କାନ୍ଦିଉଠିଲେ ଓ ତାଙ୍କର ବାକ୍‌ରୁଦ୍ଧ ହୋଇଗଲା ।

ସର୍ବଜ୍ଞ ତାଙ୍କୁ ସ୍ନେହରେ କୁଣ୍ଢାଇ ପକାଇ କହିଲେ, "ବାପ, କାନ୍ଦନା ! ଯେଉଁମାନେ ଭଗବତ୍ ନିର୍ଦ୍ଦେଶ କାର୍ଯ୍ୟକାରୀ କରୁ କରୁ ମୃତ୍ୟୁ ବରଣ କରନ୍ତି, ସେମାନେ ପରବର୍ତ୍ତୀ ଜୀବନରେ ସୁଖୀ ହୁଅନ୍ତି ।"

କିଛି ସମୟ ପରେ ସାମନ୍ତ ପୁଣି କହିଲେ, "ମୁଁ ଗଜନୀର ହମୀରର ପ୍ରାଣ ନେବା ଲାଗି ତାର ଛାଉଣୀକୁ ଯାଇଥିଲି । ଚେଷ୍ଟା କରିଥିଲି, କିନ୍ତୁ ବିଫଳ ହେଲି । ମୋ ପରିବାରରେ ଜୀବିତ ମୁଁ ଏକମାତ୍ର ଦୁର୍ଭାଗା । ହମୀର ମୋତେ ନ ମାରି ଛାଡ଼ିଦେଲା ।"

ସର୍ବଜ୍ଞ କହିଲେ, "ବାପ, ଯେ ପର୍ଯ୍ୟନ୍ତ ପ୍ରଭୁ ସୋମନାଥ ତୋତେ ରକ୍ଷା କରିବାକୁ ଚାହାନ୍ତି, କେହି ତୋତେ ମାରି ପାରିବେ ନାହିଁ । ତୁ ନିଜକୁ ସଂଯତ କରି ସ୍ଥିର ହୁଅ । ଟିକିଏ ବିଶ୍ରାମ ନେଇ ମୋତେ ସବୁ କହ । ନେ ପାଣି ପିଇ ।"

ସାମନ୍ତ ବହୁ କଷ୍ଟରେ ନିଜର କାନ୍ଦ ବନ୍ଦ କଲେ ଓ ସେ ପ୍ରଭାସ ପାଟଣରୁ ତାଙ୍କ ବାପାଙ୍କ ସହିତ ଯିବା ପରଠାରୁ ଘଟିଥିବା ସମସ୍ତ ଘଟଣା ବର୍ଣ୍ଣନା କଲେ । ଗଙ୍ଗ ସର୍ବଜ୍ଞ ବିହ୍ୱଳିତ ହୋଇ ମଝିରେ ମଝିରେ ବରବର କହୁଥାନ୍ତି, 'ନମଃ ଶିବାୟ' । ଶେଷକୁ ସେ ପଚାରିଲେ, "ଗଜନୀର ହମୀର କେଉଁଠି ପହଞ୍ଚିଲାଣି ।"

ସାମନ୍ତ—ଗୁରୁଦେବ, ପାଞ୍ଚ ସାତ ଦିନ ମଧ୍ୟରେ ସେ ଆବୁ ନିକଟରେ ପହଞ୍ଚିବ ବୋଲି ମୁଁ ଭାବୁଛି । ହୁଏତ ଆଉ କିଛି ବେଶୀ ଦିନ ଲାଗିପାରେ ।

ସର୍ବଜ୍ଞ ନିଜ ମନକୁ ଖୁସି କରାଇବା ପାଇଁ କହିଲେ, 'ପାଟଣରେ ଭୀମଦେବ ସୋଲାଙ୍କି ତାକୁ ଜଗି ବସିଛି । ତାକୁ ପାରି ହୋଇ ଆସିବା ହମୀର ପକ୍ଷରେ ସହଜ ହେବ ନାହିଁ ।"

ସାମନ୍ତ—ଗୁରୁଦେବ, ଏହା ଉପରେ ନିର୍ଭର କରି ନିଶ୍ଚିନ୍ତ ହୋଇ ରହିବା ବିଜ୍ଞତାର କାର୍ଯ୍ୟ ନୁହେ ।

ସର୍ବଜ୍ଞ—କାହିଁକି ?

ସାମନ୍ତ—ଗୁରୁଦେବ, ହମୀର ଓ ତାର ସୈନ୍ୟ ବାହିନୀ ସମ୍ପର୍କରେ ଖୁବ୍ କମ୍ ଲୋକଙ୍କର ଧାରଣା ଅଛି । ସେ ବଦ୍‌ମାସ୍ ଲୋକ ହୋଇପାରେ, କିନ୍ତୁ ନିଜ ଇଚ୍ଛା ମୁତାବକ ଲୋକଙ୍କଠାରୁ କାମ କରାଇ ନେବାର ଅଦ୍ଭୁତ ଶକ୍ତି ତାର ଅଛି । ଯୁଦ୍ଧକୌଶଳ ସମ୍ପର୍କରେ ତାର ଜ୍ଞାନ ଅଦ୍ଭୁତ ଏବଂ ତାର ସୈନ୍ୟବାହିନୀ ପୃଥିବୀର ଏହି ଭାଗରେ ଥିବା ଯେ କୌଣସି ସୈନ୍ୟବାହିନୀଠାରୁ ବୃହତ୍ତର । କ୍ଷଣକ ମଧ୍ୟରେ ସେ ପାଟଣକୁ ଧୂଳିସାତ୍ କରିଦେବ ।

ସର୍ବଜ୍ଞ—ବାପ, ତୋର ଭଗବାନ ପିନାକପାଣିଙ୍କ ଉପରେ ବିଶ୍ୱାସ ନାହିଁ ?

ସାମନ୍ତ ଜବାବ ଦେଲେ, "ବିଶ୍ୱାସ ଅଛି ପ୍ରଭୁ ! କିନ୍ତୁ ଆମେ ଯେଉଁ ଲୋକମାନଙ୍କୁ ବୁଦ୍ଧିମାନ୍ ବୋଲି ଭାବୁଛୁ ସେମାନଙ୍କ ବୁଦ୍ଧି ଉପରେ ମୋର ବିଶ୍ୱାସ ନାହିଁ । ଯେତେବେଳେ ପ୍ରଥମେ ହମୀରର ଆକ୍ରମଣ କଥା ଶୁଣାଗଲା ସମସ୍ତେ କହିଲେ, ଆମେ ତାକୁ ମୁହୂର୍ତ୍ତିକ ମଧ୍ୟରେ ଧ୍ୱଂସ କରିଦେବୁ । ବାକ୍‌ପତିରାଜ ଏହାହିଁ କହିଥିଲେ । ଘୋଘାବାପା ମଧ୍ୟ ଏହି କଥା କହି ସର୍ବନାଶ ବରଣ କଲେ । ବାଲମଦେବଙ୍କର ମଧ୍ୟ ସେହି ଅବସ୍ଥା ହୋଇ ସେ ଧ୍ୱଂସ

ହୋଇଛନ୍ତି । ମୁଁ ହମୀରର ସୈନ୍ୟବାହିନୀ ମଧ୍ୟରେ ଚଳବୁଲ କରି ସେମାନଙ୍କ ସହିତ କଥାବାର୍ତ୍ତା କରିଛି । ହମୀର ସହିତ ମଧ୍ୟ କଥାବାର୍ତ୍ତା କରି ତାର ଶାରୀରିକ ଶକ୍ତି ଜାଣିବା ସଙ୍ଗେ ସଙ୍ଗେ ନେତୃତ୍ୱ ଦେବାରେ ସେ କିପରି ଦକ୍ଷ ସେ ସମ୍ପର୍କରେ ମୋର ଧାରଣା ଅଛି ! ସେ ଜଣେ ଅତୁଳନୀୟ ସାମରିକ ସେନାପତି ।"

ସର୍ବଜ୍ଞ—ତାହାହେଲେ ପ୍ରଭୁ ଶଙ୍କର ତା କଥା ବୁଝିବେ ।

ସାମନ୍ତ—ପ୍ରଭୁ ଶଙ୍କର ତା କଥା ବୁଝି ପାରନ୍ତି—କିନ୍ତୁ ଭୀମଦେବଙ୍କ ଦ୍ୱାରା ନୁହେ ।

ସର୍ବଜ୍ଞ—ତେବେ ତୁ କଣ କହୁଛୁ ?

ସାମନ୍ତ—ମୁଁ ଯେଉଁ ବାଟ ଦେଇ ଆସିଲି, ବରାବର ଲୋକଙ୍କୁ ପରାମର୍ଶ ଦେଇ ଆସିଛି, ତୁମେମାନେ ନିଜକୁ ଯେବେ ରକ୍ଷା କରିବାକୁ ଚାହଁ, ତାହେଲେ ହମୀରକୁ ବାଟ ଛାଡ଼ିଦେଇ ଲୁଚି ରହି ତାକୁ ହଇରାଣ କର । ଆପଣଙ୍କୁ ଏବଂ ଭୀମଦେବଙ୍କୁ ମଧ୍ୟ ସେହି ପରାମର୍ଶ ଦେଉଛି । ଭୀମଦେବ ପାଟଣ ଛାଡ଼ି ସୌରାଷ୍ଟ୍ରକୁ ଆସନ୍ତୁ । ହମୀରର ସୈନ୍ୟବାହିନୀ ଯେତେବେଳେ ଚାଲି ଚାଲି ଥକା ହୋଇଯିବେ ସେତିକିବେଳେ ତାକୁ ଧ୍ୱଂସ କରାଯାଉ । ଏହାଛଡ଼ା ଅନ୍ୟ ଉପାୟ ନାହିଁ ।

ସର୍ବଜ୍ଞ—କିନ୍ତୁ ହମୀର ଯଦି ପ୍ରଭାସ ଆସେ ତେବେ ଆମେ କଅଣ କରିବା ?

ସାମନ୍ତ—ତାହାହିଁ ଆପଣଙ୍କୁ କହିବା ନିମନ୍ତେ ଏଠାକୁ ଏତେ ଶୀଘ୍ର ଆସିଛି । ଯେତେ ଚଞ୍ଚଳ ପାରନ୍ତି ଆପଣ ପ୍ରଭାସ ଛାଡ଼ି ଚାଲିଯାନ୍ତୁ । ଜନ ମାନବ ଶୂନ୍ୟ ମରୁଭୂମି ପ୍ରାୟ ପ୍ରଭାସରେ ପ୍ରବେଶ କରି ହମୀର କଣ କରିବାକୁ ଚାହେ କରୁ ।

କିଛି କ୍ଷଣ ପାଇଁ ଗଙ୍ଗସର୍ବଜ୍ଞ ଆଖି ବୁଜି ଓ ଗୋଟିଏ ଦୀର୍ଘ ନିଶ୍ୱାସ ନେଇ କହିଲେ, "ବାପ, ଯେହେତୁ ଆମେ ହମୀର ସହିତ ମୁହାଁମୁହିଁ ଯୁଦ୍ଧ କରି ପାରିବା ନାହିଁ, ଆମେ ତାକୁ ଆସିବାକୁ ଛାଡ଼ିଦେଇ ତାହା ପରେ ଘେରିଯାଇ ତାକୁ ଧ୍ୱଂସ କରିବାକୁ ତୁ କହୁଛୁ !"

ସାମନ୍ତ—ହଁ, ତାହାହିଁ ମୋର କହିବା କଥା ।

ସର୍ବଜ୍ଞ—ତାହାହେଲେ ମୁଁ ପ୍ରଭାସ ଛାଡ଼ି ଅନ୍ୟ କୌଣସି ସ୍ଥାନକୁ ଚାଲିଯିବି ? ପ୍ରଭୁ ସୋମନାଥଙ୍କୁ ଲୁଚାଇଦେବି ?

ସାମନ୍ତ—ଏହା ଛଡ଼ା ଅନ୍ୟ ଉପାୟ ନାହିଁ ।

ସର୍ବଜ୍ଞ କହିଲେ, "ଯେଉଁ ଲିଙ୍ଗ ବିଶ୍ୱ ସୃଷ୍ଟିର ପ୍ରାକ୍ କାଳରୁ ପ୍ରକଟିତ ହୋଇଛନ୍ତି,ଯେ ସତ୍ୟ ଓ ସୁନ୍ଦର, ଯେ ଶତ ଶତ ଦାବାନଳ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି,ପଞ୍ଚଭୂତ ଯାହାଙ୍କର ବୃଦ୍ଧି ବା ହ୍ରାସ କରିପାରିବେ ନାହିଁ,ଯେ ଅଶାନ୍ତ ସମୁଦ୍ରର ପୃଷ୍ଠଭୂମିରେ ଅସଂଖ୍ୟ ଜ୍ୟୋତିର ଆଭା ଯେମିତି ବିରାଜିତ, ତାଙ୍କୁ ସ୍ଥାନାନ୍ତର କରିବାର ପାପ ମୁଁ କରିବି ?" ଗଙ୍ଗ ସର୍ବଜ୍ଞ ଏହା କହୁଥିବା ସମୟରେ ସତେ ଯେପରି ସେ ଶିବପୁରାଣ ଆବୃତ୍ତି କରୁଛନ୍ତି ସେହିପରି ମନେହେଉଥାଏ । ସାମନ୍ତ ଗଙ୍ଗଙ୍କର ଚିନ୍ତାଧାରା ଭଲରୂପେ ବୁଝିପାରୁନଥିବାରୁ ତାଙ୍କୁ ବିସ୍ମୟରେ ଅନାଇ ରହିଥାନ୍ତି ।

ଗଙ୍ଗ ସର୍ବଜ୍ଞ ପୁଣି କହିବାରେ ଲାଗିଲେ, "ଶଙ୍କରଙ୍କ ଅବତାର ଲକୁଳେଶ ପ୍ରଭୁଙ୍କର ମୁଁ ଯେତେବେଳେ ପ୍ରତିନିଧି ଏବଂ ପ୍ରଭୁ ସୋମନାଥଙ୍କ କୃପାରୁ ମୁଁ ଯେତେବେଳେ ଶିକ୍ଷା ଓ ଜ୍ଞାନ ଲାଭ କରିଛି, ସେତେବେଳେ ମୁଁ ସ୍ୱୟଂ ଏହି ମନ୍ଦିରରୁ ତାଙ୍କୁ ସ୍ଥାନାନ୍ତରିତ କରି ନେଇଯିବି ? ଏଥିରେ ତାଙ୍କର ଧେବା ହେବ ?"

ସାମନ୍ତ କଣ କହିବାକୁ ଆରମ୍ଭ କରି "ଗୁରୁଦେବ !" ଏତିକି ଉଚ୍ଚାରଣ କରିଛନ୍ତି, ସର୍ବଜ୍ଞ ନିଜର ଆଙ୍ଗୁଠି ଦେଖାଇ ନୀରବ ରହିବାକୁ ସଙ୍କେତ ଦେଲେ । କିଛି ସମୟ ପାଇଁ ସେ ଆଖି ବୁଜି ଚିନ୍ତାମଗ୍ନ ରହିଲେ । ସାମନ୍ତ ତାଙ୍କୁ ନୀରବରେ ଅନାଇଥାନ୍ତି । ସେ ଯେତେବେଳେ ନିଜ ଆଖି ଖୋଲିଲେ ତହିଁରୁ ଗୋଟିଏ ଅଦ୍ଭୁତ ଜ୍ୟୋତି ଦେଖାଦେଲା । ସର୍ବଜ୍ଞ କହିଲେ, "ବାପ, ପ୍ରଭୁ ସୋମନାଥଙ୍କର ଏହି ଜ୍ୟୋତିର୍ଲିଙ୍ଗଙ୍କୁ କୌଣସି ଅବସ୍ଥାରେ ସ୍ଥାନାନ୍ତରିତ କରାଯାଇ ନ ପାରେ । ଲିଙ୍ଗ ଯେଉଁଠି ରହିବେ, ମୁଁ ମଧ୍ୟ ସେଇଠି ରହିବି—ହମୀର ଯାହା କରିବ କରୁ ।"

ଏକଥା ଶୁଣି ସାମନ୍ତ ଥରିଉଠିଲେ । ନିଜ ଆଖିରେ ପବିତ୍ର ଲିଙ୍ଗ ଖଣ୍ଡ ଖଣ୍ଡ ହେବାର ଦେଖିବା ତାଙ୍କ ପକ୍ଷରେ ଅସହ୍ୟ । କିନ୍ତୁ ଭବିଷ୍ୟତ୍ ବିଷୟରେ ତାଙ୍କର ନୈରାଶ୍ୟ ଏହି ମହାପୁରୁଷଙ୍କର ନିଷ୍ପତ୍ତି ସମ୍ମୁଖରେ ଉଭେଇଗଲା । ଏହା ସତ୍ତ୍ୱେ ପ୍ରତିବାଦ କରିବା ନିଜର କର୍ତ୍ତବ୍ୟ ବୋଲି ସେ ଭାବିଲେ ।

ଗଙ୍ଗ ତାଙ୍କୁ ଆଉ ଅଧିକା କହିବାକୁ ନ ଦେଇ ନିଜେ କହିବାକୁ ଲାଗିଲେ, "କୌଣସି ସନ୍ଦେହ ବା ଯୁକ୍ତିର ଆଉ ଅବକାଶ ନାହିଁ । ଯେବେ ପ୍ରଭୁ ଏବଂ ଯବନ ମଧ୍ୟରେ କୌଣସି ମାରପିଟ ଠିଆ ହେବାକୁ ନ ବାହାରେ, ତାହେଲେ ଏହି ବ୍ରାହ୍ମଣ ଏକାକୀ ଠିଆହେବ—ଯାହା ହେବାର ହେଉ । ପିନାକପାଣିଙ୍କର ବରିଷ୍ଠ

ଶକ୍ତି ସମ୍ମୁଖରେ ଠିଆ ହେବାକୁ କାହାର ସାହସ ଅଛି ? କିଏ କହିପାରିବ, ହୁଏତ ଅତୀତର ମୁନି ଋଷିମାନଙ୍କର ପନ୍ଥାଙ୍କ ଅନୁସରଣ କରି ଆକ୍ରମଣକାରୀମାନଙ୍କୁ ପ୍ରତିରୋଧ କରିବା ଏହି କ୍ଷୀଣକାୟ ବୃଦ୍ଧ ଭାଗ୍ୟରେ ଲେଖାଅଛି ।

ଏହି ଯେଉଁ ଦୃଢ଼ ପ୍ରତିଜ୍ଞା, ସାମନ୍ତ ତାହାର ବା କଣ ଉତ୍ତର ଦେବେ ? କିନ୍ତୁ ଜଣେ ଯୋଦ୍ଧା ହିସାବରେ ସେ କହିଲେ, "ଅନ୍ତତଃ ଭୀମଦେବଙ୍କର ସୈନ୍ୟ ବାହିନୀକୁ ଡାକିବାର ବ୍ୟବସ୍ଥା କରନ୍ତୁ । ହମୀର ସେମାନଙ୍କୁ ପାଟଣରେ ମୁହୂର୍ତ୍ତକ ମଧ୍ୟରେ ଧ୍ୱଂସ କରିଦେବାର ଯଥେଷ୍ଟ ସମ୍ଭାବନା ଥିବାରୁ ସେଠିକା ଅପେକ୍ଷା ସେମାନେ ପ୍ରଭାସରେ ସଫଳ ପ୍ରତିରୋଧ କରିପାରିବେ ।"

ସର୍ବଜ୍ଞ—ଯୁଦ୍ଧ କିପରି ହେବ ସେ ବିଷୟରେ ହସ୍ତକ୍ଷେପ କରିବା ମୋର କାର୍ଯ୍ୟ ନୁହେଁ । କିନ୍ତୁ ମୁଁ ତୋତେ ଗୋଟିଏ ଚିଠି ଦେବି । କାଲି ସକାଳେ ତୁ ତାହା ନେଇ ପାଟଣ ଯାଆ । ସେଠାରେ ଭୀମଦେବ ଓ ଦାମୋଦର ମେହେତାଙ୍କ ସହ ପରାମର୍ଶ କରି ସେମାନେ କଣ କହୁଛନ୍ତି ଦେଖ ।

ସାମନ୍ତ—ଠିକ୍ କଥା । ମୁଁ ଆଜି ରାତି ଏଠାରେ ବିଶ୍ରାମ ନେଇ କାଲି ଖୁବ୍ ଭୋରରୁ ବାହାରିବି ।

ସର୍ବଜ୍ଞ—ଭଲ କଥା, କିନ୍ତୁ ତୁ ଯିବା ପୂର୍ବରୁ ସୋ ସହିତ ଦେଖା କରିବୁ । ସୋମନାଥଙ୍କ ନିକଟରେ ଉପାସନା କରିବା ପୂର୍ବରୁ ମୋତେ ପୁଣି ସ୍ନାନ କରିବାକୁ ପଡ଼ିବ—ମୁଁ ଯାଏ ।

ଗତ ଚାରିମାସ ମଧ୍ୟରେ ସାମନ୍ତ ବହୁ କଷ୍ଟ ଓ ନିର୍ଯ୍ୟାତନା ଭୋଗ କରିବା ସଙ୍ଗେ ସଙ୍ଗେ ଯଥେଷ୍ଟ ଧ୍ୱଂସଲୀଳା ଦେଖିଛି । ନିଜ ପରିବାରର ସମ୍ମାନାସ୍ପଦ ସ୍ତ୍ରୀ ପୁରୁଷ ଓ ଭାଇ ଭଉଣୀଙ୍କର ମୃତ ଶରୀରକୁ ଶାଗୁଣାମାନେ ଖାଇବା ସେ ନିଜେ ଦେଖିଛି । ତାର ପୂଜ୍ୟ ବାପାଙ୍କର ଯେପରି ବୀରୋଚିତ ମୃତ୍ୟୁ ହେଲା, ଯାହାକି ଦେବତାମାନେ ସୁଦ୍ଧା ଈର୍ଷା କରିବେ, ତାହା ସେ ଶୁଣିଛି । ଘୋଘାବାପାଙ୍କ ଗୌରବମୟ ପରିବାରର ଏକମାତ୍ର ପ୍ରତିନିଧି ରୂପେ ସେ ଜୀବିତ ଅଛି । ତାର ଘର, ବନ୍ଧୁବାନ୍ଧବ ବା ଆଶ୍ରୟ ନେବାକୁ ସ୍ଥାନ, ଆଜି ଦୁନିଆରେ ତାର କିଛି ନାହିଁ । କେବଳ ପ୍ରଭୁ ସୋମନାଥଙ୍କର ଆଦେଶ କାର୍ଯ୍ୟକାରୀ କରିବାକୁ ସେ ବଞ୍ଚିଛି । ଜୀବନରେ ତାର ଏକମାତ୍ର କାମନା ଶତ୍ରୁକୁ ଧ୍ୱଂସ କରିବା । ଅନ୍ୟ ସମସ୍ତଙ୍କ ମୃତ୍ୟୁ ସତ୍ତ୍ୱେ ସେ ଯେ ଜୀବିତ ଅଛି—ତାହାର ଅନ୍ୟ କଣ ଲକ୍ଷ୍ୟ ଥାଇପାରେ ?

ସର୍ବଜ୍ଞଙ୍କଠାରୁ ବିଦାୟ ନେବା ସମୟରେ ସାମନ୍ତଙ୍କ ମନରେ ଏହିସବୁ ଚିନ୍ତା ଖେଳୁଥିଲା । ଗଙ୍ଗଙ୍କର ଦୃଢ଼ତା ଏବଂ ଆତ୍ମବିଶ୍ୱାସ ଦେଖି ତାଙ୍କର ବିଶ୍ୱାସ ଯଥେଷ୍ଟ ବଢ଼ିଥାଏ । ଆବୁ ଏବଂ ପ୍ରଭାସ ମଧ୍ୟରେ କଣ ହେବ ନ ହେବ, ସେ କଥା କିଏ କହିପାରିବ ? ସର୍ବଶକ୍ତିମାନ୍ ସର୍ବଜ୍ଞ, ଯାହାଙ୍କର ଅତୀତ ଓ ଭବିଷ୍ୟତ ସମ୍ପର୍କରେ ଯଥେଷ୍ଟ ଜ୍ଞାନ ଅଛି, ତାଙ୍କର ଦୃଷ୍ଟିକୋଣ ଓ ବିଚାର ଭୁଲ ବୋଲି କିଏ ବା କହିବ ?

ସାମନ୍ତ ମନ୍ଦିର ଦିଗକୁ ଚାହିଁବା ସଙ୍ଗେ ସଙ୍ଗେ ତାଙ୍କ ମନରେ ନୂତନ ଚିନ୍ତାଧାରା ଖେଳିଗଲା । କିଛି ଦିନ ତଳେ ପିତାଙ୍କ ଗହଣରେ ତାର ପ୍ରଥମବାର ସୋମନାଥ ଦର୍ଶନ ଓ ଦେବ ଦର୍ଶନ ପରେ ଏକ ତରୁଣୀ ନର୍ତ୍ତକୀ ତାର ମସ୍ତକରେ ଓ ପିତାଙ୍କର ମସ୍ତକରେ ବିଜୟ ବିଭୂତି ଦେଇ "ବିଜୟୀ ହୋଇ ଫେରିଆସ" ବୋଲି କାମନା କରିବା ତାଙ୍କର ସ୍ମୃତିରେ ଜାଗରିତ ହେଲା । ଯେତେବେଳେ ସେ ହମୀରକୁ ମାରିବାକୁ ଚେଷ୍ଟା କରିଥିଲେ, ସେତେ-ବେଳେ ଏହି କଥା ତାଙ୍କର ବାରବାର ମନେପଡ଼ୁଥିଲା । ସମ୍ଭବତଃ ପ୍ରଭୁ ସୋମନାଥଙ୍କ ମନ୍ଦିରରେ ପ୍ରବେଶ କରିବା ତାଙ୍କର ଭାଗ୍ୟରେ ଆଉ ଘଟି ନ ପାରେ । ଯେତେବେଳେ ଭାଗ୍ୟବଶତଃ ସେ ଏତେ ବାଟ ଆସିଛନ୍ତି, କାହିଁକି ବା କ୍ଷଣିକ ଆନନ୍ଦ ଉପଭୋଗ କରିବାର ସୁଯୋଗ ହରାଇବେ ?

ଚାରିଦିଗକୁ ଅନାଇ ସେ ଆସ୍ତେ ଆସ୍ତେ ମନ୍ଦିର ଭିତରକୁ ଗଲେ । ସେ ଆଶା କରୁଥିଲେ ଯେ, ଏହି ନିକଟରେ ପୂର୍ବ ପରିଚିତ ସେହି ଆକର୍ଷଣୀୟ ହସ ଶୁଣିବେ ଏବଂ ଅନିର୍ବଚନୀୟ ରୂପ ଦେଖିବ । କିନ୍ତୁ ତାଙ୍କର ଆଶା ପୂର୍ଣ୍ଣ ହୋଇ ପାରିଲା ନାହିଁ । ଭଗ୍ନହୃଦୟରେ ସେ ପ୍ରଭୁ ସୋମନାଥଙ୍କ ସମ୍ମୁଖରେ ପ୍ରଣତି କଲେ । ସେ ପ୍ରାର୍ଥନା କରୁଥିବା ସମୟରେ ତାଙ୍କର ଦୁଇ ଆଖିରୁ ଲୁହ ବୋହୁଥାଏ । ଗତ କେତେ ଦିନ ହେଲା ସେ ଯେଉଁ ଦୁଃଖ କଷ୍ଟ ସହ୍ୟ କରୁଛନ୍ତି ତାହା ମନେପଡ଼ୁଥାଏ ।

ଯାହା ସବୁ ଘଟିଯାଇଛି, ତାହା ବିଶଦ୍ ଭାବେ ସର୍ବଜ୍ଞଙ୍କ ନିକଟରେ କହିବା ପରେ ଧୈର୍ଯ୍ୟ ତୁଟିଯାଇଥିବା ପରି ସାମନ୍ତଙ୍କର ମନେହେଲା । ଗତ କିଛି ଦିନ ଧରି ସେ ଯେପରି ଅପନ୍ତରା ଭୂଇଁରେ ନିଃସହାୟ ଓ ନିରୁପାୟ ଭାବେ ବୁଲୁଛନ୍ତି, ତାହା ମନେପଡ଼ିଲା । ସାମନ୍ତ ବିରାଟ ନାଟମନ୍ଦିରର ଗୋଟିଏ ନିଭୃତ କୋଣରେ ବସି ଓ ଆଣ୍ଠୁ ଉପରେ ମୁଣ୍ଡ ଥୋଇ ମନଇଚ୍ଛା କାନ୍ଦିବାକୁ ଲାଗିଲେ ।

ଏହି ସମୟରେ ତାଙ୍କ ମନକୁ ଗୋଟିକ ପରେ ଗୋଟିଏ ଆତ୍ମୀୟଙ୍କ କଥା ଆସିଲା—ବୁଢ଼ା ବାପା ଘୋଘାବାପା ଏବଂ ତାଙ୍କର ଅସାଧାରଣ ବୀରତ୍ୱ—ଏକାକୀ ହମୀରକୁ ଯାରୁ ପର୍ଯ୍ୟନ୍ତ ପ୍ରତିରୋଧ କରିଥିବା ତାର ବାପା—ଚିତାନଳରେ ଦେହ ଆହୁତ ଦେଇଥିବା ତାର ଦେବୀତୁଲ୍ୟ ଦେଦୀପ୍ୟମାନା ମା— ଫୁଲପରି କୋମଳ ତାର ଦୁଇ ବର୍ଷର ଭଉଣୀ, ଯାହାର ଅଧାପୋଡ଼ା କଅଁଳ ଗୋଡ଼ ସେ ଚିହ୍ନି ପାରିଥିଲେ । ଏ ଦାରୁଣ ଦୃଶ୍ୟ ଦେଖିବାକୁ ତାଙ୍କ ଭାଗ୍ୟରେ ଥିଲା ! ତାଙ୍କ ଆଖିରୁ ଅନବରତ ଲୁହ ଗଡ଼ୁଥାଏ ଏବଂ ସେ ନିଜକୁ ପୂରାପୂରି ଭୁଲିଯାଇଥାନ୍ତି । ସମୟ କେତେ ହେଲାଣି ତାଙ୍କୁ ଜଣାନାହିଁ ।

ଜଣେ ସ୍ତ୍ରୀ ଲୋକର ମଧୁର ସ୍ୱର ଶୁଣି ସେ ଉଠି ପଡ଼ିଲେ ।ସେ ଦେଖିଲେ ଜଣେ ପଚିଶ ବର୍ଷ ବର୍ଷୀୟା ନର୍ତ୍ତକୀ ତାଙ୍କ ଆଡ଼କୁ ଦୟାପୂର୍ଣ୍ଣ ଦୃଷ୍ଟିରେ ଚାହିଁ ରହିଛି । ନର୍ତ୍ତକୀ ସହାନୁଭୂତି ପ୍ରକାଶ କରି ଭଳି କହିଲା, "ନାୟକ ! ତୁମେ କାହିଁକି କାନ୍ଦୁଛ ? ପ୍ରଭୁ ସୋମନାଥ ଯାହା କରନ୍ତି ତାହା ଆମ ମଙ୍ଗଳ ପାଇଁ ।"

ଏହି ନର୍ତ୍ତକୀର ମୁହଁ ଦେଖି ସାମନ୍ତଙ୍କ ମନରେ ଗ୍ଳାନିଆ ପଶିଗଲା । ଆଗରେ ଆଉ ଏକ ନର୍ତ୍ତକୀ ଥିଲା । ତାହାର ପରି ଏ ମଧ୍ୟ ଗୋଟିଏ ନର୍ତ୍ତକୀ ! କିନ୍ତୁ ଏହି ଯୁବତୀର ଆଖିରେ କାମନାଭିଳାଷ ଦେଖାଯାଉଥିବା ସ୍ଥଳେ ଅନ୍ୟଟିର ମୁହଁ ନିର୍ଦ୍ଦୋଷ ଜଣାଯାଉଥିଲା । ଯୁବତୀ ଅସଂଯତ ଭାବେ ନିଜର ଆଖିକୁ ନଚାଇ କହିଲା, "ବୀର, କାନ୍ଦିଲେ କିଛି ହୁଏ ନାହିଁ । ମୋ ସାଙ୍ଗରେ ଆସ । ମୁଁ ତୁମକୁ ହସାଇବି ।"

ସାମନ୍ତ କହିଲେ "ଭଉଣୀ, ତୁମେ ଭାବୁଛ ମୋତେ ହସାଇବ ବୋଲି— କିନ୍ତୁ ମୋ ଆଖିରୁ ଯେଉଁ ଲୁହ ବୋହୁଛି ତାହା ବନ୍ଦ କରିବାକୁ ଦୁନିଆରେ କେହି ନାହାନ୍ତି ।"

ନର୍ତ୍ତକୀ ପୁଣି ଥରେ ତାର ଆକର୍ଷଣୀୟ ଆଖିଦ୍ୱାରା ସାମନ୍ତଙ୍କୁ ନିଜର କରିବାପାଇଁ ଚେଷ୍ଟା କରି କହିଲା, "ତୁମେ ଭୁଲ କରୁଛ । ଯେବେ ତ୍ରିପୁରସୁନ୍ଦରୀ ତୁମକୁ ଦୟା କରନ୍ତି ତାହାହେଲେ କାନ୍ଦିବା ତୁମ ପକ୍ଷରେ ଅସମ୍ଭବ ହେବ । ଉଠ, ମୋ ସହିତ ଆସ ।"

ସାମନ୍ତ ଠିଆହୋଇ ପଚାରିଲେ, "ମୋତେ କେଉଁଠିକି ଯିବାକୁ କହୁଛ ?" ସେ ଭାବିଲେ—ଅବଶ୍ୟ ସର୍ବଜ୍ଞଙ୍କ ଲୋକମାନେ ତାଙ୍କୁ ଅପେକ୍ଷା କରିଥିବେ, କିନ୍ତୁ ନିଜ ହୃଦୟର ଦୁଃଖଭାର କମାଇବା ତାଙ୍କର ଦରକାର । ନର୍ତ୍ତକୀ ନଇଁପଡ଼ି

କହିଲା, "ଆଜି ହେଉଛି ତ୍ରିପୁରସୁନ୍ଦରୀଙ୍କ ଯାତ୍ରା । ଆସ ! ମୋ ସାଙ୍ଗରେ ଆଉ କେହି ନାହାନ୍ତି । ତୁମେ ନିଜର ସମସ୍ତ ପାପ ଧୋଇପାରିବ ।"

ସାମନ୍ତ ଧୀରେ କହିଲେ, "ତ୍ରିପୁରସୁନ୍ଦରୀଙ୍କ ଯାତ୍ରା ?" ସେ ପୂର୍ବରୁ ଜାଣିଛନ୍ତି ଯେ, ମନ୍ଦିରର ଗୋଟିଏ କୋଣରେ ଶଙ୍କର-ରମଣୀ ସର୍ବଶକ୍ତିମୟୀ ଦେବୀ ପୂଜା ପାଉଛନ୍ତି ଏବଂ ତାଙ୍କର ଯାତ୍ରା ଅଦ୍ଭୁତ ଭାବେ ପାଳନ କରାହୁଏ । ସେହି ଯାତ୍ରା କିପରି ଭାବେ ପାଳନ କରାହୁଏ ତାହା କେହି ଜାଣନ୍ତି ନାହିଁ । ତାହା ଜାଣିବାକୁ ମଧ୍ୟ ତାଙ୍କର ଆଜି ଇଚ୍ଛା ନାହିଁ । ତେଣୁ ସାମନ୍ତ କହିଲେ, "ମୋର ସେ ଦୀକ୍ଷା ନାହିଁ । ମୁଁ କେମିତି ଯିବି ?"

ନର୍ତ୍ତକୀ—"ତମେ ସେଥିପାଇଁ ଯୋଗ୍ୟ, ଏଥିରେ କୌଣସି ସନ୍ଦେହ ନାହିଁ । କାଲି ରାତିରେ ଦେବୀ ସ୍ୱପ୍ନରେ ମୋ ନିକଟକୁ ଆସିଥିଲେ, ଏବଂ.........।"

ସାମନ୍ତ କଣ କହିଲେ ?

ନର୍ତ୍ତକୀ—ଗତ ରାତିରେ ତ୍ରିପୁରସୁନ୍ଦରୀ ନିଜେ ମୋତେ କହିଲେ—ପ୍ରଭୁଙ୍କର ଜଗମୋହନରେ ଗୋଟିଏ ଯୋଦ୍ଧା ବସି କାନ୍ଦୁଛି—ତାକୁ ଘେନିଆସ । ସେ ମୋର ଏବଂ ପ୍ରଭୁଙ୍କର ବିଜେସ୍ଥଳୀ ରକ୍ଷା କରିବ ।

ସାମନ୍ତ—ତୁମେ କଣ ସତ କହୁଛ ?

ନର୍ତ୍ତକୀ—ହଁ, ତୁମକୁ ନେବାପାଇଁ ମୋତେ ଆଦେଶ ହୋଇଛି ।

ଏ ନର୍ତ୍ତକୀ କଣ ସତ କହୁଛି ? ପ୍ରଭୁଙ୍କର ଅର୍ଦ୍ଧାଙ୍ଗିନୀ ପାର୍ବତୀ ପ୍ରକୃତରେ କଣ ସାମନ୍ତ ତାଙ୍କ ମନ୍ଦିର ରକ୍ଷା କରିବେ ବୋଲି ଭାବୁଛନ୍ତି ? ସତେ କଣ ଶେଷକୁ ଗଜନୀର ହମୀରକୁ ସେ ମାରିବେ ? ତାଙ୍କର ମନ ସଂପୂର୍ଣ୍ଣ ବିଷାଦଗ୍ରସ୍ତ ଥିଲେ ସୁଦ୍ଧା ସେ ଯେ ଏହି ବିରାଟ ମନ୍ଦିରର ରକ୍ଷାକର୍ତ୍ତା ହେବେ ଏକଥା ଭାବି ତାଙ୍କ ମନରେ ସାମାନ୍ୟ ଉତ୍ସାହ ଦେଖାଦେଲା ।

ସାମନ୍ତ ପଚାରିଲେ, "ତୁମେ କିଏ ?"

ନର୍ତ୍ତକୀ କହିଲା, "ମୋ ନାଁ କୁଣ୍ଡଳା ଦେବଦାସୀ । ମୋ ସାଙ୍ଗେ ଆସ ।"

୨୪

# ତ୍ରିପୁରସୁନ୍ଦରୀଙ୍କ ମନ୍ଦିର

ସାମନ୍ତ ଆସ୍ତେ ଆସ୍ତେ ପ୍ରକୃତିସ୍ଥ ହେଲେ ଓ ଉଠିପଡ଼ି ନର୍ତ୍ତକୀ ପଛେ ପଛେ ଗଲେ । ସେ ଏହି ନର୍ତ୍ତକୀର ଶରୀରର ମାଦକତା ଦେଖୁଥାନ୍ତି । ପ୍ରଭୁ ଶଙ୍କରଙ୍କ ଆରାଧନାରେ ନିଜକୁ ନିମଗ୍ନ କରିଥିବା ଶୁଦ୍ଧ ପୂତ ସେହି ଶ୍ରେଷ୍ଠ ନର୍ତ୍ତକୀ ବାଳିକାଟିଠାରୁ ଏ କେତେ ଭିନ୍ନ ! ଏହି ସ୍ତ୍ରୀ ଲୋକଟି ସଂସାରିକ ଭୋଗବିଳାସରେ ମଗ୍ନ ଏକ ଦେବଦାସୀ, ଏହା ସେ ହୃଦୟଙ୍ଗମ କଲେ ।

ଗଙ୍ଗସର୍ବଜ୍ଞଙ୍କ ସହିତ କଥାବାର୍ତ୍ତା ହେବା ପରଠାରୁ ସାମନ୍ତଙ୍କ ମନରେ ନୂତନ ଆଶା ଓ ଉତ୍ସାହ ଦେଖାଦେଇଥାଏ ।

ପ୍ରଭୁ ସୋମନାଥଙ୍କର ପୀଠସ୍ଥଳୀ ରକ୍ଷା କରିବା ପାଇଁ ସେ ହୁଏତ ଆୟୁଧ ହେବେ—ଏହି ଚିନ୍ତା ତାଙ୍କ ମନରେ ନୂତନ ଉତ୍ସାହ ଓ ପ୍ରେରଣା ଆଣିଲି । ଏହି ନର୍ତ୍ତକୀ ଯୁବତୀଟି କଣ ସତ କହୁଛି ନା ତା ମନଗଢ଼ା କଥା କହୁଛି ! ତା ନହେଲେ ଘୋଘାବାପାଙ୍କର ବିରାଟ ପରିବାର ମଧ୍ୟରୁ ସେ ଏକା ବଞ୍ଚିରହିଛନ୍ତି କାହିଁକି ?

ସାମନ୍ତ ନର୍ତ୍ତକୀର ପଛେ ପଛେ ଗଲେ । ସେ ତାଙ୍କୁ ଏକ ଦ୍ୱାର ବାଟରେ ନର୍ତ୍ତକୀମାନେ ରହୁଥିବା ଘରର ଅଗଣାକୁ ନେଇଗଲା । ଏହି ନୂଆ ଅପରିଚିତ ପରିବେଶରେ ସାମନ୍ତ ମୁହୂର୍ତ୍ତକ ପାଇଁ ନିଜର ଦୁଃଖ ଏବଂ ନୈରାଶ୍ୟ ଭୁଲିଗଲେ ; ସର୍ବୋପରି ଜଗତର ନାଥଙ୍କ ଅର୍ଦ୍ଧାଙ୍ଗିନୀ ପାର୍ବତୀଙ୍କର ଆଦେଶରେ ସେ ଯାଉଛନ୍ତି ତ୍ରିପୁରସୁନ୍ଦରୀଙ୍କ ମନ୍ଦିରକୁ !

କୁଣ୍ଡଳା ଗୋଟିଏ ଶ୍ରେଷ୍ଠ ଦରଜାରେ ଧକ୍କା ମାରିବାରୁ କିଛି ସମୟ ପରେ ତାହା ଫିଟିଲା । ଭିତରୁ ପ୍ରଶ୍ନ ହେଲା, "କିଏ ?"

କୁଣ୍ଡଳା ନିଜର ପରିଚୟ ଦେଲା ।

ଅର୍ଦ୍ଧନିଦ୍ରିତ ଅବସ୍ଥାରେ କେହି ପ୍ରଶ୍ନ କଲା, "ତୁ ସେ ଲୋକକୁ ପାଇଲୁ ?"

କୁଣ୍ଡଳା—ହଁ ।

ଭିତରୁ—ତାକୁ ଭିତରକୁ ଆଣ ।

ଦ୍ୱାରଟି ଆଉ ଟିକିଏ ବେଶୀ ଖୋଲିଲା । କୁଣ୍ଡଳା ଏବଂ ସାମନ୍ତ ଘର ଭିତରକୁ ଗଲେ । ସେଠାରେ ବିଭୂତି ବୋଳି ହୋଇଥିବା ତିନିଜଣ ସାଧୁ ବସିଥିଲେ । ସେମାନଙ୍କ ଆଖି ଗୁଡ଼ାକ ଲାଲ ଦିଶୁଥାଏ ଏବଂ ସେମାନେ ଅସ୍ପଷ୍ଟ ସ୍ୱରରେ କଣ ମନ୍ତ୍ର ଉଚ୍ଚାରଣ କରୁଥାନ୍ତି । ଦ୍ୱାର ଖୋଲିଥିବା ସାଧୁ ଜଣକ ଗୋଟିଏ ଆଲୁଅ ଧରି ସାମନ୍ତଙ୍କ ଆଗରେ ଠିଆହୋଇ ପଚାରିଲା, "ତୁମେ କିଏ ?"

ସାମନ୍ତ—ମୁଁ ଜଣେ ଚୌହାନ ।

ସାଧୁ—ତମେ ଦେବୀ ମହାଶକ୍ତିଙ୍କର ଭକ୍ତ ?

ସାମନ୍ତ—ମୁଁ ପ୍ରଭୁ ସୋମନାଥ ଏବଂ ତାଙ୍କ ଅର୍ଦ୍ଧାଙ୍ଗିନୀ ଦେବୀ ପାର୍ବତୀ ଉଭୟଙ୍କର ଭକ୍ତ ।

କୁଣ୍ଡଳା—ମୁଁ ପରା ତାଙ୍କୁ ସ୍ୱପ୍ନରେ ଦେଖିଥିଲି !

ଅନ୍ୟଜଣେ ସାଧୁ ପଚାରିଲା—ତୁମ ହୃଦୟରେ ସାହସ ଅଛି ?

ସାମନ୍ତ—କଣ ପାଇଁ ସାହସ ।

ସାଧୁ—ଶକ୍ତିଦେବୀଙ୍କର ଆରାଧନା କରିବା ଲାଗି ପ୍ରତିଜ୍ଞା କରିବାକୁ ସାହସ ।

ସାମନ୍ତ ଚାରିଆଡ଼କୁ ଅନାଇଲେ । କୁଣ୍ଡଳା ତାଙ୍କୁ ଛାଡ଼ି ଦେଇ ଯାଇ ନିଜର ଲୁଗା ବଦଳାଇବାରେ ବ୍ୟସ୍ତ । ସାମନ୍ତ ଆଲୁଅରେ ଦେଖିଲେ ଯେ, ଘରର ଅନ୍ୟ ପାଖରେ ଛାଇ ସବୁ ଏ ପାଖ ସେ ପାଖ ହେଉଛନ୍ତି । ସେଗୁଡ଼ିକର ଆକୃତି ମଣିଷ ପରି ।

ତ୍ରିପୁରସୁନ୍ଦରୀଙ୍କୁ ତାନ୍ତ୍ରିକ ନିୟମରେ ଯେଉଁମାନେ ପୂଜା କରନ୍ତି, ସେମାନଙ୍କ ସମ୍ପର୍କରେ ଶୁଣିଥିବା ବିଚିତ୍ର କଥାମାନ ସାମନ୍ତଙ୍କର ମନେପଡ଼ିଲା । ଯେଉଁ ଭୟାବହ ତାନ୍ତ୍ରିକ ଉପାୟରେ ଶକ୍ତି ପୂଜା କରାଯାଏ, ସେଥିରେ କଣ ତାଙ୍କୁ ଦୀକ୍ଷିତ ହେବାକୁ ପଡ଼ିବ ? ଦୁରାଚାରୀ ହମୀର କବଳରୁ ପ୍ରଭାସକୁ ରକ୍ଷା କରିବା ନିଜର କର୍ତ୍ତବ୍ୟ ହୋଇଥିବାବେଳେ, ସେ କାହିଁକି ଏ ଭୟାବହ ତାନ୍ତ୍ରିକ ମନ୍ଦିରକୁ ଆସିଲେ —ଏହି କଥା ଭାବି ସାମନ୍ତ ଅନୁତପ୍ତ ହେଲେ ।

ସାଧୁ ପୁଣି ପଚାରିଲା—କୁହ, ସାହସ ଅଛି ?

ସାମନ୍ତ ଉତ୍ତର ଦେଲେ—ସାହସ ! ମୋର ସାହସ ନାହିଁ ।

ତିନିଜଣଯାକ ସାଧୁ ତାଙ୍କ ନିକଟକୁ ଯାଇ କହିଲେ, "କଣ କହିଲୁ ?"

ସାମନ୍ତ—ତାନ୍ତ୍ରିକ ରୀତିରେ ତ୍ରିପୁରସୁନ୍ଦରୀଙ୍କ ଦୀକ୍ଷା ନେବାକୁ ମୁଁ ଯୋଗ୍ୟ ନୁହଁ ।

ଜଣେ ସାଧୁ ସାମନ୍ତଙ୍କର ଚର୍ଣ୍ଣି ଚିପି ଧରି କହିଲା, "ତୁ ପାପୀ, ଦୁରାଚାର, ଏଠାକୁ ଆସିଲୁ କାହିଁକି ? ମହାମାୟାଙ୍କର କୋପ ହେଲେ······"

ସାମନ୍ତ—ମୁଁ ମୋ ଇଚ୍ଛାରେ ଏଠାକୁ ଆସି ନାହିଁ । ମୋତେ କୁଣ୍ଡଳା ଏଠାକୁ ଆଣିଛି । ଏଠାରେ ରହିବାକୁ ମୋର ଇଚ୍ଛା ନାହିଁ । ମୁଁ ଯାଉଛି ।

ଆଉ ଜଣେ ସାଧୁ ତାଙ୍କର ହାତ ଭିଡ଼ିଧରି କହିଲା, "ଯାଉଛି ? କୁଆଡ଼େ ଯିବୁ ? ମହାମାୟାଙ୍କ ମନ୍ଦିର ଅପବିତ୍ର କରି ପଳାଇଯିବାକୁ ବସିଛୁ ?"

ସାମନ୍ତ ସାଧୁମାନଙ୍କ କବଳରୁ ରକ୍ଷା ପାଇବାକୁ ବୃଥା ଚେଷ୍ଟା କରି କହିଲେ, "ମୁଁ ଯାଏ—ମତେ ଛାଡ଼ ।" ଏହି ଅବସ୍ଥା ଦେଖି ତୃତୀୟ ସାଧୁଟି ତାଙ୍କ ଆଡ଼କୁ ଦଉଡ଼ିଯାଇ ସାମନ୍ତର ଅନ୍ୟ ହାତଟି ଧରିନେଇ କହିଲା, "ବାଃ ! ଯାଉଥା ।" ସମସ୍ତେ ତାଚ୍ଛଲ୍ୟ ଭାବେ ହସିଉଠିଲେ ।

ସାମନ୍ତ କୁଣ୍ଡଳା ଆଡ଼କୁ ଅନାଇ ପାଟିକରି ରାଗରେ କହିଲେ, "କୁଣ୍ଡଳା, ତୁ କାହିଁକି ମୋତେ ଆଣିଲୁ ? ମୋତେ ଛାଡ଼ । ମୁଁ ଯାଏ ।"

କୁଣ୍ଡଳା ମଧ୍ୟ ରାଗିଯାଇ ବଡ଼ ପାଟିରେ କହିଲା, "ପଶୁ, ବର୍ବର ! ମୋ ସ୍ୱପ୍ନ ମିଛ ହେବ ବୋଲି ମୁଁ କେମିତି ଜାଣନ୍ତି ? ମହାମାୟା ମୋ ଉପରେ ଖୁସି ହେବେ ବୋଲି ମୁଁ ଜାଣିଥିଲି । କିନ୍ତୁ ତୁ ତ ଗୋଟାଏ କପଟୀ—ଏବେ ମର । ମହାମାୟାଙ୍କ ମନ୍ଦିର ଅପବିତ୍ର କରି ଏ ପର୍ଯ୍ୟନ୍ତ କେହି ପଳାଇ ଯାଇ ପାରି ନାହିଁ ।"

ସାଧୁମାନେ ସାମନ୍ତଙ୍କୁ ଗୋଟିଏ ଖୁଣ୍ଟରେ ବାନ୍ଧି ଦେଲେ । ପଳାଇ ଯିବା ପାଇଁ ସେ ଆଉ କୌଣସି ଉଦ୍ୟମ କଲେ ନାହିଁ । ଜୀବନ ପ୍ରତି ମଧ୍ୟ ତାଙ୍କର ମମତା ନ ଥିଲା ।

ସାମନ୍ତ ନିରୁପାୟଭାବେ ସାଧୁମାନଙ୍କୁ କହିଲେ, "ମୋତେ ଆପଣମାନେ ଟିକିଏ ଦୟା କରିବେ ? କେହି ଜଣେ ଯାଇ ଗୁରୁଦେବ ସର୍ବଜ୍ଞଙ୍କୁ ଏତିକି ଜଣାଇ ଦେବା ଆବଶ୍ୟକ ଯେ, ସେ ମୋ ପାଇଁ ଆଉ ଅପେକ୍ଷା କରିବେ ନାହିଁ ।" ସାଧୁମାନେ ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲେ, "ସର୍ବଜ୍ଞ !"

ସାମନ୍ତ କହିଲେ—"ହଁ, ସେ ମୋ ପାଇଁ ଅପେକ୍ଷା କରିଛନ୍ତି ।"

ସତେ ଯେପରି ସେ ସବୁ ବୁଝି ପାରିଛି, ସେଇଭଳି ସଙ୍କେତ ପ୍ରକାଶ କରି ଜଣେ ସାଧୁ ସାମନ୍ତଙ୍କୁ ଧ୍ୟାନପୂର୍ବକ ଅନାଇଲା । କ୍ରୋଧପୂର୍ଣ୍ଣ ସ୍ୱରରେ ତାଙ୍କୁ ଡରାଇ କହିଲା, "ଆଚ୍ଛା, ତାହେଲେ ସେ ଅପେକ୍ଷା କରିଥାନ୍ତୁ ।" ଏହା କହିସାରି ତଳେ ପଡ଼ିଥିବା ତ୍ରିଶୂଳଟା ଉଠାଇ ସାମନ୍ତର ଗଳାରେ ନେଇ ଲଗାଇଲା ।

ନିଜର ଶେଷ ସମୟ ଆସିଗଲା ବୋଲି ସାମନ୍ତ ଭାବିଲେ । ତାଙ୍କର ମଧ୍ୟ ବଞ୍ଚିବାକୁ ଇଚ୍ଛା ନ ଥିଲା । ତେଣୁ ସେ ଆଖି ବନ୍ଦ କରି ତାଙ୍କର ଆରାଧ୍ୟ ଘୋଢାବାପା ଓ ପ୍ରଭୁ ସୋମନାଥଙ୍କୁ ସ୍ମରଣ କଲେ । ସତେ ଯେପରି ଅନ୍ୟ ଦୁନିଆରେ ସେ ତାଙ୍କର ଜେଜେ, ବାପା ଏବଂ ମାଙ୍କ ସହିତ ଅଳ୍ପ ସମୟ ପରେ ଦେଖା କରିବେ, ତାଙ୍କର ସେହିପରି ଧାରଣା ହେଲା ।

ସେତିକବେଳେ କୁଣ୍ଡଳା ଭୟରେ ଥରି ଥରି କହୁଥିବାର ତାଙ୍କ କାନରେ ପଡ଼ିଲା, "ନା, ନା, ଆଜି ଏଠାରେ ବିନ୍ଦୁମାତ୍ର ମଣିଷ ରକ୍ତ ପଡ଼ିବ ନାହିଁ ।" ସାମନ୍ତଙ୍କୁ ମାରିବାପାଇଁ ତ୍ରିଶୂଳ ଉଞ୍ଚାଇଥିବା ସାଧୁ ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ ପଚ୍ଛେଇଗଲା । ସେ ବୁଝିଲି ଯେ, ଏହି ପବିତ୍ର ଦିନରେ ଯେବେ ମହାଶକ୍ତିଙ୍କ ମନ୍ଦିରରେ ମଣିଷ ରକ୍ତ ପଡ଼େ ତାହାହେଲେ ସେମାନେ ନିଜେ ଧ୍ୱଂସ ହୋଇ-ଯିବେ ।

ଜଣେ ସାଧୁ ଦାନ୍ତ ଚିପି ଚୁପ୍ ଚୁପ୍ କରି ଅନ୍ୟମାନଙ୍କୁ କହିଲା, "ସବୁଙ୍କ ତାକୁ ଏଠାକୁ ପଠାଇଛନ୍ତି !"

କୁଣ୍ଡଳା କହିଲା—ମୁଁ ତାକୁ ବୁଝାଇବି ।

ଆଉ ଜଣେ ସାଧୁ କହିଲା—ନା, ତୋର ସ୍ୱପ୍ନ ମିଛ ।

ପୁଣି ଜଣେ ସାଧୁ କହିଲା—କଣ କରିବାକୁ ହେବ ପ୍ରାଣୀଙ୍କୁ କାହିଁକି ପଚ୍ଚୁରୁ ନାହିଁ ?

ତିନିଜଣ ଯାକ ସାଧୁ ନିଜ ନିଜ ଭିତରେ କଣ ଚୁପ୍ ଚୁପ୍ କଥାବାର୍ତ୍ତା କଲେ ଏବଂ ସେମାନଙ୍କ ମଧ୍ୟରୁ ଦୁଇଜଣ ସାଧୁ ଓ କୁଣ୍ଡଳା ଆଉ ଗୋଟିଏ ଘରକୁ ଚାଲିଗଲେ । ନିଜର ଆସନ୍ନ ମୃତ୍ୟୁ କାଳରେ ମଧ୍ୟ କଣ ହେଉଛି ଜାଣିବାକୁ ସାମନ୍ତଙ୍କର ଅତିରିକ୍ତ ଆଗ୍ରହ ବଢ଼ିଲା । କୁଣ୍ଡଳା ଏବଂ ଦୁଇଜଣ ସାଧୁ ପ୍ରବେଶ କରିଥିବା ଘରେ କଣ ହେଉଛି ତାହା ସେ ଭାବିବାକୁ ଲାଗିଲେ । ତ୍ରିପୁର-ସୁନ୍ଦରୀଙ୍କ ମନ୍ଦିରରେ ସେମାନେ କିଭଳି ଅସଭ୍ୟ ଓ ଭୟଙ୍କର କାର୍ଯ୍ୟମାନ କରୁଥିବେ ? ଏହି ପାଷଣ୍ଡମାନେ ବୁଝୁନାହାନ୍ତି ଯେ, ମୃତ୍ୟୁ ଦେବତାଠାରୁ ଅଧିକ ଭୟଙ୍କର, ଅସୁର ପ୍ରକୃତିର ହମୀର ସୋମନାଥଙ୍କୁ ଆକ୍ରମଣ କରିବାପାଇଁ ପ୍ରତି ମୁହୂର୍ତ୍ତରେ ନିକଟରୁ ନିକଟତର ହେଉଛି ଏବଂ ଏହି ଆକ୍ରମଣକାରୀର ଅଗ୍ରଗତିରେ ବାଧା ଜନ୍ମାଉଥିବା ଏକମାତ୍ର ଲୋକକୁ ସେମାନେ ମାରିବାକୁ ପ୍ରସ୍ତୁତ । ନିଜ ଅଜାଣତରେ ଏମାନେ ସଂସାରଟାକୁ ଧ୍ୱଂସ ନିକଟକୁ ନେଉଛନ୍ତି ।

କୁଣ୍ଡଳା କ୍ରୋଧାନ୍ୱିତ ହୋଇ ନିଜକୁ ଅସହାୟ ମନେକଲା । ନୃତ୍ୟ କରୁଥିବା ଯୁବତୀମାନଙ୍କ ମଧ୍ୟରେ ସେ ସର୍ବାପେକ୍ଷା ଅଧିକ ଆକର୍ଷଣୀୟା ଏବଂ ତାର ଆକାଙ୍‌କ୍ଷା ଅତି ଉଚ୍ଚ । ନୂତନ ଗୁରୁଦେବଙ୍କର ପ୍ରେୟସୀ ହିସାବରେ ସେ ଯେ ଦିନେ ମନ୍ଦିରରେ ସର୍ବଶ୍ରେଷ୍ଠ ଆସନ ଲାଭ କରିବ,ଏହା ତାର ଆକାଙ୍‌କ୍ଷା । ପ୍ରତି ତିନିମାସରେ ଥରେ ଅନୁଷ୍ଠିତହେଉଥିବା ଉତ୍ସବରେ ମହାଶକ୍ତି ତା ଶରୀରରେ ଆଶ୍ରୟ ନେବା ଏବଂ ତାକୁ ଜୀବନ୍ତ ତ୍ରିପୁରସୁନ୍ଦରୀ ଭାବି ପୂଜା କରାଯାଉଥିବା ସେ ବାରମ୍ବାର ସ୍ୱପ୍ନ ଦେଖିଛି । କିନ୍ତୁ ଗଲା ବର୍ଷେ ହେଲା ଅନ୍ତତଃ, ଠାକୁରାଣୀ ତା ମଧ୍ୟରେ ନିଜକୁ ପ୍ରକାଶ କରି ନାହାନ୍ତି । ଗତ ରାତିରେ ପ୍ରଥମ ଥର ପାଇଁ ସେ ଠାକୁରାଣୀଙ୍କୁ ସ୍ୱପ୍ନ ଦେଖିଥିଲା । ନିର୍ଦ୍ଦିଷ୍ଟ ଜାଗାରେ ଗୋଟିଏ ଲୋକ ଥିବାର ସେ ସ୍ୱପ୍ନରେ ଜାଣିଥିଲେ ସୁଦ୍ଧା ତାହା ମିଥ୍ୟାରେ ପରିଣତ ହୋଇଛି ।

କୁଣ୍ଡଳାର ଦ୍ୱିତୀୟ ଆକାଙ୍‌କ୍ଷା ଥିଲା ଶିବରାଶିଙ୍କୁ ଆପଣାର କରିବା । ସର୍ବଜ୍ଞଙ୍କର ମୁଖ୍ୟ ଶିଷ୍ୟ ହିସାବରେ ଶିବରାଶି ଦିନେ ନିଶ୍ଚୟ ଗୁରୁଦେବଙ୍କର ସ୍ଥାନ ଅଧିକାର କରିବେ ଏବଂ ସେ ଯେବେ କୁଣ୍ଡଳାକୁ ଭଲପାନ୍ତି ତାହାହେଲେ ତାର ସମ୍ମାନ ବଢ଼ିବ । ଶିବରାଶିଙ୍କୁ ଆକୃଷ୍ଟ କରିବା ବିଶେଷ କଷ୍ଟକର ନୁହେଁ, କିନ୍ତୁ ତାଙ୍କୁ ନିଜର କରିବା ଅସମ୍ଭବ । ଶିବରାଶିଙ୍କର ଯେ ଆତ୍ମସଂଯମ ନାହିଁ ଏହା ସତ୍ୟ । ମାତ୍ର ଦୁର୍ଭାଗ୍ୟବଶତଃ ସେ ଶୈଳୀର ପ୍ରେମରେ ପଡ଼ିଛନ୍ତି । ତେବେ ସୁଦ୍ଧା କୁଣ୍ଡଳାର କ୍ଷୀଣ ଆଶା ରହିଛି । ଯେବେ ଠାକୁରାଣୀଙ୍କର ଉତ୍ସବ ଦିନ ମହାଶକ୍ତି ତାହା ଦେହରେ ପ୍ରକାଶ ପାଆନ୍ତି, ତାହାହେଲେ ଶିବରାଶି ନିଶ୍ଚୟ ତାର ପୂଜା କରିବେ ଓ ତାଙ୍କ ମନ ଶୈଳୀକୁ ତ୍ୟାଗ କରି ତାହା ପ୍ରତି ଆକୃଷ୍ଟ ହେବ ।

ତ୍ରିପୁରସୁନ୍ଦରୀଙ୍କ ଉତ୍ସବ କିଛି ସାଧାରଣ କଥା ନୁହେଁ । ଠାକୁରାଣୀ ନିଜେ କୌଣସି କୌଣସି ଜୀବନ୍ତ ସ୍ତ୍ରୀ ଲୋକ ମାଧ୍ୟମରେ ପ୍ରକାଶ ପାଆନ୍ତି ଏବଂ ସେହି ସ୍ତ୍ରୀ ଲୋକକୁ ଶାସ୍ତ୍ରୀୟ ରୀତିରେ ପୂଜା କରାଯାଏ । ଉତ୍ସବ ଦିନ ନିକଟ ହୋଇ ଆସୁଥିବାରୁ କୁଣ୍ଡଳା ଅଧିକରୁ ଅଧିକ ମାତ୍ରାରେ ଅଧୈର୍ଯ୍ୟ ହୋଇ ଉଠିଲା । ଏ କଥା ଅବଶ୍ୟ ଠିକ୍ ଯେ ତାର ସ୍ୱପ୍ନ ମିଥ୍ୟାରେ ପରିଣତ ହୋଇଛି ଏବଂ ଜଣେ ରାଜପୁତ୍ର ମନ୍ଦିରରେ ପ୍ରବେଶ କରି ତାହା ଅପବିତ୍ର କରିଛି । କିନ୍ତୁ ଠାକୁରାଣୀ ମହାଶକ୍ତି ଦେହରେ ପ୍ରବେଶ କରିଥିଲେ ସେ ଯେପରି ବୋଧ କରୁଥାନ୍ତା,ତାହା ବୋଧ କରୁନାହିଁ । ତେବେ ଏଥର ମଧ୍ୟ କଣ ସେ ନିରାଶ ହେବ ? ସେ ଯଥେଷ୍ଟ ମଦ୍ୟ ପିଇଥିଲେ ସୁଦ୍ଧା ତାହା ଉପରେ ନିଶାର କୌଣସି ପ୍ରଭାବ ପଡ଼ିନାହିଁ । ଏହା ଦେଖି ସବୁ ସରିଗଲାବୋଲି ତାର ଦୃଢ଼ ଆଶଙ୍କାହେଲା ।

କୁଣ୍ଡଳା ମନ୍ଦିର ଭିତରକୁ ଯାଇଛି କି ନାହିଁ, ଯେଉଁ ଦୁଆର ବାଟେ ସେ ସାମନ୍ତଙ୍କୁ ଭିତରକୁ ଆଣିଥିଲା, ସେଠାରେ କେହି ଧକ୍‌କା ମାରୁଥିବାର ଶୁଣିଲା । ସେ ବୁଲିପଡ଼ି ଦେଖିଲା ଶିବରାଶି ଓ ସିଦ୍ଧେଶ୍ୱର ଭିତରକୁ ଆସୁଛନ୍ତି । ଠାକୁରାଣୀ ମହାମାୟାଙ୍କ ଉପରେ ସେ ଆଉ କେତେ ନିର୍ଭର କରିବ ? ସେ ତ ନିଜେ ମହାମାୟା ! ନିରାଶ ଅନୁଭବ କରି ସେ ନିଜ ହାତରେ ତାର ମୁଣ୍ଡକୁ ପିଟିଲା ଏବଂ ସାଧୁମାନେ ତାକୁ ହାତ ବଢ଼େଇ ଅଟକାଇବା ପୂର୍ବରୁ ଅଚେତ ହୋଇ ଭୂଇଁ ତଳେ ପଡ଼ିଗଲା । କୁଣ୍ଡଳା ମଧ୍ୟରେ ଠାକୁରାଣୀ ପ୍ରବେଶ କରୁଛନ୍ତି ବୋଲି ଭାବି ସାଧୁମାନେ ପାଟିକରି ତା ନିକଟକୁ ଗଲେ ।

ଶିବରାଶି ରାଗରେ ନିଜ ଗୋଡ଼ ତଳେ ବାଡ଼େଇଲେ । ତାଙ୍କ ଜୀବନରେ ଏଇ ପ୍ରଥମ ଥର ପାଇଁ ଗୁରୁଦେବଙ୍କ କଥା ମାନିବା ଅସମ୍ଭବ ମନେହେଉଥାଏ । ସେ ଦିନ ଗୁରୁଦେବ ଯାହା କଲେ, ତାହା ତାଙ୍କ ମନରେ ଗଭୀର ରେଖାପାତ କରିଥାଏ । ପାଶୁପତ ସଂପ୍ରଦାୟର ଲକୁଲେଶ ଉପସଂପ୍ରଦାୟର ଗୁରୁ ଏବଂ ପାଣ୍ଡିତ୍ୟ ଓ ପବିତ୍ରତା ପାଇଁ ସ୍ୱନାମଧନ୍ୟ ଗଙ୍ଗ ସର୍ବଜ୍ଞ ନିଜେ ସେଦିନ ବର୍ଜନୀୟ କର୍ମ କରି ପବିତ୍ରତା ନଷ୍ଟ କରିଛନ୍ତି । ସେ ଦିନ ସକାଳେ ଚୌଳ ମଧ୍ୟରେ ତ୍ରିପୁରସୁନ୍ଦରୀ ନିଜକୁ ପ୍ରକାଶ କରିଥିଲେ । ତେଣୁ ଏହି ଉତ୍ସବରେ ପୂଜିତ ହେବା ପାଇଁ ଚୌଳ ସବୁ ଦୃଷ୍ଟିରୁ ଯୋଗ୍ୟା । ତଥାପି ସେ ପୂଜିତ ହେବ ନାହିଁ ବୋଲି ଗଙ୍ଗ ସର୍ବଜ୍ଞ ଆଦେଶ ଦେଇଛନ୍ତି । ଏହା ସତ୍ୟ ଯେ, ଚୌଳ କମ୍ ବୟସ୍କା ଏବଂ ତାର ଅଭିଜ୍ଞତା ନାହିଁ । ତ୍ରିପୁରସୁନ୍ଦରୀଙ୍କୁ ଯେଉଁପରି ଭାବରେ ପୂଜା ହୁଏ, ତାକୁ ସେ ସବୁବେଳେ ଭୟ କରି ଆସିଛି । ଚୌଳ ପିଲା ଏବଂ ଉତ୍ସବରେ ଯୋଗ ଦେବାକୁ ତାର ଯୋଗ୍ୟତା ନାହିଁ ବୋଲି କହି ତାକୁ ମନ୍ଦିରକୁ ଆଣିବା ପାଇଁ ତା ମାଆ ଗଙ୍ଗା ବରାବର ପ୍ରତିରୋଧ କରି ଆସିଛି । ବର୍ତ୍ତମାନ ପ୍ରଭୁ ସୋମନାଥଙ୍କ ସମ୍ମୁଖରେ ନୃତ୍ୟ କରିବାର ଅଧିକାର ସେ ପାଇଥିବାରୁ ତାକୁ ଆଉ ପିଲା ବୋଲି କହି ହେବ ନାହିଁ ।

ତାହାଛଡ଼ା ଆଜି ମହାଶକ୍ତି ଦେବୀ ନିଜେ ତା ମାଧ୍ୟମରେ ନିଜକୁ ପ୍ରକାଶ କରିଛନ୍ତି, ଯେଉଁ ସୁଯୋଗ ପାଇଁ ମନ୍ଦିରର ପ୍ରତ୍ୟେକ ନର୍ତ୍ତକୀ ନିଜର ଜୀବନ ସୁଦ୍ଧା ଦେବାକୁ ପ୍ରସ୍ତୁତ । ଆଜି ସକାଳୁ ଚୌଳ ନିଜ ଉପରେ ତାହାର ସଂଯମ ହରାଇଛି ଏବଂ ପ୍ରଭୁ ଶଙ୍କରଙ୍କର ଅର୍ଦ୍ଧାଙ୍ଗିନୀ ପରି ବ୍ୟବହାର କରୁଛି । ତାହାର ଉପଯୁକ୍ତତା ସମ୍ପର୍କରେ ଆଉ କୌଣସି ସନ୍ଦେହ ନାହିଁ ଏବଂ

ଠାକୁରାଣୀ ତ୍ରିପୁରସୁନ୍ଦରୀଙ୍କ ପରି ତାହାର ଯେପରି ପୂଜା ହୁଏ ସେଥିପାଇଁ ଶିବରାଶି ତତ୍ପର ।

ଚୌଲର ବର୍ତ୍ତମାନ ବ୍ୟବହାର ଶିବରାଶି ବୁଝି ପାରୁ ନାହାନ୍ତି । ପ୍ରଭୁ ସୋମନାଥଙ୍କ ନିକଟରେ ନୃତ୍ୟ କରିବା ପରଠାରୁ ତାହାର ପୂର୍ବପୂର୍ ପରିବର୍ତ୍ତନ ହୋଇଯାଇଛି । ଶିବରାଶିଙ୍କର ତାହା ସମ୍ଭବତ ଯେତେବେଳେ ଦେଖା ହେଉଛି—ସତେ ଯେପରି ସେ ଏ ଦୁନିଆରେ ନାହିଁ—ଚୌଲକୁ ସେହିପରି ଚିନ୍ତାମଗ୍ନ ଥିବା ଶିବରାଶି ଦେଖୁଛନ୍ତି । ସତେ ଯେପରି ସେ କୌଣସି ଦୁଷ୍ପ୍ରାପ୍ୟ ବସ୍ତୁର ଅନୁସନ୍ଧାନରେ ଅଛି, ସେହିପରି ତା ଆଖିରୁ ଜଣା ପଡ଼ୁଛି । ସଂସାର ପ୍ରତି ପୂର୍ବ ବୈରାଗ୍ୟ ଆସିଥିବା ଭଳି ତାର କଥା ଏବଂ କାର୍ଯ୍ୟ ସଙ୍କେତ ଦେଉଛି ।

ଶିବରାଶିଙ୍କ ପକ୍ଷରେ ଚୌଲ ସହିତ ଏବେ ସାଧାରଣ ସମ୍ପର୍କ ରକ୍ଷା କରିବା ମଧ୍ୟ କଷ୍ଟକର ହୋଇପଡ଼ୁଛି । ଚୌଲକୁ ପାଇବା ଯେତେ କଷ୍ଟକର ବୋଧ ହେଉଥାଏ, ଶିବରାଶିଙ୍କର ତାହା ପ୍ରତି ଆକର୍ଷଣ ସେହି ପରିମାଣରେ ବଢ଼ୁଥାଏ । ଗଙ୍ଗା ମଧ୍ୟ ତାର ନିଜ ଝିଅକୁ ବୁଝି ପାରୁ ନାହିଁ । ଚୌଲ ଶିବରାଶିଙ୍କର ପ୍ରେୟସୀ ହେଉ ଏହା ଗଙ୍ଗାର ଇଚ୍ଛା ଥିଲା । କିନ୍ତୁ ଝିଅ ଯାହା ନ ଚାହୁଁଛି, ତାହା କରିବା ପାଇଁ ତାକୁ ବାଧ କରିବା ଅସମ୍ଭବ ବୋଲି ମଧ୍ୟ ସେ ବୁଝୁଛି । ଚୌଲର ଦୃଷ୍ଟିରେ କୌଣସି କାମ ଭାବ ନାହିଁ । ପ୍ରଭୁ ସୋମନାଥଙ୍କ ଆରାଧନାରେ ସେ ନିଜକୁ ଭୁଲିଯାଇଛି ।

ଚୌଲକୁ ପ୍ରଭୁଙ୍କର ଅର୍ଦ୍ଧାଙ୍ଗିନୀ ରୂପେ ଯେତେବେଳେ ପୂଜା କରାଯିବ ସେତେବେଳେ ଚୌଲ ଓ ତାର ଦୁନିଆ ମଧ୍ୟରେ ଉଠିଥିବା ପାଚେରୀ ଭୂଷୁଡ଼ି ପଡ଼ିବ—ଏହି କଳ୍ପିତ ଆଶା ନେଇ ଶିବରାଶି ଗତ ଦୁଇଦିନ କାଟିଥାନ୍ତି । କିନ୍ତୁ ଚୌଲକୁ ପୂଜା କରାଯିବ ନାହିଁ ବୋଲି ଯେତେବେଳେ ପରମ୍ପରାର ବ୍ୟତିକ୍ରମ କରି ଗୁରୁଦେବ ଦୃଢ଼ ନିଷ୍ପତ୍ତି କଲେ, ଶିବରାଶିଙ୍କର ଏହି ଆଶା ଧୂଳିସାତ୍ ହେଲା ।

ଶିବରାଶି ଥିଲେ ଜଣେ ଭକ୍ତ ତଥା ଧାର୍ମିକ ବ୍ୟକ୍ତି । ଗୁରୁଦେବଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତି ଥିଲା, କିନ୍ତୁ ଗୁରୁଦେବଙ୍କର ଧାର୍ମିକ ପରମ୍ପରାରୁ ବିଚ୍ୟୁତି ସେ ଭୁଲି ପାରିଲେ ନାହିଁ । ତାଙ୍କ ମଧ୍ୟରେ ଧର୍ମାନ୍ଧତା ଦେଖା ଦେଲା ଏବଂ ଏହି ନୈରାଶ୍ୟ ଠିକ୍ ନିଆଁରେ ଘିଅ ପକାଇଲା ପରି କାର୍ଯ୍ୟ କଲା ।

ସେ ମନ୍ଦିରକୁ ଆସିଲା ବେଳକୁ ତାଙ୍କ ମନରେ ଏଭଳି ଭାବ କାର୍ଯ୍ୟ କରୁଥିଲା । ଦେବୀଙ୍କୁ ପୂଜା କରିବାର ଯେଉଁ ପରମ୍ପରା ଚାଲିଆସୁଛି, ତାକୁ ଭାଙ୍ଗିବା ପାଇଁ ଗୁରୁଙ୍କର କ ଅଧିକାର ଅଛି ? ସେ ହେଉଛନ୍ତି ଧର୍ମର ରକ୍ଷା କର୍ତ୍ତା । ତାଙ୍କର ଧର୍ମ ନଷ୍ଟ କରିବାର କ ଅଧିକାର ଅଛି ? ଶିବରାଣୀଙ୍କ ପକ୍ଷରେ ଗୁରୁଙ୍କର ଏପରି ଅନ୍ୟାୟ କାର୍ଯ୍ୟର ପ୍ରତିବାଦ ନ କରି ଚୁପ୍ ରହିବା କଣ ଠିକ ହେବ ? ତେବେ ଆବହମାନ କାଳରୁ ଚାଲି ଆସୁଥିବା ମହାନ୍ ଶାସ୍ତ୍ରମାନ କଣ ଭୁଲ ଓ ଗୁରୁଦେବ ଯାହା କହୁଛନ୍ତି ତାହା ଠିକ୍ ? ମନ୍ଦିରର ଶ୍ରେଷ୍ଠ ସେବକ ଭାବେ ତାଙ୍କର କଣ କୌଣସି କର୍ତ୍ତବ୍ୟ ନାହିଁ ?

ଶିବରାଣୀଙ୍କୁ ଦେଖି ସାଧୁମାନେ ଅଚେତ ପରି ଅବସ୍ଥାରେ ଥିବା କୁଣ୍ଡଳାକୁ ଆଣିଲେ । ଜଣେ ସାଧୁ କହିଲା, "ଆଚାର୍ଯ୍ୟ ! ଠାକୁରାଣୀ ମହାମାୟା କୁଣ୍ଡଳା ଶରୀରରେ ପ୍ରବେଶ କରିଛନ୍ତି ।"

କ୍ରୋଧାନ୍ୱିତ ବ୍ୟାଘ୍ରପରି ଗର୍ଜନ କରି ଶିବରାଣୀ କହିଲେ, "ତାକୁ ତଳେ ରଖ । ସେ ବାହାନା କରୁଛି । ମହାମାୟା ଚୋରି ଶରୀରରେ ପ୍ରବେଶ କରିଛନ୍ତି ।"

ସାଧୁମାନେ ଆଶ୍ଚର୍ଯ୍ୟ ହୋଇ କୁଣ୍ଡଳାକୁ ତଳେ ପକାଇ ଦେଲେ । ଶିବରାଣୀ ମଧ୍ୟ ନିଜର ରାଗ କାହା ଉପରେ ସାରିବାକୁ ଚାହୁଁଥିଲେ । ନିଜ ଗୋଡ଼ରେ କୁଣ୍ଡଳାକୁ ହଲାଇ ଦେଇ ସେ ହୁକୁମ୍ ଦେଲେ, "ଉଠ୍; ଯେବେ ତୁ ନ ଉଠୁ ତାହାହେଲେ ମୁଁ ତୋର ବଷ ଝାଡ଼ି ଦେବି ।"

ଶିବରାଣୀଙ୍କର ରାଗରେ ଡରିଯାଇ କୁଣ୍ଡଳା ତଳୁ ଉଠି କହିଲା, "ଜଗନ୍ମାତାଙ୍କର ଜୟ ହେଉ !"

ଶିବରାଣି କହିଲେ, "ସେ କେବଳ ବାହାନା କରୁଛି ବୋଲି ମୁଁ କହୁ ନ ଥିଲି ? ମୁଁ ଜାଣେ ଜଗଦ୍ଧାତ୍ରୀ ଚୋରି ଶରୀରରେ ପ୍ରବେଶ କରିଛନ୍ତି ।" ସାଧୁମାନେ କୁଣ୍ଡଳାକୁ ଛାଡ଼ି ଶିବରାଣୀଙ୍କ ନିକଟକୁ ଗଲେ । ତାର ଶେଷ ଉଦ୍ୟମ ବିଫଳ ହୋଇଛି ବୋଲି କୁଣ୍ଡଳା ବୁଝିଲା । ସେ ବସିପଡ଼ି ଆଶ୍ଚର୍ଯ୍ୟ ହୋଇ ଏଣେ ତେଣେ ନିରାଶ ଭାବରେ ଅନାଇଲା । ତାହାର ସେ ଅସହାୟ ଅବସ୍ଥା ଦେଖି ଖୁଣ୍ଟରେ ବନ୍ଧା ହୋଇଥିବା ସାମନ୍ତ ବି ନହସି ରହିପାରିଲେ ନାହିଁ ।

# ଚୌଲାର ପ୍ରଭୁ ଅନ୍ୱେଷଣ

ଠିକ୍ ଏହି ସମୟରେ ପ୍ରାୟ ନଅ ବାର ଜଣରୁ ଅଧିକ ସାଧୁ ଆସି ପହଞ୍ଚିଲେ । ସେମାନଙ୍କ ଆଖି ଓ ମୁହଁରେ ଜ୍ୱଳନ୍ତ କ୍ରୋଧର ଚିହ୍ନ । ଜଣେ ବୁଢ଼ା ସାଧୁ କହିଲା, "ରାଣିଜୀ, ଏ କଣ ହେଉଛି ? ଆବହମାନ କାଳରୁ ମହାମାୟାଙ୍କ ନିକଟରେ ଯେଉଁ ପୂଜା ଓ ଆରାଧନା ହୋଇ ଆସିଛି ତାକୁ ବନ୍ଦ କରିବା ବିଷୟ ଆପଣ କପରି ଭାବୁଛନ୍ତି ? ଏ ସଂସାର ଧ୍ୱଂସ ହେବା କଣ ଆପଣ ଚାହାନ୍ତି ?"

ସାଧୁମାନେ ଏପରି ଚିତ୍କାର କରୁଥିବା ସମୟରେ ଦୁଆରର ଅନ୍ୟ ପାଖରେ କେତେକ ଲୋକ ଯାଉଥିବାର ସାମନ୍ତ ଦେଖିଲେ । ତାଙ୍କ ଆଗରେ ଏକ ନାଟକ ହେଉଛି ବା ସେ ସ୍ୱପ୍ନ ଦେଖୁଛନ୍ତି ବୋଲି ଭାବିଲେ ।

ଏହା ମଧ୍ୟରେ ଶିବରାଣିଙ୍କର କ୍ରୋଧ ବଢ଼ୁଥାଏ । ସେ କହିଲେ, "ଏହାହିଁ ମୁଁ କହି ଆସୁଛି । କୁଣ୍ଡଳା ଗୋଟାଏ ଧୋକାବାଜ୍ । ମହାମାୟା ତା ଦେହରେ ପ୍ରବେଶ ନକରି ପ୍ରବେଶ କରିଛନ୍ତି ଚୌଲ ଦେହରେ । କିନ୍ତୁ ଗୁରୁଦେବ ଚୌଲର ପୂଜା କରିବାକୁ ବାରଣ କରିଛନ୍ତି ।"

କିଛି କ୍ଷଣ ନୀରବରେ କଟିଲା । ଶିବରାଣିଙ୍କ କଥାର ପୂରା ମର୍ମ ବୁଝିବାକୁ ସମସ୍ତେ ଚେଷ୍ଟା କରୁଥାନ୍ତି । ସାଧୁମାନଙ୍କ ମଧ୍ୟରେ ଥିବା ସବୁଠାରୁ ବୟସ୍କ ସାଧୁ ଆଖିରେ କ୍ରୋଧର ଚିହ୍ନ ପ୍ରକାଶ କରି କହିଲା, "ଆଜି ପରି ଦିନରେ ଠାକୁରାଣୀ ତ୍ରିପୁରସୁନ୍ଦରୀଙ୍କୁ ଅପୂଜା ରଖିବାକୁ କିଏ ସାହସ କରୁଛି ? ଯେ ଏପରି କରିପାରେ ସେ ଗୁରୁ ହେବାକୁ ଯୋଗ୍ୟ ନୁହେଁ ।"

ସିଦ୍ଧେଶ୍ୱର ଅର୍ଥ ବୁଝିବା ପରି ଭାବ ପ୍ରକାଶ କରି କହିଲା, "ଆପଣ କହୁଥିବା କଥା ଠିକ୍ ।" ସେ ଶିବରାଣିଙ୍କୁ ଅନାଇ ତାଙ୍କ ମନରେ ଦେଖା ଦେଇଥିବା ଦ୍ୱନ୍ଦ ଭଲ ରକମ ବୁଝି ପାରିଲା । ସେ ପୁଣି କହିଲା, "ଶିବରାଣି କଣ ବା କରିବେ ? ଏକ ଦିଗରେ ଗୁରୁଙ୍କ ପ୍ରତି ଭକ୍ତି ଓ ଅନ୍ୟ ଦିଗରେ ପବିତ୍ର ପରମ୍ପରା ଓ ଚୌଲ ପ୍ରତି ପ୍ରେମ, ଏହି ଉଭୟ ସମସ୍ୟା ଭିତରେ ତାଙ୍କୁ ନିଷ୍ପତ୍ତି କରିବାକୁ ପଡ଼ିବ ।"

ବୃଦ୍ଧ ହାତ ଯୋଡ଼ ପୁଣି କହିଲା, "ରାଣୀଜୀ, ଆପଣ ଯେବେ ମଠ ରକ୍ଷା ନ କରିବେ, ଆଉ କିଏ ରକ୍ଷା କରିବ ? ଆବହମାନ କାଳରୁ ଚଳି ଆସୁଥିବା ମଠରେ କୌଣସି ପ୍ରକାର ବାଧା ଦେଖା ଦେବା ମୋ ପକ୍ଷରେ ଅସହ୍ୟ !"

ସିଦ୍ଧେଶ୍ୱର ଆସ୍ତେ ଆସ୍ତେ କହିଲା, "ମହାମାୟା ତ୍ରିପୁରସୁନ୍ଦରୀଙ୍କୁ ପୂଜା କରିବାକୁ ହିଁ ହେବ ।" ସର୍ବଙ୍କୁ ବିଦାକରି ତାଙ୍କ ସ୍ଥାନରେ ଶିବରାଣୀଙ୍କୁ ଅଭିଷିକ୍ତ କରିବା ନିମନ୍ତେ ଏହା ପ୍ରକୃଷ୍ଟ ସମୟ ବୋଲି ସେ ଜାଣିଥିଲା । ତେଣୁ ସାଧୁ-ମାନଙ୍କ ସମର୍ଥନ ପାଇବା ନିତାନ୍ତ ଦରକାର ବୋଲି ସେ ବୁଝିଥିଲା ।

ଶେଷରେ ଶିବରାଣି ନିଜର ମନ ସ୍ଥିର କରି କହିଲେ, "ଦେବୀ ମହାଶକ୍ତିଙ୍କୁ ଅପୂଜା ରଖା ଯାଇ ନପାରେ । ସିଦ୍ଧେଶ୍ୱର, ମୋ ସହିତ ଆସ । ଆମେ ଚୌଲକୁ ଆଣିବା ।" ଏହା ଶୁଣି "ତ୍ରିପୁରସୁନ୍ଦରୀଙ୍କର ଜୟ" ବୋଲି ସାଧୁମାନେ ଆନନ୍ଦ ଧ୍ୱନି ଦେଲେ । ସାମନ୍ତଙ୍କର ଦେହ ଓ ମନ ଉପରେ ଏ ନିଷ୍ପତ୍ତିର ପ୍ରତିକ୍ରିୟା ଦେଖାଦେଲା । ପୁଣି ଥରେ ଚୌଲକୁ ଦେଖିବେ ବୋଲି ଭାବି ତାଙ୍କର ଶରୀର ଉତ୍ତେଜନାରେ ଥରିଲା । ସେ ନିଜର ବନ୍ଧନକୁ ପରୀକ୍ଷା କରି ଦେଖିଲେ ତାହା ବଳପ୍ରୟୋଗରେ ଖୋଲିବା ଅସମ୍ଭବ । ତେଣୁ ଏକ ଦୀର୍ଘ ନିଶ୍ୱାସ ପକାଇ ଯେଉଁ ଦ୍ୱାର ବାଟେ ଚୌଲ ଆସିବାର କଥା ସେହି ଦିଗକୁ ସାମନ୍ତ ଏକ ଦୃଷ୍ଟିରେ ଚାହିଁ ରହିଲେ । ନିଜର ପରିବାର ଧ୍ୱଂସ ହେବା ସେ ଆଖିରେ ଦେଖିଛନ୍ତି । ଯେବେ କୌଣସି ଆକର୍ଷଣ ତାଙ୍କୁ ବଞ୍ଚାଇ ରଖିଥାଏ ତାହା ହେଉଛି ତାଙ୍କର ସ୍ୱପ୍ନର ଦେବୀ ଚୌଲ ଏବଂ ତାକୁ ମଧ୍ୟ କଳୁଷିତ ରୂପେ ଦେଖିବା ତାଙ୍କ ଭାଗ୍ୟରେ ଅଛି ! ଏହି କଥା ଭାବି ସାମନ୍ତଙ୍କର ମୁଣ୍ଡ ବୁଲେଇଗଲା ।

× × × ×

ଚୌଲ ଅର୍ଦ୍ଧ ମୂର୍ଚ୍ଛିତ ଅବସ୍ଥାରେ ଥାଏ । ତାର ଚକ୍ଷୁ ନିମିଳିତ, ମୁଖରେ ଉଦ୍‌ବେଗର ଭାବ । ଦରଫୁଟା ଗୋଲାପୀ ରଙ୍ଗର ଓଠରେ ସେ ଧୀରେ ଧୀରେ "ମୋର ପ୍ରଭୁ ଶମ୍ଭୁ, ମୋର ନାଥ" ବୋଲି କହୁଥିବା ଶୁଣାଯାଉଥାଏ । ଆଜି କ୍ଷଣକ୍ଷଣକେ ସେ ମୂର୍ଚ୍ଛିତ ହୋଇ ଯାଉଛି । ସେତେବେଳେ ତାର କଳ୍ପନା ଚକ୍ଷୁରେ ସେ ଦେଖୁଛି, ସେ ନିଜେ ପ୍ରଭୁଙ୍କର ଅର୍ଦ୍ଧାଙ୍ଗିନୀ ପାର୍ବତୀ ଓ ତାର ଆବାସ ସ୍ଥଳ କୈଳାସ ପର୍ବତ ।

ତାର ମା ଗଙ୍ଗା ଉଦ୍‌ବିଗ୍ନ ମନରେ ପାଖରେ ବସିଥାଏ । ଚୌଲ ପାଗଳୀ ହୋଇ ଗଲାଣି ବୋଲି ସେ ପ୍ରଥମେ ଭାବୁଥିଲା । କିନ୍ତୁ ତାହା ଠାରେ ପାଗଳାମୀର କୌଣସି ଲକ୍ଷଣ ନାହିଁ ବୋଲି ସର୍ବଜ୍ଞ ତାକୁ ନିର୍ଭର ପ୍ରତିଶ୍ରୁତି

ଦେଇଛନ୍ତି । ସେ (ଚୌଳା) ନିଜକୁ ଭଗବାନଙ୍କ ନିକଟରେ ପୂର୍ଣ୍ଣ ମାତ୍ରାରେ ସମର୍ପଣ କରିଛି ।

ଶିବରାଶି ଏବଂ ସିଦ୍ଧେଶ୍ୱର ହଠାତ୍ ଆସି ପହଞ୍ଚିବା ଦେଖି ଗଙ୍ଗା ଆଶ୍ଚର୍ଯ୍ୟ ହୋଇଗଲା । ଦୁହେଁ ଅତ୍ୟନ୍ତ ବ୍ୟଗ୍ର ଓ ଉତ୍ତେଜିତ ଥିବା ଜଣାପଡ଼ୁଥାଏ ।

ଗଙ୍ଗା ଭୟଭୀତା ହୋଇ ପଚାରିଲା, "କଣ ହୋଇଛି ?" ଶିବରାଶି କୌଣସି ଉତ୍ତର ଦେବା ପୂର୍ବରୁ ଦୂରରୁ ଶଙ୍ଖଧ୍ୱନି ଶୁଭିଲା । ଏହି ଶବ୍ଦ ଶୁଣିଲା ମାତ୍ରେ ଚୌଳା ବସି ପଡ଼ି ଗୁରୁପାଖକୁ ଅନାଇ କହିଲା, "ମାଆ, ମୋର ପ୍ରଭୁ ମୋତେ ଡ଼ାକୁଛନ୍ତି । ତାଙ୍କ ନିକଟକୁ ମୋତେ ନେଇ ଯା । ପ୍ରଭୁ, ବର୍ତ୍ତମାନ ମୁଁ ଯାଉଛି ନାଥ !"

ଶିବରାଶି ହସିଲେ । ଚୌଳାର ଶରୀରରେ ଯେ ଦେବୀ ମହାମାୟା ପ୍ରକୃତରେ ପ୍ରବେଶ କରିଛନ୍ତି ଏଥିରେ ସେ ନିଶ୍ଚିତ ହେଲେ । ଯେଉଁ ସୁଯୋଗ ପାଇଁ ସେ ଅପେକ୍ଷା କରି ରହିଥିଲେ ତାହା ବର୍ତ୍ତମାନ ପହଞ୍ଚିଛି ।

ସେ କହିଲେ, "ଚୌଳା, ହଁ, ତୋତେ ପ୍ରଭୁ ସୋମନାଥ ଡ଼ାକୁଛନ୍ତି । ମୁଁ ତୋତେ ନେବାପାଇଁ ଆସିଛି ।"

ଚୌଳା ଚରଚର ହୋଇ ଉଠିପଡ଼ି ଅଭିସାରିକା ଭଙ୍ଗିରେ ତାଙ୍କ ନିକଟକୁ ଆସି କହିଲା, "ରାଶିଜି, ଆପଣ କଣ ସତ କହୁଛନ୍ତି ? ମୋତେ ତାଙ୍କ ନିକଟକୁ ନିଅନ୍ତୁ । ମୋର ସ୍ୱାମୀ ଦେବତା ପ୍ରଭୁ ଶମ୍ଭୁଙ୍କୁ ମୋତେ ଦେଖାନ୍ତୁ" । ତାର ଅର୍ଦ୍ଧସ୍ଫୁଟ ଅଧରରୁ ମିଳନ ଲାଳସା ପ୍ରକାଶ ପାଉଥିଲା । ଶିବରାଶି ଚୌଳାର କାନ୍ଧ ଉପରେ ହାତ ପକାଇ ତାକୁ ଦ୍ୱାରଆଡ଼କୁ ନେଲେ ।

ଗଙ୍ଗା ପଚାରିଲା, "ରାଶିଜି, କଣ କରୁଛନ୍ତି ? ଚୌଳାକୁ କୁଆଡ଼େ ନେଉଛନ୍ତି ?"

ଶିବରାଶି ଆଦେଶ ଦେଲେ "ସିଦ୍ଧେଶ୍ୱର, ଗଙ୍ଗାକୁ ଏଠାରେ ରଖ । ତାକୁ ମନ୍ଦିରକୁ ନେବାର କୌଣସି ଆବଶ୍ୟକତା ନାହିଁ ।" ସିଦ୍ଧେଶ୍ୱର ଗଙ୍ଗାକୁ ଘର ଭିତରେ ରଖି ବାହାରୁ ଶିକୁଳି ବନ୍ଦ କଲା ।

ମନ୍ଦିରର ଗୁପ୍ତ ଦ୍ୱାର ଦେଇ ଚୌଳା ଆସିବା ଦେଖି ସାମନ୍ତ ଆଶ୍ଚର୍ଯ୍ୟ ହୋଇଗଲେ । ସାମନ୍ତ ଭାବିଥିଲେ ଶିବରାଶି ବଳପ୍ରୟୋଗ କରି ଚୌଳାକୁ ଆଣିବେ ଏବଂ ସେ ଆସିବାକୁ ରାଜି ହେଉ ନଥିବ । ତାହା ପରିବର୍ତ୍ତେ ଗୋଟିଏ ନବ ଯୁବତୀ ଏକ ପ୍ରେମିକାର ଆନନ୍ଦ ଉଲ୍ଲାସ ଅନୁଭବ କରି ଉତ୍କଣ୍ଠିତ ଆବେଗରେ

ଆସୁଥିବା ସେ ଦେଖିବାକୁ ପାଇଲେ । ତାର ଆଖି ଦୁଇଟିରେ ଉତ୍କଣ୍ଠା ପ୍ରଶ୍ନ ରହିଥିଲା ଓ ବନ୍ଦ ହୋଇ ରହିଥିବା ଓଠରେ ବ୍ୟାକୁଳତା ପ୍ରକାଶ ପାଉଥିଲା । ତାର ପାଦରେ ହରିଣୀର ଚଞ୍ଚଳତା । ସରୋବରରେ ବାୟୁ ସଂଚାଳିତ ପଦ୍ମ ଫୁଲ ପରି ସେ ଝୁଲି ଝୁଲି ଆସୁଥାଏ ଓ ତାର ମୁହଁରେ ପ୍ରେମର ଲହରୀ ଖେଳୁଥିଲା ପରି ବୋଧହେଉଥାଏ । ସାମନ୍ତ ଗତ ଥର ଦେଖିଥିବା ଅପେକ୍ଷା ଚୌଲ ହଜାରଗୁଣ ଅଧିକ ସୁନ୍ଦର ଓ ଆକର୍ଷଣୀୟ ଦେଖାଯାଉଛି । ଏହି ଦିବ୍ୟ ସୌନ୍ଦର୍ଯ୍ୟ ଦର୍ଶନରେ ସାମନ୍ତ କ୍ଷଣକ ପାଇଁ ନିଜକୁ ଭୁଲିଗଲେ । ସେ କେଉଁଠାରେ ଓ କିପରି ଅବସ୍ଥାରେ ଅଛନ୍ତି ତାହା ବୁଝି ପାରିଲେ ନାହିଁ ।

ଶିବ ଆଡ଼କୁ ଅନାଇ ଚୌଲ ପଚାରିଲା, "ମୋର ପ୍ରଭୁ ଶମ୍ଭୁ ଏ ମନ୍ଦିରରେ ଅଛନ୍ତି ?" ତାହାର ଆଖି ଉଜ୍ଜ୍ୱଳ ଦେଖାଯାଉଥିଲେ ସୁଦ୍ଧା ସେ ତା' ନିକଟରେ ଥିବା ଜନଗହଳି କାହାକୁ ଚିହ୍ନି ପାରୁ ନଥିଲା ।

ଶିବରାଶି ଉତ୍ତର ଦେଲେ, "ହଁ, ତୋ ପାଇଁ ସେ ଅପେକ୍ଷା କରିଛନ୍ତି ।"

ସାକ୍ଷାତ୍ ତ୍ରିପୁରସୁନ୍ଦରୀ ଆସୁଥିବା ଦେଖି ମନ୍ଦିର କାନ୍ଥକୁ ଆଉଜି ମସାଲ ଧରି ଠିଆହୋଇଥିବା ସାଧୁମାନଙ୍କର ଆଖି ବୁଜି ହୋଇଗଲା ଏବଂ ସେମାନେ ସ୍ତୁତି ମାନ ଉଚ୍ଚାରଣ କଲେ । ଭିତର ମନ୍ଦିରର ଦ୍ୱାରଦେଶରେ ଚୌଲ ପ୍ରବେଶ କଲା—ଯେପରି ଗୋଟିଏ ଉଜ୍ଜ୍ୱଳ ଆଲୋକ ଶିଖା ଜଳିବା ପରେ ପରେ ଉଭେଇ ଗଲା । ଶିବରାଶି ଏବଂ ସାଧୁମାନେ ତା ପଛେ ପଛେ ଗଲେ । ମୁହୂର୍ତ୍ତକ ପାଇଁ ପ୍ରଭୁ ଶିବଙ୍କ ପ୍ରତି ଭକ୍ତି ସେମାନଙ୍କ ମନର ମଳିନତାକୁ ଧୋଇଦେଇଥିଲା ।

ଚୌଲ ଅଧୀର ହୋଇ ମନ୍ଦିର ଗର୍ଭର ଭିତରେ ପ୍ରବେଶ କଲା । ତାକୁ ପୂଜା କରିବା ପାଇଁ ଅନ୍ଧାରରେ ଉତ୍କଣ୍ଠାର ସହିତ ଅପେକ୍ଷା କରି ରହିଥିବା ସ୍ତ୍ରୀ ପୁରୁଷମାନଙ୍କୁ ସେ ଦେଖି ପାରିଲା ନାହିଁ । ତାର ବେଶ ମହାମାୟାଙ୍କ ପୂଜାବିଧିର ଅନୁକୂଳ ନ ଥିଲା ବା ତା ଦେହରେ ଉଚିତ ଲେପନ ଦିଆ ଯାଇ ନଥିଲା । ଆବଶ୍ୟକୀୟ ମନ୍ତ୍ରରେ ପବିତ୍ର କରାଯାଇଥିବା ପ୍ରପାନ ମଧ୍ୟ ସେ ପିଇ ନଥିଲା । ଚୌଲକୁ ଯେ ପୂଜା ଗ୍ରହଣ କରିବା ପାଇଁ ପ୍ରସ୍ତୁତ ହେବାକୁ ହେବ, ଏ ବିଷୟ ତାକୁ କେହି ଆଗରୁ କହି ନଥିଲେ । ଶକ୍ତିମୟୀ ତ୍ରିପୁର-ସୁନ୍ଦରୀ ନିଜ ପ୍ରେମ ଯୋଗୁ ପ୍ରଭୁ ଶଙ୍କରଙ୍କୁ ଦେଖା କରିବାକୁ ଦ୍ରୁତ ବେଗରେ

ଯାଉଥିବାହିଁ ଅନ୍ୟମାନେ ମନେକଲେ । ମନ୍ଦିରର ବୃଦ୍ଧ ପୂଜାରୀ ବହୁ ବର୍ଷ ଧରି ଦେଖିଆସିଛି ତିନି ମାସରେ ଥରେ ତ୍ରିପୁରସୁନ୍ଦରୀ ଜଣେ ସ୍ତ୍ରୀ ଲୋକ ଶରୀରରେ ପ୍ରବେଶ କରନ୍ତି । କିନ୍ତୁ ତାହାର ଏଭଳି ଅଭିଜ୍ଞତା କେବେହେଲେ ହୋଇ ନଥିଲା । ଆଜିକାର ଘଟଣା ତାକୁ ମଧ୍ୟ ଆଶ୍ଚର୍ଯ୍ୟ କରି ଦେଇଛି । "ମହାମାୟାଙ୍କର ଜୟ ହେଉ" କେବଳ ଏତିକ ଉଚ୍ଚାରଣ କରିବା ଛଡ଼ା ସେ ଅନ୍ୟ କୌଣସି ପ୍ରକାର ବନ୍ଦନା କରି ପାରିଲା ନାହିଁ ।

ଏହି ଅବସ୍ଥାର ପୂରା ସୁଯୋଗ ନେବା ପାଇଁ ଶିବରାଶି ପ୍ରସ୍ତୁତ ଥିଲେ । ପ୍ରଭୁ ଶଙ୍କରଙ୍କୁ ଯେପରି ଆରାଧନା କରିବାର କଥା ସେ ଗୁରୁ ଗଙ୍ଗ ସର୍ବଜ୍ଞଙ୍କୁ ସେହିପରି ଆରାଧନା କରିଆସିଛନ୍ତି । ତା ହେଲେ ଚୌଲା କାହିଁକି ଶିବରାଶିଙ୍କୁ ସେହିପରି ଆରାଧନା ନ କରିବ ? ଶିବରାଶି ଯାଇ ଗର୍ଭଗୃହ ଦ୍ୱାର ଦେଶରେ ଠିଆହେଲେ ଓ ସଜ୍ଞାନ ବା ଅଜ୍ଞାନରେ ଗୋଟିଏ ତ୍ରିଶୂଳ ଧରି ବୁଲାଇବାକୁ ଲାଗିଲେ । ଚୌଲା ଦ୍ରୁତ ଗତିରେ ଆସି ଆଗରେ ଠିଆ ହୋଇଥିବା ଶିବରାଶିଙ୍କୁ ଅଧୀର ହୋଇ ପଚାରିଲା, "ଶିବରାଶି, ମୋର ପ୍ରଭୁ କାହାନ୍ତି ?"

ଶିବରାଶି ହାତ ମେଲାଇ ଦେଇ ସେ ନିଜେ ପ୍ରଭୁ ଶମ୍ଭୁଙ୍କ ପ୍ରତିନିଧି ରୂପେ କହିଲେ, "ଏଇତ !" କିନ୍ତୁ ତାଙ୍କ କଥା ଚୌଲା ବୁଝି ପାରିଲା ନାହିଁ । ସେ ଶିବରାଶିଙ୍କୁ ଅତିକ୍ରମ କରି ମନ୍ଦିର ଭିତରକୁ ଗଲା । "ହେ ମୋର ପ୍ରଭୁ; ମୁଁ ଆସିଛି ସ୍ୱାମୀ !" କହି ମନ୍ଦିରରେ ଥିବା ଶଙ୍କରଙ୍କର ଲିଙ୍ଗକୁ କୁଣ୍ଢାଇ ପ୍ରେମ ପ୍ରକାଶ କରିବାରେ ଲାଗିଲା । ମନ୍ଦିରର ଦ୍ୱାର ଦେଶରେ ଥିବା ନରନାରୀ ମାନେ ଏହି ଅଦ୍ଭୁତ ଆଧ୍ୟାତ୍ମିକ ପ୍ରେମ ଦେଖୁଥିଲେ ।

ସଙ୍ଗେ ସଙ୍ଗେ ଚୌଲା ଅଜ୍ଞାନ ହୋଇ ପଡ଼ିଗଲା । ସେ ଆବଶ୍ୟକୀୟ ବିଧି ନକରି ପବିତ୍ର ଲିଙ୍ଗ ଛୁଇଁଛି ବୋଲି ଭକ୍ତମାନେ ଭାବିଲେ । ସେ ମହାମାୟାଙ୍କର ପୂଜା କରିନାହିଁ । ତ୍ରିପୁରସୁନ୍ଦରୀଙ୍କ ଆରାଧନାର ବିଧିବିଧାନ କରାଯାଇ ନାହିଁ । ମୁହୂର୍ତ୍ତକ ପାଇଁ ପବିତ୍ର ଆଧ୍ୟାତ୍ମିକତା ବଳରେ ଚୌଲା ସମସ୍ତଙ୍କର ବିଭିନ୍ନ ପ୍ରେମକୁ ଦୂରକରିଦେଇଥିଲା । କିନ୍ତୁ କିଛି କ୍ଷଣ ପରେ ସେହି ଶୁଦ୍ଧ ପୂତ ଭକ୍ତିର ପ୍ରହେଳିକା ଉଭେଇ ଗଲା ଓ ତା ସଙ୍ଗେ ସଙ୍ଗେ ନୂତନ ଶାନ୍ତି ପ୍ରତି କାତର ଦୃଷ୍ଟିରେ ଭକ୍ତମାନେ ଗୁହାଁ ଗୁହିଁ ହେଲେ । ଶିବରାଶି ନିଜ ଗୁରୁଙ୍କୁ ଅବଜ୍ଞା କରି ସୁଦ୍ଧା ନିଜ ଲକ୍ଷ୍ୟ ଲାଭ କରି ପାରିଲେ ନାହିଁ । ବର୍ତ୍ତମାନ ସେ କଣ କରିବେ ବୁଝି ପାରୁ ନାହାନ୍ତି । ପୂଜା ବିଧି

ପୂର୍ଣ୍ଣ କରିବାକୁ ହେବ ବୋଲି ସାଧୁମାନେ ଜିଦ୍ କଲେ । ମହାମାୟୀଙ୍କ ମନ୍ଦିରକୁ ଅପବିତ୍ର କରି ଛାଡ଼ି ଦିଆ ଯାଇ ପାରିବ ନାହିଁ ।

କୁଣ୍ଡଳୀର ସ୍ୱର ଶୁଣାଗଲା, "ଜଗଦମ୍ବା ଏଭଳି ଆସନ୍ତି ନାହିଁ । ଚୌଲିର ଏ ଗୋଟିଏ ଛଳନା ।"

ଅଜ୍ଞାନ ହୋଇ ପଡ଼ିଥିବା ଚୌଲିକୁ ନେଇ ମହାମାୟୀଙ୍କର ବାକି ଥିବା ପୂଜା ବିଧି ଶେଷ କରାଯିବ ବୋଲି କେହି ଜଣେ ପ୍ରସ୍ତାବ କଲେ । ବିଭିନ୍ନ ମତ ଶୁଣାଗଲା । ରସିକ ନରନାରୀମାନେ କାମୋଦ୍ଦୀପକ ବିଧି ବ୍ୟବସ୍ଥା ଦେଖିବାକୁ ଅଧୀର ହୋଇପଡ଼ିଲେ ।

## ୨୭

# ସର୍ବଜ୍ଞଙ୍କର ହସ୍ତକ୍ଷେପ

ଗର୍ଗ ସର୍ବଜ୍ଞ ପ୍ରାଣାୟାମରେ ବସିଥିଲେ । କିନ୍ତୁ ଚତୁଃପାର୍ଶ୍ୱର ଘଟଣାରୁ ନିଜ ମନକୁ ସେ ଅଲଗା କରି ପାରୁ ନଥାନ୍ତି । ନିଜର ମନ ଓ ଶରୀରକୁ ସଂଯତ କରିବା ତାଙ୍କ ପକ୍ଷେ ବର୍ତ୍ତମାନ କଷ୍ଟକର । ହମ୍ମୀରର ଆସନ୍ନ ଆକ୍ରମଣ ତାଙ୍କ ମନକୁ ଘାରୁଥାଏ । ସହସା ଚୌଲିକୁ ଯେପରି କେହି ଆକ୍ରମଣ କରୁଥିବାରୁ ସେ କାନ୍ଦୁଛି, ଠିକ୍ ସେହିପରି ତାଙ୍କୁ ବୋଧ ହେଲା । ପ୍ରଭୁ ଶିବଙ୍କୁ ନିଜର ସର୍ବସ୍ୱ ଅର୍ପଣ କରିଥିବା ଚୌଲି ଉପରେ ସତେ ଯେପରି କିଏ ଅମାନୁଷିକ ଅତ୍ୟାଚାର କରୁଛି !

ସର୍ବଜ୍ଞ ନିଜକୁ ସମ୍ଭାଳି ପାରିଲେ ନାହିଁ । ଆରାଧନା କରିବାର ଉଦ୍ୟମ ଛାଡ଼ି ସେ ଠିଆ ହେଲେ । ମୃଗ ଯେପରି ଚଞ୍ଚଳ ନୟନରେ ଚାରି ଦିଗକୁ ଚାହିଁ ଶିକାରୀର ସ୍ଥିତି ଲକ୍ଷ୍ୟ କରେ ଓ ବଞ୍ଚିବାର ଉପାୟ ଖୋଜେ, ସେହିପରି ସେ ଚାରିଆଡ଼କୁ ଚାହିଁଲେ । ତା ପରେ ନର୍ତ୍ତକୀ ବସ୍ତି ଆଡ଼କୁ ସିଧା ଗଲେ । ଗୁରୁଦେବ ନିଜେ ଏପରି ଦ୍ରୁତ ଗତିରେ ମନ୍ଦିର ଅତିକ୍ରମ କରି ଯାଉଥିବା ଦେଖି ନିକଟରେ ଠିଆହୋଇଥିବା ଜଣେ ଦୁଇଜଣ ଶିଷ୍ୟ ଆଶ୍ଚର୍ଯ୍ୟ ହୋଇଗଲେ । କିନ୍ତୁ ଏହାର କାରଣ ଜାଣିବା ଆଗ୍ରହ ସେମାନଙ୍କର ନ ଥିଲା ।

ସର୍ବଜ୍ଞ ଗଙ୍ଗାର ଘର ପାଖରେ ଯାଇ ପହଞ୍ଚିଲେ ଓ ବାହାରୁ ଶିକୁଳି ପଡ଼ିଥିବା ଦେଖି ଫେରିଆସୁଥିଲେ । ଠିକ୍ ଏହି ସମୟରେ ଗଙ୍ଗା ଘର ଭିତରେ କାନ୍ଦୁଥିବାର ଶୁଣିପାରି ଶିକୁଳି ଫିଟାଇ ଭିତରକୁ ଗଲେ । ନିଜ ହାତରେ ମୁହଁ ଘୋଡ଼ାଇ ଗଙ୍ଗା ଅତି ବିକଳରେ କାନ୍ଦୁଥାଏ ।

ସର୍ବଜ୍ଞ ପଚାରିଲେ—"ଗଙ୍ଗା, କଣ ହୋଇଛି ? କାନ୍ଦୁଛୁ କାହିଁକି ?"

"ଗୁରୁଦେବ" କାନ୍ଦି କାନ୍ଦି ଗଙ୍ଗା କହିଲା, "ରାଣୀ ବର୍ତ୍ତମାନ ସେ ପାଗଳୀକୁ ତ୍ରିପୁରସୁନ୍ଦରୀଙ୍କ ମନ୍ଦିରକୁ ନେଇଗଲେ । ମୋର ଝିଅର କି ଅବସ୍ଥା ହେବ ?"

ମୁହୂର୍ତ୍ତକ ପାଇଁ ଗଙ୍ଗ ସର୍ବଜ୍ଞ ନିଜର ସ୍ଥିର ବୁଦ୍ଧି ହରାଇ ବସିଲେ । ବହୁ ଦିନ ଧରି ସେ ପ୍ରାୟଶ୍ଚିତ୍ତ ଓ ଉପାସନା କରି ନିଜ ମନରୁ ସମସ୍ତ ଆବିଳତା ନାଶ କରି ନିଜର ଦୃଷ୍ଟିଭଙ୍ଗୀକୁ ପବିତ୍ର କରି ଆସିଥିଲେ । ସେ ଯୁବକ ଥିବା ସମୟରୁ ତାଙ୍କର ଦୃଢ଼ ଧାରଣା ହୋଇଛି ଯେ, ତ୍ରିପୁରସୁନ୍ଦରୀଙ୍କ ପୂଜା ବିଧିରେ କେତେକ କାମଜନିତ ତଥା ହିଂସାତ୍ମକ ଭାବ ସ୍ଥାନ ପାଇଛି । ସେ ଏହି ପୀଠ ମାନକୁ ଶୁଦ୍ଧ ପୂତ କରିବାକୁ ବହୁବର୍ଷ ଧରି ଚେଷ୍ଟା କରିଆସିଛନ୍ତି । ତାହା ଫଳରେ ଏତିକି ପରିବର୍ତ୍ତନ କରିପାରିଛନ୍ତି ଯେ କୌଣସି ପୁରୁଷ ବା ନାରୀ ତାର ପୂର୍ଣ୍ଣ ସମ୍ମତି ବିନା ଏ ପ୍ରକାରେ ଯୋଗ ଦେଇ ପାରିବ ନାହିଁ ଏବଂ ସେ ନିଜେ ବା ଶିବରାଶିଙ୍କ ଛଡ଼ା ଅନ୍ୟ କେହି ଏହି ଉତ୍ସବରେ ପୌରୋହିତ୍ୟ କରି ପାରିବେ ନାହିଁ । ଏହି ନିୟମମାନ ସେ ଦୃଢ଼ ଭାବେ କାର୍ଯ୍ୟକାରୀ କରି ଆସିଛନ୍ତି । କିନ୍ତୁ ଗତ କେତେ ବର୍ଷ ହେବ ସର୍ବଜ୍ଞ ନିଜେ ଏ ଉତ୍ସବ ମାନଙ୍କରେ ପୌରୋହିତ୍ୟ ନ କରି ଏହି ଗୁରୁ ଦାୟିତ୍ୱ ଶିବରାଶିଙ୍କ ଉପରେ ଦେବା ସଙ୍ଗେ ସଙ୍ଗେ ତାଙ୍କୁ ଯେଉଁ ସବୁ ବିପଦର ସମ୍ମୁଖୀନ ହେବାକୁ ପଡ଼ିବ ସେ ସଂପର୍କରେ ସାବଧାନ କରିଦେଇଥିଲେ ।

ଶୈବ ସଂପ୍ରଦାୟର ଲକୁଳେଶ ଶାଖାରେ ପ୍ରଚଳିତ ବହୁ ପୀଠମାନରେ ଯେ ଯଥେଷ୍ଟ ସଂସ୍କାର ଆଣିବା ପ୍ରୟୋଜନ ସେ ସମ୍ବନ୍ଧରେ ସର୍ବଜ୍ଞଙ୍କର ଦୃଢ଼ ବିଶ୍ୱାସ ଜାତ ହୋଇଥିଲା । ତାଙ୍କ ଶିଷ୍ୟମାନଙ୍କ ମଧ୍ୟରୁ ଯେଉଁମାନେ ମୂର୍ଖ ଏବଂ ସାଧାରଣ ପୂଜାରୀ, ସେମାନେ ତାଙ୍କର ଏହି ସାଧୁ ଉଦ୍ୟମର ଉଦ୍ଦେଶ୍ୟ ବୁଝିପାରୁ ନାହାନ୍ତି ବୋଲି ସେ ମଧ୍ୟ ଜାଣନ୍ତି । ସର୍ବୋପରି ତାଙ୍କର ଏହି ଉଦ୍ୟମରେ ପ୍ରଧାନ ଶିଷ୍ୟ ଶିବରାଶି ଉତ୍ସାହୀ ନୁହନ୍ତି ବୋଲି ଜାଣି ସେ ନିରାଶ ହୋଇଛନ୍ତି ।

ଚୌଳ୍ ପରେ ନଗଣ୍ୟ ବାଳକ ସେହି ଗୃହ ମଣ୍ଡପରେ ଦୀକ୍ଷିତ ହେବା ଉଚିତ ନୁହେଁ ଏ କଥା ସେ ଦୃଢ଼ ଭାବରେ ନିଷ୍ପତ୍ତି କରି ଏହା ଗଙ୍ଗା ଏବଂ ଶିବରାଣି ଉଭୟଙ୍କୁ ଜଣାଇଦେଇଥିଲେ । ଏହି ସଂପର୍କରେ ତାଙ୍କର ପ୍ରଧାନ ଶିଷ୍ୟ ତାଙ୍କ ସହିତ ଏକମତ ନୁହେଁ ବୋଲି ସେ ଜାଣିଥିଲେ ଏବଂ ମହାମାୟୀ ଚୌଳର ଶରୀରରେ ପ୍ରବେଶ କରିଛନ୍ତି ବୋଲି ଯେତେବେଳେ ଶିବରାଣି ଆସି ତାଙ୍କୁ ଜଣାଇଲେ, ଚୌଳକୁ ଉତ୍ସବକୁ ନିଆଯିବ ନାହିଁ ବୋଲି ସର୍ବଜ୍ଞ ତାଙ୍କୁ ଦୃଢ଼ ଭାବେ ଜଣାଇଥିଲେ ।

ରାଣିଙ୍କ ମୁହଁରେ କାମପ୍ରଣୋଦିତ ଭାବ ସର୍ବଜ୍ଞ ବରାବର ଲକ୍ଷ୍ୟ କରି ଆସିଛନ୍ତି । ଶିବରାଣିଙ୍କର ଏହି ଅଧୋଗତି ସେ ଦୁଃଖର ସହ ଦେଖିଥିଲେ, କିନ୍ତୁ କୌଣସି ପ୍ରତିକାର କରି ନ ଥିଲେ । ତେଣୁ ବର୍ତ୍ତମାନ ଗଙ୍ଗାଠାରୁ ସବୁ ଘଟଣା ଶୁଣି ସେ ହଠାତ୍ ଅତିଶୟ ରାଗିଗଲେ ଓ ପରେ ସଙ୍ଗେ ସଙ୍ଗେ ନିଜକୁ ସଂଯତ କରିନେଇ ତାଙ୍କର ନିଷ୍ପତ୍ତି କାର୍ଯ୍ୟକାରୀ କରିବା ପାଇଁ ପ୍ରକୃଷ୍ଟ ସମୟ ଆସିଛି ବୋଲି ଠିକ୍ କଲେ ।

ସେ କହିଲେ, "ଗଙ୍ଗା, ମୋ ସହିତ ଆଲୁଅ ଧରି ଆସେ ।"

ମନ୍ଦିରର ଗୁପ୍ତ ଦ୍ୱାରରେ ସେମାନେ ପହଞ୍ଚିବା କ୍ଷଣି ସେଠାରେ ପହରା ଦେଉଥିବା ସାଧୁ ଜଣକର ମନରେ ଭୟ ଦେଖାଦେଲା । ସେ 'ଗୁରୁଦେବ' ବୋଲି ପାଟି କରି ଉଠିଲା ।

"ହଁ, ଏଠାରେ ରୁହ" ବୋଲି ତାକୁ ହୁକୁମ୍ ଦେଲେ ସର୍ବଜ୍ଞ ।

ଗଙ୍ଗା ଆଲୁଅ ଧରି ଆଗରେ ଚାଲିଥାଏ । ସାମନ୍ତ ଖମ୍ବରେ ବନ୍ଧା ହୋଇଥିବା କ୍ଷୀଣ ଆଲୋକରେ ଦେଖି ସର୍ବଜ୍ଞ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ସାମନ୍ତ, ତୁ ଏଠି ?"

ସାମନ୍ତ କର୍କଶ ହସ ହସି କହିଲା, "ଗୁରୁଦେବ, ତ୍ରିପୁରସୁନ୍ଦରୀଙ୍କୁ ପୂଜା କରିବା ପାଇଁ ମୋତେ ବାଧ୍ୟ କରାଯାଉଛି । ମୁଁ ତାହା କରିବାକୁ ଅସ୍ୱୀକାର କରିବାରୁ ମୋତେ ବନ୍ଧାଯାଇଛି । ଜଣେ ସାଧୁ ମୋତେ ମାରିଦେବାକୁ ନିଷ୍ପତ୍ତି କରିଛି ଓ ମୁଁ ତାକୁ ଅପେକ୍ଷା କରି ରହିଛି ।"

ଗଙ୍ଗ ସର୍ବଜ୍ଞ ରାଗିଯାଇ କହି ଉଠିଲେ, "ଯାହା ଉପରେ ପ୍ରଭାସର ଭବିଷ୍ୟତ୍ ରକ୍ଷା ପୂରାପୂରି ନିର୍ଭର କରୁଛି ତାକୁ ମରାଯିବା ପାଇଁ ନିଷ୍ପତ୍ତି କରାଯାଇଛି ! ତାହେଲେ ପ୍ରଭାସର ଧ୍ୱଂସ ଅତି ନିକଟ ।" ଏହା କହି ନିକଟରେ ଠିଆହୋଇଥିବା ସାଧୁଙ୍କୁ "ଖୋଲିଦିଅ" ବୋଲି ହୁକୁମ୍ ଦେଲେ ।

ତାଙ୍କ ହୁକୁମ ଅନୁସାରେ ସାମନ୍ତଙ୍କୁ ମୁକ୍ତ କରାଗଲା ।

ସର୍ବଜ୍ଞ ପଚାରିଲେ—ଚୌଲକୁ ଦେଖିଛ ?

ସାମନ୍ତ—ହଁ, କିଛି ସମୟ ପୂର୍ବେ ରାଣିଜୀଙ୍କ ସହିତ ଆସି ଭିତରକୁ ଯାଇଛି ।

ସର୍ବଜ୍ଞ ପଚାରିଲେ—କଣ ସ୍ୱଇଚ୍ଛାରେ ଯାଇଛି ?

ସାମନ୍ତ—ହଁ, ହସି ନାଚ ଆନନ୍ଦ ମନରେ ଥିଲାପରି ଜଣାଯାଉଥିଲା ।

ଗଙ୍ଗା ଏକମତ ହୋଇ କହିଲା—ହଁ, ପ୍ରଭୁ ଶମ୍ଭୁ ତାକୁ ଅପେକ୍ଷା କରିଛନ୍ତି ବୋଲି ଶିବରାଶି ତାକୁ କହିଲେ । ସେଥିଲାଗି ସେ ଦଉଡ଼ି ଆସିଛି । ପ୍ରଭୁ ଶଙ୍କରଙ୍କ ଆରାଧନାରେ ଆଜି ସେ ନିଜକୁ ଭୁଲିଯାଇଛି ।

ଗୁରୁଦେବ ପୁଣି କହି ଉଠିଲେ, "ସେ କଣ ସ୍ୱଇଚ୍ଛାରେ ଯାଇଛି ?" ଚୌଳା ଯେବେ ତାର ସ୍ୱଇଚ୍ଛାରେ ଯାଇଥିବ, ତାହେଲେ ସେ ସେଥିରେ ଆପତ୍ତି କରିବେ କାହିଁକି—ଏହି ଚିନ୍ତା ତାଙ୍କ ମନରେ ଘାରିହେଲା ।

ଗଙ୍ଗା ପୁଣି କହିଲା, "ନାଁ, ସେ ଅର୍ଥରେ ନୁହେଁ । ସେ କେବେହେଲେ ସ୍ୱଇଚ୍ଛାରେ ଏହି ସବୁ ରୀତିନୀତି ଗ୍ରହଣ କରିନଥିବ ।"

ସାମନ୍ତ କହିଉଠିଲେ, "ବଡ଼ ଅଦ୍ଭୁତ ଲୋକ ଏମାନେ ।" ଏହା କହିବା କ୍ଷଣି ଉଦ୍ଦାମ ବାସନାରେ ଭୟଙ୍କର ହୋଇଥିବା କୁଣ୍ଡଳାର କଥା ତାଙ୍କ ମନକୁ ଆସିଲା ଏବଂ ସେ ଅସ୍ୱସ୍ତି ଅନୁଭବ କଲେ ।

ସର୍ବଜ୍ଞ ମନ୍ଦିର ଆଡ଼କୁ ଗଲେ ଏବଂ ତାଙ୍କ ପଛେ ପଛେ ସାମନ୍ତ ଓ ଗଙ୍ଗା ଗଲେ । ତ୍ରିପୁରସୁନ୍ଦରୀଙ୍କ ମନ୍ଦିରର ପ୍ରବେଶ ଦ୍ୱାରରେ ପହଞ୍ଚି ସେମାନେ ଯେଉଁ ଦୃଶ୍ୟ ଦେଖିଲେ, ତହିଁରେ ସାମନ୍ତ ଅତ୍ୟନ୍ତ ଭୟଭୀତ ହୋଇଗଲେ । କ୍ଷୀଣ ଆଲୋକରେ ବହୁ ସଂଖ୍ୟକ ପୁରୁଷ ଓ ସ୍ତ୍ରୀ ତାଳମାରି ଦେବୀଙ୍କ ସ୍ତୁତିମୂଳକ ଗୀତମାନ ଗାଉଛନ୍ତି ଏବଂ ସେମାନେ ଯେତେବେଳେ ତାଳି ମାରି ଗୃହପାଖେ ପରିକ୍ରମା କରୁଛନ୍ତି, ସେତେବେଳେ ସେମାନେ ମଣିଷ କି ଭୂତ ପ୍ରେତ ତାହା ଜାଣି ହେଉନାହିଁ ।

ନିଜର ଜ୍ଞାତି କୁଟୁମ୍ବଙ୍କ ମଡ଼ା ଉପରେ ମରୁଭୂମିର ଶାଗୁଣା ଉଡ଼ୁଥିବା ଦୃଶ୍ୟ ଦେଖିଲାବେଳେ ସାମନ୍ତଙ୍କୁ ଯେଉଁଭଳି ଭୟ ଲାଗିଥିଲା, ଆଜିର ଏ ଦୃଶ୍ୟ ତାଙ୍କ ମନରେ ତତୋଧିକ ଭୟ ଜାତ କଲା ।

ଏମାନେ ତିନି ଚାରିଜଣ ହୋଇ ଗୋଟିଏ ଲେଖାଏଁ ଦଳରେ ଗୃହପାଖେ ବୁଲୁଥାନ୍ତି ଏବଂ ତାଙ୍କ ଭିତରୁ ଜଣେ ଆଲୁଅ ଧରିଥାଏ । ହଠାତ୍ ଏହି ଗୀତ

ଶବ୍ଦ ଛଡ଼ା ଗୋଟିଏ ଅଦ୍ଭୁତ ଶବ୍ଦ ଶୁଭିଲା ଏବଂ ତା ପରେ ଆଉ ଥରେ ସେହିଭଳି ଶବ୍ଦ ଓ ତାପରେ ତୃତୀୟଥର ପାଇଁ ସେହି ଶବ୍ଦ କର୍ଣ୍ଣଗୋଚର ହେଲା । ଏହି ଶବ୍ଦ କିଏ କରୁଛି ତାହା ସର୍ବଜ୍ଞ ତଥା ଗଙ୍ଗା ସାଙ୍ଗେ ସାଙ୍ଗେ ବୁଝିଲେ । ସାମନ୍ତ ମଧ୍ୟ ନିଜ ମନରେ ଅନୁମାନ କରିପାରିଲେ ।

ଯେଉଁଠାରୁ ଏହି ଶବ୍ଦ ଆସୁଥିଲା, ସର୍ବଜ୍ଞ ସେହି ଦିଗକୁ ଧାଇଁ ଗଲେ ଏବଂ ଗଙ୍ଗାର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଉପରେ ଥରୁଥିଲେ ସୁଦ୍ଧା ସେ ମଧ୍ୟ ତାଙ୍କ ପଛେ ପଛେ ଗଲା ।

ସାମନ୍ତ ଆଉ ଧୈର୍ଯ୍ୟ ଧରି ରହି ପାରିଲେ ନାହିଁ । ଖୋଲ ଭିତରୁ ନିଜର ଖଣ୍ଡା ବାହାରକରି ସେହି ବିଭତ୍ସ ରସର ରସିକମାନଙ୍କ ଆଡ଼କୁ ଲକ୍ଷ୍ୟ କରି ତାହା ବୁଲାଇଲେ । ହଠାତ୍ ଏହି ମୃତ୍ୟୁ ବର୍ଷିକାର ଆଗମନ ଦେଖି ସମସ୍ତେ ଉପରେ ଛିନ୍‌ଛତ୍ର ହୋଇଗଲେ । ଜଣେ ବଳିଷ୍ଠା ସ୍ତ୍ରୀ ଚୌଳିକୁ ଭିଡ଼ି ଧରିଥାଏ ଓ ଚୌଳି ମୁକ୍ତ ହେବାକୁ ଚେଷ୍ଟା କରୁଥାଏ । ଚୌଳି ସେହି ମାତ୍ର ନିଜର ସ୍ୱାଭାବିକ ଅବସ୍ଥାକୁ ଆସିଥାଏ ଏବଂ ତା ଚାରିପାଖର ଉଦ୍ଭଟଙ୍କର ପରିସ୍ଥିତି ଦେଖି ଚିତ୍କାର କରୁଥାଏ । ତାକୁ ଦେବୀଙ୍କର ଅବତାର ଭାବି ଶିବରାଣି ପୂଜା କରୁଥାନ୍ତି ।

ସାମନ୍ତ ସ୍ତ୍ରୀଲୋକମାନଙ୍କୁ ଆଡ଼େଇ ଚୌଳି ପାଖକୁ ଗଲେ ।

ସର୍ବଜ୍ଞ ରାଣି ଯାଇ କହିଲେ, "ରାଣିଜି, ଏ କଣ ହେଉଛି ?" ରାଣିଜୀ ସ୍ତମ୍ଭିତ ହୋଇଗଲେ । ଏକ ଦିଗରେ ସାମନ୍ତ ନିଜର ଖଣ୍ଡା ଧରି ଠିଆ ହୋଇଥାନ୍ତି ଓ ଅନ୍ୟ ଦିଗରେ ଗୁରୁଦେବ ଯଥେଚ୍ଛା ଭାବରେ ଗାଳି ଦେଇ ଯାଉଥାନ୍ତି । ଏହା ଦେଖି ତାଙ୍କ ହାତ ଏପରି ଥରି ଉଠିଲା ଯେ, ଆରତି ସାମଗ୍ରୀ ତଳେ ପଡ଼ିଗଲା । ଏକତ୍ର ହୋଇଥିବା ସ୍ତ୍ରୀ ପୁରୁଷମାନେ ଚାରିଦିଗରୁ "ଗୁରୁଦେବ ! ଗୁରୁଦେବ ! ଗୁରୁଦେବ !" ବୋଲି ପାଟି କରି ଉଠିଲେ ।

ସର୍ବଜ୍ଞ ଉଚ୍ଚସ୍ୱରରେ ଅତି ଦୁଃଖରେ କହିଲେ, "ରାଣି, ଚୌଳିକୁ ତା ଇଚ୍ଛା ବିରୁଦ୍ଧରେ ଆଣିବାଦ୍ୱାରା ତୁମେ ଏହି ପୂଜାର ଗୋଟିଏ ପ୍ରଧାନ ମନ୍ତ୍ର ବିରୁଦ୍ଧରେ କାର୍ଯ୍ୟ କରିଛ ।"

ରାଣିଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଅତି ସାହସର ସହିତ ସିଦ୍ଧେଶ୍ୱର କହିଲା, "ନାଁ, ଏ କଥା ଠିକ୍ ନୁହେଁ । ସେ ନିଜର ଇଚ୍ଛାନୁଯାୟୀ ଏଠାକୁ ଆସିଛି ।"

ସର୍ବଜ୍ଞ କହିଲେ, "ସେ ଯେଉଁଭଳି ଭାବେ ପାଟି କରୁଥିଲା, ତହିଁରୁ ସେ ଯେ ନିଜର ଇଚ୍ଛାନୁଯାୟୀ ଆସି ନାହିଁ, ଏହାର ସଙ୍କେତ କଣ ମିଳୁନଥିଲା ସିଦ୍ଧେଶ୍ୱର ?

ଲକୁଲେଶ ସଂପ୍ରଦାୟ ପକ୍ଷେ ତୁମେ ନିନ୍ଦନୀୟ । ଶୁଣ, ବର୍ତ୍ତମାନ ଯାଅ । ଏହାର ଉଚିତ ପ୍ରାୟଶ୍ଚିତ ତୁମକୁ କିପରି କରିବାକୁ ହେବ ତାହା ମୁଁ କାଲି କହିବି ।"

ସିଦ୍ଧେଶ୍ୱର ପୁଣି କହିଲ, "ନାହିଁ ଆଜ୍ଞା, ଏ ଚୌଳା ନିଜ ଇଚ୍ଛାରେ ଆସିଛି ।"

ବୃଦ୍ଧ ପୂଜକ ଜଣକ ଏକମତ ହୋଇ କହିଲା, "ହଁ, ଠିକ୍ କଥା ।" ଦୁଇ ତିନି ଜଣ ପୂଜକ ଆସି ବୃଦ୍ଧ ପୂଜକ ପାଖରେ ଠିଆ ହେଲେ । ସର୍ବଜ୍ଞଙ୍କ କାର୍ଯ୍ୟକୁ ବିରୋଧ କରୁଥିବା ଭାବ ସେମାନଙ୍କ ମୁହଁରୁ ପ୍ରକାଶ ପାଉଥାଏ । ସେମାନେ ହାତରେ ଲୁହାର ବଡ଼ ବଡ଼ ବର୍ଚ୍ଛା ଧରିଥାନ୍ତି ଏବଂ ସର୍ବଜ୍ଞଙ୍କୁ ଭୟ ଦେଖାଇବା ସେମାନଙ୍କର ଉଦ୍ଦେଶ୍ୟ ବୋଲି ଜଣାପଡ଼ୁଥାଏ ।

ଧୀରସ୍ଥିର ଭାବେ ଓ ଦୁଃଖପୂର୍ଣ୍ଣ ମନରେ ସର୍ବଜ୍ଞ ସେମାନଙ୍କୁ ଅନାଇ କହିଲେ, "ଏହି ମନ୍ଦିରକୁ ନଷ୍ଟ କରିବାକୁ ତୁମେମାନେ ଏକାଠି ହୋଇଛ । ଯେବେ ତୁମମାନଙ୍କର ଆଖି ଅଛି, ତା ହେଲେ କିଭଳି ଲଜ୍ଜା ଓ ଭୟରେ ଚୌଳା ତୁମମାନଙ୍କୁ ଚାହୁଁଛି ତାହା ଲକ୍ଷ୍ୟ କର । ଏହା ହେଉଛି ମହାମାୟାଙ୍କ ମନ୍ଦିର— ମିଥ୍ୟାବାଦୀ ଓ ଅତ୍ୟାଚାରୀମାନଙ୍କର ଏ ମନ୍ଦିର ନୁହେଁ । ତୁମେମାନେ ପୂର୍ବ ମାତ୍ରାରେ ନିଜକୁ ପବିତ୍ର ନ କରିବା ପର୍ଯ୍ୟନ୍ତ ଏହି ମନ୍ଦିର ଆଜିଠାରୁ ବନ୍ଦ ରହିବ ।"

ଜଣେ ବୃଦ୍ଧ ସାଧୁ ଧମକାଇ କହିଲା, "ଏହି ମନ୍ଦିର ବନ୍ଦ କରି ଦିଆଯିବ ? ଏହାକୁ ବନ୍ଦ କରିବାକୁ କାହାର ସାହସ ଅଛି ?" ଏହା କହିବା ସଙ୍ଗେ ସଙ୍ଗେ ସେ ହାତରେ ତ୍ରିଶୂଳ ଧରିଥାଏ ବୋଲି ଦେଖାଇହେଉଥାଏ ।

ଗୁରୁଦେବ କ୍ଷୋଭରେ ହସି କହିଲେ, "ତୁମେ ପଚାରୁଛ କିଏ ବନ୍ଦ କରିବ ? ମୁଁ ବନ୍ଦ କରିବି । ପ୍ରଭୁ ଲକୁଲେଶ ସଂପ୍ରଦାୟର ମୁଖ୍ୟ ହିସାବରେ ମୁଁ ଏହା କରିବି ।"

ବୃଦ୍ଧ ପୂଜକ ସର୍ବଜ୍ଞଙ୍କୁ ମାରିବାକୁ ଉଦ୍ୟତ ହୋଇ ହାତ ଉଠାଇ ପାଟିକରି କହିଲା, "ଆପଣଙ୍କର ସାହସ ଅଛି ?" ସାମନ୍ତ ଆଗକୁ ଡେଇଁପଡ଼ି ବୃଦ୍ଧର ହାତ ଧରିପକାଇଲେ ।

ଗୁରୁଦେବ ପ୍ରକୃତିସ୍ଥ ହୋଇ କହିଲେ, "ସାମନ୍ତ, ତାକୁ ଛାଡ଼ିଦେ । ହରିଦତ୍ତ, ତୁ ମୋତେ ମାରିବାକୁ ଚାହୁଁ ? ତା ହେଲେ ମାର— ମୁଁ ମୁଣ୍ଡ ଦେଖାଇ

ଦେଉଛୁ । ତୋର ଅଧୋଗତି ପୂର୍ଣ୍ଣ ହେଉ ।" ଏହା କହି ଗୁରୁଦେବ ମୁଣ୍ଡ ନୁଆଁଇଲେ ।

ବୃଦ୍ଧ ପୂଜକ କଣ କରିବ ବୁଝି ପାରିଲା ନାହିଁ । ତାର ଅଜାଣତରେ ତା' ହାତରୁ ତ୍ରିଶୂଳଟି ତଳେ ପଡ଼ିଗଲା ଏ ସେ ମଧ୍ୟ ତଳେ ପଡ଼ିଯାଇ ମୂର୍ଚ୍ଛିତ ହୋଇଗଲା । ସର୍ବଜ୍ଞ ଆସ୍ତେ ଆସ୍ତେ ଯାଇ ଶତାବ୍ଦୀବ୍ୟାପୀ ତ୍ରିପୁରସୁନ୍ଦରୀଙ୍କ ମନ୍ଦିରର ଯେଉଁ ଦ୍ୱାର କେବେ ବନ୍ଦ ହୋଇ ନ ଥିଲା, ତାହା ବନ୍ଦ କରି-ଦେଲେ ।

ଗୁରୁଦେବ କହିଲେ, "ତୁମ ସମସ୍ତଙ୍କର ସମବେତ ପାପ ଯୋଗୁ ପ୍ରଭୁ ଶଙ୍କରଙ୍କ ତୃତୀୟ ଆଖି ଖୋଲିଛି । ଏହି ମନ୍ଦିର ଧ୍ୱଂସ କରିବାକୁ ରାକ୍ଷସ ଭଳି ହମୀର ଏଠାକୁ ଧାଇଁଆସୁଛି । ତୁମେମାନେ ନିଜକୁ ଶୁଦ୍ଧ ପୂତ ନ କରିବା ପର୍ଯ୍ୟନ୍ତ ଓ ଆକ୍ରମଣ ବିପଦ ଦୂର ନ ହେବା ପର୍ଯ୍ୟନ୍ତ ମୁଁ ଦେବୀ ମହାମାୟାଙ୍କ ଅର୍ଚ୍ଚନା ବନ୍ଦ କରୁଛି ।"

ସର୍ବଜ୍ଞଙ୍କର ଶକ୍ତିଶାଳୀ ଆଧ୍ୟାତ୍ମିକ ବ୍ୟକ୍ତିତ୍ୱ ସମ୍ମୁଖରେ ଉପସ୍ଥିତ ସମସ୍ତେ ସଂପୂର୍ଣ୍ଣ ନଇଁ ପଡ଼ିଲେ ଓ ସମସ୍ତେ ଆସ୍ତେ ଆସ୍ତେ ସେଠାରୁ ଚାଲିଗଲେ ।

କିଛି ସମୟ ପାଇଁ ସର୍ବଜ୍ଞ ଏକୁଟିଆ ନିର୍ବେଦ ହୋଇ ଠିଆ ହେଲେ । ଚୌଳ ତା' ମା କୋଳରେ ମୁଣ୍ଡ ରଖି ଅତ୍ୟନ୍ତ ଅଧୀର ହୋଇ କାନ୍ଦିଲା । କିଛି ସମୟ ପୂର୍ବରୁ ସେ କଣ କରିଛି, ତାହା ସହଜରେ ଭୁଲି ପାରିଲା ନାହିଁ ।

ସର୍ବଜ୍ଞ ଆଦେଶ ଦେଲେ, "ଗଙ୍ଗା, ତୁ ଚୌଳକୁ ଘରକୁ ନେଇ ଯା । ଏହି ମହାପୀଠର ଅବସ୍ଥା କଣ ହେବ ତାହା ମୁଁ ଜାଣି ନାହିଁ ।" କାହ୍ନୁକୁ ଆଉଜି ପାଖରେ ବସିଥିବା ସାମନ୍ତଙ୍କୁ ସେ କହିଲେ, "ବତ୍ସ ସାମନ୍ତ, ଡେରି ହୋଇ ଯାଉଛି । ତୁମେ ଯିବାକୁ ପ୍ରସ୍ତୁତ ହୁଅ ।"

"ଆପଣଙ୍କର ଯେ ଆଜ୍ଞା," ବୋଲି ସାମନ୍ତ ଉତ୍ତର ଦେଲେ ।

ସର୍ବଜ୍ଞ—"ଗଙ୍ଗା, ତୁ ଏହି ଚୌହାନକୁ ଜାଣୁ ? ଚୌଳ ଏହାର ଓ ଏହାର ବାପାଙ୍କ କପାଳରେ ବିଭୂତି ଟିକା ଦେଇଥିଲା । ଚୌଳ, ତୋର ମନେଅଛି ?"

ଚୌଳ ପ୍ରକୃତିସ୍ଥ ହେଲାଣି । ସାମନ୍ତ ଓ ଚୌଳ ଉଭୟେ ପରସ୍ପରକୁ ଚାହାଁ ଚାହିଁ ହେଲେ ।

ସର୍ବଜ୍ଞ କହିଲେ, "ଗଙ୍ଗା, ସାମନ୍ତ ଚୌହାନ ମହାନ୍ ବୀର । ଗତ ପନ୍ଦର ଦିନ ହେବ ତାଙ୍କୁ ଭ୍ରମଣ ବିପଦ ଦେଇ ଗତି କରିବାକୁ ପଡ଼ୁଛି । ତାର ବିରାଟ ପରିବାର ମଧ୍ୟରୁ ପ୍ରଭୁ ସୋମନାଥଙ୍କର ପୂଜା କରିବାପାଇଁ ସେ ଆଜି ଏକମାତ୍ର ଜୀବିତ । ତାଙ୍କୁ ତୋ ଘରକୁ ନେଇ କିଛି ଖାଇବାକୁ ଦେ । ବହୁଦିନ ହେଲା ସେ କିଛି ଖାଇନାହାଁନ୍ତି । ତା ଉପରେ ଆମ ସମସ୍ତଙ୍କର ନିରାପତ୍ତା ନିର୍ଭର କରେ ।" ସେ ଏହା କହିସାରି ମୁଣ୍ଡ ନୁଆଁଇ ଆଗ ରାସ୍ତାକୁ ଚାହିଁ ଚାହିଁ ଚାଲିଗଲେ ।

ଚୌଲ କଣ କରିବ ଠିକ୍ କରି ନପାରି ଲଜ୍ଜିତ ଭାବେ ଠିଆ ହେଲା । କିଛି କ୍ଷଣ ପୂର୍ବେ ସାମନ୍ତ ତାଙ୍କୁ ଯେଉଁ ଅବସ୍ଥାରେ ଦେଖିଛନ୍ତି ତାହା ମନେପଡ଼ି, ପୃଥିବୀ ଫାଟି ଯାଆନ୍ତା କି ସେ ତାହା ଭିତରେ ପଶି ଯାଆନ୍ତା ବୋଲି ତାର ମନରେ ଭାବ ଉଦୟ ହେଲା । ଅଭିଜ୍ଞା ଗଙ୍ଗା କନ୍ୟାକୁ ସ୍ନେହରେ କୁଣ୍ଢାଇଧରି କହିଲା, "ଚୌହାନ, ଆମକୁ କୁହ କଣ ସବୁ ହୋଇଛି ।"

ଚୌଲ ସହିତ ଗତଥର ଦେଖା ହେବା ପରଠାରୁ ତା ନିଜର ଏବଂ ତାର ପରିବାରରେ ଯେଉଁ ଦୁର୍ଦ୍ଦଶାମାନ ଘଟିଯାଇଛି, ତାହା ଏଇ ଦୁଇଜଣ ସ୍ତ୍ରୀ ଲୋକଙ୍କ ଆଗରେ ବର୍ଣ୍ଣନା କରି ସେଦିନ ରାତିରେ ସାମନ୍ତର କେତୋଟି ଘଣ୍ଟା ସୁଖରେ କଟିଗଲା । ଏହି ବୀର ପୁରୁଷଠାରୁ ଆତ୍ମତ୍ୟାଗର ବର୍ଣ୍ଣନା ଶୁଣି ଚୌଲ ମନରେ ଏକ ମହାନ୍ ଉତ୍ସାହ ଅନୁଭବ କଲା ।

୨୭

## ପାଟଣରେ ପ୍ରସ୍ତୁତି

ଦୁଇଶହ ବର୍ଷ ପୂର୍ବେ ଉତ୍ତର ଗୁଜୁରାଟ (ଚାଲୁକ୍ୟ)ର ସରସ୍ୱତୀ ନଦୀ ଉପତ୍ୟକାସ୍ଥ ଅନେକ ଦୁର୍ଗ ପରି ଅନହିଲୱାଡ଼ ପାଟଣ ମଧ୍ୟ ବଣ ପାହାଡ଼ ଭିତରେ ଗୋଟିଏ କ୍ଷୁଦ୍ର ଦୁର୍ଗ ଥିଲା । ଅନହିଲୱାଡ଼ର ଚାଓ୍ୱାଡ଼ା ରାଜାମାନେ ପ୍ରତିବର୍ଷ ଅଳ୍ପ ଅଳ୍ପ ସୈନ୍ୟ ନେଇ ବାହାରକୁ ଆସି ନିକଟସ୍ଥ ଦୁର୍ଗପତିମାନଙ୍କୁ ହାଇରାଣ କରନ୍ତି ଓ ଗ୍ରାମମାନଙ୍କରେ ନିଜର ଆଧିପତ୍ୟ ପ୍ରତିଷ୍ଠା କରି ଭିଲମାନଙ୍କୁ ଜଙ୍ଗଲକୁ ତଡ଼ି ଦିଅନ୍ତି । କେତେକ ଥର ଅଭିଯାନରେ ସଫଳତା ଲାଭ କରି

ନିଜର ରାଜ୍ୟ ମଧ୍ୟ ବିସ୍ତାର କରିଛନ୍ତି । କେବେ କେବେ ବା ସେମାନଙ୍କୁ ପରାଜୟର ସମ୍ମୁଖୀନ ହେବାକୁ ପଡ଼ିଥାଏ ।

ସମସ୍ତ ଥିଲା ଯେତେବେଳେ ପଡ଼ୋଶୀ ଶକ୍ତିର ଭୟରେ ସେମାନେ ନିଜ ଗୃହରୁ ବାହାରୁ ନଥିଲେ । ପରେ ସେମାନେ ଏତେ ପରାକ୍ରମୀ ହୋଇଥିଲେ ଯେ, ଦକ୍ଷିଣ ଗୁଜୁରାଟ ଅନ୍ତର୍ଗତ ସୁଦୂର ଲାଟ ତଥା ସୌରାଷ୍ଟ୍ରରେ ଆଧିପତ୍ୟ ବିସ୍ତାର କରିଥିଲେ ।

କିନ୍ତୁ ଅନହିଲୱାଡ଼ର ଭବିଷ୍ୟତ୍ ଭାଗ୍ୟ ସ୍ୱର୍ଣ୍ଣାକ୍ଷରରେ ଲେଖାହୋଇଥିଲା ୯୪୨ ଖ୍ରୀଷ୍ଟାବ୍ଦରେ, ଯେତେବେଳେ ଶୋଲଙ୍କି ବଂଶର ମୂଳରାଜଦେବ ଏହାର ସିଂହାସନ ଆରୋହଣ କଲେ । ସେ ସମୟରୁ ଅନହିଲୱାଡ଼ ପାଟଣର ବିରାଟ ପରିବର୍ତ୍ତନ ଘଟିବାକୁ ଆରମ୍ଭ କଲା । ଆଖ ପାଖ ଅଞ୍ଚଳର ଜଙ୍ଗଲମାନ କଟାଗଲା ଏବଂ ଉର୍ବର ଜମିମାନଙ୍କରେ ସୁପରିକଳ୍ପିତ ଗ୍ରାମମାନ ପ୍ରତିଷ୍ଠା କରାଯାଇ, ସେ ସବୁର ସୁରକ୍ଷା ଦାୟିତ୍ୱ ଶାସକ ଗ୍ରହଣ କଲେ । ଶ୍ରୀମାଲ, କନୌଜ, ଉଜ୍ଜୟିନୀ ଏବଂ ଭୃଗୁକଚ୍ଛ ପ୍ରଭୃତି ସ୍ଥାନମାନଙ୍କରୁ ଆଗତ ଉଚ୍ଚ ଜାତିର ଲୋକମାନେ ଏହି ନୂତନ ପ୍ରତିଷ୍ଠିତ ଗ୍ରାମମାନଙ୍କରେ ବସତି ସ୍ଥାପନ କଲେ । ଏପରିକି ଗୁଜୁରାଟର ବୀର ଯୋଦ୍ଧାମାନେ ମଧ୍ୟ ପାଟଣର ପ୍ରତାପଶାଳୀ ଶାସକଙ୍କ ଅଧୀନରେ ଚାକିରି କଲେ ।

ନିଜର ଅପୂର୍ବ କୂଟନୈତିକ ବୁଦ୍ଧି ତଥା ଅସୀମ ବୀରତ୍ୱ ଫଳରେ ମୂଳରାଜଦେବ ରାଜ୍ୟ ବିସ୍ତୃତ କରିବା ସଙ୍ଗେ ସଙ୍ଗେ ଅନହିଲୱାଡ଼କୁ ଶକ୍ତିଶାଳୀ ରାଜ୍ୟ ରୂପେ ପରିଣତ କରିଥିଲେ । ଗୋଟିଏ ଶ୍ରେଷ୍ଠ ଦୁର୍ଗ ସ୍ଥାନରେ ଠିଆ ହେଲା ଏକ ବିରାଟ ସମୃଦ୍ଧିଶାଳୀ ସହର । ଖମ୍ବାତ, ଭରୂଚ ଓ ମାଙ୍ଗାଲୋରର ବଣିକମାନେ ସେଠାରେ ନିଜ ନିଜର ବ୍ୟବସାୟ କେନ୍ଦ୍ର ପ୍ରତିଷ୍ଠା କଲେ । ଦେଶର ଦୂରଦୂରାନ୍ତ ଅଞ୍ଚଳରୁ ବିଦ୍ୱାନ ବ୍ରାହ୍ମଣମାନେ ଆକୃଷ୍ଟ ହୋଇ ଏଠାରେ ଶିକ୍ଷା ଏବଂ ସଂସ୍କୃତିର କେନ୍ଦ୍ରମାନ ସ୍ଥାପନ କଲେ । ମାଟିର ଶ୍ରେଷ୍ଠ ଶ୍ରେଷ୍ଠ କୁଡ଼ିଆ ପରିବର୍ତ୍ତେ ଇଟା ତିଆରି ଘରମାନ ଦେଖାଦେଲା । ସୁନ୍ଦର ମନ୍ଦିରମାନଙ୍କର ସମୁଚ୍ଚ ଶିଖର ଧର୍ମ ଓ ଆର୍ଥିକ ସମୃଦ୍ଧିର ସାକ୍ଷ୍ୟ ଦେବାକୁ ଲାଗିଲେ । ଏହି ବିସ୍ତୃତ ତଥା ଉନ୍ନତ ନଗରର ଚତୁଃପାର୍ଶ୍ୱରେ ଗୋଟିଏ ସୁନ୍ଦର ଏବଂ ବିରାଟ ଦୁର୍ଗ ତିଆରି ହେଲା । ଯେଉଁ ଅନହିଲୱାଡ଼ ଏକଦା ଗୋଟିଏ ଶ୍ରେଷ୍ଠ ଦୁର୍ଗ ମାତ୍ର ଥିଲା, ତାହା କ୍ରମେ ପାଟଣ ସହରରେ ପରିଣତ ହେଲା ।

ମୂଳରାଜଙ୍କ ଶାସନ ସବୁ ଦିଗରେ ବିକାଶ ଲାଭ କଲା । ଜୁନାଗଡ଼, କଚ୍ଛ ଓ ଲାଟର ଶାସକମାନେ ତାଙ୍କର ଶରଣ ପଶିଲେ । ଶାସକ ମାନଙ୍କ ମଧ୍ୟରେ ପାଟଣର ଶାସକ ମୁଖ୍ୟ ସ୍ଥାନ ଗ୍ରହଣ କଲେ । ଝାଲୋର, ମାରଓ୍ୱାଡ଼ ଏବଂ ଥାନକର ଶାସକମାନେ ତାଙ୍କର ସହାୟତା ଲୋଡ଼ିଲେ । ଉଜ୍ଜୟିନୀର ଶକ୍ତିଶାଳୀ ଚକ୍ରବର୍ତ୍ତୀ ରାଜାମାନେ ଏହି ପ୍ରଭାବଶାଳୀ ଶାସକଙ୍କୁ ଧ୍ୱଂସ କରିବା ନିମନ୍ତେ ବହୁବାର ଉଦ୍ୟମ କରି ସୁଦ୍ଧା ବିଫଳ ହେଲେ । ମୂଳରାଜଙ୍କ ମୃତ୍ୟୁ ସମୟକୁ ପାଟଣ ଗୋଟିଏ ଶକ୍ତିଶାଳୀ ରାଜ୍ୟରେ ପରିଣତ ହୋଇଥିଲା ।

ପ୍ରଭୁ ସୋମନାଥ ଥିଲେ ମୂଳରାଜଙ୍କ ପରିବାରର ଆରାଧ୍ୟ ଦେବତା । ତାଙ୍କର ବଂଶଧରମାନଙ୍କ ଉପରେ ପ୍ରଭୁଙ୍କର ଅସୀମ କୃପା ଥିଲା । ତାଙ୍କ ପୁଅ ଚାମୁଣ୍ଡା ଏବଂ ନାତି ଦୁର୍ଲ୍ଲଭ ସିଂହ ଦୁର୍ବଳ ତଥା ଅଯୋଗ୍ୟ ଥିବାରୁ ତାଙ୍କ ପରେ ମନ୍ଦିରର ପ୍ରଧାନ ସେବକ ଗଙ୍ଗସର୍ବଜ୍ଞଙ୍କର ଶିଷ୍ୟ ଭୀମଦେବ ସିଂହାସନରେ ବସିଲେ ।

ଗଜନୀର ହମୀର ପ୍ରଭାସର ପ୍ରଭୁ ସୋମନାଥଙ୍କ ମନ୍ଦିର ଧ୍ୱଂସ କରିବା ଉଦ୍ଦେଶ୍ୟରେ ଅଗ୍ରଗତି କରୁଥିବା ସମୟରେ ପ୍ରଭୁଙ୍କ ଦୟାରୁ ଆଜି ଭୀମଦେବଙ୍କ ଭଳି ଜଣେ ଶକ୍ତିଶାଳୀ ବ୍ୟକ୍ତି ଅନହିଲଓ୍ୱାଡ଼ର ଶାସନ ଗାଦିରେ ଅଧିଷ୍ଠିତ । ବିଦେଶୀକୁ ଧ୍ୱଂସ କରିବା ପାଇଁ ସେ ପ୍ରତିଜ୍ଞାବଦ୍ଧ । ଲୌହକୋଟର ରାଜା ଓ କ୍ଷମତାଶାଳୀ ବାଲମଦେବ ଯାହା କରି ପାରି ନାହାନ୍ତି, ତାହା କରିବା ନିମିତ୍ତ ଭୀମଦେବ ପ୍ରସ୍ତୁତ ହେଉଛନ୍ତି । ସେ ଏହି ଯେଉଁ ଆହ୍ୱାନ ଗ୍ରହଣ କରିଛନ୍ତି, ସେଥିପାଇଁ ନିକଟବର୍ତ୍ତୀ କଚ୍ଛ, ସୌରାଠ, ଗୁଜରାଟ, ଲାଟ ଓ କୋଙ୍କଣ ଭଳି ରାଜ୍ୟମାନଙ୍କର ଯୋଦ୍ଧାଙ୍କ ମୁହଁରେ ତାଙ୍କର ଭୂୟସୀ ପ୍ରଶଂସା ଧ୍ୱନିତ ହେଉଛି ।

ଅନହିଲଓ୍ୱାଡ଼ ପାଟଣ ଆଜି ସମସ୍ତଙ୍କୁ ଏକତ୍ର କରିବାର କେନ୍ଦ୍ରରେ ପରିଣତ ହୋଇଛି । ଏହାର ନେତୃତ୍ୱରେ ଶତ୍ରୁକୁ ଧ୍ୱଂସ କରିବା ପାଇଁ ଲଢ଼େଇ କରିବା ନିମିତ୍ତ ବିଭିନ୍ନ ରାଜ୍ୟର ଲୋକମାନେ ପରସ୍ପର ସହିତ ପ୍ରତିଯୋଗିତା କରୁଛନ୍ତି ! ଯେଉଁ ଶାସକମାନେ ଅତୀତରେ ପରସ୍ପରର ଶତ୍ରୁଭାବେ ଥିଲେ, ସେମାନେ ଆଜି ପାଟଣର ବୀର ଶାସକଙ୍କ ଆଦେଶ ପାଳନ କରିବାରେ ଗର୍ବ ଅନୁଭବ କରୁଛନ୍ତି । ଭୃଗୁକଚ୍ଛରୁ ଆସିଛନ୍ତି ଦଦ୍ଦା ଚାଲୁକ୍ୟ । ବହୁଦିନର ବୈର ଭୁଲିଯାଇ ଜୁନାଗଡ଼ରୁ ଆସିଛନ୍ତି ରତ୍ନାଦିତ୍ୟ, କଚ୍ଛରୁ ଲାଖାନି ଏବଂ ଆବୁରୁ ଆସିଛନ୍ତି ବିଲୋଚନପାଳ ପରମାର ।

ଦ୍ୱାରକାର୍‌, ବାଂଶଓ୍ୱାଡ଼ା ଏବଂ ଦାମନରୁ ଆବୁ ପର୍ଯ୍ୟନ୍ତ ସମସ୍ତ ଶାସକଙ୍କର ଆଜି ଏକମାତ୍ର କାର୍ଯ୍ୟ ଓ କାମନା ପ୍ରଭୁ ସୋମନାଥଙ୍କୁ ରକ୍ଷା କରିବା ପାଇଁ ସମବେତ ଉଦ୍ୟମ କରିବା । ତିନୋଟି ବିଷୟ ଆଜି ଗୁଜରାଟର ଏକତା ଓ ପାଟଣର ମହତ୍ତ୍ୱ ପ୍ରତିଷ୍ଠା କରିଛି । ତାହା ହେଉଛି ସାହସୀ ନେତା ଭୀମଦେବଙ୍କର ନେତୃତ୍ୱ ଗ୍ରହଣ କରିବା ନିମନ୍ତେ ଅନ୍ୟମାନଙ୍କର ଅକୁଣ୍ଠିତ ନିଷ୍ପତ୍ତି, ପ୍ରଭୁ ସୋମନାଥଙ୍କ ପ୍ରତି ଏକାନ୍ତ ଭକ୍ତି ଏବଂ ଆକ୍ରମଣକାରୀକୁ ବିତାଡ଼ିତ କରିବା ପାଇଁ ଦୃଢ଼ ପ୍ରତିଜ୍ଞା ।

ଉପସ୍ଥମାନ ବୀରମାନଙ୍କ ମଧ୍ୟରେ ଭୀମଦେବ ଥିଲେ ସର୍ବଶ୍ରେଷ୍ଠ । ସେ ଥିଲେ ଆଜନ୍ମ ନେତା । ଅବସ୍ଥା ଅନୁଯାୟୀ ସେ ସାହସିକତାକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ କାପୁରୁଷତାକୁ ନିର୍ମମ ଭାବେ ନିନ୍ଦା କରୁଥିଲେ । ତାଙ୍କର ତେଜସ୍ୱୀନ ଆଖିରୁ ଉତ୍ସାହର ନିଦର୍ଶନ ମିଳୁଥିଲା । ସମସ୍ତ ସମୟରେ ସେ ନିଜର ସୈନ୍ୟମାନଙ୍କ ସଙ୍ଗେ ଏକାକୀ ବୁଲିବୁଲି କରି ସେମାନଙ୍କୁ ଉତ୍ସାହିତ କରୁଥିଲେ । ଶକ୍ତିଶାଳୀ ଶତ୍ରୁ ବିରୁଦ୍ଧରେ କିଭଳି ଅଗ୍ରସର ହେବାକୁ ହେବ ସେ ତାହାର ଯୋଜନା କରିବାରେ ସମସ୍ତ ବିତାଉଥିଲେ । ବିଦେଶୀ ଆକ୍ରମଣ-କାରୀ ସହିତ ଯୁଦ୍ଧ କରିବା ନିମନ୍ତେ ପ୍ରତ୍ୟେକ ସବଳ ଲୋକ ତାଙ୍କ ସୈନ୍ୟ-ବାହିନୀରେ ଯୋଗ ଦେବା ଆବଶ୍ୟକ ବୋଲି ତାଙ୍କର ବାର୍ତ୍ତା ଗାଁଏ ଗାଁଏ ପ୍ରଚାରିତ ହୋଇଥିଲା । ଫଳରେ ପ୍ରତିଦିନ ବହୁ ଲୋକ ସୈନ୍ୟବାହିନୀରେ ଯୋଗ ଦେଉଥାନ୍ତି । ସେମାନେ ଯେପରି ଯଥାର୍ଥ ତାଲିମ ପାଆନ୍ତି, ସେମାନଙ୍କୁ ଯେପରି ଅସ୍ତ୍ରଶସ୍ତ୍ର ଦିଆଯିବା ସଙ୍ଗେ ସଙ୍ଗେ ଠିକ୍ ଭାବରେ ଦଳବଦ୍ଧ କରାଯାଏ ଏବଂ ସେମାନଙ୍କର ସମସ୍ତ ସୁବିଧା ପ୍ରତି ଯେପରି ଦୃଷ୍ଟି ଦିଆଯାଏ, ସେଥିପାଇଁ ଭୀମଦେବ ଓ ତାଙ୍କ ମନ୍ତ୍ରୀ ବିମଳ ଦିନରାତି ପରିଶ୍ରମ କରୁଥାନ୍ତି ।

ଭୀମଦେବ ପ୍ରତି ଗ୍ରାମରେ ଉତ୍ସାହର ସହିତ ଯୁଦ୍ଧ ଆୟୋଜନ କରୁଥାନ୍ତି । ସେତେବେଳେ ଯୁଦ୍ଧ ଛଡ଼ା ଲୋକେ ଆଉ କିଛି କଥାବାର୍ତ୍ତା ହେଉ ନ ଥିଲେ । ନିଜର ମାତୃଭୂମି ତଥା ଦେବସ୍ଥାନ ରକ୍ଷା ନିମିତ୍ତ ଯୁବକମାନେ ଉତ୍ସାହିତ ହୋଇ ଘର ଦ୍ୱାର ଛାଡ଼ି ଆସୁଥିଲେ ଏବଂ ସ୍ତ୍ରୀଲୋକମାନେ ହସ ହସ ହୃଦୟରେ ଏହି ବୀର ଯୁବକମାନଙ୍କୁ ବିଦାୟ ଦେଉଥିଲେ । ଭୀମଦେବଙ୍କ ନେତୃତ୍ୱରେ ଯୁଦ୍ଧ କରି ଶତ୍ରୁକୁ ତଡ଼ି ଦେବା ପାଇଁ ପ୍ରତ୍ୟେକେ ମନେ ମନେ ଦୃଢ଼ ଭାବେ ସ୍ଥିର କରିଥିଲେ । ଲୋକଙ୍କର ଏହି ଉତ୍ସାହ ଉଦ୍ଦୀପନା ମଧ୍ୟରେ ଭୀମଦେବ

ହସ ହସ ମୁହଁରେ ଏବଂ ଆତ୍ମବିଶ୍ୱାସଭରା ହୃଦୟରେ ଯୁଦ୍ଧ ଆୟୋଜନରେ ଲାଗି ପଡ଼ିଥାନ୍ତି ।

ପାଟଣ ରାଜପ୍ରାସାଦର ଗୋଟିଏ ଶ୍ରେଷ୍ଠ କୋଠରୀରେ ଭୀମଦେବଙ୍କ ବିଚକ୍ଷଣ ମନ୍ତ୍ରୀ ଦାମୋଦର ମେହେତା ବସି କଣ କପରି କରିବାକୁ ହେବ ତାହା ଠିକ୍ କରୁଛନ୍ତି । ଗତ କେତୁ ଦିନ ହେବ ସେ ଶୋଇବାକୁ ମୁହୂର୍ତ୍ତେ ସୁଦ୍ଧା ସମୟ ପାଇ ନାହାନ୍ତି । ହମୀର ଅଗ୍ରସର ହେଉଥିବା ସମ୍ବାଦ ପାଇବା ସଙ୍ଗେ ସଙ୍ଗେ ତାଙ୍କର ଉତ୍କଣ୍ଠା ବଢ଼ିଛି । ସେ ସ୍ତ୍ରୀ, ବୃଦ୍ଧ ଓ ପିଲାମାନଙ୍କୁ ପାଟଣରୁ ପାବାଗଡ଼ ପଠାଇ ଦେଲେ ଏବଂ ବ୍ୟବସାୟୀମାନଙ୍କୁ ଭୃଗୁକଚ୍ଛ (ବ୍ରୋଚ) ବା ଖମ୍ବାତ୍ (କାମ୍ବେ) ଚାଲିଯିବା ପାଇଁ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ଯେଉଁମାନେ ଯୁଦ୍ଧ କରି ନ ପାରିବେ ସେମାନଙ୍କୁ ଦୂରଦୂରାନ୍ତ ଜାଗାକୁ ପଠାଇବାର ବ୍ୟବସ୍ଥା କଲେ । ହମୀର ଆକ୍ରମଣ କଲେ ରାଜଧାନୀ ଯେପରି ବହୁଦିନ ପର୍ଯ୍ୟନ୍ତ ଶତ୍ରୁର ପ୍ରତିରୋଧ କରି ପାରିବେ ସେଥିପାଇଁ ଖାଦ୍ୟ ଓ ପାଣି ସଞ୍ଚିତ କରି ରଖିବାର ବ୍ୟବସ୍ଥା କଲେ । ଖମ୍ବାତ ବନ୍ଦରରେ ଥିବା ବାଣିଜ୍ୟ ଜାହାଜମାନଙ୍କୁ ସେ ଯୁଦ୍ଧ ଜାହାଜରେ ପରିଣତ କଲେ । ଆଖପାଖ ରାଜ୍ୟମାନଙ୍କୁ ଯାଇ ପ୍ରତ୍ୟେକଙ୍କ ସହିତ ବନ୍ଧୁତାମୂଳକ ସନ୍ଧି ସ୍ଥାପନ କରି ସେମାନଙ୍କ ସୈନ୍ୟବାହିନୀ ଯେପରି ଏହି ଅଭିଯାନରେ ପାଟଣ ସୈନ୍ୟବାହିନୀ ସହିତ ଯୋଗ ଦିଅନ୍ତି ତାହାର ବ୍ୟବସ୍ଥା କଲେ ।

ସେ କେବଳ ଏତିକ ଆୟୋଜନ କରି ନିଶ୍ଚିନ୍ତ ହେଲେ ନାହିଁ । ଗୁଜୁରାଟର ପ୍ରତ୍ୟେକ ଗାଁରେ ଯେପରି ଶାନ୍ତି ଶୃଙ୍ଖଳା ଠିକ୍ ରହେ, ତାହ ଦେଖିବାର ଦାୟିତ୍ୱ ସେ ନିଜେ ନେଲେ । କାଳେ ଶତ୍ରୁ କବଳରେ ପଡ଼ୁଥିବା ନିରୀହ ଲୋକମାନଙ୍କ ଉପରେ ହମୀର ଅତ୍ୟାଚାର କରିବ, ସେଥିପାଇଁ ଆକ୍ରମଣକାରୀ ଆସୁଥିବା ରାସ୍ତାର ଆଖପାଖ ଗାଁମାନଙ୍କରୁ ସ୍ତ୍ରୀ ତଥା ପିଲାଛୁଆଙ୍କୁ ଦୂରଦୂରାନ୍ତରେ ଥିବା ସୁରକ୍ଷିତ ଅଞ୍ଚଳକୁ ପଠାଇ ଦେଲେ । ଏହି ସବୁ କାର୍ଯ୍ୟ ସେ ସହାସ ବଦନରେ ଓ ମଧୁର ବାକ୍ୟରେ କରୁଥିଲେ ।

ଦାମୋଦର ମେହେତା କେବେ ରାଗିବାର ସେ ଦେଖି ନ ଥିବା କଥା ମନ୍ତ୍ରୀ ବିମଳ ଯାହା କହିଥିଲେ ତାହା ଅକ୍ଷରେ ଅକ୍ଷରେ ସତ୍ୟ । ଏହାଛଡ଼ା ମେହେତାଙ୍କର ସବୁଠାରୁ ବଡ଼ ଗୁଣ ଥିଲା, ପ୍ରତ୍ୟେକ ଜଟିଳ ସମସ୍ୟାର ସେ ସମାଧାନ କରିପାରୁଥିଲେ ।

ଏହିପରି ଭାବରେ ହମୀରର ସମ୍ମୁଖୀନ ହେବାପାଇଁ ଗୁଜରାଟ ପ୍ରସ୍ତୁତ ହେଉଥାଏ ।

ଗତ ତିନି ଦିନ ଧରି ପ୍ରତ୍ୟେକ ସୈନ୍ୟ ଗୋଟିଏ ବିଷୟରେ କଥାବାର୍ତ୍ତା ହେଉଥିଲେ ଏବଂ ତାହା ଫଳରେ ଗୋଟିଏ ପ୍ରକାର ନୈରାଶ୍ୟ ଭାବ ଖେଳି ଯାଇଥିଲା । ସେହି ବିଷୟଟି ହେଉଛି, ମରୁଭୂମିର ଶାସକ ଘୋଘାବାପାଙ୍କୁ ହମୀର ମାରିଦେଇଛି ଏବଂ ପ୍ରଭୁସୋମନାଥଙ୍କୁ ରକ୍ଷା କରିବା ପାଇଁ ତାଙ୍କ ଭୂତ ଗୁଜରାଟକୁ ଆସିଛି । କେତେକ ଏହି ଭୂତକୁ ଦେଖିଛନ୍ତି ଏବଂ ଆଉ କେତେକ ତାହା ସହିତ କଥାବାର୍ତ୍ତା ମଧ୍ୟ କରିଛନ୍ତି ବୋଲି କହୁଥାନ୍ତି । ହମୀର ଖୁବ୍ ଶକ୍ତିଶାଳୀ । ତା ସହିତ ସମ୍ମୁଖ ପ୍ରତିରୋଧରେ କେହି ସମକକ୍ଷ ହେବା ସମ୍ଭବପର ନୁହେ । ତେଣୁ ସମସ୍ତେ ଜଙ୍ଗଲକୁ ଚାଲିଯାଇ ଓ ଲୁଚି ରହି ଶତ୍ରୁର ପ୍ରତିରୋଧ କରିବା ପାଇଁ ଭୂତ ପ୍ରତ୍ୟେକଙ୍କୁ ପରାମର୍ଶ ଦେଉଥିଲା ବୋଲି ଲୋକେ କହୁଥିଲେ । ଏହି ସବୁ କଥାବାର୍ତ୍ତା ଫଳରେ ସାହସୀ ଲୋକମାନଙ୍କ ହୃଦୟରେ ସୁଦ୍ଧା ଦୁର୍ବଳତା ଦେଖାଦେଇଥିଲା । ଏହିସବୁ ଭୟାବହ କପୋଳକଳ୍ପିତ ଗପ ମଧ୍ୟରେ ଗୋଟିଏ ଗପ ହେଲା, ଭୂତ ସହିତ ସେଦିନ ରାତିରେ ହୋଇଥିବା ଅର୍ଜନ ଗାନ୍ଧିଭର ଆଳାପ । ଗାନ୍ଧିଭ ପାଟଣରେ ପହଞ୍ଚି ସମସ୍ତ ଘଟଣା ଭୀମଦେବଙ୍କ ଆଗରେ ବର୍ଣ୍ଣନା କରିବାରୁ ସେ ଏହା ଶୁଣି କଥାଟା ହସରେ ଉଡେଇ ଦେଲେ । କିନ୍ତୁ ଭୀମଦେବ ହସରେ ଉଡେଇ ଦେଲେ ବୋଲି ଏହାକୁ ମିଥ୍ୟା କହି ହେବ ନାହିଁ । ତେଣୁ ବହୁ ଲୋକ ମନେମନେ ସନ୍ଦେହ ପୋଷଣ କରୁଥାନ୍ତି ।

ସବୁ ଆଡ଼ର ଲୋକେ ଘୋଘାବାପାଙ୍କ ଭୂତ ସମ୍ପର୍କରେ କଥାବାର୍ତ୍ତା ହେଉଥାନ୍ତି । କେତେକ କହୁଥାନ୍ତି, ଏହା ଠିକ୍ ଘୋଘାବାପାଙ୍କ ଯୁବକ ବେଳର ଚେହେରା । ଆଖି ଦୁଇଟି ଅତ୍ୟନ୍ତ ଭୟଙ୍କର ଏବଂ ଦେହର ଚର୍ମ ଶୁଷ୍କ । ତାର ବେକରେ ଆଘାତ ଲାଗିଥିବାରୁ ରକ୍ତ ବହୁଥିଲା । ଏଭଳି ନାନା କଥା ଏତେ ଲୋକ କହୁଥାନ୍ତି ଯେ,ସତେ ଯେପରି ପାଟଣର ସମସ୍ତେ ସେହି ଭୂତକୁ ଦେଖିଛନ୍ତି

ଭୀମଦେବଙ୍କ ସୈନ୍ୟବାହିନୀ ପାଟଣର ଚାରିପାଖରେ ଜଗି ଶିବିର ପକାଇଥାନ୍ତି ଏବଂ ସେମାନଙ୍କ ସଂଖ୍ୟା ପ୍ରତିଦିନ ବଢ଼ି ଚାଲିଥାଏ । ଦିନେ ସନ୍ଧ୍ୟା-ବେଳେ ଏହି ଛାଉଣୀର ବାହାରେ କେତେକ ପ୍ରହରୀ ବସି ଗପ କରୁଥାନ୍ତି ଏବଂ ସେମାନଙ୍କ ଗପର ବିଷୟ ବସ୍ତୁ ଥାଏ ଘୋଘାବାପାଙ୍କ ଭୂତ କଥା । ହଠାତ୍ କିଛି ଦୂରରେ ସେମାନେ ଧୂଳି ଉଡ଼ିବାର ଦେଖିଲେ । ଏହା ଦେଖି ପ୍ରହରୀମାନେ

ସାବଧାନ ହୋଇଗଲେ ଏବଂ ଅସ୍ତ୍ରଶସ୍ତ୍ର ଧରି ପ୍ରସ୍ତୁତ ହୋଇଗଲେ । ଗୋଟିଏ ଓଟ ଅତ୍ୟନ୍ତ ବେଗରେ ସେମାନଙ୍କ ଆଡ଼କୁ ଆସୁଥିବାର ସେମାନେ ଦେଖି-ପାରିଲେ । ଜଣେ ପ୍ରହରୀ ଶିବିରର ଅନ୍ୟ ପ୍ରହରୀମାନଙ୍କୁ ସଚେତ କରିଦେଲା । ଆଉ ଜଣେ ଗୋଟିଏ ଯୁବକ ବସିଥିବା ପ୍ରଥମ ଓଟର ନିକଟକୁ ଗଲା ଓ ଆରୋହୀକୁ ଦେଖି ସେ ପ୍ରହରୀ ଭୟଭୀତ ହୋଇଗଲା । ଯେଉଁ ଭୂତ ବିଷୟରେ କିଛି କ୍ଷଣ ପୂର୍ବରୁ ସେମାନଙ୍କ ମଧ୍ୟରେ କଥାବାର୍ତ୍ତା ହେଉଥିଲା, ଏ ତ ସେହି ! ସେହିପରି ଭୟଙ୍କର ଆଖି ଦୁଇଟି, ଶୁଖିଲା ଚମ ଏବଂ କାନ୍ଧରେ ଆଘାତ ଫଳରେ ହୋଇଥିବା ଘା । ଭୟରେ ଥରି ଥରି ପ୍ରହରୀଟି ପଚାରିଲା, "ଆପଣ କିଏ ?"

ଓଟରେ ବସିଥିବା ଯୁବକ ଜଣକ ଜବାବ ଦେଲା, "ମୁଁ ଚୌହାନ । ମହାରାଜା ଭୀମଦେବଙ୍କ ସହିତ ଦେଖା କରିବାକୁ ପ୍ରଭାସରୁ ଆସିଛି ।"

ପ୍ରହରୀ ଜଣକ ନିଜର ଅଜାଣତରେ କହି ପକାଇଲା—"ଘୋଘାବାପା !" ମାତ୍ର ଯୁବକ ହସିଲା ନାହିଁ । ଭୂତ କଣ ହସେ ? ଯଦି ସେ ଘୋଘାବାପା ନୁହନ୍ତି ତା ହେଲେ ନାହିଁ ନ କଲେ କାହିଁକି ? ସତ କଥାକୁ କଣ କିଏ ମନା କରେ ? ଉଷ୍ଟ୍ରାରୋହୀ ଯୁବକ ଆଗକୁ ମାଡ଼ି ଚାଲିଲା । ହିଂସ୍ର ଏବଂ ତୃଷ୍ଣାର୍ତ୍ତ ପ୍ରହରୀର ମନରେ ମଧ୍ୟ ଏହିଭଳି ପ୍ରତିକ୍ରିୟା ସୃଷ୍ଟି ହେଲା । ଯୁବକ କୌଣସି କଥା ନଶୁଣି ବା ଅନୁମତିକୁ ଅପେକ୍ଷା ନକରି ନିର୍ଭୟରେ ଦୁର୍ଗ ଅଭିମୁଖେ ଯେଉଁଭଳି ଗତି କଲା ତାହା ଫଳରେ ଏହି କଥା ସୈନ୍ୟଗୁଡ଼ିଣୀର ଚାରିଆଡ଼େ ବ୍ୟାପିଗଲା !

ନିଜ ଓଟ ସହ ଆଗେଇ ଯାଇ ଯୁବକ ଦୁର୍ଗର ଦ୍ୱାର ଦେଶରେ ପହଞ୍ଚି ସେଠାରେ ବହୁ ସଂଖ୍ୟକ ସୈନ୍ୟ ଜମା ହୋଇଥିବାର ଦେଖିଲା । ଅନ୍ଧାର ହୋଇଗଲାଣି । ଯୁବକ ତାର ଓଟକୁ ଆଣ୍ଠେଇ ଦେଇ ଓଟ ପିଠିରୁ ଓହ୍ଲାଇଲା ଏବଂ ତାର ସାଙ୍ଗରେ ପଛେ ପଛେ ଆସୁଥିବା ବ୍ରାହ୍ମଣ ଜଣକ ମଧ୍ୟ ଓହ୍ଲାଇଲେ । ସୈନ୍ୟମାନେ ଉଭୟଙ୍କୁ ସାଙ୍ଗେ ସାଙ୍ଗେ ଘେରିଗଲେ ।

ଯୁବକ କହିଲା, "ମୁଁ ମହାରାଜା ଭୀମଦେବଙ୍କ ସହିତ ଦେଖା କରିବାକୁ ଚାହେଁ । ପ୍ରଭାସରୁ ବାର୍ତ୍ତା ଆଣିଛି ।" ବୃଦ୍ଧ ଦୁର୍ଗପାଳ ଦୁର୍ଗ ଭିତରୁ ଆସି ସୈନ୍ୟମାନଙ୍କୁ ଦୂର କରିଦେଲା । ତାହା ସଙ୍ଗେ ଜଣେ ମଶାଲଧାରୀ ଆସିଥିଲା । ଭିତରୁ ଆସୁଥିବା ବୃଦ୍ଧ ଯେପରି ଯୁବକଙ୍କୁ ଦେଖି ଚିହ୍ନି ପାରିବ, ସେଥିପାଇଁ ରୁଣ୍ଡ ହୋଇଥିବା ସୈନ୍ୟମାନେ ଆଡ଼େଇ ଗଲେ । ମଶାଲ ଆଲୁଅରେ ଯୁବକଙ୍କୁ ଦେଖି ବୃଦ୍ଧ ଆଶ୍ଚର୍ଯ୍ୟ ହୋଇଗଲା ଓ ତାର ଆଖି ଖୋସି ହୋଇଗଲା । ହାତରେ

ଆଖିକୁ ମକଚି ଓ ପୁଣି ଥରେ ଚାହିଁ ସେ କହିଲା, "ବାପରେ, ଏ ତ ଘୋଡାବାଇଆ !" ସେ ପାଟିକରି ଦୁର୍ଗ ଭିତରକୁ ଫେରିବାକୁ ଲାଗିଲା । ଏହା ଦେଖି ସୈନ୍ୟମାନେ ମଧ୍ୟ ପଳାଇଗଲେ ।

ଯୁବକ ଦୃଢ଼ତାର ସହିତ କହିଲା, "ଅର୍ଜ୍ଜୁନ ଗାନ୍ଧର୍ଭ, ମୁଁ ଗୁରୁତ୍ୱପୂର୍ଣ୍ଣ ବିଷୟରେ ମହାରାଜ ଭୀମଦେବଙ୍କୁ ଦେଖାକରିବାକୁ ଚାହେଁ । ଯାଇ ତାଙ୍କୁ କୁହ ।"

ସାମନ୍ତ ଏବଂ ତାଙ୍କ ସାଙ୍ଗରେ ଆସିଥିବା ବୃଦ୍ଧଙ୍କୁ ଅନ୍ଧାରରେ ଛାଡ଼ି ଦେଇ ବୃଦ୍ଧ ଅର୍ଜ୍ଜୁନ ଗାନ୍ଧର୍ଭ ଏବଂ ଆଲୁଅ ଧରି ଆସିଥିବା ଲୋକଟି ଆସ୍ତେ ଆସ୍ତେ ଦୁର୍ଗ ଭିତରକୁ ଚାଲିଗଲେ । ଘୋଡାବାଇଆଙ୍କ ଭୂତ ପାଖରେ କିଏ ଠିଆ ହୁଅନ୍ତା ? ସୈନ୍ୟମାନେ ମଧ୍ୟ ପଳାଇ ଗଲେ । ଅର୍ଜ୍ଜୁନ ଗାନ୍ଧର୍ଭ ଚାଲିଯାଇଥିବା ରାସ୍ତାରେ ଯୁବକ ନିଃସଙ୍କୋଚରେ ଆସ୍ତେ ଆସ୍ତେ ଅଗ୍ରସର ହେଲେ ।

## ୨୮

## ଯୋଦ୍ଧାମାନଙ୍କର ବଇଠକ

ସେଦିନ ସନ୍ଧ୍ୟାବେଳେ ପାଟଣ ରାଜପ୍ରାସାଦର ବିରାଟ ସଭାମଣ୍ଡପରେ ମିତ୍ର ଶାସକମାନଙ୍କର ସମବେତ ସମ୍ମିଳନୀ ବସିଥାଏ । ତହିଁରେ ପୌରୋହିତ୍ୟ କରୁଥାନ୍ତି ଭୀମଦେବ । ସେ ଦମ୍ଭରେ ତାଙ୍କ ନିଶ ମୋଡ଼ୁଥାନ୍ତି । ତାଙ୍କ ଡାହାଣରେ ବସିଥାନ୍ତି ମଧ୍ୟମ ବୟସ୍କ ଓ ସୁଗଠିତ ବପୁ ଜୁନାଗଡ଼ର ଶାସକ ରନ୍ନାଦିତ୍ୟ । ମୂଳରାଜ ରନ୍ନାଦିତ୍ୟଙ୍କ ପିତାମହଙ୍କୁ ପରାସ୍ତ କରି ଦିନେ ଜୁନାଗଡ଼କୁ ଚାଲୁକ୍ୟର ଅନ୍ତର୍ଭୁକ୍ତ କରିଥିଲେ । ସେ ଦିନରୁ ଦୁଇ ରାଜ୍ୟ ଭିତରେ ଚାଲିଆସିଥିବା ବୈରଭାବ ଭୁଲି ସେ ଆଜି ଆସିଛନ୍ତି । ତାଙ୍କ ପାଖକୁ କଚ୍ଛର ବୃଦ୍ଧ ବୀର କାମାଲଖାଁ ବସିଥାନ୍ତି । ମୁଖର ଶୁଭ୍ର ଶ୍ମଶ୍ରୁ ଭିତରେ କ୍ଷତ ଦାଗ ତାଙ୍କ ବୀରତ୍ୱର ପରିଚୟ ଦେଉଛି । ତାଙ୍କର ଗୋଟିଏ ମାତ୍ର ଚକ୍ଷୁ ଥାଏ । ତଥାପି ସେହି ଗୋଟିକ ଚକ୍ଷୁ ସାହାଯ୍ୟରେ ସେ ଦୁଇ ଚକ୍ଷୁ ଥିବା ଲୋକମାନଙ୍କଠାରୁ ଅଧିକ ଦୃଷ୍ଟିସମ୍ପନ୍ନ ଦେଖାଯାଉଥାନ୍ତି ।

ଭୀମଦେବଙ୍କ ବାମ ପାଖରେ ବସିଥାନ୍ତି ଭରୁଚ ରାଜପରିବାରର ଦଣ୍ଡୀ । ପାଟଣ ରାଜଶକ୍ତିକୁ ସେ ଅନ୍ତମାନରେ ଭୟ କରୁଥିବାରୁ ଭୀତ ତ୍ରସ୍ତ ହୋଇ ଆସିଛନ୍ତି ଏବଂ କପଟ ଚଞ୍ଚଳ ଚେହେରା ଓ ଶିବେ, ତାହା ହେଉଛି ତାଙ୍କର ଶତ୍ରୁ । ତାଙ୍କ ପାଖକୁ ଭୀମଦେବଙ୍କର ପରମ ଭକ୍ତ, ଅଠର ବର୍ଷ ବୟସ୍କ ଯୁବକ ତ୍ରିଲୋଚନ ପାଲ ନଜର ଆରାଧ୍ୟ ବ୍ୟକ୍ତିଙ୍କୁ ଗୁହିଁ ବସିଛନ୍ତି । ଭୀମଦେବଙ୍କର ଦୁଇ ମନ୍ତ୍ରୀ ଦାମୋଦର ମେହେତା ଓ ବିମଳ ତାଙ୍କ ଆଗରେ ବସିଛନ୍ତି । ସେମାନଙ୍କ ପ୍ରୃଷ୍ଠପାଖରେ ଅନ୍ୟାନ୍ୟ ମନ୍ତ୍ରୀ ତଥା ବିଭିନ୍ନ ରାଜାମାନଙ୍କର ସେନାପତିମାନେ ବସିଛନ୍ତି ।

ଆଲୋଚ୍ୟ ବିଷୟ ହେଲା, ସେମାନେ ଆଗକୁ ଅଗ୍ରସର ହୋଇ ହମୀରର ମୁହାଁମୁହିଁ ହେବେ ନା ଯେଉଁଠାରେ ଅଛନ୍ତି ସେଇଠାରେ ରହି ହମୀର ଆସିଲେ ତାର ପ୍ରତିରୋଧ କରିବେ ।

ଭୀମଦେବ କହିଲେ, "ନିଜ ପକ୍ଷରୁ ଆକ୍ରମଣ କରିବା ବିଜ୍ଞତାର କାର୍ଯ୍ୟ ବୋଲି ମୋର ସୁଚିନ୍ତିତ ମତ । ଆମ ସୈନ୍ୟବାହିନୀର ସମ୍ମୁଖୀନ ହେବା ଶତ୍ରୁ ପକ୍ଷରେ କଷ୍ଟକର ହେବ ।"

ଦାମୋଦର ମେହେତା ମୁଣ୍ଡ ହଲାଇ ହସି କହିଲେ, "ମହାରାଜ, ବହୁ ଶକ୍ତିଶାଳୀ ଶାସକଙ୍କୁ ପରାଜିତ କରି ଯେଉଁ ଆକ୍ରମଣକାରୀ ଅଗ୍ରସର ହୋଇ ଆସୁଛି, ତାହାର ଶକ୍ତିକୁ ଅବହେଳା କରିବା ଆମ ପକ୍ଷରେ ଅନୁଚିତ ହେବ ।"

ଭୀମଦେବ ଜୋର୍ ଦେଇ କହିଲେ, "ଆମ ସୈନ୍ୟବାହିନୀର ବିଶାଳତା ତୁମେ ବୋଧହୁଏ ଜାଣନାହିଁ । ତାହାଛଡ଼ା, ଶତ୍ରୁ ଏଠାକୁ ଆସିବା ବେଳକୁ ଆମ ସୈନ୍ୟବାହିନୀର ସଂଖ୍ୟା ଆହୁରି ଅଧିକ ବଢ଼ିଯିବ । ଅନ୍ୟ ପଟରେ ଶତ୍ରୁର ସୈନ୍ୟବାହିନୀ କ୍ଲାନ୍ତ ହୋଇଥିବା ସ୍ଥଳେ, ଆମ ସୈନ୍ୟବାହିନୀ ସଂପୂର୍ଣ୍ଣ ସତେଜ ଥିବେ ।"

ଜୁନାଗଡ଼ର ଶାସକ ରହ୍ନାଦିତ୍ୟ ଭୀମଦେବଙ୍କୁ ସମର୍ଥନ କରି କହିଲେ, "ତାହାଛଡ଼ା ଶତ୍ରୁ ପକ୍ଷରେ ଏ ଦେଶ ମଧ୍ୟ ଅପରିଚିତ ।"

ଦାମୋଦର କହିଲେ, "ମରୁଭୂମି ଯେ ଶତ୍ରୁ ପକ୍ଷରେ ଦିନେ ଅଜଣା ଥିଲା ଏ କଥା ଆମେ ଭୁଲିଯିବା ଉଚିତ ନୁହେଁ । ଆମେ ଯଦି ଆଗକୁ ଅଗ୍ରସର ହୋଇ ପରାଜିତ ହେଉ, ତାହାହେଲେ ପ୍ରଭାସ ମଧ୍ୟରେ ଆଉ କେହି ରହିବେ ନାହିଁ ।

ବରଂ ଅନ୍ୟ ଢଙ୍ଗରେ ଆମେ ଯେବେ ପାଟଣକୁ ଆକ୍ରମଣ କରିବା ପାଇଁ ଶତ୍ରୁକୁ ବାଧ୍ୟ କରିବା ଭଳି ଅବସ୍ଥା ସୃଷ୍ଟି କରୁ, ତାହାହେଲେ ଅଧିକ ଅଗ୍ରସର ହେବା ପାଇଁ ତାକୁ ଛଅମାସରୁ ବେଶୀ ସମୟ ଲାଗିବ ।"

ବିଲୋଚନ ପାଳ ଏହି ମତକୁ ସମର୍ଥନ କରି କହିଲେ, "ଏହାଦ୍ୱାରା ଶତ୍ରୁ ଓ ତାର ସୈନ୍ୟବାହିନୀକୁ ଆହୁରି କ୍ଳାନ୍ତ କରିହେବ ।"

ଭୀମଦେବ ପ୍ରତିବାଦ କରି ଦୃଢ଼ତାର ସହିତ କହିଲେ, "ନା, ପାଟଣର ପାଚେରି ସେପଟେ ଯାହା ଘଟିବ, ଯଦି ଏପରି ବଳିଷ୍ଠ ସୈନ୍ୟବାହିନୀ ଥାଇ ଆମେ ସେଥି ପ୍ରତି ଆଖି ବୁଜିଦେଉ ତା ହେଲେ ଆମ ନାମରେ କଳଙ୍କ ଲାଗିବ ।" ଉତ୍ସାହରେ ଉଠିପଡ଼ି ଓ ସିଧାଭାବେ ଠିଆହୋଇ ସେ କହିଲେ, "ହମୀରକୁ ସିଧା ଆକ୍ରମଣ କରି ତାର ସୈନ୍ୟବାହିନୀକୁ ଧ୍ୱଂସ କରିବାକୁ ମୁଁ ଚାହେଁ । ଆକ୍ରମଣକାରୀକୁ ଧ୍ୱଂସ କରିବା ଉଦ୍ଦେଶ୍ୟରେ ପ୍ରଭୁ ସୋମନାଥ ମୋତେ ଜନ୍ମ ଦେଇଛନ୍ତି ବୋଲି ମୁଁ ଭାବେ, ମେହେତାଜୀ ! ଆମେ ଆଗକୁ ଅଗ୍ରସର ହେବା; ଆମକୁ କିଏ ବାଧା ଦେବାକୁ ସାହସ କରୁଛି ଦେଖିବା । ଗୁଜରାଟର ସମବେତ ଉଦ୍ୟମରେ ଶତ୍ରୁକୁ ଜବତ କରିବାରେ ଆମେ ସଫଳ ହେବା । ଆମର ଏହି ସବଳ ନୀତିକୁ ନାପସନ୍ଦ କରୁଥିବା ଲୋକେ ନିଜ ନିଜ ଘରକୁ ଫେରିଯାନ୍ତୁ । ବାକି ଯେତିକ ଆମେ ରହିବୁ ସେମାନେ ହମୀରକୁ ପରାଜିତ କରି ଅମର ହେବୁ ।" ଭୀମଦେବ ଏହା କହୁଥିବା ବେଳେ ତାଙ୍କର ଆଖି ଦୁଇଟି ଉଜ୍ଜ୍ୱଳ ଦେଖାଯାଉଥାଏ ଏବଂ ନିଜ ଉପରେ ଆତ୍ମବିଶ୍ୱାସ ବଢ଼ିଥିବା ପରି ଜଣାଯାଉଥାଏ ।

ଏକାଧିକ ଯୋଦ୍ଧା "ଧନ୍ୟ ଧନ୍ୟ" ବୋଲି ଶବ୍ଦ କଲେ । ଭୀମଦେବଙ୍କ କଥାରେ ସେମାନଙ୍କ ମଧ୍ୟରେ ଉତ୍ସାହ ଦେଖାଦେଲା ଏବଂ ଯୁଦ୍ଧ କରିବା ପାଇଁ ବ୍ୟଗ୍ରତା ପ୍ରକାଶ ପାଇଲା ।

ଜୁନାଗଡ଼ର ରତ୍ନାଦିତ୍ୟ ଦାମୋଦର ମେହେତାଙ୍କୁ ଲକ୍ଷ୍ୟ କରି ପଚାରିଲେ, "ମରୁଭୂମି ଅତିକ୍ରମ କରି କ୍ଳାନ୍ତ ହୋଇ ଆସିଥିବା ହମୀରର କଣ କିଛି କରିବାକୁ ଶକ୍ତି ଥିବ ବୋଲି ଆପଣ ଭାବୁଛନ୍ତି ?" ଭୀମଦେବଙ୍କ ମନ୍ତ୍ରୀ ଅଯଥା ଆପତ୍ତି ଉଠାଇଛନ୍ତି ବୋଲି ଅଧିକାଂଶ ଭାବିଲେ ।

ଦାମୋଦର ପୁଣି ଦୃଢ଼ତାର ସହିତ କହିଲେ, "ଯେଉଁ ଲୋକ ଏତେ କଷ୍ଟ ସହ୍ୟ କରି ମରୁଭୂମି ଅତିକ୍ରମ କରି ଆସିଛି, ଏହି ଶସ୍ୟଶ୍ୟାମଳା ଭୂମିରେ ଚାଲିବା ପାଇଁ ସେ କ୍ଳାନ୍ତ ଅନୁଭବ କରିବ ବୋଲି ଆପଣ ଭାବୁଛନ୍ତି ?"

ଭୀମଦେବ କହିଲେ, "ସେ ଯେବେ କ୍ଳାନ୍ତ ନ ହୋଇଥାଏ, ତାହାହେଲେ ଆମେ ତାହା କରିଦେବା । ମେହେତାଜୀ, ତୁମେ ପାଟଣରେ ରହ । ଆମର ଯାହା ଦରକାର ହେଉଥିବ ତୁମେ ପଠାଉଥିବ । ପ୍ରଭୁ ସୋମନାଥଙ୍କ ଶତ୍ରୁକୁ ଧ୍ୱଂସ କରି ଆମେ ଏହି ପବିତ୍ର ଭୂମିକୁ ଉଦ୍ଧାର କରିବୁ— ଏ ବିଷୟରେ ମୋର ପୂରା ବିଶ୍ୱାସ ଅଛି । ଯେ ପର୍ଯ୍ୟନ୍ତ ପ୍ରଭୁ ସୋମନାଥ ଆମ ସପକ୍ଷରେ ଅଛନ୍ତି, ହମୀର ଆମର କଣ ବା କରିବ ?"

ସମସ୍ତେ ଉତ୍ସାହିତ ହୋଇ କହିଲେ, "ମହାରାଜ ! ଆପଣ ଠିକ୍ କଥା କହୁଛନ୍ତି ।"

"ଆମେ କଣ ନିଜ ହାତରେ ଚୁଡ଼ି ପିନ୍ଧିଲୁଣି ?" ଏହା କହିବା କ୍ଷଣି ବୁଢ଼ା କମାଲଖାଁଙ୍କର ଆଖି ଉଜ୍ଜ୍ୱଳ ହୋଇଗଲା । ଭୀମଦେବ ତାଙ୍କ ଆସନରୁ କୁଦିପଡ଼ି କହିଲେ, "ଆମ ବିଷୟରେ ଏ ଭଳି କଥା କିଏ କହିବ ?"

ସତେ ଯେପରି ଏହି ପ୍ରଶ୍ନର ଉତ୍ତର ଦେଉଛି, ସେହିପରି ଭାବେ ଭିତରକୁ ଆସି ଗୋଟାସାରା ଥରି ଥରି ଅର୍ଜୁନ ଗାନ୍ଧିଭ କହିଲା, "ଅନ୍ନଦାତା, ଘୋଘାବାପା !" ତାର ପଗଡ଼ି ଫିଟି ପଡ଼ୁଥାଏ, ଆଖିରେ ଭୟର ଚିହ୍ନ । ଭୟରେ ତାର ହାତ ଯୋଡ଼ିକ ଠିକ୍ ବରଡ଼ା ପତ୍ର ପରି ଥରିବାକୁ ଲାଗିଲା । ସମସ୍ତେ ଏକ ଲୟରେ ତା ଆଡ଼କୁ ଚାହିଁଲେ ।

ଭୀମଦେବ ରାଗିଯାଇ ପଚାରିଲେ, "ଗାନ୍ଧିଭ, କଣ ଖବର ? କଣ ହେଲା ?"

ଅର୍ଜୁନ ନିଜ ଆଖି ଘୋଡାଇ କହିଲା, "ଅନ୍ନଦାତା ! ଘୋଘାବାପା ଆସିଛନ୍ତି ।" ଉପସ୍ଥିତ ଭଦ୍ରବ୍ୟକ୍ତିମାନେ ଆଶ୍ଚର୍ଯ୍ୟ ହୋଇ ଠିଆ ହେଲେ । ଏକମାତ୍ର ଭୀମଦେବ ବିବ୍ରତ ନ ହୋଇ ସ୍ଥିର ଭାବରେ ରହିଥାନ୍ତି ।

ସେ କହିଲେ, "ଗାନ୍ଧିଭ ! ସେ ଯେ ହେଉନା କାହିଁକି, ତାକୁ ଆସିବାକୁ ଦିଅ । ମୁଁ ମୃତ୍ୟୁ ଦେବତାକୁ ମଧ୍ୟ ଦେଖା କରିବାକୁ ଭୟ କରେ ନାହିଁ ।"

ସାମନ୍ତ ସଭାମଣ୍ଡପ ଭିତରକୁ ପ୍ରବେଶ କରିବା ସମୟରେ କ୍ଲାନ୍ତ ଦିଶୁଥିଲେ ସୁଦ୍ଧା ସେ ନିଜକୁ ସମ୍ଭାଳି ନେଇ ଦୃଢ଼ତାର ସହିତ ଉପସ୍ଥିତ ପ୍ରତ୍ୟେକ ବ୍ୟକ୍ତିଙ୍କୁ ଅନାଇଲେ । ତାଙ୍କର ଚେହେରା ସଙ୍ଗେ ଘୋଘାବାପାଙ୍କ ଚେହେରାର ଯେ ଯଥେଷ୍ଟ ସାମଞ୍ଜସ୍ୟ ରହିଛି, ଏହା ନିଃସନ୍ଦେହ । ସେହିପରି ଆଖି, ଚର୍ମ ଓ ସେହି କ୍ଷତ ଚିହ୍ନ ।

ଭୀମଦେବଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ସାମନ୍ତ କହିଲେ, "ମହାରାଜ ! ମୁଁ ଘୋଘାବାପାଙ୍କ ନାତି ସାମନ୍ତ । ମହାରାଜ ଭୀମଦେବଙ୍କର ଜୟ ହେଉ । ଜୟ ସୋମନାଥ ।"

ବିମଳ ତାଙ୍କୁ ସାଙ୍ଗେ ସାଙ୍ଗେ ଚିହ୍ନି ପାରି ଅନ୍ୟମାନେ ପ୍ରକୃତିସ୍ଥ ହେବା ଆଗରୁ କହିଲେ, "ଆସ ବୀର ଚୌହାନ !"

ଭୀମଦେବ ଟିକିଏ ଆଗେଇ ଯାଇ ଓ ସାମନ୍ତଙ୍କୁ କୁଣ୍ଢାଇ କହିଲେ, "ବୀର ଚୌହାନ, ତୁମ ପରିବାର ରାଜପୁତ ଜାତିର ଏକସ୍ତମ୍ଭ ପୁରୁଷଙ୍କୁ ଉଦ୍ଧାର କରି ଦେଇଛନ୍ତି । ଆସ ବନ୍ଧୁ !"

ସାମନ୍ତ ଭୀମଦେବଙ୍କ ଆଲିଙ୍ଗନରୁ ଭଦ୍ରତାପୂର୍ଣ୍ଣ ଭାବରେ ଅଥଚ ଦୃଢ଼ତା ସହିତ ନିଜକୁ ଅଲଗା କରି ଓ ମୁହଁରେ କୌଣସି ଭାବପ୍ରବଣତା ପ୍ରକାଶ ନକରି କିଛି ଦୂରରେ ଯାଇ ଠିଆହେଲେ । ସେମାନଙ୍କ ସମ୍ମୁଖରେ କୌଣସି ଭୂତ ନୁହେଁ ଜଣେ ଜୀବନ୍ତ ବ୍ୟକ୍ତି ଆସି ବର୍ତ୍ତମାନ ଠିଆ ହୋଇଛନ୍ତି ଏହା ବୁଝିବାକୁ ଅନ୍ୟମାନଙ୍କୁ ବେଶୀ-ସମୟ ଲାଗିଲା ନାହିଁ । କେବଳ ଅର୍ଜୁନ ଗାନ୍ଧର୍ବ ଏହା ବିଶ୍ୱାସ କରିପାରିଲା ନାହିଁ ।

"ବସ ଚୌହାନ !" କହି ଭୀମଦେବ ଆଉଥରେ ସାମନ୍ତଙ୍କର ହାତ ଧରି ତାଙ୍କ ନିକଟରେ ବସାଇଲେ । ସାମନ୍ତ ସଭକ୍ତି ତାଙ୍କ କଥା ମାନି ଓ ଦୁଇ ଗୋଡ଼ ଲୁଚାଇ ତାଙ୍କ ନିକଟରେ ବସିଲେ । ଭୀମଦେବ ପଚାରିଲେ, "କେଉଁଠାରୁ ଆସିଲ ? କିଛି ଖବର ନେଇ ଆସିଛ ?"

ସାମନ୍ତ—"ମୁଁ ଗୁରୁଦେବ ଗଙ୍ଗ ସର୍ବଜ୍ଞଙ୍କଠାରୁ ଖବର ନେଇ ଆସିଛି ।"

ଦାମୋଦର ମେହେତା ପଚାରିଲେ, "ତା'ହେଲେ ଆପଣ ପ୍ରଭାସରୁ ଆସିଛନ୍ତି ? ସେଠାକୁ ଆପଣ ଗଲେ କେବେ ?"

ସାମନ୍ତ କହିଲେ, "ହମୀରଠାରୁ ମୁକ୍ତ ପାଇବା ସଙ୍ଗେ ସଙ୍ଗେ ମୁଁ ସିଧା ପ୍ରଭାସ ଗଲି । ଆମ ପରିବାରର ପୁରୋହିତ ନନ୍ଦୀଦତ୍ତ ବାହାରେ ଠିଆ ହୋଇଛନ୍ତି ।"

ଦାମୋଦର ମେହେତା ବ୍ୟସ୍ତ ହୋଇ କହିଲେ, "ନନ୍ଦୀଦତ୍ତ ! ଆପଣ ତାଙ୍କୁ ବାହାରେ ଛାଡ଼ିଦେଇ ଆସିଛନ୍ତି ? ମୁଁ ଯାଇ ତାଙ୍କୁ ଭିତରକୁ ଆଣେ ।" ସେ ବାହାରକୁ ଯାଇ ଘୋଘାବାପାଙ୍କ ପରିବାରର କୁଳ-ପୁରୋହିତଙ୍କୁ ଯେ ଭଳି ସମ୍ମାନ ତଥା ସୌଜନ୍ୟ ଦେଖାଇବା କଥା ସେହିଭଳି ବ୍ୟବହାର ସହ ଭିତରକୁ ଆଣିଲେ । ବୃଦ୍ଧଙ୍କ ଆଖିରୁ ଧାର ଧାର ହୋଇ ଲୁହ ବୋହିଯାଉଥାଏ

ସେ ଆସିବା କ୍ଷଣି, "ଆମ ସଭାକୁ ଆପଣଙ୍କୁ ସ୍ୱାଗତ କରୁଛୁ" ବୋଲି ଭୀମଦେବ କହିଲେ । ତାପରେ ଉପସ୍ଥିତ ସମସ୍ତେ ବସିପଡ଼ିଲେ ଏବଂ ଭୀମଦେବଙ୍କ ପ୍ରଶ୍ନର ଉତ୍ତରରେ ଘୋଘାବାପାଙ୍କ ବଂଶ ଯେପରି ଲୋପ ପାଇଲା ସେ ବିଷୟ ନନ୍ଦୀଦତ୍ତ ସଂକ୍ଷେପରେ ବର୍ଣ୍ଣନା କଲେ ।

ଅବସ୍ଥା ଦୃଷ୍ଟିରୁ ଯାହା ଜରୁରୀ ତାହା ଯେପରି ପୁଣି ଶୀଘ୍ର ସଭାରେ ଆଲୋଚନା କରାଯାଏ ସେଥିପାଇଁ ଦାମୋଦର ମେହେତା ବ୍ୟଗ୍ରତା ସହିତ କହିଲେ; "ଆପଣ ଯେତେବେଳେ ଆସିଲେ ସେତେବେଳେ ହମୀରର ସୈନ୍ୟ ଛାଉଣୀ କେଉଁଠାରେ ଥିଲା ଏବଂ ଆପଣ କେବେ ସେ ସ୍ଥାନ ଛାଡ଼ିଲେ ?"

ସାମନ୍ତ କହିଲେ, "ମାରଓ୍ୱାଡ଼ ସୀମାନ୍ତରୁ ଅଳ୍ପ ଦୂରରେ ମରୁଭୂମିରେ ତାର ଛାଉଣୀ ଥିବା ମୁଁ ଦେଖିଥିଲି । ଗୁରୁଦେବଙ୍କୁ ତାଗିଦ କରିଦେବା ଉଦ୍ଦେଶ୍ୟରେ ସେଠାରୁ ମୁଁ ଅତି ଶୀଘ୍ର ପ୍ରଭାସ ଗଲି ଓ ସେଠୁ ପାଟଣକୁ ମୋ ଓଟ ଯେତେ ଶୀଘ୍ର ମୋତେ ଆଣିପାରେ ସେତେ ଶୀଘ୍ର ଆସିଛି ।"

— "ହମୀର ଏଠାରୁ କେତେ ଦୂରରେ ଥିବ ବୋଲି ଆପଣ ଭାବୁଛନ୍ତି ?"

ସାମନ୍ତ—ପନ୍ଦର ଦିନର ବାଟ ହେବ ବୋଲି ଭାବୁଛି ।

ଭୀମଦେବ ପଚାରିଲେ, "ଆପଣମାନେ ହମୀରର ସୈନ୍ୟବାହିନୀ ଦେଖିଛନ୍ତି ?"

ସାମନ୍ତ ମ୍ଳାନ ବଦନରେ କହିଲେ, "ଦେଖିଛି ? ମୁଁ ତାର ସୈନ୍ୟ-ବାହିନୀ ମଧ୍ୟରେ ରହିଛି ଓ ତାର ଶକ୍ତି କଳିଛି । ହମୀରର ନିଜ ଶକ୍ତି କେତେ ତାହା ମଧ୍ୟ ଜାଣିଛି । ମୁଁ ସେହି ବିଷୟ ଗୁରୁଦେବଙ୍କୁ ଜଣାଇବାରୁ ସେ ମୋର ଅନୁଭୂତ ଆପଣଙ୍କୁ ଜଣାଇବା ପାଇଁ ଆଦେଶ ଦେଲେ; କାରଣ ଆପଣ ହେଉଛନ୍ତି ପ୍ରଭୁ ସୋମନାଥଙ୍କର ଦକ୍ଷିଣ ହସ୍ତ ।"

ଖ୍ୱମଦେବ କହିଲେ, "ଗୁରୁଦେବଙ୍କର ଆଜ୍ଞା ମୋର ଶିରୋଧାର୍ଯ୍ୟ । ସୈନ୍ଧାନ ବୀର, ତୁମର ଯାହା କହିବାର ଅଛି ନିଃସଂକୋଚରେ କୁହ ।"

ସାମନ୍ତ—ପ୍ରଥମ କଥା ମୁଁ ଆପଣଙ୍କୁ କହିବାକୁ ଚାହେଁ ଯେ, ଆପଣ ଯେବେ ହମୀର ସହିତ ସମ୍ମୁଖ ଯୁଦ୍ଧ କରିବା କଥା ଭାବୁଥାନ୍ତି, ତାହାହେଲେ ସେ ବିଷୟ ଛାଡ଼ନ୍ତୁ ।

ସାମନ୍ତ ଏହା ଧୀରେ କହିଥିଲେ ମଧ୍ୟ ଉପସ୍ଥିତ ସଭାସଦ୍‌ମାନଙ୍କୁ ଆଶ୍ଚର୍ଯ୍ୟ କରିଦେଲା । ସେମାନେ କିଛି କ୍ଷଣ ପୂର୍ବରୁ ଯାହା କରିବେ ବୋଲି ଭାବୁଥିଲେ, ସାମନ୍ତ ଠିକ୍ ତାର ଓଲଟା ପରାମର୍ଶ ଦେଉଛନ୍ତି ।

ଖ୍ୱମଦେବ ରାଗିକରି କହିଲେ, "ତୁମ କହିବାର ଅର୍ଥ, ମୁଁ ପାଟଣର ଚାଲୁକ୍ୟ ବଂଶଜ ହୋଇ ମଧ୍ୟ ଶତ୍ରୁ ସହିତ ମୁହାଁମୁହିଁ ଲଢ଼ିବି ନାହିଁ ?" ସତେ ଯେପରି ସାମନ୍ତଙ୍କୁ ଭସ୍ମ କରିଦେବେ—ଠିକ୍ ସେହିପରି ତାଙ୍କ ଆଖି ଯୋଡ଼ିକ ଲାଲ ହୋଇ ଉଠିଲା ।

ସାମନ୍ତ ବିବ୍ରତ ନହୋଇ ଧୀର ସ୍ଥିର ଭାବେ ବସିରହିଥାନ୍ତି । ତାଙ୍କ ମୁହଁରେ ବ୍ୟଙ୍ଗ ହାସ୍ୟ । ଗତ ଅଳ୍ପ ଦିନ ମଧ୍ୟରେ ଲବ୍‌ଧ ଅଭିଜ୍ଞତା ସାମନ୍ତଙ୍କୁ ଯୌବନରେ ମଧ୍ୟ ବୃଦ୍ଧତ୍ୱ ଆଣିଦେଇଥିଲା ।

ସାମନ୍ତ କହିଲେ, "ମହାରାଜ ! ମୋତେ କ୍ଷମା ଦିଅନ୍ତୁ । ମୁଁ ଏଭଳି ଦମ୍ଭୋକ୍ତି ଶୁଣି ଶୁଣି ବଧିର ହେଲିଣି ।" ତାଙ୍କର ଏହି ଧୀର ଓ ହସ ହସ କଥା ସମସ୍ତେ ଏକ ଲୟରେ ଶୁଣୁଥାନ୍ତି । ସେ ପୁଣି କହିଲେ, "ଚାଲୁକ୍ୟରାଜ ! ମୁଁ ଭାବୁଛି ଆମର ଦୂରଦୃଷ୍ଟିର ଅଭାବ ତଥା ଏକତା ନଥିବା ଯୋଗୁଁ ହିନ୍ଦୁ ଶାସକ-ମାନଙ୍କୁ ପରାଜିତ କରିବା ଉଦ୍ଦେଶ୍ୟରେ ପ୍ରଭୁ ପିନାକପାଣି ଏହି ହମୀରକୁ ପଠାଇଛନ୍ତି ।"

ଉପସ୍ଥିତ ରାଜନ୍ୟମଣ୍ଡଳୀ କ୍ରୋଧ ତଥା ଆଶ୍ଚର୍ଯ୍ୟାନ୍ୱିତ ଭାବେ ଏହି ଯୁବକର ଦମ୍ଭୋକ୍ତି ନୀରବରେ ଶୁଣୁଥାନ୍ତି । ଖ୍ୱମଦେବଙ୍କ ଡାହାଣହାତ ତାଙ୍କ ଅଜାଣତରେ ନିଜ ତରବାରି ଉପରକୁ ଚାଲିଗଲା ଏବଂ ଏହି ଘଟଣା ସାମନ୍ତଙ୍କ ଆଖିର ଅଗୋଚର ରହିଲା ନାହିଁ । ତାଙ୍କର ଅଧୀରତା ସାମନ୍ତ ଜାଣି ପାରିଛନ୍ତି ବୋଲି ହୃଦୟଙ୍ଗମ କରିବାରୁ ଖ୍ୱମଦେବ ସାଙ୍ଗେ ସାଙ୍ଗେ ତରବାରି ଉପରୁ ହାତ କାଢ଼ିନେଲେ ।

ସାମନ୍ତ କହିଲେ, "ଚାଲୁକ୍ୟରାଜ, ହମୀରକୁ ପରାଜିତ କରିବା ଆମ ପକ୍ଷରେ ସହଜ କଥା ବୋଲି ଭାବିବା ଆମର ଔଦ୍ଧତ୍ୟର ପରିଚାୟକ ହେବ ।

ଅଜଗର ମୁହଁରେ ଯେପରି ଅନ୍ୟ ବନଚର ପ୍ରାଣୀମାନେ ନିଃସହାୟ ହୋଇ ପଡ଼ନ୍ତି, ଆମ୍ଭେମାନେ ସମ୍ମୁଖ ଯୁଦ୍ଧରେ ହମୀର ହାତରେ ପଡ଼ି ସେହିପରି ନିଜର ସର୍ବନାଶ କରିବା । ଏହି ଧରଣର ଆତ୍ମଗର୍ବ ଫଳରେ ଘୋଘାବାପାଙ୍କର ସାରା ବଂଶ ଲୋପ ପାଇଲା ଓ ବାଲମଦେବ ନିଜର ପଚିଶ ହଜାର ସୈନ୍ୟଙ୍କୁ ଧ୍ୱଂସ ମୁଖରେ ପକାଇଲେ । ଆପଣ ମଧ୍ୟ ସେହିପରି ଭାବୁଛନ୍ତି ।"

ରାଜ୍ୟ ରତ୍ନାଦିତ୍ୟ ପରିହାସ କରି କହିଲେ, "ତାହେଲେ ଆପଣ କଣ କହୁଛନ୍ତି ଯେ ଆମେ ସମସ୍ତେ ଏଠାରୁ ଯେଝା ଘରକୁ ଫେରିଯିବା ?"

ସାମନ୍ତ କହିଲେ, "ନା, ଆପଣ ଯାହା ଠିକ୍ ଭାବୁଛନ୍ତି ତାହା କରନ୍ତୁ' କିନ୍ତୁ କିଛି କରିବା ପୂର୍ବରୁ ହମୀର ଓ ତାର ସୈନ୍ୟବାହିନୀର ଶକ୍ତି ସମ୍ପର୍କରେ ଠିକ୍ ଭାବେ ଶୁଣି ନିଅନ୍ତୁ । ମୋର ବକ୍ତବ୍ୟ ହୁଏତ ଆପଣମାନଙ୍କୁ ଭଲ ଲାଗି ନପାରେ, କିନ୍ତୁ ମୁଁ କିଛି ବାହୁଲ୍ୟ କରି କହୁନାହିଁ । ଆପଣ ଯେତେ ସୈନ୍ୟ ସଂଗ୍ରହ କରିଛନ୍ତି ସେମାନେ ହମୀରର ସୈନ୍ୟବାହିନୀ ଆଗରେ ଅର୍ଦ୍ଧ ମୁହୂର୍ତ୍ତ ମଧ୍ୟ ଠିଆ ହୋଇ ପାରିବେ ନାହିଁ ।"

ଏହି କଥାବାର୍ତ୍ତା ସମୟରେ ଭୀମଦେବ ସାମନ୍ତ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । ସାମନ୍ତ ବନ୍ଧୁ ବା ଶତ୍ରୁ ସେ ଏ ପର୍ଯ୍ୟନ୍ତ ତାହା ଠିକ୍ କରି ପାରି ନଥାନ୍ତି । ହୁଏତ ଏହି ଯୁବକ କଥାବାର୍ତ୍ତା କରୁଥିବା ସମୟରେ ସେ ବାଧା ଦେଇଥାନ୍ତେ, କିନ୍ତୁ ସେ ଦେଖିଲେ ଯେ, ସାମନ୍ତଙ୍କ ବକ୍ତବ୍ୟକୁ ଦାମୋଦର ମେହେତା ମଧ୍ୟ ମୁଣ୍ଡ ହଲାଇ ସମର୍ଥନ କରୁଛନ୍ତି ।

ସାମନ୍ତ ପୁଣି କହିଲେ, "ମହାରାଜ, ଆପଣଙ୍କର ଯେବେ ହମୀରର ସୈନବାହିନୀ ତଥା ତାର ସଙ୍ଗଠନ ଶକ୍ତି ସମ୍ପର୍କରେ ପ୍ରକୃତ ଧାରଣା ଥାନ୍ତା ତାହାହେଲେ ଆପଣ ମଧ୍ୟ ଏଇଆ କହନ୍ତେ । ଆପଣଙ୍କର ବର୍ତ୍ତମାନ ଯେତେ ସୈନ୍ୟ ଅଛନ୍ତି ତାହାର ଦଶଗୁଣ ସୈନ୍ୟ ନେଇ ମଧ୍ୟ ଆପଣ ହମୀରକୁ ପରାଜିତ କରିପାରିବେ ନାହିଁ, ଏହା ଜାଣି ରଖନ୍ତୁ ।"

ଭୀମଦେବ ନିଜକୁ ଆଉ ସମ୍ଭାଳି ନ ପାରି କହିଲେ, "ଆମେ ଏପରି ଡରି ଯିବୁ ନାହିଁ । ଆମର ସଂଖ୍ୟା ଅଳ୍ପ ଏବଂ ଶତ୍ରୁ ସଂଖ୍ୟା ଅଧିକ, ଏହା କେବଳ କାପୁରୁଷ ଲୋକ କହିପାରେ ।"

ମୁହୂର୍ତ୍ତକ ପାଇଁ ସାମନ୍ତଙ୍କ ମୁହଁରେ କ୍ରୋଧ ଭାବ ଦେଖା ଦେଇଥିଲେ ସୁଦ୍ଧା ସେ ନିଜକୁ ସମ୍ଭାଳି ନେଲେ । ତା ପରେ ତାଙ୍କ ମୁହଁରେ ଅଦ୍ଭୁତ ଦୃଢ଼ତା

ଏବଂ ଆଖିରେ ଅପାର୍ଥିବ ଉଜ୍ଜ୍ୱଳତା ଦେଖା ଦେଲା । ସେ ସିଧାହୋଇ ଠିଆ ହେଲେ । ଭୀମଦେବଙ୍କ ପ୍ରତି ସମ୍ମାନର ନିଦର୍ଶନ ସ୍ୱରୂପ ହାତ ଯୋଡ଼ିଦେଲେ । ତାପରେ ତାଙ୍କ ମୁହଁରୁ ଏକ କ୍ରୁଦ୍ଧ ସର୍ପର ବିଷ ଉଦ୍‌ଗୀରଣ ପରି ବାକ୍ୟ ବାହାରିଲା ।

ସେ କହିଲେ, "ଭୀମଦେବ ମହାରାଜ, ଆପଣଙ୍କ ଛଡ଼ା ଅନ୍ୟ କେହି ମୋତେ କାପୁରୁଷ କହିଥିଲେ ମୁଁ ତାର ପ୍ରାଣ ନେଇଥାନ୍ତି । କିନ୍ତୁ ମୁଁ ଆପଣଙ୍କ ସହିତ କଳହ କରିବା ପାଇଁ ଆସିନାହିଁ । ପ୍ରଭୁ ସୋମନାଥଙ୍କ ରକ୍ଷା ଉଦ୍ଦେଶ୍ୟରେ ଯଥାସମ୍ଭବ ଚେଷ୍ଟା କରିବାକୁ ମୁଁ ଆସିଛି । ନିଜ ରାଜ୍ୟ ତଥା ଶାସନ ବଜାୟ ରଖିବାରେ ଆପଣଙ୍କ ସ୍ୱାର୍ଥ ନିହିତ । କିନ୍ତୁ ହମୀରର ମୃତ୍ୟୁ ଛଡ଼ା ମୋର ଆଉ କୌଣସି ଆକାଂକ୍ଷା ନାହିଁ । ଆପଣ ହମୀରର ନାମ କେବଳ ଶୁଣିଛନ୍ତି, କିନ୍ତୁ ମୋର ପିତାମହ ଘୋଘାବାପା ହମୀରର ଗତି ରୋଧ କରିବାକୁ ଯାଇ ନିଜର ସାରା ବଂଶକୁ ଆହୁତି ଦେଇଛନ୍ତି । ହମୀରକୁ ଦୁର୍ଗମ ମରୁଭୂମି ଭିତରେ ପଥ ଭୁଲାଇ ତାର ସୈନ୍ୟବାହିନୀ, ଅସ୍ତ୍ର ଶସ୍ତ୍ର ତଥା ସମସ୍ତ ନଷ୍ଟ କରାଇ ମୋର ପିତା ଅଦ୍ଭୁତ ବୀରତ୍ୱର ପରାକାଷ୍ଠା ଦେଖାଇଛନ୍ତି । ମୁଁ ନିଜେ ତାର ଛାଉଣୀକୁ ଯାଇ ମୋର ଏଇ ତରବାରିରେ ତାର ଜୀବନ ନେବାକୁ ଚେଷ୍ଟା କରିଥିଲି । ମୁଁ ଯଦି ତହିଁରେ ସଫଳ ହୋଇଥାନ୍ତି, ତାହାହେଲେ ଲକ୍ଷ ଲକ୍ଷ ରାଜପୁତ ଯୋଦ୍ଧା ଯାହା ଆଜିଯାଏ କରିପାରି ନାହାନ୍ତି, ମୁଁ ଏକାକୀ ତାହା କରିପାରିଥାନ୍ତି ।" ସେ ପୁଣି କିଛି କହିବାକୁ ଚେଷ୍ଟା କଲେ । କିନ୍ତୁ ତାଙ୍କର ସ୍ୱର ଶୋକାକୁଳ ହୋଇଆସିଲା । ତଥାପି ସେ କହିଲେ, "କିନ୍ତୁ ସେତେବେଳେ ହମୀରର ମୃତ୍ୟୁ ହେବ ବୋଧହୁଏ ପ୍ରଭୁ ସୋମନାଥଙ୍କର ଇଚ୍ଛା ନଥିଲା । ମୁଁ ଓ ମୋ ପରିବାର ଯାହା କରିଛୁ, ମହାରାଜ ଭୀମଦେବ, ଆପଣ ଯେବେ ସେତିକି କରିପାରନ୍ତି, ତାହାହେଲେ ପ୍ରଭୁ ସୋମନାଥ ଆପଣଙ୍କୁ ନିଶ୍ଚୟ ଯଶ ଦେବେ ।"

ସାମନ୍ତ କହିସାରି ଓ ପ୍ରଣାମ କରି ସଭାସ୍ଥଳରୁ ଗୁଳିଯିବାକୁ ବସିଲେ । କିନ୍ତୁ ଦାମୋଦର ମେହେତା ଠିଆ ହୋଇଯାଇ ତାଙ୍କୁ ଅଟକାଇ କହିଲେ, "ବୀର ଚୌହାନ ! ମହାରାଜ ଭୀମଦେବ ଘୋଘାଗଡ଼ର ଚୌହାନଙ୍କୁ କାପୁରୁଷ କହିବା ପୂର୍ବରୁ ବରଂ ଜିଭ କାଟିଦେବେ । ଘୋଘାବାପାଙ୍କ ବଂଶୀୟ ଯେ କୌଣସି ବ୍ୟକ୍ତିର ସ୍ଥାନ ସୂର୍ଯ୍ୟ ଚନ୍ଦ୍ରଙ୍କ ସିଂହାସନ ପାଖରେ ।"

ଭୀମଦେବ ପ୍ରକୃତ ଅବସ୍ଥା ହୃଦୟଙ୍ଗମ କରି ସାମନ୍ତଙ୍କୁ କୁଣ୍ଢାଇ ପକାଇ କହିଲେ, "ଚୌହାନ, କିଛି କ୍ଷଣ ପୂର୍ବରୁ ମୁଁ କହିଥିବା ବିଷୟ ପାଇଁ ମୋତେ କ୍ଷମା କର । ମୁଁ ଆବେଗର ତାଡ଼ନାରେ ତାହା କହିଛି । ଆମର ଶକ୍ତି କେତେ ତାହାର ପରିଚୟ ଦେବାକୁ ବାକି ଅଛି, କିନ୍ତୁ ତୁମେ ନିଜ ବୀରତ୍ୱରେ ନିଜର ପୂର୍ବଜଙ୍କୁ କୃତକୃତ୍ୟ କରିସାରିଛ । ମୋତେ କ୍ଷମା କର ।" ଏହା କହି ସେ ସ୍ନେହରେ ସାମନ୍ତଙ୍କୁ ପୁଣି ଆଲିଙ୍ଗନ କଲେ । ଭୀମଦେବଙ୍କର ଏହି ସ୍ପଷ୍ଟ ସ୍ୱୀକାରୋକ୍ତିରେ ଆନନ୍ଦ ବିହ୍ୱଳିତ ହୋଇ ସାମନ୍ତ ନିଜ ସ୍ଥାନରେ ପୁନର୍ବାର ବସି ପଡ଼ିଲେ ।

## ୨୯

## ସାମନ୍ତଙ୍କ ପରାମର୍ଶ ସ୍ୱୀକୃତ

ଦାମୋଦର ମେହେତା କହିଲେ, "ବୀର ଚୌହାନ୍, ଆପଣ ଯାହା କହୁଛନ୍ତି, ମୁଁ ଠିକ୍ ସେଇଆ ମହାରାଜାଙ୍କୁ କହୁଥିଲି । ହମୀରକୁ ସମ୍ମୁଖ ଆକ୍ରମଣ କରି ଆମର କ୍ଷତି ଛଡ଼ା ଲାଭ ନାହିଁ ।"

"ମେହେତାଜୀ", ସାମନ୍ତ ଦୁଃଖପୂର୍ଣ୍ଣ କଣ୍ଠରେ କହିଲେ, "ଏହି ପରାମର୍ଶ ଦେବା ପାଇଁ ମୋତେ ମଧ୍ୟ କଷ୍ଟ ହେଉଛି । ମୋର ମଧ୍ୟ ମାମା ପରିବାରରେ ଜନ୍ମ ଓ ସମ୍ମାନ ଯିବା ପୂର୍ବରୁ ପ୍ରାଣ ଯିବା ମୁଁ ଶ୍ରେୟସ୍କର ମନେକରେ । କିନ୍ତୁ ଗତ ଛଅ ସପ୍ତାହ ଧରି ମୋର ଅନୁଭୂତିରୁ ଯାହା ଶିକ୍ଷା କରିଛି, ସେହି ଦୃଷ୍ଟିରୁ ଆପଣମାନଙ୍କ ପରି ସମ୍ମାନାସ୍ପଦ ବ୍ୟକ୍ତିମାନଙ୍କୁ ମୁଁ ଏହି ପରାମର୍ଶ ଦେବାକୁ ସାହସ କରୁଛି ।"

ଭୀମଦେବ ତାଙ୍କୁ ଉତ୍ସାହିତ କରି କହିଲେ, "ଚୌହାନ୍ ! ନିଃସଙ୍କୋଚରେ ତୁମର ଯାହା ଇଚ୍ଛା ତାହା କହିପାର ।"

ସାମନ୍ତ ପୁଣି କହିଲେ, "ମହାରାଜ ! ହମୀରର ସୈନ୍ୟବାହିନୀ ଗୋଟିଏ ସାଧାରଣ ସୈନ୍ୟବାହିନୀ ନୁହେଁ । ଏହା ଗୋଟିଏ ମହାସାଗର ସଦୃଶ ।

ଆପଣଙ୍କର ବୋଧହୁଏ ଅତି ବେଶୀ ହେଲେ କୋଡ଼ିଏ ହଜାର ପଦାତିକ, ପାଞ୍ଚହଜାର ଅଶ୍ୱାରୋହୀ······।"

ଭୀମଦେବ ସଂଶୋଧନ କରି କହିଲେ, "ଆଠ ହଜାର ।"

ସାମନ୍ତ—"ଆଠ ହଜାର । ଆପଣଙ୍କର ବୋଧହୁଏ ଅତି ବେଶୀ ହେଲେ ଦୁଇ ହଜାର ହାତୀ ଓ ଓଟ ଥିବେ । କିନ୍ତୁ ହମୀରର ତିରିଶ ହଜାର ଅଶ୍ୱାରୋହୀ, ଦଶ ହଜାର ହାତୀ ଓ ଅସଂଖ୍ୟ ପଦାତିକ ସୈନ୍ୟ ଅଛନ୍ତି । ମରୁଭୂମିରେ ବ୍ୟବହାର କରିବା ପାଇଁ ପାଣି ଯୋଗାଇ ଦେବାକୁ ତାର ସୈନ୍ୟବାହିନୀସହିତ ଅତିକମ୍‌ରେ ତିରିଶହଜାର ଓଟ ଅଛନ୍ତି । ଦୁର୍ଗମାନଙ୍କର କାନ୍ଥ ଧ୍ୱଂସ କରିବା ପାଇଁ ତା ନିକଟରେ ବିରାଟ ଯନ୍ତ୍ରମାନ ଅଛି । ତା ବିରୁଦ୍ଧରେ ଆମେ ଠିଆ ହୋଇ ପାରିବା ନାହିଁ । ନଗରକୋଟ ଠାରୁ ମାରୱାଡ଼୍ ପର୍ଯ୍ୟନ୍ତ ଯେଉଁ ଲକ୍ଷ ଲକ୍ଷ ରାଜପୁତ୍ ତାକୁ ଅଲଗା ଅଲଗା ଭାବେ ପ୍ରତିରୋଧ କଲେ, ତାହା ନ କରି ଯେବେ ସମସ୍ତେ ଏକାଠି ହୋଇ ପ୍ରତିରୋଧ କରିଥାନ୍ତେ, ତାହାହେଲେ ହୁଏତ କିଛି ଅନ୍ତତଃ ଆଖି ଦେଖିଲା ଭଳି ହୋଇଥାନ୍ତା ।" ଏହା କହି ସାମନ୍ତ କିଛି କ୍ଷଣ ନୀରବ ହେଲେ ।

ସେ ଯେପରି ଆଉ କହିବେ, ସେଥିପାଇଁ ଦାମୋଦର ମେହେତା ତାଙ୍କୁ ଉତ୍ସାହିତ କରି କହିଲେ, "ତା ପରେ ?"

ସାମନ୍ତ—ଏହା କେବଳ ତାର ସୈନ୍ୟବାହିନୀର ବର୍ଣ୍ଣନା । ବ୍ୟକ୍ତି ହିସାବରେ ହମୀର ଯେଉଁ ଧରଣର ଲୋକ ତାହା ଜାଣିବା ଉଚିତ । ଏତେ ବିରାଟ ସୈନ୍ୟବାହିନୀର ଚାଳକ ହିସାବରେ ତାର ସମକକ୍ଷ ଖୁବ୍ କମ୍ ଲୋକ ଅଛନ୍ତି । କିପରି ବନ୍ଦିତା କରିବାକୁ ହୁଏ ଏବଂ ନୀଚ, ଭୀରୁ ଓ ଦୁର୍ବଳକୁ କିପରି ସାହସୀ ଯୋଦ୍ଧାରେ ପରିଣତ କରିବାକୁ ହୁଏ, ତାହା ତାକୁ ଭଲରୂପେ ଜଣା । କୌଶଳୀ ଭାବେ ତାହାର ସମକକ୍ଷ କେହି ନାହାନ୍ତି କହିଲେ ଚଳେ । ଏପରି ଲୋକ ସହିତ ଆପଣ କିଭଳି ଲଢ଼ିବେ ?

ଭୀମଦେବ – ତାହାହେଲେ ଆମେ କଣ କରିବା ତୁମେ କୁହ । ଆମେ ମନ୍ଦିର ଓ ଗୋ-ବ୍ରାହ୍ମଣମାନଙ୍କର ରକ୍ଷାକର୍ତ୍ତା ହୋଇ ବିନା ପ୍ରତିରୋଧରେ ବିଦେଶୀ ଆକ୍ରମଣକାରୀକୁ ଆମ ରାଜ୍ୟ ଭିତରେ ଅଗ୍ରସର ହେବାପାଇଁ ଛାଡ଼ିଦେବୁ ? ଆମ ନାରୀମାନେ ଧର୍ଷିତା ଓ ବ୍ରାହ୍ମଣମାନେ ଅତ୍ୟାଚାରିତ ହେବା କଣ ଆମେ ଦେଖିବୁ ?

ଇଷ୍ଟ ଦେବତାଙ୍କ ରକ୍ଷା କରିବା ପାଇଁ ନିଜ ଜୀବନ ଦେବା କଣ ଆମର ଉଚିତ ନୁହେଁ ?

ସାମନ୍ତ—ମହାରାଜ ! ବିନା ପ୍ରତିରୋଧରେ ହମ୍ମୀରକୁ ଛାଡ଼ି ଦେବା ପାଇଁ ମୁଁ କହୁନାହିଁ । ଆପଣଙ୍କୁ ବୁଦ୍ଧିମତ୍ତାର ସହିତ ପ୍ରତିରୋଧ କରିବାକୁ ହେବ, ଯେପରିକି ଆପଣ ପ୍ରଭାସ ସଙ୍ଗେ ପାଟଣକୁ ମଧ୍ୟ ରକ୍ଷା କରିପାରିବେ ।

ଭୀମଦେବ—କିନ୍ତୁ କିପରି ?

ସାମନ୍ତ—ବିନା ପ୍ରତିରୋଧରେ ହମ୍ମୀରକୁ ସୌରାଷ୍ଟ୍ରରେ ପ୍ରବେଶ କରିବାକୁ ଛାଡ଼ିଦିଆଯାଉ । ସେ ଭିତରକୁ ପ୍ରବେଶ କଲା ପରେ ପଛରୁ ତାହା ଉପରେ ଆକ୍ରମଣ କରାଯାଉ ।

ଭୀମଦେବ—ମୁଁ ଏଥିରେ ଏକମତ । ହମ୍ମୀରକୁ ମୁହାଁମୁହିଁ ପ୍ରତିରୋଧ କରିବାରେ ବିପଦ ଅଛି—ତୁମର ଏ ମତକୁ ଗ୍ରହଣ କରୁଛି ।

ଦାମୋଦର ମେହେତା କହି ଉଠିଲେ, "ମୁଁ କିନ୍ତୁ କହୁଥିଲି ପାଟଣରେ ହମ୍ମୀର ସହିତ ଯୁଦ୍ଧ କରିବାକୁ ହେବ ।"

ସାମନ୍ତ ଉତ୍ତର ଦେଇ କହିଲେ, "ସେ ବହୁ ସଂଖ୍ୟକ ଦୁର୍ଗ ଧ୍ୱଂସ କରିଛି । ଅଧିକା ଗୋଟିଏ ଦୁର୍ଗ ବା ତା ପକ୍ଷରେ କଣ ?"

ଚନ୍ଦ୍ରାମନ୍ତ୍ରୀ ଦାମୋଦର କହିଲେ, "ଆପଣ କହୁଥିବା ବିଷୟରେ ଯଥେଷ୍ଟ ସତ୍ୟତା ଅଛି ।"

ରତ୍ନାଦିତ୍ୟ ପଚାରିଲେ, "ତାହାହେଲେ ଆମେ କଣ କରିବା ?"

ଭୀମଦେବ କହିଲେ, "ମୁଁ ଯେବେ ପାଟଣ ଛାଡ଼ି ଯାଇ ଜଙ୍ଗଲରେ ଲୁଚି ରହେ, ତେବେ ମୋର ସୁନାମ ଲୋପପାଇଯିବ ।"

ବିଲୋଚନ ପାଲ ପରମାର କହିଲେ, "ଖାଲି ସେତିକି ନୁହେଁ, ଆପଣଙ୍କ ସୈନ୍ୟବାହିନୀର ନୈତିକତା ସମ୍ପୂର୍ଣ୍ଣରୂପେ ଲୋପ ପାଇଯିବ ।"

ଭୀମଦେବ କହିଲେ, "ଯାହା ପଛକେ ଘଟୁ, ମୁଁ ଏ ସ୍ଥାନ ଛାଡ଼ି ଯିବିନାହିଁ । ଏହା ମୋର ପାଟଣ—ମୋ ପୂର୍ବପୁରୁଷମାନଙ୍କର ବାସସ୍ଥାନ । ମୁଁ ହମ୍ମୀରକୁ ପରାସ୍ତ କରିବାରେ ସଫଳତା ଲାଭ କରେ ବା ନକରେ, ତହିଁରେ କିଛି ଯାଏଆସେ ନାହିଁ । ଯୁଦ୍ଧ କରି ଏହି ଦୁର୍ଗର ପ୍ରାଚୀର ତଳେ ଆତ୍ମୋତ୍ସର୍ଗ କରିବାକୁ ମୁଁ ବରଂ ଶ୍ରେୟସ୍କର ମନେକରେ ।"

ସାମନ୍ତ ଶୁଷ୍କ କଣ୍ଠରେ କହିଲେ, "କିନ୍ତୁ ପ୍ରଭୁ ସୋମନାଥଙ୍କୁ ରକ୍ଷା କରିବାର ଉପାୟ ଏହା ନୁହେଁ ।" ତାଙ୍କର ଦୃଢ଼ ସ୍ୱର ଠିକ୍ ଆଜ୍ଞା ପରି ମନେହେଲା ।

ଭୀମଦେବ –ତାହାହେଲେ ଆମେ କଣ କରିବା ଉଚିତ ?

ଦାମୋଦର ମେହେତା କହିଲେ, "ଏକ ଭଲ ଉପାୟ ମୁଁ ଦେଖି ପାରୁଛି । ହମୀର ଏ ପର୍ଯ୍ୟନ୍ତ ସୈନ୍ୟବାହିନୀ ସହିତ ଲଢ଼େଇ କରି ଆସିଛି । କିନ୍ତୁ ମରୁଭୂମି ବା ନିର୍ଜ୍ଜନତା ସହିତ ଲଢ଼ିନାହିଁ । ମୋ ବିଚାରରେ ଏହା ହେଉଛି ତାର ପ୍ରକୃତ ଶତ୍ରୁ, ଯାହାକି ତାକୁ ଆତଙ୍କିତ କରି ପରାଜିତ କରିଦେବ ।"

ଭୀମଦେବ—ଅର୍ଥାତ୍ ?

ଦାମୋଦର ମେହେତା—ତାର ଅର୍ଥ, ତାକୁ ପାଟଣକୁ ଆସିବାକୁ ଦିଆଯାଉ । ପାଟଣ ଦୁର୍ଗର ରାସ୍ତା ଖୋଲି ଦିଆଯାଉ । ଜନଶୂନ୍ୟ ପାଟଣରେ ସେ ମୁକ୍ତ ପବନ ବିରୁଦ୍ଧରେ ଲଢ଼ୁ ।

ସାମନ୍ତ ଉତ୍ସାହର ସହ କହିଲେ—ମେହେତାଜୀ, ମୁଁ ଠିକ୍ ଏଇଆ କହୁଥିଲି ।

ଭୀମଦେବ ବିରକ୍ତ ହୋଇ କହିଲେ, "ମୁଁ ତାହାହେଲେ କଣ କରିବି—ଲୁଚିଯିବି ?"

ମେହେତା ହସି କହିଲେ, "ନାଁ ମହାରାଜ ! ଆପଣ ସୈନ୍ୟବାହିନୀ ନେଇ ପ୍ରଭାସକୁ ଯାଆନ୍ତୁ । ଆମେ ଯେବେ ବିଜୟ ହାସଲ କରିବା ଚାହୁଁ ତାହାହେଲେ ସୌରାଷ୍ଟ୍ରର ନିବିଡ଼ ଜଙ୍ଗଲ ଅତିକ୍ରମ କରିବା କେଡ଼େ କଷ୍ଟକର ସେ ବିଷୟରେ ହମୀରର ଅଭିଜ୍ଞତା ହେଉ । ତାର ବ୍ୟବସ୍ଥା ହେବା ଦରକାର ।"

ରତ୍ନାଦିତ୍ୟ କହିଲେ, "ପ୍ରଭାସ ଦୁର୍ଗ ଅତ୍ୟନ୍ତ ସଂକୀର୍ଣ୍ଣ ।"

ସାମନ୍ତ—"ଏହା ଅବଶ୍ୟ ଶ୍ରେଷ୍ଠ; କିନ୍ତୁ ଆମେ ଏହାକୁ ବଡ଼ କରି ପାରିବା । ସେଠାରେ ଆମକୁ ପ୍ରଭୁ ସୋମନାଥ ନିଜେ ରକ୍ଷା କରିବେ ଏବଂ ଗୁରୁଦେବ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ମାର୍ଗ ପ୍ରଦର୍ଶନ ମଧ୍ୟ କରିବେ । ସେଠାରେ ଯୁଦ୍ଧ କରୁଥିବା ପ୍ରତ୍ୟେକ ରାଜପୁତ ନିଜର ରାଜ୍ୟ ରକ୍ଷା ପାଇଁ ଲଢ଼େଇ ନ କରି ନିଜର ଦେବତାଙ୍କ ରକ୍ଷା ପାଇଁ ଲଢ଼ାଇ କରିବେ । ସେମାନେ ଯେବେ ବିଜୟୀ ହୁଅନ୍ତି ତାହାହେଲେ ଗୌରବରେ ବଞ୍ଚି ରହିବେ, ମୃତ୍ୟୁ

ଗଲେ ସ୍ୱର୍ଗକୁ ଯିବେ । ଏହାଛଡ଼ା ସେମାନଙ୍କର ଅନ୍ୟ କୌଣସି କାମନା ରହିବ ନାହିଁ ।

ଭୀମଦେବଙ୍କର ଆଖି ଦୁଇଟିରେ ଆନନ୍ଦର ସଂକେତ ଖେଳିଉଠିଲା ଓ ସେ ନିଜର ନିଶ ମୋଡ଼ିଲେ । ସେ ପ୍ରସ୍ତାବଟିର ମର୍ମ ହୃଦୟଙ୍ଗମ କରିବାକୁ ବିଳମ୍ବ ହେଲା ନାହିଁ । ସେହି ମୁହୂର୍ତ୍ତରେ ସେ ତାଙ୍କ କଳ୍ପନାରେ ସମୁଦ୍ର ଜଳରେ ସ୍ନାନ କରୁଥିବା ଗୋଟିଏ ଲାସ୍ୟମୟୀ କୋମଳାଙ୍ଗୀ ଯୁବତୀକୁ ଦେଖିପାରିଲେ । କ୍ଷଣକ ମଧ୍ୟରେ ସେ ଚିତ୍ର ପୁଣି ଉଭେଇଗଲା ।

ଭୀମଦେବ ଦ୍ରୁତ ନିଶ୍ୱାସର ସହିତ କହିଲେ, "ହଁ, ମେହେତାଜୀ, ମୁଁ ପ୍ରଭୁ ସୋମନାଥଙ୍କ ସମ୍ମୁଖରେ ଯୁଦ୍ଧ କରିବି ଓ ଏଭଳି ବୀରତ୍ୱର ପରିଚୟ ଦେବି, ଯାହାକି ପୂର୍ବେ କେହି ଶୁଣିନଥିବେ କି ଦେଖିନଥିବେ । ଆମେ ଶତ୍ରୁକୁ ସମୁଦ୍ର ଭିତରକୁ ଠେଲିଦେବା ।"

ସାମନ୍ତ କହିଲେ, "ମେହେତାଜୀ, ଆପଣଙ୍କ ଯୋଜନା ଚମତ୍କାର ! ଆମର ଯାହା କିଛି ଅଛି ଶେଷ ଉଦ୍ୟମରେ ଯେବେ ସେ ସମସ୍ତ ଉତ୍ସର୍ଗ କରୁ, ତାହାହେଲେ ଆମର ଯେଉଁ ସହସ୍ର ସହସ୍ର ଲୋକ ମୃତ୍ୟୁ ମୁଖରେ ପଡ଼ିଛନ୍ତି ତାହାର କିଞ୍ଚିତ ପ୍ରତିଶୋଧ ଆମେ ନେଇପାରିବା । ମୁଁ କିନ୍ତୁ ଏହିଠାରେ ହିଁ ରହିବି ।"

ଦାମୋଦର ମେହେତା କହିଲେ—"ଚୌହାନ, ଆପଣଙ୍କୁ ଏଭଳି ଭାବେ ମରିବାକୁ ଆମେ ଦେବୁନାହିଁ ।"

ସାମନ୍ତ—ହମ୍ମୀର ଯେ ପର୍ଯ୍ୟନ୍ତ ମୋର ଏଇ ଜନ୍ମମାଟିରେ ଅଛି, ସେ ପର୍ଯ୍ୟନ୍ତ ମୁଁ ମଧ୍ୟ ମରିବାକୁ ଚାହେଁ ନାହିଁ । ମୁଁ ମୋ ଉପାୟରେ ତା ସହିତ ଲଢ଼େଇ କରିବି ଓ ଆପଣମାନଙ୍କର ସହାୟକ ମଧ୍ୟ ହୋଇପାରିବି ।

ଭୀମଦେବ—ସାମନ୍ତ, ତୁମେ କିନ୍ତୁ ମୋ ପାଖେ ପାଖେ ରହିବ !

ସାମନ୍ତ—ନା । ମହାରାଜ, ମୁଁ ପ୍ରଭାସ ଫେରିଯିବାକୁ ଚାହେଁ ନାହିଁ ।

ଦାମୋଦର ମେହେତା କହିଲେ, "ଉତ୍ତମ ଯୋଜନା । ପ୍ରଭାସରେ ଦରକାର ହେଉଥିବା ଜିନିଷମାନ ଖମ୍ବାତରୁ ସମୁଦ୍ରବାଟେ ସେପରି ସେଠାକୁ ଯିବ ସେ ଦାୟିତ୍ୱ ମୁଁ ନେଉଛି । ପାଟଣକୁ ସଙ୍ଗେ ସଙ୍ଗେ ଖାଲି କରି ଦେବାକୁ ହେବ ।"

ଭୀମଦେବ—କିନ୍ତୁ ବିମଳ ମୋ ସହିତ ରହିବ ତ ?

ବିମଳ—ନିଷ୍ଟୟ ମହାରାଜ !

ଭୀମଦେବ ଏହି ନିଷ୍ପତ୍ତିକୁ ସେ ଦିନ ସନ୍ଧ୍ୟାବେଳୁ କାର୍ଯ୍ୟକାରୀ କରିବା ଆରମ୍ଭ କରିଦେଲେ ! ପ୍ରତ୍ୟେକ ଲୋକ ଯେପରି ସହର ଛାଡ଼ି ଚାଲିଯାନ୍ତି, ସେଥିପାଇଁ ତାଙ୍କ ଆଦେଶ ଜଣାଇଦେବାକୁ ଚାରିଆଡ଼କୁ ଘୋଡ଼ାସବାର ସୈନ୍ୟ ପଠାଗଲା । ସେହି ଦିନ ରାତିରେ ଶଗଡ଼ଗାଡ଼ିମାନଙ୍କରେ ବୋଝାଇ କରି ଖାଦ୍ୟ ଦ୍ରବ୍ୟ ପାଟଣରୁ ପ୍ରଭାସକୁ ପଠାଗଲା ଓ ଉଷାକାଳରେ ପାଟଣର ସୈନ୍ୟବାହିନୀ ପ୍ରଭାସ ଅଭିମୁଖେ ଗତି କଲେ ।

ସେଦିନ ମଧ୍ୟାହ୍ନରେ ଭୀମଦେବ ମଧ୍ୟ ପାଟଣ ଛାଡ଼ିଲେ । ସେତେବେଳକୁ ସେଠାରେ ରହିଥିଲେ କେବଳ ସାମନ୍ତ, ନନ୍ଦୀଦତ୍ତ ଓ ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ପାଞ୍ଚଶହ ଅଶ୍ୱାରୋହୀ । ଭୀମଦେବ ପାଟଣ ଛାଡ଼ିବା ପୂର୍ବରୁ ସାମନ୍ତଙ୍କ ମନ ପରିବର୍ତ୍ତନ କରିବା ପାଇଁ ଯଥାସମ୍ଭବ ଚେଷ୍ଟା କରିଥିଲେ, କିନ୍ତୁ ସାମନ୍ତ ତାଙ୍କ ନିଷ୍ପତ୍ତିରେ ଅଟଳ ଥିଲେ । ଭୀମଦେବଙ୍କ ଶେଷ ସୈନ୍ୟଦଳ ପାଟଣ ଛାଡ଼ିବା ସମୟରେ ସାମନ୍ତ ଦୁର୍ଗର ସର୍ବୋଚ୍ଚ ଶିଖରକୁ ଯାଇ ଦିଗ୍‌ବଳୟ ଆଡ଼କୁ ଆଖି ବୁଲାଇ କହିଲେ, "ହମୀର, ଆସ ! ମୁଁ ତୁମକୁ ଅପେକ୍ଷା କରୁଛି ।"

## ୩୦

# ପ୍ରଭାସରେ ଭୀମଦେବ

ନିଜର ସୈନ୍ୟସାମନ୍ତଙ୍କ ସହ ଭୀମଦେବ ପ୍ରଭାସ ଆସୁଥିବା ସମ୍ବାଦ ପ୍ରଚାରିତ ହେବା ଫଳରେ ଲୋକଙ୍କର ନୈତିକ ବଳ ଅତିଶୟ ବୃଦ୍ଧି ପାଇଲା । ନିଜ ପ୍ରଭୁଙ୍କର ବାହୁଚ୍ଛାୟା ତଳେ ରହୁଥିବାରୁ ଲୋକଙ୍କ ମନରୁ ହମୀରର ଆକ୍ରମଣ ଭୟ ଦୂର ହେଲା । ଯେଉଁ ପ୍ରଭୁ ସୋମନାଥ ନିଜର ତୃତୀୟ ନେତ୍ରରେ ତ୍ରିପୁରାସୁର ଭଳି ମହାରାକ୍ଷସକୁ ପୋଡ଼ି ପାଉଁଶ କରିଦେଇଥିଲେ, ଆକ୍ରମଣକାରୀ ଯେତେ ଶକ୍ତିଶାଳୀ ହେଲେ ମଧ୍ୟ ତାଙ୍କ ବିରୁଦ୍ଧରେ କଣ ବା କରିପାରିବ ?

ବିଜୟୀ ବୀର ଭୀମଦେବଙ୍କୁ ଯଥୋଚିତ ରୂପେ ସ୍ୱାଗତ କରିବା ନିମିତ୍ତ ସହରର ସମସ୍ତେ ଆନନ୍ଦରେ ପାଗଳ ପ୍ରାୟ ପ୍ରସ୍ତୁତ ହେଲେ । ପ୍ରତ୍ୟେକ ଗଳି-କନ୍ଧି ଓ ଘର ସୁସଜ୍ଜିତ ହେଲା । ପ୍ରତ୍ୟେକ ମନ୍ଦିରର ଚୂଡ଼ାରେ ନୂତନ ପତାକା ଉଡ଼ିବା ସଙ୍ଗେ ସଙ୍ଗେ ପ୍ରତି ରାସ୍ତାରେ ସଙ୍ଗୀତର ପ୍ରତିଧ୍ୱନି ଶୁଣାଗଲା । ମନ୍ଦିର-ମାନଙ୍କରେ ଲୋକେ ଆନନ୍ଦରେ ପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ପ୍ରତ୍ୟେକଙ୍କ ମନରେ ଗୋଟିଏ ଭାବ ଦେଖାଦେଲା ଯେ,ପରାକ୍ରମଶାଳୀ ଯୋଦ୍ଧା ଭୀମଦେବ,ଯେ କି ଆକ୍ରମଣକାରୀର ଧ୍ୱଂସକର୍ତ୍ତା ଓ ସତ୍ୟର ପରିପାଳକ, ସେ ଆସିବେ ।

ଚୌଲା ଆନନ୍ଦ ମନରେ ପାଟଣ ରାସ୍ତାକୁ ଅନାଇ ରହିଲା । ପାଟଣର ଶାସକ ତଥା ପ୍ରଭୁ ରୁଦ୍ରଙ୍କର ଅବତାର ଭୀମଦେବ, ଯେ ତାକୁ ଅତି ଭୟଙ୍କର କାପାଳିକମାନଙ୍କ କବଳରୁ ରକ୍ଷା କରିଚନ୍ତି, ସେ ଆଜ ଆସୁଚନ୍ତି । ତାର ଉତ୍କଣ୍ଠାର ନିଦର୍ଶନ ଆଖି ଦୁଇଟିରୁ ଜଣାପଡ଼ିବା ସଙ୍ଗେ ସଙ୍ଗେ, ତାର କୋମଳ ହୃଦୟ ସ୍ପନ୍ଦିତ ହେବାକୁ ଲଗିଲା । ଭୀମଦେବ ତାକୁ ପାଣିରୁ ଉଠାଇଲାବେଳେ ସେ ନିଜକୁ ଭୁଲିଯାଇଥିଲା । ସେହି ଉଜ୍ଜ୍ୱଳ ଜହ୍ନରାତିରେ ସମୁଦ୍ରକୁ ସେ ଯାଇଥିଲା ଗାଧୋଇବାକୁ—ଉଲଗ୍ନ ଅବସ୍ଥାରେ । ସେତେବେଳେ ଭୟଙ୍କର ଆକୃତି ବିଶିଷ୍ଟ କାପାଳିକକୁ ଦେଖି ତା' ହୃଦୟରେ ଯେଉଁ ଆତଙ୍କ ଜାତ ହୋଇଥିଲା, ତାହା ଏ ପର୍ଯ୍ୟନ୍ତ ମଧ ତାର ମନେ ଅଛି । ଚେତନା ଫେରିପାଇ ସେ ଦେଖିଥିଲା ଦୀପ୍ତିମନ୍ତ ଓ ଆକର୍ଷଣୀୟ ଚକ୍ଷୁ ବିଶିଷ୍ଟ ଜଣେ ବଳିଷ୍ଠ ସୁଶ୍ରୀ ଯୁବକଙ୍କୁ ।

କି ଅବିସ୍ମରଣୀୟ ରାତି ! ପ୍ରଥମ ଯୌବନ କାଳରେ ତାର ଏ ଯେଉଁ ଅଭିଜ୍ଞତା ହେଲା, ସେ ସ୍ମୃତି ଏବେ ମଧ ତାକୁ ଆନନ୍ଦ ଦେଉଛି । ତାହାର କଳ୍ପନା ଅଜାଣତରେ ସେହି ଘଟଣାକୁ ସଦ୍ୟଲବ୍‌ଧ ଅଭିଜ୍ଞତାରେ ପରିଣତ କଲା । ସେହି ଶକ୍ତିଶାଳୀ ବ୍ୟକ୍ତି ଆଜ ଆସୁଛନ୍ତି ଆସୁରିକ ପ୍ରକୃତିର ଆକ୍ରମଣକାରୀ କବଳରୁ ତାହାର ପ୍ରଭୁ ସୋମନାଥଙ୍କୁ ରକ୍ଷା କରିବାକୁ ।

ଚୌଲାର ଆଖି ଦୁଇଟି ସେହି ବୀର ଭୀମଦେବଙ୍କୁ ସ୍ୱାଗତ କରିବା ପାଇଁ ଦରିବଲୟ ଉପରେ ଉତ୍କଣ୍ଠାରେ ଲାଗି ରହିଲା । ତାର ହୃଦୟରେ ଦେଖା-ଦେଲା ଅବର୍ଣ୍ଣନୀୟ ଭାବ । ସମୁଦ୍ରରୁ ପ୍ରବାହିତ ହିଲ୍ଲୋଳରେ କମ୍ପିତ ହୋଇ ଉଠିଲା ତାର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ । "ଏଇ ଆସୁଚନ୍ତି"—ଏଇ ଭାବନା ତା' ସୁଗଠିତ ଶରୀରର ଶିରା ପ୍ରଶିରାରେ ଖେଳଯାଉଛି ।

ଗତ ଦୁଇଦିନ ଧରି ଆଶ୍ଚର୍ଯ୍ୟଜନକ ଭାବେ ତା ମାନସପଟରେ ପ୍ରଭୁ ସୋମନାଥଙ୍କ ମୂର୍ତ୍ତିର ଧାରଣା ବଦଳି ଯାଇଛି । ତାଙ୍କର କୁଞ୍ଚିତ କେଶ ଉପରେ ମୁକୁଟ ଓ ସେ ମୁକୁଟରେ ମୟୂର ପୁଚ୍ଛ ଶୋଭାପାଉଥିବା ଧାରଣା ତା' ମନକୁ ଆସୁଛି । ତାଙ୍କର କୃଷ୍ଣବର୍ଣ୍ଣ ମୁଖରେ ଦେଖାଦେଇଛି ସୌମ୍ୟ ତଥା ବୀରତ୍ୱର ବ୍ୟଞ୍ଜନା । ତାଙ୍କର କେଶ କୁଞ୍ଚିତ ହେବା ସଙ୍ଗେ ସଙ୍ଗେ ଶ୍ମଶ୍ରୁ ହୋଇଛି ସୁସଂଯତ । ତାଙ୍କର ଶରୀରରେ ସୁବର୍ଣ୍ଣର ପୋଷାକ ଓ ସ୍କନ୍ଧରେ ଝୁଲୁଛି ଧନୁଶର । ବିଚକ୍ଷଣ ବଶିଷ୍ଟ ପ୍ରଭୁ ଶମ୍ଭୁ ବର୍ତ୍ତମାନ ମହାଧନୁର୍ଦ୍ଧର ଭୀମଦେବ ଅବତାର ଗ୍ରହଣ କରିଛନ୍ତି । ତାଙ୍କ ବାହୁ ତଥା ବକ୍ଷ ଠିକ୍ ସେଦିନ ଜହ୍ନରାତିରେ ଯେପରି ଦେଖା ଯାଉଥିଲା, ଠିକ୍ ସେହିପରି ଦେଖାଯାଉଛି । ତାର ସ୍ପନ୍ଦିତ ହୃଦୟକୁ ସ୍ଥିର କରିବାକୁ ଚୌଲା ଯେତେ ଚେଷ୍ଟା କରୁଥିଲେ ସୁଦ୍ଧା ତାହା ସ୍ଥିର ହୋଇ ପାରୁ ନାହିଁ ।

ସେ ଯେଉଁ ଆଡ଼କୁ ଅନାଉଛି ଦେଲଓ୍ୱାର୍ଡ଼ରୁ ଲୋକମାନେ ଆସୁଥିବା ଏବଂ ପାଟଣରୁ ବଳଦଗାଡ଼ିରେ ଖାଦ୍ୟ ସାମଗ୍ରୀ ତଥା ଅନ୍ୟାନ୍ୟ ଆବଶ୍ୟକୀୟ ଦ୍ରବ୍ୟ ବୁହାହୋଇ ଆସୁଥିବା ଦେଖୁଛି । ସେମାନଙ୍କ ପଛେ ପଛେ ବହୁ ସଂଖ୍ୟକ ଘୋଡ଼ା-ସବାର ସୈନ୍ୟ ଧାଡ଼ିକେ ଗୁରି ପାଞ୍ଚୋଟି ହୋଇ ଆସୁଛନ୍ତି ।

ସେ କଣ କରୁଛି ଅନୁଭବ କରିବା ପୂର୍ବରୁ ଚୌଲା ଆନନ୍ଦରେ ଚିତ୍କାର କରି ଉଠିଲା । ନିଜେ ମହାରାଜ ଭୀମଦେବ ଗୋଟିଏ ସୁସଜ୍ଜିତ ଧଳା ଘୋଡ଼ାରେ ଚଢ଼ି ଘୋଟକବାହିନୀର ଚାଳକ ହୋଇଛନ୍ତି । ତାଙ୍କର ସୁବର୍ଣ୍ଣଖଚିତ ଶିରସ୍ତ୍ରାଣରୁ ସୂର୍ଯ୍ୟ କିରଣ ପ୍ରତିଫଳିତ ହେଉଛି ଓ ସେହି ଜ୍ୟୋତିରୁ ଭୀମଦେବଙ୍କର ଘନକୃଷ୍ଣ ମୁଖ ଆହୁରି ଅଧିକ ଆକର୍ଷଣୀୟ ଦେଖାଯାଉଛି ।

ଅଶ୍ୱାରୋହୀମାନେ ନିକଟବର୍ତ୍ତୀ ହେବାରୁ ଚୌଲା ଭୀମଦେବଙ୍କୁ ସ୍ୱୟଂ ରୁଦ୍ର ଭାବେ ଦେଖିବାକୁ ପାଇଲା । ତାଙ୍କ ଦ୍ୱାରା ପରିଚାଳିତ ଘୋଟକ ବାହିନୀ, ଗଜ ବାହିନୀ ଓ ପଦାତିକ ବାହିନୀ ଗୋଟିଏ ବିରାଟକାୟ ନଦୀ ପରି ସର୍ପିଳ ଗତିରେ ଆଗେଇ ଆସୁଥାଏ ।

ଚୌଲା ଯେଉଁଠି ଅଛି, ସେଠାରୁ ସେ କେବଳ ତଳ ଦୁର୍ଗର ପ୍ରାଚୀରକୁ ଦେଖୁଛି । ପାଟଣର ଶାସକଙ୍କୁ ସ୍ୱାଗତ କରିବାକୁ ଗୁରୁଦେବ ପ୍ରଭାସର ପ୍ରଧାନ ଫାଟକ ପାଖକୁ ଯାଇଛନ୍ତି । ସେଠାରୁ ସେ ମଧ୍ୟ ଦେଖାଯାଉଛନ୍ତି । ଆତ୍ମଶୁଦ୍ଧି ପାଇଁ ଅଠର ଦିନ ଧରି ଉପବାସ କରି କ୍ଷୀଣ ହୋଇଥିବା ଶିବରାଶି,

ଅନ୍ୟ ବହୁ ସଂଖ୍ୟକ ଶିଷ୍ୟ ଏବଂ ନଗରବାସୀମାନେ ମଧ୍ୟ ତାଙ୍କ ସହ ସେଠାରେ ଠିଆ ହୋଇଛନ୍ତି ।

ମହାରାଜ ଭୀମଦେବ ଦୁର୍ଗ ପାଖରେ ପହଞ୍ଚିଲା କ୍ଷଣି ତାଙ୍କ ଆହ୍ୱାନରେ ତିରିଶ ହଜାର ଯୋଦ୍ଧାଙ୍କ ମୁହଁରୁ ହଠାତ୍ "ଜୟ ସୋମନାଥ" ଧ୍ୱନି ପ୍ରତିଧ୍ୱନିତ ହେଲା । ସମଗ୍ର ବାୟୁମଣ୍ଡଳରେ ଏହା ବିଦ୍ୟୁତ୍ ସଞ୍ଚାରିତ କଲା ପରି ଜଣାଗଲା । ଗୁରୁଦେବ, ତାଙ୍କ ଶିଷ୍ୟ ଓ ପ୍ରଭାସ ନଗରବାସୀମାନଙ୍କ ଭିତରେ ମଧ୍ୟ "ଜୟ ସୋମନାଥ" ଧ୍ୱନି ପ୍ରତିଧ୍ୱନିତ ହେଲା । ହଜାର ହଜାର ଦୁନ୍ଦୁଭିର ଶଙ୍ଖ କିଛି କ୍ଷଣ ପୂର୍ବେ ବିରାଜୁଥିବା ନିସ୍ତବ୍ଧତାକୁ ଭଙ୍ଗ କଲା ।

ଦୁର୍ଗରେ ପ୍ରବେଶ କରିବା ପୂର୍ବରୁ ଭୀମଦେବ ଦେଉଳର ଶିଖର ଉପରକୁ ଅନାଇଲେ । ତାଙ୍କର ଆଖି ଦୁଇଟି ମୁହୂର୍ତ୍ତିକ ପାଇଁ ଦେଉଳ ଶିଖରରେ ଉଦ୍ଦାମ ଗୌରବରେ ଉଡୁଥିବା ପତାକା ଉପରେ ନିବଦ୍ଧ ରହିଲା । ତାପରେ ତାଙ୍କ ଦୃଷ୍ଟି ତଳ ଅଳିନ୍ଦ ଉପରେ ନିବଦ୍ଧ ହେଲା । ସେତିକିବେଳେ ତାଙ୍କ ଆଖି ସହ ଚୌଳାର ଆଖିର ମୁହୂର୍ତ୍ତିକ ମିଳନରେ ଚୌଳା ଲଜ୍ଜା ଓ ଆନନ୍ଦରେ ଆତ୍ମହରା ହୋଇପଡ଼ିଲା । ମାତ୍ର ଭୀମଦେବ ତାକୁ ଚିହ୍ନି ପାରିଲେ ନାହିଁ ଏବଂ ଫାଟକ ନିକଟରେ ଠିଆ ହୋଇଥିବା ଗୁରୁଦେବଙ୍କ ଆଡ଼କୁ ସେ ଦୃଷ୍ଟି ନିକ୍ଷେପ କଲେ । ଯେଉଁ ପାଟଣର ଶାସକ ତୁର୍କିର ଆକ୍ରମଣକାରୀମାନଙ୍କୁ ଧ୍ୱଂସ କରିବାକୁ ଆସିଛନ୍ତି, ତାଙ୍କ ସହ ସାମାନ୍ୟ ଦେବଦାସୀ ଭାବେ ତା' ନିଜର ସ୍ଥିତି ଓ ପାର୍ଥକ୍ୟ ଅନୁଭବ କରି ତାର ହୃଦୟର ସ୍ପନ୍ଦନ ବନ୍ଦ ହୋଇଗଲା ପରି ଚୌଳା ଅନୁଭବ କଲା । ଆହତ ହରିଣୀ ପରି ସେ ଏକ ଚିତ୍କାର କଲା ଓ ଆଉ ପଛକୁ ନ ଅନାଇଁ ତଳ ପାହାଚ ଆଡ଼କୁ ଅଗ୍ରସର ହେଲା । ତାର ପ୍ରଭୁ ଶିବ ସ୍ୱୟଂ ଆବିର୍ଭୂତ ହେଲେ,ଅଥଚ ତାକୁ ସେ ଚିହ୍ନି ପାରିଲେ ନାହିଁ କି ଗ୍ରହଣ କଲେ ନାହିଁ;କିମ୍ବା ସେ ତାଙ୍କପାଇଁ ଉପଯୁକ୍ତ ବିବେଚିତ ହେଲା ନାହିଁ ।

ଚୌଳା ଯେତେବେଳେ ଧଇଁସଇଁ ହୋଇ ତଳ ମହଲାକୁ ଆସିଲା, ସେ ଶୁଣିପାରିଲା ତାର ମା ଗଙ୍ଗା ଡାକୁଛି, "ଚୌଳା, ତୁ କୁଆଡ଼େ ଦଉଡ଼ୁଛୁ ?"

"ନା, ମା, କେଉଁଠାକୁ ନୁହେଁ" ଏକା ନିଶ୍ୱାସରେ ସେ ଉତ୍ତର ଦେଲା । ଆଉ ଅଳ୍ପ କେତୋଟି ପାହାଚ ଅତିକ୍ରମ କରିବା ପୂର୍ବରୁ ହଠାତ୍ ସେ ରହିଗଲା । ତାର ହୃଦୟ ଦ୍ରୁତ ଗତିରେ ସ୍ପନ୍ଦିତ ହେଲା । ସେ ଧାଇଁଯାଇ ତାର

ମା ଗଙ୍ଗାକୁ କୁଣ୍ଢାଇ ପକାଇ କହିଲା, "ମା, ଖୁବ ଶୀଘ୍ର ମଧ୍ୟାହ୍ନ ହେବ। ଆଜି କାହାର ପାଳି ପଡ଼ିବ ନାଚିବାକୁ ?"

ଗଙ୍ଗା—କାହିଁକି ? ମୁଁ ଭାବୁଛି କୁଣ୍ଡଳାର ପାଳି।

ଶୈଳ—ନା, ମା, ମୁଁ ଆଜି ନାଚିବାକୁ ଚାହୁଁଛି। ବର୍ତ୍ତମାନ ପ୍ରକୃତ ସମୟ।

ଗଙ୍ଗା—କିନ୍ତୁ ଏ ମଧ୍ୟାହ୍ନରେ ନାଚି ପାରିବୁ ବୋଲି ତୁ କଣ ଭାବୁଛୁ ?

ଶୈଳ—ମୁଁ କାହାକୁ ଖାତିର କରୁ ନାହିଁ—ମୁଁ ନିଶ୍ଚୟ ବର୍ତ୍ତମାନ ନାଚିବ।

ଗଙ୍ଗା—ତୋର ପାଳି ଆଜି ସନ୍ଧ୍ୟାବେଳେ ପଡ଼ିବ। ଏଥିରେ ତୁ ରାଜି ?

ଶୈଳ—ନା, ମୁଁ ବର୍ତ୍ତମାନ ନାଚିବ। ଏଥିରେ ତୁ ଏକମତ ନ ହେଲେ ମୁଁ ବରଂ ଆତ୍ମହତ୍ୟା କରିବ।

ଗଙ୍ଗା—କିନ୍ତୁ କୁଣ୍ଡଳା ଯେ ମର୍ମାହତ ହେବ ?

ଶୈଳ—ସେ କ୍ଷେତ୍ରରେ ତାକୁ ତୁ ଯେପରି ଇଚ୍ଛା ସନ୍ତୁଷ୍ଟ କର। କିନ୍ତୁ ମତେ ଅନୁଗ୍ରହ କରି ବାରଣ କରନା, ମୁଁ ନୃତ୍ୟ କରେ।

ଶୈଳର ଏପରି ଉତ୍ତେଜନାର ମର୍ମ ଜାଣିବାକୁ ଗଙ୍ଗାକୁ ବେଶୀ ସମୟ ଲାଗିଲା ନାହିଁ। ଶୈଳର ବଡ଼ ବଡ଼ ଆଖି, ହୃଦୟର ଦ୍ରୁତ ସ୍ପନ୍ଦନ ଓ ଉତ୍କଣ୍ଠା ଜାଣିପାରି ଗଙ୍ଗା ଆଉ ତା ସହିତ ଅଧିକ ତର୍କ ନକରି କହିଲା,"ତୁ ପ୍ରସ୍ତୁତ ରହ। ମୁଁ ଯାଉଛି ଏ ଖବର କୁଣ୍ଡଳାକୁ କହିବ।"

ଆନନ୍ଦବିଭୋରା ଶୈଳ ପ୍ରଭୁ ସୋମନାଥଙ୍କ ଆଗରେ ନୃତ୍ୟ ଆରମ୍ଭ କଲା। ସେ ଆଜି ତାର ଯୁଦ୍ଧାଭିମୁଖୀ ପ୍ରଭୁ ଶିବଙ୍କୁ ଉପାସନା କରୁଛି। ସେଥିପାଇଁ ତାର ନୃତ୍ୟ ଭଙ୍ଗୀରେ ସ୍ୱତନ୍ତ୍ରତା ଫୁଟିଉଠିଛି। ପାଦ ଦୁଇଟିର ଚାଳନାରେ ନୂତନତା ଓ ନୃତ୍ୟର ଶୈଳୀରେ ପ୍ରାକୃତିକତା ସୁସ୍ପଷ୍ଟ। ତାର ଆଖି ଦୁଇଟି ସବୁଦିନ ପରି ପ୍ରଭୁ ସୋମନାଥଙ୍କ ପ୍ରତିମୂର୍ତ୍ତି ଉପରେ ନିବଦ୍ଧ ନ ରହି, ମନ୍ଦିରକୁ ଯାଇଥିବା ରାସ୍ତା ଉପରେ ଆଜି ନିବଦ୍ଧ।

ସେ ନିଶ୍ଚିତ ଭାବେ ଜାଣିଥିଲା ଯେ ଭୀମଦେବ ନିଶ୍ଚୟ ପ୍ରଭୁଙ୍କୁ ଉପାସନା କରିବାକୁ ଆସିବେ ଓ ସେତେବେଳେ ନିଃସନ୍ଦେହରେ ତାକୁ ଚିହ୍ନି ପାରିବେ।

ସେ ତାଙ୍କର ପାଇଁ ହିଁ ନୃତ୍ୟ କରିବ । ଅଳ୍ପ ସମୟ ପରେ ରାଜାଙ୍କ ଆଗମନ ସୂଚକ ବାଦ୍ୟନାଦ ଶୁଣାଯିବା ସଙ୍ଗେ ସଙ୍ଗେ ଲୋକମାନଙ୍କ କୋଳାହଳ ବଢ଼ିବାରେ ଲାଗିଲା । ପ୍ରଥମେ ଗୁରୁଦେବ ଓ ଭୀମଦେବ ଭିତର ଦୁର୍ଗର ଫାଟକ ବାଟେ ପ୍ରବେଶ କଲେ । ସେମାନଙ୍କ ପଛେ ପଛେ ରାଜନ୍ୟବୃନ୍ଦ, ମନ୍ତ୍ରୀବୃନ୍ଦ ଓ ସେନାଧ୍ୟକ୍ଷମାନେ ମଧ୍ୟ ଆସୁଥିଲେ । ଚୌଲାର ହୃଦୟର ସ୍ପନ୍ଦନ ଦ୍ରୁତରୁ ଦ୍ରୁତତର ହେଲା । ତାର ପାଦରେ ଅସ୍ଥିରତା ପ୍ରକାଶ ପାଇଲା ଓ ଉତ୍ତେଜନାରେ କଣ୍ଠ ରୁଦ୍ଧ ହୋଇଗଲା ।

ଗୁରୁଦେବ ଓ ଭୀମଦେବ ଗୁରୁତ୍ୱପୂର୍ଣ୍ଣ କଥୋପକଥନରେ ରତ ରହି ମନ୍ଦିରରେ ପ୍ରବେଶ କଲେ । ଚୌଲା ଅଜ୍ଞାତରେ ଭୀମଦେବଙ୍କୁ ଯେପରି ଦେଖିଥିଲା—ଯେଉଁ ମୁଖ, ଯେଉଁ ଚକ୍ଷୁ ଓ ଚାଲିବାର ଭଙ୍ଗୀ—ଆଜି କିନ୍ତୁ ସେ ଦେଖୁଛି ସମ୍ପୂର୍ଣ୍ଣ ଭିନ୍ନ—ଗମ୍ଭୀର ମୁଖ, କଠୋର ଚକ୍ଷୁ ଓ ଦୃଢ଼ ଗତି । ଇଏତ ସେ ରାତିର ଭୀମଦେବ ନୁହନ୍ତି—ଏ ଜଣେ ଅଜଣା ସୁଦକ୍ଷ ଯୋଦ୍ଧା ଯିଏ ଚୌଲାକୁ ଜାଣନ୍ତି ନାହିଁ । ଚୌଲାର ପାଦ ଦୁଇଟି ନୃତ୍ୟ ରତ ଥିଲା ସିନା, ତାର ହୃଦୟ ନୀରବରେ ଅଶ୍ରୁ ବର୍ଷଣ କରୁଥିଲା ।

ଯେତେବେଳେ ଗଙ୍ଗ ସର୍ବଜ୍ଞ ଓ ଭୀମଦେବ ଏକତ୍ର ଦେଉଳର ଭିତର ମନ୍ଦିରକୁ ପ୍ରବେଶ କଲେ, ଚୌଲାର ଆଶାର ସୌଧ ଯେପରି ଧୂଳିସାତ୍ ହେଲା । ଭୀମଦେବଙ୍କ ଦୃଷ୍ଟି ମୁହୂର୍ତ୍ତକ ପାଇଁ ତା ଉପରେ ପଡ଼ିଲା ଏବଂ ସେହି ମୁହୂର୍ତ୍ତକ ମଧ୍ୟରେ ଚୌଲା ତାଙ୍କ ହୃଦୟର ସ୍ପନ୍ଦନ ଥରକ ପାଇଁ ସୁଦ୍ଧା ଅନୁଭବ କରିପାରିଲା ନାହିଁ । ଭୀମଦେବଙ୍କ ମନ ସେତେବେଳେ ଯୁଦ୍ଧ ପରିଚାଳନା ଚିନ୍ତାରେ ଭାରାକ୍ରାନ୍ତ ଥିବାରୁ ଚୌଲା ତାଙ୍କୁ ଜଣେ ଅପରିଚିତା ପରି ମନେହେଲା । ସେ ତାକୁ ଚିହ୍ନି ବି ପାରିଲେ ନାହିଁ । ଭୀମଦେବଙ୍କର ଏପରି ବ୍ୟବହାରରେ ଚୌଳା ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଥାଏ ।

ପ୍ରଚଳିତ ପ୍ରଥା ଅନୁସାରେ ଭୀମଦେବ ଓ ତାଙ୍କ ସହଚର ଶାସକ ଗଣ ସୋମନାଥଙ୍କର ଉପାସନା କଲେ । ରାଜହଂସର ମୃତ୍ୟୁକାଳୀନ ସ୍ୱର ପରି ନର୍ତ୍ତକୀ ଚୌଲା ଯେଉଁ କରୁଣ ଓ ହୃଦୟବିଦାରକ ସଙ୍ଗୀତର ମୂର୍ଚ୍ଛନା ସୃଷ୍ଟି କଲା, ତାହା ସେମାନଙ୍କ ପୂଜା ପାଇଁ ପରିବେଶ ସୃଷ୍ଟି କଲା । ସେମାନେ ସମସ୍ତେ ଉପାସନା ମନ୍ଦିର ପରିତ୍ୟାଗ କରି ଆସିଲେ, ଏବଂ ଗୁରୁଦେବ ହାତ ଉଠାଇ ପୂର୍ଣ୍ଣ ନୀରବତା ପାଇଁ ନିର୍ଦ୍ଦେଶ ଦେଲେ । ପ୍ରତ୍ୟେକେ ନୀରବ ହେଲେ; କେବଳ

ପରମ୍ପରା ଅନୁସାରେ ନୃତ୍ୟ ଗୀତ ଚାଲିଥାଏ । ଗାୟିକା ଆଡ଼କୁ ନ ଅନାଇ ଅତି ରୁକ୍ଷ କଣ୍ଠରେ ସଙ୍ଗୀତ ବନ୍ଦ କରିବାକୁ ଭୀମଦେବ ନିର୍ଦ୍ଦେଶ ଦେଲେ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ମଣିଷର କଣ୍ଠ ରୁଦ୍ଧ ହେଲାପରି ଚୌଳର ନୃତ୍ୟ ଓ ଗୀତ ସହସା ବନ୍ଦ ହୋଇଗଲା ।

ଧୀର ଓ ମ୍ଳାନ ବଦନରେ ଗୁରୁଦେବ କହିଲେ, "ପ୍ରଭୁଙ୍କର ଭକ୍ତବୃନ୍ଦ, ପ୍ରଭୁ ସୋମନାଥ ଆମ୍ଭମାନଙ୍କୁ ପରୀକ୍ଷା କରିବାକୁ ଏ ସଂକଟ ସୃଷ୍ଟି କରିଛନ୍ତି । ଆଉ ଆଠ ଦଶ ଦିନ ଭିତରେ ଶତ୍ରୁ ଆସି ଦ୍ୱାରଦେଶରେ ଦେଖାଦେବ । ପ୍ରଭୁ ସୋମନାଥଙ୍କଠାରେ ମୋର ଯେଉଁ କର୍ତ୍ତୃତ୍ୱ ଥିଲା, ଏଣିକି ମୁଁ ତାହା ଭୀମଦେବ ମହାରାଜଙ୍କୁ ଅର୍ପଣ କଲି । ତୁମେମାନେ ପ୍ରତ୍ୟେକେ ଏଣିକି ତାଙ୍କ ନିର୍ଦ୍ଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରିବ । ସେ ସମ୍ପୂର୍ଣ୍ଣ ଭାବେ ପ୍ରଭୁ ସୋମନାଥଙ୍କ ପାଖରେ ନିବେଦିତ ଓ ତାହା ବଦଳରେ ସେ ପ୍ରଭୁଙ୍କ ଆଶୀର୍ବାଦ ଲାଭ କରିଛନ୍ତି ।"

ସର୍ବଜ୍ଞଙ୍କ ବକ୍ତବ୍ୟ ଶେଷ ହେବା ପରେ ମଧ୍ୟ ସେଠାରେ ସମ୍ପୂର୍ଣ୍ଣ ନୀରବତା ବିରାଜୁଥିଲା । ଏକ ବଡ଼ ଧରଣର ବିପଦ ଆସନ୍ନ ବୋଲି ପ୍ରଥମ ଥର ପାଇଁ ସମସ୍ତେ ଗୁରୁତ୍ୱପୂର୍ଣ୍ଣ ଭାବେ ଉପଲବ୍ଧି କରୁଥିଲେ ।

ତତ୍ପରେ ଭୀମଦେବ ଗୁରୁଗମ୍ଭୀର ଭାବେ କହିଲେ, "ପ୍ରଭୁ ସୋମନାଥଙ୍କ ଇଚ୍ଛାନୁସାରେ ମୁଁ ଗୋଟିଏ ଯନ୍ତ୍ର ପରି କାମ କରିବି । ଗୋଟିଏ ବଡ଼ ମାରାତ୍ମକ ଶତ୍ରୁ ବର୍ତ୍ତମାନ ଦ୍ୱାରଦେଶରେ ଉପସ୍ଥିତ ଏବଂ ତାର ଧ୍ୱଂସ କରିବାର କ୍ଷମତା ଅସୀମ । କେବଳ ଭଗବାନଙ୍କର ଆଶୀର୍ବାଦ ବଳରେ ଆମେ ତାକୁ ଜୟ କରିବା ।"

ସେ କିଛି କ୍ଷଣ ପାଇଁ ନୀରବ ରହିଲେ ଏବଂ ସମସ୍ତଙ୍କ ଆଡ଼କୁ ଦୃଷ୍ଟି ନିକ୍ଷେପ କଲେ । ଚୌଳକୁ ପୂର୍ବରୁ ଯେପରି ଦେଖୁଥିଲେ, ଏଥର ଦେଖିବାରେ ସେପରି କିଛି ଆନନ୍ଦ ବା ଆବେଗ ନଥିଲା । ସେ ପୁନର୍ବାର ଆରମ୍ଭ କଲେ, "ଗତ ଦୁଇଦିନ ମଧ୍ୟରେ କେତୋଟି ଯୁଦ୍ଧ ଜାହାଜ କାମ୍ବେରୁ ଆସି ପୋତାଶ୍ରୟରେ ଆଶ୍ରୟ ନେଇଥିବ । ତେଣୁ ସମସ୍ତ ଅଧିବାସୀ—ବ୍ରାହ୍ମଣ ହୁଅନ୍ତୁ, ନାରୀ ବା ପିଲା ହୁଅନ୍ତୁ—ସେମାନଙ୍କୁ ପ୍ରଭାସ ପରିତ୍ୟାଗ କରିବାକୁ ପଡ଼ିବ । ସେମାନେ ଇଚ୍ଛା କଲେ ସେମାନଙ୍କ ଜିନିଷପତ୍ର ସଙ୍ଗରେ ନେଇପାରନ୍ତି । କିନ୍ତୁ ସେମାନେ ସମସ୍ତ ଖାଦ୍ୟ ସାମଗ୍ରୀ ଛାଡ଼ିଦେଇ ଯିବେ । ସେମାନେ ପରିତ୍ୟାଗ କରି ଯାଉଥିବା ଘରମାନଙ୍କରେ ମୋର ସୈନ୍ୟମାନେ ରହିବେ ।"

ତା ପରେ ସେ ତାଙ୍କର ମନ୍ତ୍ରୀଙ୍କ ଆଡ଼କୁ ଗୁହିଁ ଆଦେଶ ଜାରି କରି କହିଲେ, "ବିମଳ, ଖୁବ୍ କମ୍ ସମୟ ମଧ୍ୟରେ ଯେପରି ନଗରରୁ ସାଧାରଣ ନାଗରିକମାନେ ଗ୍ଲଳିଯିବେ ତାହା ଦେଖ", ଏବଂ ଗୁରୁଦେବଙ୍କୁ ଅନୁନୟ କରି କହିଲେ,"ଆପଣ ଦୟାକରି ମନ୍ଦିରରେ ନୃତ୍ୟ ଗୀତର ସମାରୋହ ବନ୍ଦ ରଖନ୍ତୁ । ସୋମନାଥଙ୍କ ଦୟାରୁ ହମୀର ଏଠାରୁ ବିତାଡ଼ିତ ହେବା ପରେ ଏ ସମସ୍ତ ଉତ୍ସବ ମନ୍ଦିରରେ ପୁନର୍ବାର ପ୍ରଚଳିତ ହେବ ।"

ସମବେତ ଜନତା ଉପରେ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଦୃଷ୍ଟି ନିକ୍ଷେପ କରି ଭୀମଦେବ, ଗୁରୁଦେବ, ରାଜନ୍ୟମଣ୍ଡଳୀ ଓ ମନ୍ତ୍ରୀମାନଙ୍କ ସହ ସେଠାରୁ ଗ୍ଲଲିଗଲେ ।

## ୩୧

## ଗୁରୁଦେବଙ୍କ ପ୍ରତିଜ୍ଞା

ଉପସ୍ଥିତ ଜନତା ମଧ୍ୟରୁ ପାଟି ଶୁଣାଗଲା । ଚୌଲା ତା' ଆଖି ବନ୍ଦ କରି ବାତୁଳପ୍ରାୟ ଏକା ନିଶ୍ୱାସକେ ତାର ଘର ଆଡ଼କୁ ଦୌଡ଼ିଲା । ଅବଶ୍ୟମ୍ଭାବୀ ବିପଦରେ ଆତଙ୍କିତ ହୋଇ ତା' ପ୍ରତି କାହାରି ଦୃଷ୍ଟି ନଥିଲା । ସେ ଘରେ ପହଞ୍ଚି, ଦେହରୁ ଶାଢ଼ି ଗହଣାମାନ ନ ଖୋଲି ବିଛଣାରେ ପଡ଼ି ଖୁବ୍ କାନ୍ଦିଲା । ତାର ପ୍ରଭୁ ଆସି ଗ୍ଲଲିଯାଇଥିଲେ ମୁଦ୍ଧା ତାକୁ ଚିହ୍ନି ପାରିଲେ ନାହିଁ । ସ୍ୱର୍ଗର ଦ୍ୱାରମାନ ଖୋଲି ଥିଲେ ହେଁ, ସେ ଅନାଇବା ପୂର୍ବରୁ ତାହା ବନ୍ଦ ହୋଇଯାଇଛି ।

ତାହାର ନାଚ ଓ ଗାନ ପ୍ରତି କେହି ଦୃଷ୍ଟି ଦେଇ ନାହାନ୍ତି ବୋଲି ଚୌଳର ଧାରଣା ଅବଶ୍ୟ ଠିକ୍ ନୁହେଁ । ଅଠର ଦିନ ଧରି ଉପବାସ କରି ଦୁର୍ବଳ ହୋଇପଡ଼ିଥିଲେ ମୁଦ୍ଧା ଶିବରାଶିଙ୍କ ଦୃଷ୍ଟି ଚୌଳା ବ୍ୟତୀତ ଅନ୍ୟତ୍ର ଯାଇନଥିଲା । ଅନୁଗତ ଶିଷ୍ୟରୂପେ ସେ ବରାବର ଗୁରୁଙ୍କ କଥା ମାନିଆସିଛନ୍ତି । ପ୍ରକୃତ କଥା ଦେଖିବାକୁ ଗଲେ, ତାଙ୍କର ତାହାଛଡ଼ା ଅନ୍ୟ ଉପାୟ ନଥିଲା । ସେ ଯେବେ ତାହା କରିନଥାନ୍ତେ, ତେବେ ଗୁରୁଦେବ ତାଙ୍କୁ ମୁଖ୍ୟ ଶିଷ୍ୟ ପଦବୀରୁ ବଞ୍ଚିତ କରିଥାନ୍ତେ । କିନ୍ତୁ ଶିବରାଶିଙ୍କ ହୃଦୟରେ ପ୍ରବଳ ଝଞ୍ଜା ଦେଖା ଦେଇଛି । ଗୁରୁଦେବ ତାଙ୍କର କ୍ଷମତା କାଢ଼ିନେଇ ତାଙ୍କୁ ଅପମାନିତ କରିଛନ୍ତି ।

ଗୁରୁଦେବ ଯେ ତ୍ରିପୁରସୁନ୍ଦରୀଙ୍କ ମାତ୍ର ବନ୍ଦ କରି ଦେଇଛନ୍ତି ଏବଂ କେବଳ ଜଣେ ମନ୍ଦିର ନର୍ତ୍ତକୀର ଝିଅକୁ ସନ୍ତୁଷ୍ଟ କରିବା ନିମିତ୍ତ ତାହା କରିଛନ୍ତି; ଏହା ଅକ୍ଷମଣୀୟ । ଏଥିପାଇଁ ଯେବେ କାହାର ଅନୁତାପ କରିବା କଥା, ସେ ହେଉଛନ୍ତି ଗୁରୁଦେବ ନିଜେ । ତାଙ୍କର ପାପ ଯୋଗୁ ହିଁ ମହାମାୟୀ ମନ୍ଦିର ଧ୍ୱଂସ କରିବା ପାଇଁ ଆକ୍ରମଣକାରୀଙ୍କୁ ପଠାଇଛନ୍ତି ।

ଶିବରାଣୀଙ୍କ ଉପବାସ ଯେତେ ଅଧିକ ଦିନ ହେଉଥାଏ, ଘଟିଯାଇଥିବା ଘଟଣା ଉପରେ ମହାମାୟୀ ତ୍ରିପୁରସୁନ୍ଦରୀଙ୍କ ହାତ ସେ ସେତେ ଅଧିକ ମାତ୍ରାରେ ଦେଖିପାରୁଥାନ୍ତି । ହମ୍ମୀରର ବିଜୟ ସୁନିଶ୍ଚିତ ଏବଂ ଗୁରୁଦେବ ତାଙ୍କ ସ୍ଥାନରୁ ନିଶ୍ଚୟ ଯିବେ । ତାହା ପରେ ଶିବରାଣୀ ତାଙ୍କ ସ୍ଥାନ ଅଧିକାର କରି ହେବେ ସର୍ବଜ୍ଞ । ସୃଷ୍ଟିକର୍ତ୍ତ୍ରୀ ମହାମାୟୀ ତ୍ରିପୁରସୁନ୍ଦରୀ ସବୁ ସହିପାରନ୍ତି, କିନ୍ତୁ ତାଙ୍କ ପ୍ରତି ହେଉଥିବା ଅସମ୍ମାନ ସେ କିପରି ସହ୍ୟ କରିପାରିବେ ?

ଶିବରାଣୀ ମହାମାୟୀଙ୍କ ଶକ୍ତି ବିଷୟରେ ଭାବୁଥିଲାବେଳେ, ଚୌଳ ବିଷୟ ତାଙ୍କ ମନକୁ ନ ଆସି ରହିପାରୁନଥାଏ । ସେ ଦିନ ସନ୍ଧ୍ୟାବେଳେ ସେ ଚୌଳର ଯେଉଁ ରୂପର ପୂଜା କରିଥିଲେ, ତାହା ଶୟନେ ବା ଜାଗରଣେ ଭୁଲି ପାରୁ ନାହାନ୍ତି । ତାଙ୍କୁ ସ୍ୱପ୍ନରେ ସେହି ଦୃଶ୍ୟ ଦେଖାଯାଉଛି । ଦେବୀଙ୍କର ଯେଉଁ ବିଧି ସେ ଅପୂର୍ଣ୍ଣ ରଖି ଗୁରୁଦେବଙ୍କୁ ବାଧ୍ୟ ହେଲେ, ତାହା ପୂର୍ଣ୍ଣ କରିବାର ସୁଯୋଗ ପାଇବାକୁ ତାଙ୍କ ମନରେ ଅତିଶୟ ଉତ୍କଣ୍ଠା ପ୍ରକାଶ ପାଉଛି । ସେହି ବିଧି ବିଧାନ ପୂର୍ଣ୍ଣକରୁଥିବା ସେ ସ୍ୱପ୍ନରେ ବହୁବାର ଦେଖିଛନ୍ତି । କିନ୍ତୁ ନିଦ ଭାଙ୍ଗିଗଲା ବେଳକୁ ତାଙ୍କ ମନରେ ଅତିଶୟ ବ୍ୟଥା ହେଉଛି । ତେଣୁ ହମ୍ମୀରର ଆସନ୍ନ ଆକ୍ରମଣ କଥା ଶୁଣି ତାଙ୍କ ମନରେ ଆନନ୍ଦ ଦେଖାଦେଲା । ସେ ଭାବିଲେ ସେହିଭଳି କିଛି ବିରାଟ ପରିବର୍ତ୍ତନ ନହେଲେ ମହାମାୟୀଙ୍କର ପାରମ୍ପରିକ ପୂଜା ପଦ୍ଧତି ପୁନର୍ବାର ପ୍ରତିଷ୍ଠିତ ହେବାର ଆଶା ଖୁବ୍ କମ୍ ।

ଶିବରାଣୀ ଏହିପରି ଭାବୁଥିବା ସମୟରେ ଭୀମଦେବ ଆସି ପ୍ରଭାସରେ ପହଞ୍ଚିଥିଲେ । ଗୁରୁଦେବ ଓ ଭୀମଦେବଙ୍କ ମଧ୍ୟରେ ହୋଇଥିବା କଥାବାର୍ତ୍ତା ସେ କାନ ପାରି ଅଳ୍ପ ଅଳ୍ପ ଶୁଣିଛନ୍ତି । ପ୍ରତ୍ୟେକ ଲୋକଙ୍କୁ ଖମ୍ଭାତ (କାମ୍ବେ) ଯିବାକୁ ହେବ । ଯେବେ ଗୁରୁଦେବ ନ ଯାନ୍ତି ତାହାହେଲେ ଲୋକଙ୍କୁ ନେଇ ଖମ୍ଭାତରେ ଲକୁଳୀଶ ସଂପ୍ରଦାୟ ପ୍ରତିଷ୍ଠା କରିବାର ଦାୟିତ୍ୱ ତାଙ୍କ ଉପରେ ପଡ଼ିବ । ଯେଉଁମାନେ ଖମ୍ଭାତ୍ ଯିବେ ସେମାନଙ୍କ ମଧ୍ୟରେ ସେ ଚୌଳ ଯିବ ଏ

ବିଷୟରେ କୌଣସି ସନ୍ଦେହ ନାହିଁ । ଯେଉଁ କାଳ ରାତ୍ରିରେ କାପାଳିକର ମୃତ୍ୟୁ ହେଲା, ସେତେବେଳେ ଭୀମଦେବ ଓ ଚୌଲାର ଦେଖା ସାକ୍ଷାତ ହୋଇଥିବା କଥା ମଧ୍ୟ ସେ କିଛି କିଛି ଶୁଣିଛନ୍ତି····· । କିନ୍ତୁ ବର୍ତ୍ତମାନ ଅବସ୍ଥା ପୂର୍ବାପୂର ଅଲଗା । ଚୌଲା ସମ୍ବନ୍ଧ ଭୀମଦେବ ତ ଖମ୍ବାତ୍ ଯିବେ ନାହିଁ !

ମନ୍ଦିରରେ ଭୀମଦେବ ଚୌଲା ଆଡ଼କୁ ମୋଟେ ନ ଅନାଇଥିବାରୁ ଏବଂ ଏପରିକି ତାକୁ ଚିହ୍ନି ପାରିନଥିବାରୁ ଶିବରାଶି ଭାରି ଖୁସି । ଉପବାସ ଫଳରେ ଶିବରାଶିଙ୍କର କଳ୍ପନା ଶକ୍ତି କ୍ଷୀଣ ହୋଇଥିଲା । ଚୌଲାର ଗୀତ ଓ ନୃତ୍ୟ ତାହାକୁ ଆହୁରି କ୍ଷୀଣତର କରିଛି । ଗୁରୁଦେବଙ୍କ ସମ୍ମତି କ୍ରମେ ଭୀମଦେବ ଯେତେବେଳେ ମନ୍ଦିରରେ ନୃତ୍ୟ ବନ୍ଦ କରାଇଦେଲେ, ତାହା ତାଙ୍କୁ ବିଶେଷ କଷ୍ଟ ଦେଇଥିଲା । ପ୍ରକୃତରେ ଦେଖିବାକୁଗଲେ ଗୁରୁଦେବ ନଜର ପ୍ରାଧାନ୍ୟକୁ ଏପରି ଅପବ୍ୟବହାର କରୁଛନ୍ତି, ଯାହା ଫଳରେ କି ସେ ଆଉ ସମ୍ମାନଯୋଗ୍ୟ ନୁହନ୍ତି ।

ଗୁରୁଦେବ ଓ ଭୀମଦେବ ମନ୍ଦିରରୁ ବାହାରିଯିବା ସମୟରେ ଶିବରାଶି ମଧ୍ୟ ସେମାନଙ୍କ ସଙ୍ଗେ ସଙ୍ଗେ ଗଲେ । ମନ୍ଦିରର ସବା ତଳ ପାହାଚରେ ପହଞ୍ଚି ଗୁରୁଦେବ ତାଙ୍କ ଆଡ଼କୁ ଲକ୍ଷ୍ୟକରି କହିଲେ, "ଶିବରାଶି, ପ୍ରାୟଶ୍ଚିତ୍ତ ଶେଷ କର, ପାରଣା କର । ଏହି ଦାରୁଣ ବିପଦ ସମୟରେ ତୁମର ଏକମାତ୍ର କର୍ତ୍ତବ୍ୟ ପ୍ରଭାସର ଜନସାଧାରଣଙ୍କର ସେବା ।"

ଶିବରାଶି ହାତଯୋଡ଼ି ଓ ମୁଣ୍ଡ ନୁଆଁଇ ସେଠାରୁ ଚାଲିଗଲେ । ଯେଉଁ ମହାମାୟାଙ୍କ ନୀତିରେ ବାଧା ପଡ଼ିଥିବାରୁ ପ୍ରାୟଶ୍ଚିତ୍ତ ସ୍ୱରୂପ ସେ ଏତେ କଷ୍ଟ ଭୋଗିଛନ୍ତି, ଉପବାସ ଭାଙ୍ଗିବା ପୂର୍ବରୁ ତାଙ୍କୁ ଆରାଧନା କରିବା ଉଚିତ ବୋଲି ସେ ଭାବିଲେ । ଚୌଲା ପ୍ରତି ତାଙ୍କର ପାପ ଆସକ୍ତି ଥିବାରୁ ସେ ଯେ ପ୍ରାୟଶ୍ଚିତ୍ତ କରୁଛନ୍ତି ଏହା ତାଙ୍କ ଧାରଣାର ବାହାରେ ।

ଶିବରାଶି ଯାଉ ଯାଉ ତାଙ୍କ ଗୋଡ଼ ଗଙ୍ଗାର ଘର ଆଡ଼କୁ ପଡ଼ିଲା । ଦାଣ୍ଡ କବାଟ ମେଲା ଥିବାରୁ ସେ ସିଧା ଭିତରକୁ ଗଲେ । ଚୌଲା ତଳେ ମୁହଁ ମାଡ଼ି ବିଛଣାରେ ନିଘୋଡ଼ ନିଦରେ ଶୋଇଥିବା ଦେଖି ସେ ଆଶ୍ଚର୍ଯ୍ୟ ହେଲେ । କିଛି ସମୟ ପର୍ଯ୍ୟନ୍ତ ତାର ସେଇ ସୁନ୍ଦର ଶରୀର ଉପରେ ତାଙ୍କର ଆଖି ଏକ ଲୟରେ ପଡ଼ିରହିଲା । ତାଙ୍କର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗ ଥରିଉଠିଲା ଓ ଆଖିରେ କାମନାଗ୍ନି ଜଳିଉଠିଲା । ଯେଉଁ ସୁନ୍ଦର ଶରୀରରେ ମହାମାୟା ପ୍ରବେଶ

କରିଛନ୍ତି, ତାଙ୍କୁ ବିଧିମତେ ପୂଜା କରିବାକୁ ସେ ଇଚ୍ଛା କଲେ । ଗୁରୁଦେବ ଯେତେବେଳେ ନଥିବେ ଏଥିପାଇଁ ସେ ମନେଅଷ୍ଟ ସୁଯୋଗ ପାଇବେ । ଆଉ ଅଳ୍ପ ଦିନେ ତାଙ୍କୁ ଧ୍ୱଂସ କରିବା ପାଇଁ ଆସିବ ହମୀର । ତେଣୁ ବୈଧାନିକ ପୂଜା ପଦ୍ଧତି ପାଇଁ ଡେରି ହେଲେ କିଛି କ୍ଷତି ନାହିଁ । ବର୍ତ୍ତମାନ ସେ କେବଳ ନିଜ ମନର ବୋଝ ହାଲୁକା କରିବାକୁ ଚାହୁଁଛନ୍ତି । ଚୌଳି ପାଦ ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ତାହା ଏକ କୋମଳ ଗୋଲାପଫୁଲ ପରି ଦିଶୁଥାଏ । ଏହି ପାଦକୁ ସେ ନିଜର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ଠିକ୍ କଲେ । ବହୁ କଷ୍ଟରେ ସେ ତାଙ୍କର ବାସନାକୁ ଚାପି ରଖି ମହାମାୟୀଙ୍କ ଅବତାରର ପାଦ ଛୁଇଁ ଗୋଡ଼-ତଳେ ପଡ଼ିଗଲେ । ଶିବରାଣିଙ୍କ ହାତର ସ୍ପର୍ଶରେ ଚୌଳିର ନିଦ ଭାଙ୍ଗିଗଲା ।

ଉପବାସରେ ବିକୃତ ଶିବରାଣିଙ୍କର ମୁଖ ଓ ବିକଟାଳ ଚକ୍ଷୁ ଦେଖି ସେ ଚମକି ପଡ଼ିଲା ଓ ପାଟି କରି ଉଠିଲା—ସତେ ଯେପରି ଏକ ରାକ୍ଷସ ତାକୁ ଧରିବାକୁ ବସିଛି । ଚୌଳି ସେଠାରୁ ଦୌଡ଼ି ପଳାଇଲା । ଶିବରାଣି ଆସ୍ତେ ଆସ୍ତେ ଉଠି ଠିଆ ହେଲେ । ତ୍ରିପୁରସୁନ୍ଦରୀ ତାର ପୂଜା କପରି ଗ୍ରହଣ କରିବେ, ଏହି ଚିନ୍ତା କରି କରି ଶିବରାଣି ନିଜ ଘରକୁ ଫେରି ଗଲେ ଏବଂ ସିଦ୍ଧେଶ୍ୱର ଓ ହରିଦତ୍ତଙ୍କୁ ଡକାଇ ପଠାଇ ସେ ଉପବାସ ଭଙ୍ଗ କଲେ ।

ହରିଦତ୍ତ ସାଙ୍ଗେ ସାଙ୍ଗେ ଆସି ପହଞ୍ଚିଲା । ତ୍ରିପୁରସୁନ୍ଦରୀଙ୍କ ମନ୍ଦିରରେ ବ୍ୟାଘାତ ଘଟିଥିବାରୁ ସେ ବିଶେଷ ମର୍ମାହତ ହୋଇଥାଏ । ଗଙ୍ଗସବଙ୍କ ମନ୍ଦିରର ସର୍ବୋଚ୍ଚ ପୂଜକ ଭାବେ ଅଧିଷ୍ଠିତ ହେବାର ବହୁ ପୂର୍ବରୁ ପ୍ରାୟ ପଚିଶ ବର୍ଷ ଧରି ସେ ତ୍ରିପୁରସୁନ୍ଦରୀ ମନ୍ଦିରର ପୂଜକ ଭାବେ ରହିଆସିଛି । ସେ ବହୁତ ଉତ୍ସବ ଦେଖିଛି ଓ ବହୁ ଉତ୍ସବରେ ନିଜେ ମଧ୍ୟ ପୌରୋହିତ୍ୟ କରିଛି । ସେ ଜାଣିବାରେ ତାର ଜୀବନରେ ଏଇ ପ୍ରଥମ ଥର ପାଇଁ ଦେବୀଙ୍କର ପୂଜା ବନ୍ଦ ହୋଇଛି । ସବୁଠାରୁ କ୍ଷୋଭର ବିଷୟ ଯେ, ତାକୁ ମହାମାୟୀ ଠାକୁରାଣୀଙ୍କ ପୂଜାରୁ ମଧ୍ୟ ବଞ୍ଚିତ କରାଯାଇଛି । ତାହା ପକ୍ଷରେ ଏହା ଠିକ୍ ସୃଷ୍ଟି ରସାତଳକୁ ଗଲା ପରି ଏକ ବିପତ୍ତି । ଏକ ପାଗଳପରି ନିର୍ବାକ୍ ହୋଇ ସେ ମହାମାୟୀଙ୍କ ମନ୍ଦିର ପାଖରେ ବୁଲୁଥାଏ ଓ ବେଳେବେଳେ କୌଣସି ଯାତ୍ରୀକୁ ଅନ୍ଧାରକୁ ନେଇଯାଇ ବାମମାର୍ଗୀ ପୂଜା କରାଏ ।

ହରିଦତ୍ତଙ୍କୁ ଦେଖି ଶିବରାଣି କହିଲେ, "ହରିଦତ୍ତ, ପ୍ରବଳ ବିପଦ ମାଡ଼ିଆସୁଛି ।"

ହରଦତ୍ତ ବିସ୍ମୟ ପ୍ରକାଶ କରି ଉଚ୍ଚ ସ୍ୱରରେ କହିଲା, "ଏଁ !"

ଶିବରାଶି କହିଲେ, "ତୁମେ କଣ ଭାବୁଛ ? ମୁଁ ଭାବୁଛି ଜଗନ୍ମାତା ମହାଶକ୍ତିଙ୍କର ଠିକ୍ ଠିକ୍ ପୂଜା ଆମେ କରିନଥିବାରୁ ବିରାଟ ବିପଦ ଆସନ୍ନ ପ୍ରାୟ ।"

ହରଦତ୍ତ—ଆପଣ ଠିକ୍ କହୁଛନ୍ତି ।

ଶିବରାଶି—ବାକୀ ଥିବା ପୂଜା ସମାପ୍ତ କରିବାକୁ ପଡ଼ିବ । ତା'ହେଲେ ଯାଇ କୃତ ପାପର ପ୍ରାୟଶ୍ଚିତ ହେବ । ପ୍ରାୟଶ୍ଚିତ ନ କଲେ ଆମେ ଏହି ବିପଦରୁ ରକ୍ଷା ପାଇବା ନାହିଁ ।"

ହରଦତ୍ତ ଏକମତ ହୋଇ କହିଲା, "ମହାମାୟାଙ୍କ କ୍ରୋଧରୁ କେହି ରକ୍ଷା ପାଇ ପାରିବେ ନାହିଁ ।

ଶିବରାଶି—ମହାମାୟାଙ୍କୁ ଆମେ ନିଶ୍ଚୟ ପୂଜା କରିବା । କାଲି ଆମମାନଙ୍କୁ ଖମ୍ଭାତ୍ ଯିବାକୁ ହେବ । ତୁମେ ମୋ ସଙ୍ଗରେ ନିଶ୍ଚୟ ଯିବ । ସେଠାରେ ଆମେମାନେ ମହାମାୟାଙ୍କୁ ପୂଜା କରିବା ।

ହରଦତ୍ତ—ହଁ, ଆପଣ ଯାହା କହିବେ ମୁଁ ତାହା କରିବି ।

ଶିବରାଶି—ଜାଣିଛ, ଆମ ସାଙ୍ଗରେ ଚୌଲା ମଧ୍ୟ ଯିବ !

ହରଦତ୍ତ—ରାଶିଜୀ ! ମହାମାୟା ଯେବେ ବିରକ୍ତ ହୁଅନ୍ତି ତା ହେଲେ କଣ ଯେ ହେବ ତାହା ସେ କେବଳ ଜାଣନ୍ତି । କିନ୍ତୁ ଗୋଟିଏ କଥା ନିଶ୍ଚିତ ଯେ, ଠାକୁରାଣୀଙ୍କ ପୂଜାରେ ଯେ ବାଧା ଦେବ ସେ ଦଣ୍ଡ ନ ପାଇ ରହି ପାରିବ ନାହିଁ ।

ଶିବରାଶି—ରାମ, ରାମ, ତୁମେ ଏଇଠି ଥାଅ – ମୁଁ ଆସୁଛି ।

ଏହା କହି ଶିବରାଶି ଏହି ବିପଦର ସମ୍ମୁଖୀନ ହେବା ପାଇଁ ଏକ ଯୋଜନା ମନେ ମନେ ଠିକ୍ କରି ଗୁରୁଦେବଙ୍କ ସହିତ ସାକ୍ଷାତ୍ କରିବାକୁ ଗଲେ ।

× × × ×

ମନ୍ଦିରରେ ପହଞ୍ଚିବା ପର୍ଯ୍ୟନ୍ତ ଚୌଲା ଦୌଡ଼ୁଥାଏ । ଠାକୁରଙ୍କ ପୂଜା ପାଇଁ ବେଲପତ୍ର ବାଛୁଥିବା ତା ମାଆ ପାଖକୁ ଯାଇ ସେ ବ୍ୟସ୍ତ କାତର ସ୍ୱରରେ କହିଲା, "ମାଆ, ମାଆ ! ସେ ତ ମୋ ପିଛା ଛାଡ଼ୁ ନାହାଁ ।"

ଗଙ୍ଗା—କିଏ, ଭୀମଦେବ ?

ଚୌଲା—କଣ ବାଜେ କଥା କହୁଛ ମାଁ ? ମୁଁ ତ ରାଶିଜୀ କଥା କହୁଛି ।

ଗଙ୍ଗା—ତୁ ପାଗଳୀ ହେଲୁଣି । ତୁ ଭୀମଦେବ ମହାରାଜାଙ୍କୁ ଦେଖିଛୁ ?

ଚୌଲ ଆଖିରେ ଲୁହ ଭରି କହିଲା, "ମାଆ, ମୋତେ ସେ କଥା ପଚାରେ ନା । ମୁଁ ଅଭାଗିନୀ । ମୋ ଭାଗ୍ୟରେ ସୁଖ ନାହିଁ ।" ଏହା କହି ସେ କାନ୍ଦିଉଠିଲା । ଗଙ୍ଗା ତାକୁ ବୁଝାଇବାକୁ ଚେଷ୍ଟା କଲା । ପୁଣି ଚୌଲ କହିଲା, "ମାଆ, କାଲି ଆମେ ଖମ୍ବାତ ଯାଉଛେ ନା ?"

ଗଙ୍ଗା—ସର୍ବଜ୍ଞ ଯାହା ଆଦେଶ ଦେବେ ।

ଚୌଲ—ଆମେ ପଚାରି ବୁଝିବା ନାହିଁ ?

ଗଙ୍ଗା—ତୁ ଏ ଜାଗା ଛାଡ଼ି ଯିବାକୁ କାହିଁକି ଏତେ ଉଚ୍ଛନ୍ନ ?

ଚୌଲ—"ପ୍ରଭୁ ଶମ୍ଭୁ ମୋତେ ଗ୍ରହଣ କଲେ ନାହିଁ । ମୋର ନାଚରେ ମୁଁ ତାଙ୍କୁ ଖୁସି କରାଇ ପାରିଲି ନାହିଁ । ତେଣୁ ମୋର ବଞ୍ଚିବା ବା ମରିବାରେ ତଫାତ୍ କଣ ?" ଏହା କହି ସେ ପୁଣି କାନ୍ଦିଲା ।

ଗଙ୍ଗା ଚୌଲର ହାତ ଧରି ଗୁରୁଦେବଙ୍କ ଘର ଆଡ଼କୁ ନେଇ କହିଲା, "ଆ, ଯାଇ ବୁଝିବା ।"

ଗଙ୍ଗା ସର୍ବଜ୍ଞଙ୍କ ଘର ପାଖରେ ପହଞ୍ଚି ଗୁରୁଦେବ କାର୍ଯ୍ୟବ୍ୟସ୍ତ ଥିବା ଶୁଣିବାରୁ ତାଙ୍କ ଘର ଦୁଆରମୁହଁରେ ସେ ବସିଲା ଓ ତା ପାଖରେ ବସିଲା ଚୌଲ । ସେମାନେ ଘର ଭିତରେ ଥିବା ଲୋକମାନଙ୍କୁ ଦେଖିପାରୁ ନ ଥିଲେ ସୁଦ୍ଧା ସେମାନଙ୍କର କଥାବାର୍ତ୍ତା ଶୁଣି ପାରୁ ଥିଲେ ।

ଗୁରୁଦେବ କହୁଥିବା ସେମାନେ ଶୁଣିଲେ, "ଭୀମଦେବ ! ହମ୍ମୀର ଆସୁ । ପ୍ରଭୁ ସୋମନାଥଙ୍କ ଲିଙ୍ଗ ଏଠାରୁ ଅନ୍ୟ ସ୍ଥାନକୁ ନିଆ ଯିବ ନାହିଁ ।"

ଜୁନାଗଡ଼ର ରହ୍ନାଦିତ୍ୟ ପଚାରିଲେ, "କିନ୍ତୁ ଗୁରୁଦେବ, ଯେବେ ପ୍ରଭାସ ବିପଦଗ୍ରସ୍ତ ହୁଏ, ତାହାହେଲେ କଣ ହେବ ?"

ଗୁରୁଦେବ—ଯେ ପର୍ଯ୍ୟନ୍ତ ପ୍ରଭୁଙ୍କର ଶକ୍ତି ଅଛି, ସେ ପର୍ଯ୍ୟନ୍ତ କୌଣସି ଅସୁର ଯେତେ ବଳବାନ୍ ହେଲେ ମଧ୍ୟ କୌଣସି କ୍ଷତି କରି ପାରିବ ନାହିଁ । ମଣିଷ ବା କି କ୍ଷତି କରିପାରେ ?

ମନ୍ତ୍ରୀ ବିମଳ କହିଲେ—ହମ୍ମୀର ବହୁ ଦେବ ମନ୍ଦିର ଧ୍ୱଂସ କରିଛି । ଲୋକେ କହୁଛନ୍ତି ଦେବ ମୂର୍ତ୍ତି ଭାଙ୍ଗିବା ହେଉଛି ତାର କାମ ।

ଗୁରୁଦେବ—ତୁମେମାନେ ବିଶ୍ୱାସ ହରାଇଛ । ପ୍ରଭୁଙ୍କୁ ଧ୍ୱଂସ କରିବାକୁ କିଏ ସାହସ କରିବ ? ମୋର ଦୃଢ଼ ବିଶ୍ୱାସ ଅଛି—ପ୍ରଭୁ ହେଉଛନ୍ତି ଚିରନ୍ତନ ଓ

ଅପରିବର୍ତ୍ତନୀୟ । ପ୍ରଭୁଙ୍କୁ ତାଙ୍କ ପୀଠରୁ ସ୍ଥାନାନ୍ତରିତ କରିବାର ଶକ୍ତି କାହାର ନାହିଁ ।

ଭୀମଦେବ କହିଲେ—ଗୁରୁଦେବ, ଏଭଳି କୁହନ୍ତୁ ନାହିଁ । ଆମର ବିଶ୍ୱାସ ଅକ୍ଷୁଣ୍ଣ ଅଛି ।

ଗୁରୁଦେବ – ତୁମେମାନେ କେବଳ ହମୀର କଥା ଭାବୁଛ । ମୁଁ ତାହା ଭାବୁ ନାହିଁ । ପ୍ରଭୁଙ୍କର ଇଚ୍ଛା ନ ହେଲେ ଦୁବ ଘାସ ସୁଦ୍ଧା କଅଁଳ ପାରିବ ନାହିଁ । ପ୍ରଭୁଙ୍କୁ ଧ୍ୱଂସ କରିବାକୁ ହମୀର କିଏ ?

ରତ୍ନାଦିତ୍ୟ—କିନ୍ତୁ ଗୁରୁଦେବ, ଆମେ ତ ପାର୍ଥିବ ମନୁଷ୍ୟ, ତେଣୁ ଜୟ ପରାଜୟ ଉଭୟ କଥା ଆମେ ଭାବୁଛୁ ।

ଗୁରୁଦେବ—କେବଳ ଅଜ୍ଞମାନେ ଜୟ ପରାଜୟ କଥା ଭାବନ୍ତି । କିଏ ଜିଣିବ କିଏ ହାରିବ ତାହା ସ୍ଥିର କରନ୍ତି ମୋର ପ୍ରଭୁ ସୋମନାଥ ।

ରତ୍ନାଦିତ୍ୟ କହିଲେ—ଗୁରୁଦେବ, ଆମେମାନେ ମଧ୍ୟ ପ୍ରତିଜ୍ଞା କରିଛୁ ଯେ ପର୍ଯ୍ୟନ୍ତ ଆମର ଜୀବନ ଥିବ ସେ ପର୍ଯ୍ୟନ୍ତ ପ୍ରଭୁଙ୍କ ପୀଠ ସ୍ଥଳୀରୁ ଖଣ୍ଡେ ସୁଦ୍ଧା ଇଟା ଏ ପାଖ ସେପାଖ କରିବାକୁ ଦେବୁ ନାହିଁ । କିନ୍ତୁ ଆମର ମୃତ୍ୟୁ ହେଲେ ହେବ କଣ ?

ଗୁରୁଦେବ—କିଏ କାହାକୁ ରକ୍ଷା କରିବ ? ରତ୍ନାଦିତ୍ୟ, ତୁମେ ଯାହା କହୁଛ ହୁଏତ ତାହା ଜ୍ଞାନଗର୍ଭକ ଓ ବିଚାରସମ୍ପନ୍ନ ମତ ହୋଇପାରେ, କିନ୍ତୁ ମୋର ପ୍ରଭୁ ଏଇଠାରେ ରହିବେ । ତାଙ୍କୁ ସ୍ଥାନାନ୍ତର କରାଯାଇ ପାରିବ ନାହିଁ । ତୁମ ପରି ବୀର ଜୀବନ ଦେବାକୁ ପ୍ରସ୍ତୁତ ଥିବାବେଳେ ପରାଜୟ କଥା କାହିଁକି ଭାବୁଛ ? ଯୁଦ୍ଧ କର ଜୟ ଲାଭ କର । ଭଗବାନ ତୁମ ପକ୍ଷରେ ଅଛନ୍ତି ।

ଭୀମଦେବ—ଯେ ପର୍ଯ୍ୟନ୍ତ ପ୍ରଭୁ ସୋମନାଥଙ୍କ ବିଗ୍ରହ ଆମ ପକ୍ଷରେ ଅଛି, ଆମର ବିଜୟ ଯେ ନିଶ୍ଚିତ ଏ ବିଷୟରେ ମୁଁ ନିଃସନ୍ଦେହ । କିନ୍ତୁ ଯୁଦ୍ଧ ଆରମ୍ଭ ହେଲେ········ ।

ତାଙ୍କ କଥା ନ ସରୁଣୁ ଗୁରୁଦେବ କହିଲେ, "ନାଁ । ବାପ, ସଂସାର ସୃଷ୍ଟି ପୂର୍ବରୁ ପ୍ରଭୁଙ୍କର ଆବିର୍ଭାବ ହୋଇଥିଲା । ପ୍ରଳୟ କାଳରେ ମଧ୍ୟ ସେ ରହିବେ ।"

ଭୀମଦେବ—ତାହାହେଲେ ଆପଣ ଖମ୍ଭାତ୍ ଯାଆନ୍ତୁ । ପାଶୁପତ ସଂପ୍ରଦାୟର ସ୍ଥିତି ଆପଣଙ୍କ ଉପରେ ନିର୍ଭର କରେ ।

ଗୁରୁଦେବ ଦୃଢ଼ ଅଥଚ ନରମ ସ୍ୱରରେ କହିଲେ, "ବତ୍ସ, ତୁମେ ମୋତେ କେବେ ବୁଝିବ ? ମୁଁ ଏହି ପଦବୀରେ ଆଗ୍ରହୀ ନୁହେଁ ବା ଲକୁଳେଶ ସଂପ୍ରଦାୟର ପୀଠ ରକ୍ଷକ ହେବାରେ ମୋର ସ୍ପୃହା ନାହିଁ । ମୁଁ କେବଳ ପ୍ରଭୁଙ୍କର ଦାସାନୁଦାସ । ଯେଉଁଠାରେ ସେ, ସେହିଠାରେ ମୁଁ । ତାଙ୍କ ଛଡ଼ା ମୋର ଜୀବନ ଅଛି ବୋଲି ମୁଁ କଳ୍ପନା କରି ପାରେ ନାହିଁ ।"

ଶ୍ରୀମଦେବ— କିନ୍ତୁ ଏ ସବୁ ଯୋଗୀ ଋଷିଙ୍କ କାମ ନୁହ । ଏହା ଆମର କାମ ।

ଗୁରୁଦେବ — ଶ୍ରୀମଦେବ, ସଂସାରରେ ଏପରି କୌଣସି କାର୍ଯ୍ୟ ଅଛି ଯାହା ଭଗବତ୍ ଆଶ୍ରିତ ଲୋକମାନଙ୍କର ସୀମା ବାହାରେ ? ଯେଉଁଠାରେ ଭଗବତ୍ ସେବକ ତଥା ସାଧୁ ସନ୍ଥ ନାହାନ୍ତି, ସେଠାରେ ସତ୍ୟ ନାହିଁ ଏବଂ ଯେଉଁଠାରେ ସତ୍ୟ ନାହିଁ ସେଠାରେ ବିଜୟ ଲାଭ ହୋଇ ନ ପାରେ ।

ଶ୍ରୀମଦେବ—କିନ୍ତୁ ଆପଣ ଜୀବିତ ରହିଲେ·········।

ଗଙ୍ଗ ସର୍ବଜ୍ଞ କହିଲେ, "ଏହି ଆଲୋଚନା ସ୍ଥଗିତ ରହୁ । ସାମନ୍ତ ମଧ୍ୟ ମୋତେ ଏହି କଥା କହୁଥିଲି । କିନ୍ତୁ ମୋ ମନ ମୁଁ ସ୍ଥିର କରିସାରିଛି । ପ୍ରଭୁ ସୋମନାଥ ଯେଉଁଠାରେ ରହିଛନ୍ତି, ମୁଁ ସେହିଠାରେ ରହିବି । ଶତ୍ରୁ କଣ ଅନିଷ୍ଟ କରିବ କରୁ । ଶତ୍ରୁ ଓ ଦେବତା ମଧ୍ୟରେ ଯଦି କେହି ନ ରହନ୍ତି, ତାହାହେଲେ ମୁଁ ଏକା ରହିବି । ମୋ ଦ୍ୱାରା ଯେ କଣ କରିବାକୁ ପ୍ରଭୁଙ୍କର ଇଚ୍ଛା ତାହା କିଏ କହିପାରିବ ?"

ସର୍ବଜ୍ଞଙ୍କର ଦୃଢ଼ ପ୍ରତିଜ୍ଞା ଶୁଣି ଗଙ୍ଗାର ଆଖି ଲୁହରେ ଭରିଗଲା । ଗୁରୁଦେବଙ୍କର ଅସାଧାରଣ ଦୃଢ଼ତା ଦେଖି ଶ୍ରୀମଦେବ ଓ ଅନ୍ୟମାନେ ବିସ୍ମୟରେ ବାକ୍ଶୂନ୍ୟ ହୋଇଗଲେ ।

# ଭୀମଦେବ ସେନାପତି ହେଲେ

କିଛି କ୍ଷଣ ନୀରବ ରହିବା ପରେ ଗଙ୍ଗ ସର୍ବଜ୍ଞ ପୁଣି କହିଲେ, "ମୋର ସମସ୍ତ ଶିଷ୍ୟଙ୍କୁ ନେଇଯାଅ । ସେମାନେ ଲକୁଲେଶ ସମ୍ପ୍ରଦାୟର ସ୍ତମ୍ଭ ସ୍ୱରୂପ । ସେମାନଙ୍କର ଶିକ୍ଷା, ଦୀକ୍ଷା ଓ ସାଧୁତା ଅକ୍ଷୁଣ୍ଣ ରହିବା ଦରକାର । ଶିବରାଶି, ତୁମେ ଏବଂ ଗଗନରାଶି ସମସ୍ତଙ୍କୁ ନେଇ ଖମ୍ଭାତ୍ ଯାଅ ।"

ଶିବରାଶି କହିଲେ, "ଗୁରୁଦେବ, ଆପଣଙ୍କର ଯାହା ଆଜ୍ଞା !" ଶିବରାଶିଙ୍କ ତଳକୁ ତାଙ୍କର ଅନ୍ୟତମ ମୁଖ୍ୟ ଶିଷ୍ୟ ଗଗନରାଶି କୌଣସି କଥା ନ କହି ହାତ ଯୋଡ଼ି ଏହି ଆଦେଶ ମାନିଲେ ।

ବିମଳ କହିଲେ—ବଣିକମାନଙ୍କୁ ମୁଁ ଆଜି ସନ୍ଧ୍ୟାରେ ପଠାଇଦେବି । କାଲି ସକାଳେ ବ୍ରାହ୍ମଣମାନେ ଯିବେ ।

ଗୁରୁଦେବ ଶିବରାଶିଙ୍କୁ ପୁଣି କହିଲେ, "ହଁ, ମୋତେ ସାହାଯ୍ୟ କରିବା ପାଇଁ କାହାରି ଆବଶ୍ୟକତା ନାହିଁ ।" ଶିବରାଶି ନିଜ ସ୍ୱରର ସ୍ୱାଭାବିକତା ରକ୍ଷା କରିବାକୁ ଚେଷ୍ଟା କରି କହିଲେ, "ଗୁରୁଦେବ, ଗଙ୍ଗା ଏବଂ ଅନ୍ୟ ନର୍ତ୍ତକୀ-ମାନଙ୍କୁ ସାଙ୍ଗରେ ନେଇଯିବାକୁ ମୁଁ ଭାବୁଛି ।"

ଗୁରୁଦେବ—ହଁ, ନେଇଯାଅ । ସେମାନେ ଏଠାରେ ରହି କଣ କରିବେ ? ଯିବାକୁ ପ୍ରସ୍ତୁତ ହେବା ପାଇଁ ଗଙ୍ଗାକୁ କହିଦିଅ ।

ଦୁଆର ମୁହଁରେ ଠିଆହୋଇ ଓ ନିଜ ସ୍ତମ୍ଭରେ ହାତଦେଇ ଗଙ୍ଗା କହିଉଠିଲା, "କୌଣସି ଅବସ୍ଥାରେ ଗଙ୍ଗା ଏହି ସ୍ଥାନ ଛାଡ଼ିଯାଇ ପାରିବନାହିଁ ।" ଏକତ୍ର ହୋଇଥିବା ରକ୍ଷୀମାନେ ବାକ୍‌ହୀନ ହୋଇ ଏହି ଦୃଶ୍ୟ ଦେଖୁଥାନ୍ତି । ସେ ପୁଣି କହିଲା, "ଗୁରୁଦେବ, ପ୍ରଭୁ ସୋମନାଥଙ୍କ ପାଦଦେଶରେ ଯେପରି ଆପଣଙ୍କ ସ୍ଥାନ, ସେହିପରି ଆପଣଙ୍କ ପାଦଦେଶରେ ମୋର ସ୍ଥାନ—ବୁଝିଲେ ?"

ସର୍ବଜ୍ଞ ହସିଦେଇ କହିଲେ, "ଗଙ୍ଗା, ସ୍ତ୍ରୀ ଲୋକମାନଙ୍କ ପାଇଁ ଏହା ରହିବାର ଜାଗା ନୁହେଁ । ତୁମମାନଙ୍କୁ ଯିବାକୁ ହିଁ ହେବ ।"

ଗଙ୍ଗା ଗମ୍ଭୀର ହୋଇ କହିଲା, "ମୋର କର୍ତ୍ତବ୍ୟ କଣ ତାହା ମୁଁ ଜାଣେ । ଆପଣଙ୍କର ଯେତେବେଳେ କର୍ତ୍ତବ୍ୟ ଅଛି, ଆମର କଣ କିଛି କର୍ତ୍ତବ୍ୟ ନାହିଁ ବୋଲି ଆପଣ ଭାବୁଛନ୍ତି ?"

ରତ୍ନାଦିତ୍ୟ କହିଲେ, "ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନଙ୍କପାଇଁ ଯବନ ଅଧିକ ଭୟାନକ।"

ଗଙ୍ଗା—ମୋର ଜୀବନ ଗୁରୁଦେବଙ୍କ ଚରଣତଳେ। ମୃତ୍ୟୁ ବରଣ କରିବାକୁ ମୋର ନିଆଁକୁ ଡେଇଁବା ଦରକାର ନାହିଁ।

ଗୁରୁଦେବ ଗଙ୍ଗାଙ୍କୁ ଚାହିଁ ତାର ହୃଦୟର ପବିତ୍ରତା ହୃଦୟଙ୍ଗମ କଲେ। ସେ କହିଲେ, "ବିମଳ ! ଭଲକଥା, ସେ ଏଠାରେ ରହୁ। ଗଙ୍ଗା, ତୋ ପଛରେ କିଏ ଠିଆହୋଇଛି—ଚୌଳ ? ତାହାହେଲେ ତାକୁ ପଠେଇଦିଅ।"

ଶିବରାଣୀ ଆଗ୍ରହରେ କହିଲେ—"ହଁ, ସେ ଯାଉ। ଏଠାରେ ଯୁବତୀ ସ୍ତ୍ରୀ ଲୋକମାନେ ରହିବା ଉଚିତ ନୁହେଁ।"

ଗଙ୍ଗା ଏ ପ୍ରସ୍ତାବରେ ଏକମତ ହୋଇ ତା' ଝିଅ ଆଡ଼କୁ ଅନାଇ କହିଲା, "ହଁ, ଚୌଳ ଯିବ।"

ଚୌଳର ମୁଖମଣ୍ଡଳରେ ବିଚିତ୍ର ଭାବ। ସେ ସେଠାରେ ଠିଆହୋଇ ଓଠକୁ ଦବାଇ, ନିଜର ଉଜ୍ଜ୍ୱଳ ଆଖିରେ ସବୁ ଦେଖୁଥାଏ ଓ ନିଜର କୋମଳ ହାତକୁ ଗଳାରେ ଦବାଇ ରଖିଥାଏ, ଯେପରିକି ଅବରୁଦ୍ଧ ଶବ୍ଦକୁ ବାହାର କରିବାକୁ ଚେଷ୍ଟା କରୁଛି। ସେ ପ୍ରଥମେ ତା ମାକୁ, ତା ପରେ ଭୀମଦେବଙ୍କୁ ଓ ଶେଷରେ ରାଣୀଙ୍କୁ ଅନାଇଲା।

ଗଙ୍ଗସର୍ବଜ୍ଞ ହସିଦେଇ କହିଲେ, "ଚୌଳ, ତୁ ଯିବୁ ନାହିଁ ?"

ଚୌଳ ଅବସନ୍ନ ମନରେ—ସତେ ଯେପରି ତାର ରୁଦ୍ଧ କଣ୍ଠରୁ ଶବ୍ଦ ବାହାରୁଛି—ସେହିପରି କହିଲା, "ଆପଣମାନେ ସମସ୍ତେ ମିଶି ଶେଷରେ ମୋର ପ୍ରଭୁଙ୍କୁ ମୋଠାରୁ ନେଇଗଲେ, ମୋର ନୃତ୍ୟ ବନ୍ଦ କଲେ। ଏପରି ଅବସ୍ଥାରେ ମୋର ବଞ୍ଚିବା ନିଷ୍ପ୍ରୟୋଜନ। ମୋତେ ଆପଣ ଜୀବନରେ ମାରିଦେଇ ପାରନ୍ତି।" ଏହା କହି ସେ ପାଦେ ଆଗକୁ ଯିବା ପରେ ନିଜକୁ ସମ୍ଭାଳିନପାରି ଅଜ୍ଞାନ ହୋଇ ତଳେ ପଡ଼ିଗଲା।

ଏକ ଜ୍ୟୋତ୍ସ୍ନାଧୌତ ରାତ୍ରିରେ ଏହିପରି ଅଚେତ ଅବସ୍ଥାରେ ଭୀମଦେବ ଚୌଳର ସୁନ୍ଦର ମୁଖ ଓ ଅଙ୍ଗଲତା ପ୍ରଥମେ ଦେଖିଥିଲେ। ସେହି ଦୃଶ୍ୟ ତାଙ୍କ ଚକ୍ଷୁରେ ଉଦ୍‌ଭାସିତ ହୋଇଉଠିଲା। ତାଙ୍କ ଛାତିରେ କମ୍ପନ ସୃଷ୍ଟି ହେଲା ଏବଂ କଣ ହେଉଛି ତାହା ଅନ୍ୟ କେହି ବୁଝିପାରିବା ପୂର୍ବରୁ ଭୀମଦେବ ଉଠିପଡ଼ି

ଚୌଲ୍‌କୁ ନିଜ ହାତରେ ଟେକି ଉଠାଇନେଲେ । ମୁହୂର୍ତ୍ତକ ପାଇଁ ଆସନ୍ନ ଯୁଦ୍ଧ ଓ ଆକ୍ରମଣକାରୀର କଥା ସେ ଭୁଲିଗଲେ । ଚୌଲ୍‌କୁ ଟେକି ନେଇ ଅତି ଧୀରେ ତା ମା'ର କୋଳରେ ଶୁଆଇଦେଲେ ।

ଗଙ୍ଗସର୍ବଜ୍ଞ ହସିକରି କହିଲେ, "ଯେଉଁଠି ବିଶ୍ୱାସ ଅଛି, ସେଠି ଜୀବନ କଥା କେହି ଭାବନ୍ତି ନାହିଁ । ଯେଉଁମାନଙ୍କର ବିଶ୍ୱାସ ଅଛି ସେମାନେ ପ୍ରଭାସରେ ରହନ୍ତୁ । ପ୍ରଭୁଙ୍କଠାରୁ ଭକ୍ତକୁ ଅଲଗା କରିବା ପାପ ।"

ଭୀମଦେବ ସାମାନ୍ୟ ବିରକ୍ତ ହୋଇ କହିଲେ, "ଭଲ କଥା ! ମୁଁ ଭଲ ପାଇଁ ଯାହା କରିବାକୁ ଯାଉଛି, ମିତ୍ର ଦୃଷ୍ଟିରୁ ବୋଧହୁଏ ତାହାକୁ ବିରୋଧ କରାଯାଉଛି । କିନ୍ତୁ ଗୁରୁଦେବ, ମୋତେ ବି ତ ମୋର ନିୟମ ଅନୁସାରେ କାମ କରିବାକୁ ଦେବେ !"

ଗଙ୍ଗ ହସି ହସି କହିଲେ, "ହଁ, ହଁ, ମୁଁ ଆଉ କିଛି କହିବି ନାହିଁ । ମୋର ସମସ୍ତ ଅଧିକାର ତୁମକୁ ଦେଇଛି ।"

× × × ×

ଭୀମଦେବ ଯାହା କଳ୍ପନା କରିଥିଲେ, କାମ ସେତେ ସହଜ ନ ଥିଲା । ଦାମୋଦର ମେହେତା ଆଗରୁ ଆଠଟି ବୋଇତ ପଠେଇ ଦେଇଥିଲେ । ଗୋଟେ ବୋଇତରେ ବେଶୀ ହେଲେ ପଚିଶଜଣ ଓ ବଡ଼ରେ ଦୁଇଶହ ଜଣ ଲୋକ ଯିବାର କଥା । ପ୍ରଭାସ ଛାଡ଼ି ଯିବାକୁ ଯେତେ ଲୋକ ଥିଲେ, ସେମାନଙ୍କ ସଂଖ୍ୟା ଦଶରୁ ପନ୍ଦର ହଜାର । ତେଣୁ ଏତେ ଲୋକଙ୍କୁ ପଠାଇବାରେ ଯଥେଷ୍ଟ ଅସୁବିଧା ହେଲା । ତେବେ ଭୀମଦେବ ଅସୁବିଧାରେ ପଡ଼ି ଡରିଯିବା ଲୋକ ନଥିଲେ । ତେଣୁ ଆଗେ କେଉଁମାନେ ଯିବେ ଓ କେଉଁବାଟେ କେତେବେଳେ ଅନ୍ୟ ସମସ୍ତେ ଯିବେ ସେ ତାହା ସ୍ଥିର କରିଦେଲେ । ସନ୍ଧ୍ୟା ସୁଦ୍ଧା ବୋଇତ ସବୁ ଯିବାକୁ ପ୍ରସ୍ତୁତ ହୋଇଗଲା । ପ୍ରଥମ ଦଳରେ ଯେଉଁମାନେ ଯିବାକଥା ସେମାନେ ଗଲେ ।

ଜ୍ଞାତି ଓ ବନ୍ଧୁମାନଙ୍କଠାରୁ ବିଚ୍ଛିନ୍ନ ହେବା ଦୃଶ୍ୟ ଅତ୍ୟନ୍ତ ଦୁଃଖଦାୟକ ହୋଇଥିଲା । ଯାତ୍ରୀମାନେ ଭଗବାନଙ୍କ ନାମ ସ୍ମରଣ କରି ଥରି ଥରି ବୋଇତକୁ ଗଲେ । କେତେକ ବିରବିର ଭଜନ କରୁଥାନ୍ତି, ଆଉ କେତେକ ହମୀରକୁ ଗାଳିଦେଉଥାନ୍ତି । ଯେଉଁମାନଙ୍କର ସ୍ତ୍ରୀ ଓ ପିଲାମାନେ ଯାଉଥାନ୍ତି, ସେମାନେ ମନକୁ ଯେତେ ବୁଝାଉଥିଲେ ସୁଦ୍ଧା ମନ ବୁଝୁନଥାଏ । ଯାଉଥିବା ଲୋକମାନଙ୍କ

ମଧ୍ୟରେ ଏପରି କେତେକ ଥିଲେ, ଯେଉଁମାନଙ୍କ ପୁରୁଷାନୁକ୍ରମେ ପ୍ରଥମ ଥର ପାଇଁ ପ୍ରଭାସ ଛାଡ଼ି ଯାଉଥାନ୍ତି । ଏହି ସବୁ ଅସୁବିଧା ଓ ମାନବିକ ସମସ୍ୟାମାନ ବିମଳ ଗୋଟି ଗୋଟି କରି ବୁଝି ଥାନ୍ତି ।

ସବୁଠାରୁ ବଡ଼ ସମସ୍ୟା ଥିଲା ତିରିଶ ହଜାର ସୈନ୍ୟଙ୍କୁ ନିର୍ଦ୍ଦେଶ ଦେଇ ଚଳାଇବା । ଶିବରାଶି ଓ ମନ୍ଦିରର କୋଷାଧ୍ୟକ୍ଷ ଘୋଘା ସାହାଯ୍ୟରେ ଭୀମଦେବ ନିଜେ ଏହି କାର୍ଯ୍ୟ ଦେଖୁଥାନ୍ତି । ଏଥିପାଇଁ ଘରୋଇ ବାସଗୃହ, ଧର୍ମଶାଳା ଓ ଶ୍ରେଷ୍ଠ ଶ୍ରେଷ୍ଠ ମନ୍ଦିରର ଅଗଣାମାନ ଦଖଲ କରାଗଲା । ପ୍ରଭାସରେ ଯାହା ଖାଦ୍ୟ ଦ୍ରବ୍ୟ ଥିଲା ଏବଂ ଅନ୍ହିଲ୍‌ୱାଡ଼ରୁ ଯାହା ସବୁ ଆସୁଥାଏ, ତାହା ଘୋଘାର ଦାୟିତ୍ୱରେ ରଖାଗଲା । ସହରର ବିଭିନ୍ନ ଅଞ୍ଚଳରେ ଖାଦ୍ୟ ବଣ୍ଟନ କେନ୍ଦ୍ରମାନ ଖୋଲିଗଲା

ଭୀମଦେବ ଦୁର୍ଗର ମରାମତି କାମରେ ମନୋନିବେଶ କଲେ । ପ୍ରଭାସ ଦୁର୍ଗ ଏବଂ ଏହାର ଗଡ଼ଖାଇ ଯେପରି ରହିବା କଥା ସେପରି ଅବସ୍ଥାରେ ନାହିଁ ବୋଲି ବିଲୋଚନ ପାଲ, ରତ୍ନାଦିତ୍ୟ ଓ ଭୀମଦେବ ତିନିହେଁ ଏକମତ ହୋଇ-ଥିଲେ । ସମଗ୍ର ଅଞ୍ଚଳ ପରିଦର୍ଶନ କରି ଏହାର ଉନ୍ନତି ଓ ନିରାପତ୍ତା ପାଇଁ କଣ କରିବା ପ୍ରୟୋଜନ ତାହା ସେମାନେ ନିଷ୍ପତ୍ତି କଲେ । ଗଡ଼ ଏବଂ ଗଡ଼ଖାଇର ମରାମତି କାମରେ ନଗରର ସୈନ୍ୟଙ୍କୁ ନିଯୁକ୍ତ କରାଗଲା । ହମୀର ବେଶୀ ଦୂରରେ ନଥିବାରୁ ପ୍ରତି ମୁହୂର୍ତ୍ତ ସେମାନଙ୍କ ପାଇଁ ଥିଲା ମୂଲ୍ୟବାନ୍ ।

ଅଳ୍ପ ସମୟ ମଧ୍ୟରେ ପ୍ରଭାସ କର୍ମମୁଖର ହୋଇ ଉଠିଲା । ସମସ୍ତଙ୍କ ପାଇଁ ପ୍ରଧାନ ଉତ୍ସାହଦାତା ଥିଲେ ଭୀମଦେବ । ସେ ଗୃଳକରି ଅଥବା ଘୋଡ଼ାରେ ବସି ସେନାପତିମାନଙ୍କ ସହିତ ନଗରର ପ୍ରତି ଅଞ୍ଚଳକୁ ଯାଇ ଅନବରତ ନିର୍ଦ୍ଦେଶ ଦେଉଥାନ୍ତି । ତାଙ୍କ ଦୃଷ୍ଟି ଏପରି ତୀକ୍ଷ୍ଣ ଥିଲା ଯେ, କୌଣସି ବିଷୟ ସେ ନ ଦେଖି ରହୁନଥିଲେ । ଯେଉଁମାନେ ଆଦେଶ ଅମାନ୍ୟ କରୁଥିଲେ, ସେମାନେ ସାଙ୍ଗେ ସାଙ୍ଗେ ଦଣ୍ଡ ପାଉଥିଲେ । ଜଣେ ସୈନ୍ୟ ଗଡ଼ଖାଇ ଖୋଳିବାକୁ ଧୃଷ୍ଟତା ପ୍ରକାଶ କରି ଅସ୍ୱୀକାର କରିଥିବାରୁ ତାକୁ ତାହାର ଡାହାଣ ହାତ ହରାଇବାକୁ ପଡ଼ିଥିଲା । ସର୍ବୋପରି ଜଣେ ଉପଯୁକ୍ତ ନେତା ପାଇ ପ୍ରଭାସବାସୀଙ୍କର ଆତ୍ମବିଶ୍ୱାସ ବଢ଼ିଗଲା ।

× × × ×

ଭୀମଦେବ ସମସ୍ତ କାମ ପରିଦର୍ଶନ ସାରି ବିଶ୍ରାମ ନେବାକୁ ଫେରିଲା ବେଳକୁ ଅର୍ଦ୍ଧରାତ୍ରି । ଯେଉଁ କାର୍ଯ୍ୟସବୁ ଗୃଳିଛି ରାତି ପାହିଲା ବେଳକୁ ସେ

ସମସ୍ତ ଶେଷ ହୋଇଯିବ ବୋଲି ନିଶ୍ଚିତ ହୋଇ ସେ ଶୟନ କକ୍ଷରେ ପ୍ରବେଶ କଲେ । ମୁନିବଙ୍କ ଆବଶ୍ୟକତା ଅନୁମାନ କରି ଦେହି ଲଗା ଭୃତ୍ୟ ବୀର ଘରେ ପାଣି ଓ ଖାଇବା ଜିନିଷ ରଖି ଅପେକ୍ଷା କରିଥିଲା । ସେ ଥିଲା ଭୀମଦେବଙ୍କ ପକ୍ଷେ ଭୃତ୍ୟ, ବନ୍ଧୁ ଓ ମାତା । ଭୀମଦେବଙ୍କ ବାଲ୍ୟକାଳରେ ତାଙ୍କ ସାଙ୍ଗରେ ସେ ଖେଳିଛି ଓ କାଖେଇ ବୁଲେଇଛି । ଭୀମଦେବ ବଡ଼ ହେବା ପରେ ସେ ତାଙ୍କୁ ଧନୁଶର ମାରିବା ଓ ଖଣ୍ଡା ଚଳାଇବା ଶିଖାଇଛି । ଭୀମଦେବ ଖାଇବା ପୂର୍ବରୁ ତାଙ୍କ ଖାଇବା ଜିନିଷ ସେ ଚାଖି ପରୀକ୍ଷାକରେ । ସେ ରାତିରେ ତାଙ୍କ ଶୋଇବା ଘର ବାହାରେ ଖଣ୍ଡା ଧରି ଶୁଏ । ତାର ସେବା ସହିତ ଭୀମଦେବ ଏଭଳି ପରିଚିତ ହୋଇଯାଇଥିଲେ ଯେ, ବୀର ରାତିରେ ତାଙ୍କୁ ଘଷି ନ ଦେଲେ ଭୀମଦେବ ଶୁଅନ୍ତି ନାହିଁ । ଭୀମଦେବ ଦିନ ଭିତରେ କରିଥିବା ସମସ୍ତ କାର୍ଯ୍ୟ ସଂକ୍ଷେପରେ କହି ନ ସାରିବା ପର୍ଯ୍ୟନ୍ତ ବୀର ମଧ୍ୟ ତାଙ୍କୁ ଛାଡ଼ି ଶୋଇବାକୁ ଯାଏ ନାହିଁ ।

ଆଜି ଭୀମଦେବ ।ନ ଓ ଭୋଜନ ସାରିବା ପରେ ବୀର ତାଙ୍କୁ କହିଲା; "ବାପୁ ! ଆପଣ ଟିକିଏ ଶୋଇବେ ଯାଆନ୍ତୁ । ବିଶ୍ରାମ ନନେଇ ଏପରି କଠିନ କାମ କଲେ ଆପଣ ପାରି ଉଠିବେ ନାହିଁ ।"

ଭୀମଦେବ ଉତ୍ତର ଦେଲେ, "ହମୀରକୁ ଏ ରାଜ୍ୟରୁ ବିଦା ନ କରିବା ପର୍ଯ୍ୟନ୍ତ ମୁଁ ଶୋଇପାରିବି ନାହିଁ ।" ତାଙ୍କ ବକ୍ତବ୍ୟର ଗୁରୁତ୍ୱ ପ୍ରମାଣ କରିବାକୁ ଯାଇ ସେ ଅଣ୍ଟାରେ ଖଣ୍ଡା ବାନ୍ଧିବା ଆରମ୍ଭ କଲେ ।

ବୀର—ବାପୁ ! ଆପଣ ଟିକିଏ ବିଶ୍ରାମ ନିଅନ୍ତୁ—କାଲି ରାତିରୁ ବିଶ୍ରାମ ନେଇନାହାନ୍ତି । ଏ ଯୁଦ୍ଧ ଦିନକରେ ଶେଷ ହେଉନାହିଁ ।"

ଭୀମଦେବ—"ବୀର, ଏହା ସାଧାରଣ ଯୁଦ୍ଧ ନୁହେଁ । ତୁ ମୋ ସାଙ୍ଗରେ ଯିବାକୁ ପ୍ରସ୍ତୁତ ହୁଅ ।"

ବୀର ପ୍ରସ୍ତୁତ ହେବା ସଙ୍ଗେ ସଙ୍ଗେ କହିଲା, "ଏତେ ଜରୁରୀ କାମ କଣ ଅଛି ?"

ଭୀମଦେବ ତଳକୁ ଓହ୍ଲାଇବା ସଙ୍ଗେ ସଙ୍ଗେ କହିଲେ, "ତୁ ବୁଢ଼ା ହେଲୁଣି, କଣ ବୁଝିବୁ ବୀର ! ମୁଁ ରହୁଥିବା ଘରର ସାମନା ଘରେ ଗୁରୁଦେବ କାଲିଠାରୁ ରହିବେ । ଆମକୁ ସାବଧାନରେ ରହିବାକୁ ପଡ଼ିବ ।"

ବୀର—ସେ ତାଙ୍କ ନିଜ ବାସସ୍ଥାନ ଛାଡ଼ି ଏଠାରେ କାହିଁକି ରହିବେ ?

ଭୀମଦେବ—କାହିଁକି ରହିବେ, କାଲି ଜାଣିବୁ । ତାଙ୍କର ବହୁ ଶିଷ୍ୟ କାଲି ପ୍ରଭାସ ଛାଡ଼ି ଚାଲିଯିବେ । ସେ ନିକଟରେ ରହିଲେ ସମୟ ଅସମୟରେ ତାଙ୍କ ସହିତ ପରାମର୍ଶ କରିବାକୁ ମୋର ସୁବିଧା ହେବ ।

ସେମାନେ ତଳକୁ ଆସିବାକ୍ଷଣି ମନ୍ଦିରର ପ୍ରବେଶ ଦ୍ୱାରରେ ଜଗି-ରହିଥିବା ସଶସ୍ତ୍ର ପ୍ରହରୀ ଭୀମଦେବଙ୍କୁ ଅଭିବାଦନ ଜଣାଇଲା ।

ଭୀମଦେବ ବୀରକୁ କହିଲେ, "ଦେବଧାମ ଆଜି ଏକ ସୈନ୍ୟଛାଉଣୀ ପରି ଦେଖାଗଲା ।"

## ୩୩

# ଶିବରାଶିଙ୍କ ନିଷ୍ପତ୍ତି

ଭୀମଦେବ ଏବଂ ବୀର ପ୍ରଭୁ ସୋମନାଥଙ୍କ ପୂଜା ଶେଷ କରି ନର୍ତ୍ତକୀ ବସ୍ତି ଆଡ଼କୁ ଗଲେ । ରାତି ଅଧ ହୋଇଯାଇଥିଲେ ସୁଦ୍ଧା ବହୁ ଘରେ ଲୋକେ ଚଳ ପ୍ରଚଳ ହେଉଥିଲେ । ବୋଧହୁଏ ପରଦିନ ସକାଳୁ ଅଧିକାଂଶ ନର୍ତ୍ତକୀ ଖମ୍ଭାତ ଯିବାକୁ ଥିବାରୁ ସେମାନେ ସ୍ଥାନ ତ୍ୟାଗ ପାଇଁ ପ୍ରସ୍ତୁତ ହେଉଥିଲେ । ଅନ୍ୟ କେତେକ ନଯାଇ ପ୍ରଭାସରେ ରହିବାକୁ ଚାହୁଁଥିଲେ । ସେମାନଙ୍କୁ ରହିବା ନିମନ୍ତେ ଅନୁମତି ଦେବେ କି ନାହିଁ ମନ୍ତ୍ରୀ ବିମଳ କିଛି ନିଷ୍ପତ୍ତି କରିନଥାନ୍ତି ।

ଭୀମଦେବ ଗଙ୍ଗାର ଘର ଅଭିମୁଖେ ଗଲେ । ସାମନା ଦୁଆର ବନ୍ଦ ଥିଲେ ସୁଦ୍ଧା ଉପର ମହଲା ଘରେ ଜୁଳୁଜୁଳୁ ହୋଇ ଗୋଟିଏ ଦୀପ ଜଳୁଥିଲା । ଭୀମଦେବ ଦୁଆରେ ଧକ୍କା ମାରିବାରୁ ଗଙ୍ଗା ସାଙ୍ଗେ ସାଙ୍ଗେ ଉତ୍ତର ଦେଇ କହିଲା, ''ଏତେବେଳେ କିଏ ?'' ଭୀମଦେବ ବର୍ତ୍ତମାନ ପ୍ରଭାସର ସର୍ବେସର୍ବା ରୂପରେ ଠିଆ ହୋଇଥିଲେ । ତାଙ୍କର ଟିକିଏ ବି ସଙ୍କୋଚ ନଥାଏ । ସେ କହିଲେ, "ମୁଁ ଭୀମଦେବ । ଚୌଳର ଖବର କଣ ?"

ବିଚଳିତା ଗଙ୍ଗା ତା' ଅଜାଣତରେ କହି ପକାଇଲା, "ମହାରାଜ ଭୀମଦେବ !'' ସେ ଚୌଳକୁ ଉଠାଇ ଓ ଏକ ଉଜ୍ଜ୍ୱଳ ପ୍ରଦୀପ ଜଳାଇ ଦୁଆର ଖୋଲି କହିଲା, ''ସ୍ୱାଗତ, ମହାରାଜ !''

"ବୀର ! ଦୁଆରେ ଜଗି ରହ" ବୋଲି କହି ଭୀମଦେବ ଗଙ୍ଗା ସହିତ ଉପରକୁ ଗଲେ ।

ଗଙ୍ଗା କହିଲା, "ଚୌଲା ଭଲ ଅଛି । ସେ ଟିକିଏ ଅତି ମାତ୍ରାରେ ଅଭିମାନିନୀ । ସାମାନ୍ୟ କଥାରେ ସେ ଖୁବ୍ ବେଶୀ ବିଚଳିତ ହୋଇପଡ଼େ ଏବଂ ବିଚଳିତ ହେବା ସଙ୍ଗେ ସଙ୍ଗେ ଅଜ୍ଞାନ ହୋଇ ପଡ଼େ । ସେ ଅଜ୍ଞାନ ହେଲେ ମୋର ହାଇରାଣ ବଢ଼ିଯାଏ । ଆପଣ ଏଠାରେ ବସନ୍ତୁ । ଚୌଳା ଲୁଗା ବଦଳାଇ ବର୍ତ୍ତମାନ ଆସିବ ।" ଏହା କହି ସେ ଭୀମଦେବଙ୍କୁ ବସିବାକୁ ଆସନ ଦେଲା ।

ଚୌଲା ତା' କୋଠରୀର ଅଧା ଆଉଜା କବାଟ ଫାଙ୍କରେ ଭୀମଦେବଙ୍କୁ ଦେଖୁଥିଲା ଓ ତା ଗୁପ୍ତ ଉତ୍ତେଜନାରେ ଥରୁଥିଲା । ମନ୍ଦିରର ଦୁନ୍ଦୁଭି ତାର କାନରେ ପଡ଼ୁଥାଏ । ତାର ପ୍ରାର୍ଥନା ତାର ପ୍ରଭୁ ଶୁଣିପାରି ପାପୀ ଯବନକୁ ଧ୍ୱଂସ କରିବାକୁ ମନୁଷ୍ୟ ରୂପରେ ଆସିଛନ୍ତି—ଏହି କଥା ଭାବୁଥିବା ସମୟରେ ଚୌଲାର ଚପଳ ହାତ ଲୁଗା ବଦଳାଇବାରେ ବ୍ୟସ୍ତ ଥାଏ । ଚୌଲା ଲୁଗା ବଦଳାଇ ସାରିଲା, କିନ୍ତୁ ଭୀମଦେବଙ୍କ ଆଗକୁ ଯିବାକୁ ତାର ଗୋଡ଼ ଚଳିଲା ନାହିଁ ।

ଗଙ୍ଗା ଆଦରରେ ଡାକିଲା "ଚୌଲା, ଆ ନା ।" ଚୌଲା ସାହସ ଧରି ଆସିବାକୁ ଚେଷ୍ଟା କଲା, କିନ୍ତୁ ଲଜ୍ଜାରେ ମୁଣ୍ଡ ଟେକି ପାରିଲା ନାହିଁ ।

ଗଙ୍ଗା ପୁଣି 'ଆ' ବୋଲି ଡାକିଲା । ଅପ୍ସରାର ଶୋଭା ଧରି ସେ ଆସିଲା । ତାର ଶୋଭା ଦେଖି ଭୀମଦେବ ସ୍ତମ୍ଭିତ ହୋଇଗଲେ । ଚୌଲା ତାଙ୍କ ଗୋଡ଼ ତଳେ ପଡ଼ି ପାଦ ଧୂଳି ନେଇ ମୁଣ୍ଡରେ ମାରିଲା ।

ଭୀମଦେବ କହିଲେ, "ଚୌଲା, ସେଦିନ ଶତ୍ରୁକୁ ଧ୍ୱଂସ କରି ଫେରିବାକୁ ମୋତେ କହିଥିଲୁ । ମୁଁ ସେ କଥା ଭୁଲିନାହିଁ ।" ଚୌଲାର ଦୁଇଟି ଯାକ ଆଖି ଭୀମଦେବଙ୍କ ଉପରେ ନିବଦ୍ଧ ରହିଥାଏ । ସେ ତାଙ୍କୁ ନୀରବରେ ବହୁତ ଧନ୍ୟବାଦ ଦେଲା । ଭୀମଦେବ ପୁଣି କହିଲେ, "ମୁଁ ଭୁଲି ନାହିଁ ଚୌଲା !"

ଚୌଲା କହିଲା, "ମହାରାଜ, ମନ୍ଦିରରେ ନୃତ୍ୟ ବନ୍ଦ କରିବା ପାଇଁ ଆପଣ ଯେତେବେଳେ ହୁକୁମ ଦେଲେ ସେତେବେଳେ ମୁଁ ନାଚୁଥିଲି ।" ଏହା କହି ସେ ତାଙ୍କୁ ଏପରି ଚାହିଁଲା ଯେପରି ଅଭିମାନରେ ତାଙ୍କୁ ତା ମନେମନେ ଗାଳି ଦେଉଛି ।

ଭୀମଦେବ ହସି ହସି କହିଲେ, "ମୁଁ ତୋତେ ଦେଖି ପାରିଲି ନାହିଁ —ବଡ଼ ଦୁଃଖର ବିଷୟ । ସେତେବେଳେ ମୋ ମନରେ ଗୋଟିଏ ମାତ୍ର ଚିନ୍ତା

ଥିଲ– କପଚ ପ୍ରାସାଦକୁ ରକ୍ଷା କରିବ । ବର୍ତ୍ତମାନ ମୁଁ ଜାଣିପାରୁଛି ଯେ ସେଭଳି ଆଦେଶ ଦେଇ ଭୁଲ କରିଛି । ପ୍ରତିଦିନ ଅଳ୍ପ ସମୟ ପାଇଁ ପୂଜା କରିବାକୁ ମୁଁ ତୋତେ ଅନୁମତି ଦେଉଛି । ଏହା କହିବାକୁ ମୁଁ ଆସିଥିଲି ।”

ଚୌଳା କହିଲା, “ସେ ଭୟଙ୍କର କାପାଳିକ କବଳରୁ ମୋତେ ରକ୍ଷା କରି ଆପଣ ମୋ ଜୀବନ ରକ୍ଷା କରିଛନ୍ତି । ସେଥିପାଇଁ ମୁଁ ଆପଣଙ୍କୁ କେଉଁ ଭାଷାରେ ଧନ୍ୟବାଦ ଦେବି ?”

ଭୀମଦେବ ଉତ୍ତର ଦେଲେ, “କ୍ଷତ୍ରିୟ ଯେବେ ସ୍ତ୍ରୀ, ବ୍ରାହ୍ମଣ ଓ ଗୋଜାତିକୁ ରକ୍ଷା ନକରେ ତାହାହେଲେ ସେ ଆଉ କଣ କରିବ ।”

ଚୌଳା ଭୀମଦେବଙ୍କୁ ଅନାଇଲା ସତେ ଯେପରି ତା ଆଖି କହୁଛି ‘ତାହାହେଲେ କ୍ଷତ୍ରିୟ ହୋଇଥିବାରୁ ଆପଣ ମୋତେ ରକ୍ଷା କଲେ’ ।

ଭୀମଦେବଙ୍କ ହୃଦୟ ବିହ୍ୱଳିତ ହୋଇଗଲା । କିନ୍ତୁ ସଙ୍ଗେ ସଙ୍ଗେ ସେ ହୃଦୟଙ୍ଗମ କଲେ ଦୁର୍ବଳତା ପ୍ରକାଶ କରିବାର ଏ ସମୟ ନୁହେ । ମନକୁ ଦୃଢ଼ କରି ଠିଆହୋଇଯାଇ କହିଲେ—ମୋର ଯଥେଷ୍ଟ କାମ କରିବାକୁ ବାକୀ ଅଛି, ମୁଁ ଯାଉଛି ।

ଗଙ୍ଗା ଠିଆ ହୋଇଯାଇ ଉତ୍ତର ଦେଲା, “ମହାରାଜ, ପୁନଃ ଦର୍ଶନ ଲାଭରେ ଆମକୁ ଭାଗ୍ୟବାନ୍ କରନ୍ତୁ ।”

ଦେବୀର ସୌନ୍ଦର୍ଯ୍ୟକୁ ଲଜ୍ଜିତ କରୁଥିବା ଚୌଳାର ସେହି ସୌନ୍ଦର୍ଯ୍ୟକୁ ଭୁଲିବା ଭୀମଦେବଙ୍କ ପକ୍ଷରେ ଅସମ୍ଭବ ମନେହେଲା ।

ଭୀମଦେବ କହିଲେ, “କାଲି ଏତେବେଳକୁ ପ୍ରାସାଦରେ ଗୋଟିଏ ବି ସ୍ତ୍ରୀ ଲୋକ ନଥିବ । ମୁଁ ଓ ଗୁରୁଦେବ ଯେଉଁଠାରେ ରହିବୁ, ସେଠାରେ ତୁମେ ଦୁହେଁ ରହିଲେ ଭଲ ହେବ । ଜାଣିରଖ, ଅମର ଭଲ ମନ୍ଦ ତୁମ ଦୁହିଁଙ୍କୁ ଦେଖିବାକୁ ପଡ଼ିବ ।”

ଗଙ୍ଗା ଖୁସି ହୋଇ କେବଳ କହିଲା, “ଆପଣ ଯାହା ହୁକୁମ୍ ଦେବେ ।”

ସତେ ଯେପରି ଦୁନଆଁଟାଯାକ ତା ଗୃହପାଖରେ ନାଚୁଛି, ଚୌଳାକୁ ସେହିପରି ବୋଧହେଲା । ମା ଓ ଝିଅକୁ ନିଜ ପାଖକୁ ନେବାପାଇଁ ଆହୁରି ଅଧିକା କାରଣ ଦେବା ଦରକାର ବୋଲି ଭାବି ଭୀମଦେବ କହିଲେ, “କାଲି ସକାଳୁ ଇତର ନର୍ତ୍ତକୀମାନଙ୍କ ଘରେ ମୋର ସୈନ୍ୟ ରହିବେ ।” ଚୌଳାର ଆଖିରେ

ମୃଦୁ ତିରସ୍କାର ଭାବ ଦେଖାଦେଲା—ଏଭଳି କାରଣ ଦେବାର ଆବଶ୍ୟକତା କଣ ?

× × × ×

ରାତି ଅଧ ବେଳକୁ ଶିବରାଶି ସମ୍ପୂର୍ଣ୍ଣ କ୍ଲାନ୍ତ ହୋଇପଡ଼ିଥାନ୍ତି । ସେ ଉପବାସ ଭଙ୍ଗ କରିଛନ୍ତି ଓ ତାଙ୍କ ଉପରେ ଦିଆଯାଇଛି ଯଥେଷ୍ଟ କାର୍ଯ୍ୟର ଦାୟିତ୍ୱ । ଏ ସବୁ ଛଡ଼ା, ପ୍ରଭାସ ଛାଡି ସେ ଯିବେ କି ନାହିଁ ଏ ଜଟିଳ ପ୍ରଶ୍ନର ସମାଧାନ ତାଙ୍କୁ କରିବାକୁ ପଡ଼ିବ । ଖରାବେଳ ପର୍ଯ୍ୟନ୍ତ ତାଙ୍କର ସମସ୍ୟା ବେଶ୍ ସରଳଥିଲା । ଖମ୍ଭାତ୍‌ରେ ଗୁରୁଙ୍କ ଅନୁପସ୍ଥିତିରେ ଚୌଲା ଦେହରେ ପ୍ରବେଶ କରିଥିବା ଦେବୀ ତ୍ରିପୁରସୁନ୍ଦରୀଙ୍କ ଅସମ୍ପୂର୍ଣ୍ଣ ପୂଜା ସମ୍ପୂର୍ଣ୍ଣ କରିବା ଆଶାରେ ସେ ଆନନ୍ଦିତ ହୋଇଥିଲେ । କିନ୍ତୁ ପରେ ଅବସ୍ଥା ବଦଳିଗଲା । ଯେବେ ସେ ପ୍ରଭାସରେ ରହନ୍ତି ଏବଂ ତାଙ୍କର ଓ ଗୁରୁଦେବଙ୍କର ମୃତ୍ୟୁ ହୁଏ, ତାହାହେଲେ ପାଶୁପତ ସମ୍ପ୍ରଦାୟର ଘୋର ବିପର୍ଯ୍ୟୟ ଘଟିବ । ଯେବେ ଚୌଳା ପ୍ରଭାସରେ ରହି ତାଙ୍କୁ ଖମ୍ଭାତ୍ ଯିବାକୁ ପଡ଼େ ତାହାହେଲେ ତ୍ରିପୁରସୁନ୍ଦରୀଙ୍କ ପୂଜା ଅପୂର୍ଣ୍ଣ ରହିଯିବ ଓ ଦେବୀ ଅପ୍ରସନ୍ନ ହେବେ ।

ଏହି ସମସ୍ୟା ଉପରେ ଭାବି ଭାବି ଶିବରାଶି ଦୁର୍ଗର ବାହାର ଦ୍ୱାର ପର୍ଯ୍ୟନ୍ତ ଆସିଲେ । ପ୍ରଭୁଙ୍କର ପବିତ୍ର ସ୍ଥାନରେ ଆଜି କୌଣସି ଭକ୍ତର ସମାବେଶ ନଥିଲା । କେବଳ ପ୍ରହରୀମାନେ ମନ୍ଦିର ଜଗିରହିଥିବା ଦେଖି ସେ ଦୁଃଖିତ ହେଲେ । ଯେବେ ସେ ମହାମାୟାଙ୍କର ପୂଜା ସମ୍ପୂର୍ଣ୍ଣ କରିପାରିବେ ତାହା-ହେଲେ ଆକ୍ରମଣକାରୀ ଧ୍ୱଂସ ହେବା ନିଶ୍ଚିତ । କିନ୍ତୁ ଏହା ସେ କରିବେ କିପରି ? ଏହି ଚିନ୍ତା ତାଙ୍କୁ ବ୍ୟଥିତ କଲା ।

ଭୀମଦେବ ଓ ବୀର ସେମାନଙ୍କ କୋଠରୀକୁ ଯାଉଥିବା ଶିବରାଶି ଦେଖିପାରିଲେ । ଭୀମଦେବ ଯେ ଜଣେ ଶକ୍ତିଶାଳୀ ଓ ବୁଦ୍ଧିମାନ୍ ବ୍ୟକ୍ତି ଏ ସମ୍ପର୍କରେ କୌଣସି ସନ୍ଦେହ ନାହିଁ । ଯେଉଁ ସୈନ୍ୟବାହିନୀ ଭୀମଦେବଙ୍କୁ ଅନହିଲ୍‌ଓ୍ୱାଡ଼ର ରାଜଗାଦି ପାଇବାରେ ସାହାଯ୍ୟ କରିଥିଲେ, ସେମାନଙ୍କୁ ସେ ମଧ୍ୟ ସାହାଯ୍ୟ କରିଥିଲେ । ଯେବେ ହମୀର ପରାଜିତ ହୁଏ ଏବଂ ଭୀମଦେବ ଗୁଜୁରାଟରେ ରାଜା ହୁଅନ୍ତି,ତାହାହେଲେ ତାଙ୍କୁ ସର୍ବଜ୍ଞ ପଦବୀ ଲାଭ କରିବା ପାଇଁ ଯଥେଷ୍ଟ ସୁଯୋଗ ମିଳିବ ।

ଏହାପରେ ଭାବୁ ଭାବୁ ସେ ଶୁଣିଲେ ଭୀମଦେବ ବୀରକୁ କହୁଛନ୍ତି, "ବୀର, ଚୌଳା ଅଦ୍ଭୁତ ସୁନ୍ଦରୀ । ତାକୁ କାଲି ଦେଖିଲେ ତୁ ନିଜେ ବୁଝିପାରିବୁ ।"

ଚୌଳ ସୁନ୍ଦରୀ—ନଷ୍ଟପ୍ରସୁନ୍ଦରୀ—ଏ ସଂସାରର ଜୀବଟି ହୁଏତ ଜାଣେନା ଚୌଳ ତ୍ରିପୁରସୁନ୍ଦରୀଙ୍କର ଅଂଶବିଶେଷ ଓ ତ୍ରିପୁରସୁନ୍ଦରୀଙ୍କ ପୂଜା ଅସମ୍ପୂର୍ଣ୍ଣ ରହିଥିବା ଯୋଗୁ ଏହି ସବୁ ଗଣ୍ଡଗୋଳ ଘଟୁଛି । ଭୀମଦେବଙ୍କ କଥାରେ ପ୍ରକାଶ ପାଉଥିବା ପ୍ରଣୟ ଆସକ୍ତ ଶିବରାଶିଙ୍କୁ ଭଲ ଲାଗିଲା ନାହିଁ । ବୀର ଚୌଳକୁ କେଉଁଠାରେ ଓ କପରି ଦେଖାକରିବ ? ଭୀମଦେବ ଆଜ ଖରାବେଳେ ଚୌଳକୁ ଚିହ୍ନିପାରି ନଥିଲେ । ଏହା ଭିତରେ କଣ ହେଲା, ଯାହା ଫଳରେ କି ଚୌଳ ବିଷୟରେ ଭୀମଦେବ ଏପରି କଥାବାର୍ତ୍ତା କରୁଛନ୍ତି ! ତେବେ ଚୌଳ ଏବଂ ଭୀମଦେବଙ୍କର କଣ ପୂର୍ବରୁ ଦେଖା ହୋଇଥିଲା ?

ଶିବରାଶିଙ୍କ ଦୃଷ୍ଟିରେ ଭୀମଦେବ ଯଥେଷ୍ଟ ତଳକୁ ଖସିଗଲେ । ଚୌଳ ଶରୀରରେ ପ୍ରବେଶ କରିଥିବା ଦେବୀ ମହାମାୟାଙ୍କୁ ଭୀମଦେବ ମଧ୍ୟ ଅପମାନିତ କରୁଥିବା ତାଙ୍କୁ ପରିଷ୍କାର ଜଣାଗଲା ।

ଭୀମଦେବ ଓ ବୀର ସେମାନଙ୍କ କୋଠରୀକୁ ଗଲେ । ଆସନ୍ନ ଚିନ୍ତାରେ ଶିବରାଶି ଚୁପ୍ ହୋଇଗଲେ । ତାଙ୍କର ବଦ୍ଧ ଧାରଣା ଚୌଳ ଶରୀରରେ ପ୍ରବେଶ କରିଥିବା ଦେବୀ ମହାମାୟାଙ୍କୁ ସନ୍ତୁଷ୍ଟ ନକରିବା ପର୍ଯ୍ୟନ୍ତ ଆସନ୍ନ ବିପଦରୁ ପ୍ରଭାସକୁ ରକ୍ଷାକରି ହେବନାହିଁ । ସେହି ବିପଦକୁ ପ୍ରତିରୋଧ କରିବାର ଏକମାତ୍ର ଉପାୟ ତାଙ୍କର ଭକ୍ତିପୂର୍ଣ୍ଣ ପୂଜା ଓ ପ୍ରାୟଶ୍ଚିତ୍ତ । ଏ ପ୍ରଶ୍ନର ଉତ୍ତର ଶିବରାଶି ପାଇଛନ୍ତି । ତେଣୁ ସେ ଠିକ୍ କଲେ ତାଙ୍କୁ ପ୍ରଭାସରେ ରହିବାକୁ ପଡ଼ିବ ।

## ୩୪

## ଏକ ଆନନ୍ଦପୂର୍ଣ୍ଣ ମୁହୂର୍ତ୍ତ

ପୌଷ ପୂର୍ଣ୍ଣିମୀ । ଗୁରୁବାର । ଗତ ଛଅ ଦିନ ହେବ ଚୌଳ ଆନନ୍ଦରେ ନାଚୁଛି । ତା ଦୃଷ୍ଟିରେ ପ୍ରଭୁ ସୋମନାଥଙ୍କର ରୁଦ୍ର ରୂପର ଅବତାର ଭୀମଦେବଙ୍କ କଥା ନଭାବି ତାର ଗୋଟିଏ ମୁହୂର୍ତ୍ତ ସୁଦ୍ଧା ଯାଉନାହିଁ । ତାଙ୍କର କଥା ଭାବିବା ଓ ତାଙ୍କର ସେବା କରି ତାଙ୍କ ପାଖରେ ରହିବାହିଁ ତା ଜୀବନର

ଏକମାତ୍ର ଉଦ୍ଦେଶ୍ୟ । ତ୍ରିପୁରସୁର ସହିତ ଯୁଦ୍ଧ କରିବା ପାଇଁ ସେ ପ୍ରସ୍ତୁତ ହେଉଛନ୍ତି । ପ୍ରଭୁ ଶଙ୍କରଙ୍କ ଅର୍ଦ୍ଧାଙ୍ଗିନୀ ଉମା ରୂପରେ ସେ ତାଙ୍କର ସୁବିଧା ଅସୁବିଧା ଦେଖି ସେବା କରିବା ପାଇଁ ସେଠାରେ ଅଛି । ଅଭୂତପୂର୍ବ ଓ ଅପ୍ରତ୍ୟାଶିତ ଆନନ୍ଦ ସେ ଅନୁଭବ କରୁଛି ।

ଭିତର ଦୁର୍ଗର ଦୋମହଲାରେ ତିନିଧାଡ଼ି ଘର ଓ ତା ଗୃହପାଖରେ ଛାତ ବୁଲୁଛି । ଗୋଟିଏ ଧାଡ଼ିରେ ରହନ୍ତି ଭୀମଦେବ, ମଝିରେ ଗୁରୁଦେବ ଏବଂ ତୃତୀୟଟିରେ ରହନ୍ତି ଗଙ୍ଗା, ଚୌଲା ଏବଂ ଅନ୍ୟ ଦୁଇଟି ନର୍ତ୍ତକୀ ।

ୀର ଛଡ଼ା ଅନ୍ୟ ସମସ୍ତେ ଅଧିକାଂଶ ସମୟ ନିଜ ନିଜ ଘର ବାହାରେ କଟାନ୍ତି । ଏହା ଫଳରେ ଚୌଲା ଗୁରୁଦେବଙ୍କ ମହଲରୁ ଭୀମଦେବଙ୍କ ମହଲକୁ ନିଃସଂକୋଚରେ ଯାଇ ନାଚେ ଓ ଗୀତ ଗାଏ । ଆନନ୍ଦ ମନରେ ମା ସହିତ କଥାବାର୍ତ୍ତା କରେ ଓ କେତେବେଳେ ଭୀମଦେବଙ୍କ ପିଲାଦିନ କଥା ୀରଠାରୁ ଶୁଣେ । ପ୍ରତିଦିନ ରାତିରେ ସେ ଭୀମଦେବଙ୍କଠାରୁ ଦିନଟା ଯାକର କାର୍ଯ୍ୟ ବିବରଣୀ ଶୁଣି ଗର୍ବ ଓ ଆନନ୍ଦ ଅନୁଭବ କରେ । ବେଳେବେଳେ ସେ ମନ୍ଦିରର ଚୂଡ଼ା ଆରୋହଣ କରି ଯୁଦ୍ଧ ପାଇଁ କରାଯାଉଥିବା ପ୍ରସ୍ତୁତିମାନ ଦେଖେ । ନୂତନ ଯୁଦ୍ଧଭୂମି, ଖୋଳା ହେଉଥିବା ଗଡ଼ଖାଇ, ତିଆରି ହୋଇଥିବା ତୋରଣ ଓ ସୁସଜ୍ଜିତ ସୈନ୍ୟମାନଙ୍କୁ ଦେଖି ଆନନ୍ଦ ଓ ଗର୍ବରେ ସେ ନାଚେ । ଯୋଦ୍ଧା-ମାନଙ୍କୁ ନେଇ ଭୀମଦେବ ନଗର ଦୁର୍ଗକୁ ଯାଉଥିବାର ସେ ଦୁଇ ତିନିଥର ଦେଖିଛି । ଉଚ୍ଚ ଏବଂ ହୃଷ୍ଟ ପୁଷ୍ଟ ଚେହେରା ବିଶିଷ୍ଟ ୀର ଭୀମଦେବ ନିର୍ଦ୍ଦେଶ ଦେଉଥିବା, ଏବଂ ଅନ୍ୟମାନେ ତାଙ୍କୁ ସମ୍ମାନର ସହିତ କାର୍ଯ୍ୟକାରୀ କରୁଥିବା ଦେଖି ତାହାର ଛାତି ଆନନ୍ଦରେ ଫାଟିପଡ଼େ ।

ପ୍ରତି ଦିନ ଅନ୍ତତଃ ଥରେ ସେ ପ୍ରଭୁ ସୋମନାଥଙ୍କ ଆଗରେ ନାଚେ । ଆଜି କାଲି ବେଶୀ ଯାତ୍ରୀ ମନ୍ଦିରକୁ ଆସୁନାହାନ୍ତି । କେବଳ ପୂଜକମାନଙ୍କ ଛଡ଼ା କ୍ୱଚିତ ଅନ୍ୟ କେହି ପୂଜା କରିବାକୁ ଆସୁଛନ୍ତି । ଅନେକ ସମୟରେ ଚୌଲା ଏବଂ ତାର ଦେବତା କେବଳହିଁ ରହିଥାନ୍ତି । ସେ ସମୟରେ ଚୌଲା ମନଇଚ୍ଛା ପ୍ରଭୁଙ୍କ ଆଗରେ ଗୀତ ଗାଏ ଏବଂ ଅତି ସ୍ନେହରେ କେତେ କଥା କହେ ।

କିନ୍ତୁ ତାର ଏ ଅଖଣ୍ଡ ଆନନ୍ଦ ଭିତରେ ମଧ୍ୟ ଗୋଟିଏ ବାଧା ଥାଏ । ବହୁଥର ଯେତେବେଳେ ସେ ଘର ଭିତରୁ ବାହାରକୁ ଯାଏ, ଶିବରାଶି,ହରଦତ୍ତ

ବା ଅନ୍ୟ କେହି ସାଧୁଙ୍କୁ ଭେଟନ୍ତି ଓ ସେମାନେ ତାଙ୍କୁ ଦେଖି ଭକ୍ତିରେ ପ୍ରଣାମ କରନ୍ତି । କିନ୍ତୁ ଯେତେ ଥର ଏପରି ଘଟଣା ଘଟେ, ପ୍ରତି ଥର ସେ ଘରକୁ ଫେରିଆସେ ।

ସମୟ ଯେତିକି ବଢୁଥାଏ, ଖେମଦେବ ସେତିକି ଅଧିକରୁ ଅଧିକ ମାତ୍ରାରେ ଯୁଦ୍ଧ ପ୍ରସ୍ତୁତିରେ ବ୍ୟସ୍ତ ରହୁଥାନ୍ତି । ବହୁ ସମୟରେ ଯୁଦ୍ଧ ଭୂମିରୁ ଫେରି ଦୁର୍ଗରେ ପହଞ୍ଚି ସ୍ନାନ ଭୋଜନ କଲାବେଳକୁ ରାତି ଅଧ ହୋଇଯାଇଥାଏ । ଚୈଲି ନିଜେ ତାଙ୍କୁ ଖାଇବାକୁ ଦେଲାବେଳେ ତାଙ୍କ ସାଙ୍ଗରେ କଥାବାର୍ତ୍ତା କରେ । ବେଳେ ବେଳେ ଭୋଜନ ପରେ ରତ୍ନାଦିତ୍ୟ, ପରମାର ଓ ଭୃଗୁ କଚ୍ଛ (ଆଧୁନିକ ବ୍ରୋଚ୍) ଶାସକ ଶୁକ୍ଳନ୍ୟ ଆସିଲେ ସେମାନଙ୍କ ସହିତ ଛାତ ଉପରେ ବସି ଖେମଦେବ ଯୁଦ୍ଧ କୌଶଳ ଆଲୋଚନା କରନ୍ତି । ଚୈଲି ଛାତ ଉପରେ ଲୁଚିରହି ଏହି ଆଲୋଚନାମାନ ଶୁଣୁଥାଏ । ଖେମଦେବ କଥାବାର୍ତ୍ତା ସାରି ତାଙ୍କ କୋଠରୀକୁ ଶୋଇବାକୁ ଯିବା ପରେ ସେ ତାର ମାଆ ପାଖକୁ ଯାଇ ଶୁଏ ।

ବୁଧବାର ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ । ଖେମଦେବ ରାତିରେ ଅନେକ ଡେରିରେ ଫେରି ଭୋଜନ ପରେ ଛାତ ଉପରେ ଏକାକୀ ବୁଲୁଛନ୍ତି । ସବୁଦିନ ପରି ଚୈଲି କିଛି ଦୂରରେ ଠିଆ ହୋଇ ତାଙ୍କୁ ଅନାଉଥାଏ ।

ଖେମଦେବ ଲମ୍ବା ଲମ୍ବା ପାହୁଣ୍ଡ ପକାଇ ବୁଲୁଥାନ୍ତି ଓ ମୁଣ୍ଡ ନୁଆଁଇ ଗଭୀର ଚିନ୍ତାରେ ନିମଗ୍ନ ଥାନ୍ତି । ଚୈଲି ତାଙ୍କ ସାଙ୍ଗରେ କଥାବାର୍ତ୍ତା କରିବାକୁ ଇଚ୍ଛା କରୁଥିଲେ ସୁଦ୍ଧା ତାର ସାହସ ହେଉନଥାଏ । ଖେମଦେବ ତାଙ୍କ କୋଠରୀକୁ ଯିବା ବେଳକୁ କାଳେ ତାକୁ ଦେଖିଦେବେ, ସେଥିପାଇଁ ଚୈଲି ଡର ଡର ହୋଇ ନିକଟସ୍ଥ ଏକ ଖୁଣ୍ଟ ଆଡ଼ୁଆଳରେ ଲୁଚିଯିବାକୁ ଚେଷ୍ଟାକଲା । ଖେମଦେବ ପାଦଶବ୍ଦ ଶୁଣିପାରି ସାଙ୍ଗେ ସାଙ୍ଗେ ଖଣ୍ଡା ବାହାର କରି ପାଟିକରି କହିଲେ, "କିଏ ସେଠି ?"

ଚୈଲି ଗୋଟିକିଯାକ ଥରି ଥରି ଲୁଚିଥିବା ଜାଗାରୁ ବାହାରି କହିଲା, "ଆଜ୍ଞା, ମୁଁ ।"

ଖେମଦେବଙ୍କ ଆଖି ଚମକି ଉଠିଲା । ଚନ୍ଦ୍ରାଲୋକରେ ଅପୂର୍ବ ମାଦକତା ଭରିଥାଏ । ସେ କହିଲେ, "ଚୈଲି, ଏତେ ରାତିରେ ତୁ ଏଠି କାହିଁକି ?"

ଚୈଲିର ଛାତି ଥରିଉଠିଲା । ସେ କ୍ଷୀଣ ସ୍ୱରରେ କହିଲା, "ମହାରାଜ, କାଲି ଆପଣଙ୍କୁ ଶୀଘ୍ର ଉଠିବାକୁ ହେବ । ଆପଣ ଯାଇ ଶୋଇପଡ଼ନ୍ତୁ ।"

ଭୀମଦେବ ଅତି କ୍ଲାନ୍ତ ସ୍ୱରରେ କହିଲେ, "ଚୌଳା ! ମୋ ପକ୍ଷରେ ନିଦ୍ରା ଜାଗରଣ ଏକା କଥା ।"

ଚୌଳା ଗୁରୁଆଡ଼କୁ ଅନାଇଲା ଓ ତାଙ୍କ ନିକଟକୁ ଆସି କହିଲା, "ମହାରାଜ ! ମୁଁ ଆପଣଙ୍କ ଦାସୀ । ଆପଣଙ୍କ ହୃଦୟର କଷ୍ଟ ଲାଘବ କରିବା ଉଦ୍ଦେଶ୍ୟରେ ମୋ କରିଭଳି କିଛି କାମ ଅଛି କି ?"

ଭୀମଦେବ ବିହ୍ୱଳିତ ହୋଇଗଲେ । ଚନ୍ଦ୍ରିକା ତଳେ ସେ ଚୌଳାର ଦରଫୁଟା ଓଠ ଓ ଆଶାପୂର୍ଣ୍ଣ ନୟନ ଦେଖୁଥାନ୍ତି । ଏହି ଅପ୍‌ସରାକୁ ଯେଉଁ ଦିନ ସେ ନିଜ ବାହୁରେ ଟେକିଥିଲେ ସେଦିନର ସ୍ମୃତି ତାଙ୍କ ମନରେ ଉଦ୍‌ଭାସିତ ହୋଇ ତାଙ୍କୁ ସତେଜ କରିବା ସଙ୍ଗେ ସଙ୍ଗେ ତାଙ୍କର ଧମନୀରେ ଉଷ୍ଣ ରକ୍ତ ପ୍ରବାହିତ କଲା ।

ଭାବବିହ୍ୱଳିତ କଣ୍ଠରେ ଭୀମଦେବ କହିଲେ, "ଚୌଳା ! ତୋତେ ଦେଖିଲେ ମୋର ସମସ୍ତ ଅବସାଦ ଦୂର ହୋଇଯାଏ । ଯେବେ ତୋ କଥା ଠିକ୍ ହୁଏ ଏବଂ ମୁଁ ବିଜୟୀ ହୁଏ, ତାହେଲେ ତୋତେ ମୋ ସହିତ ଆସି ମୋର ଘର ସବୁଦିନଲାଗି ଲାଘବ କରିବାକୁ ହେବ ।"

ଏହି କଥାରେ ଯାହା ଅପ୍ରକାଶ୍ୟ ରହିଲା ତାହାର ଅର୍ଥ ବୁଝି ଭାବ-ବିହ୍ୱଳିତ କଣ୍ଠରେ ଚୌଳା କହିଲା, "ମହାରାଜ ! ଯୁଦ୍ଧ ସରିଗଲେ ଆପଣ ମୋତେ ଭୁଲିଯିବେ ।"

ଏହା ଶୁଣି ଭୀମଦେବ ଚୌଳାର ବାହୁକୁ ଧରି ବିହ୍ୱଳିତ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଉଚ୍ଚ ସ୍ୱରରେ କହିଲେ, "ତୋତେ ଭୁଲିବି ? ନା, କେବେ ନୁହେ !" ଏହା କହି ସେ ଚୌଳାକୁ ନିଜ ପାଖକୁ ଟାଣିନେଇ ଚୁମ୍ବନ ଦେଲେ । ପରସ୍ପରର ଆଲିଙ୍ଗନ ଓ ଚୁମ୍ବନ ଭିତରେ କେତେ ସମୟ କଟିଗଲା କାହାର ନଜର ନାହିଁ । ଯେତେବେଳେ ସେମାନେ ପରସ୍ପରଠାରୁ ଅଲଗା ହୁଅନ୍ତି ସେମାନଙ୍କର ମନେହେଲା ଯେପରି ଜୀବନର ସର୍ବ ଶ୍ରେଷ୍ଠ ଆନନ୍ଦପୂର୍ଣ୍ଣ ସମୟ ମଧ୍ୟ ଦେଇ ସେମାନେ ଗତି କରିଛନ୍ତି । ଉଭୟେ ଏତେ ଦୂର ଭାବପ୍ରବଣ ହୋଇଯାଇଥାନ୍ତି ଯେ, ବହୁ ସମୟ ପର୍ଯ୍ୟନ୍ତ କାହାର ମୁହଁରୁ ପଦେ କଥା ସୁଦ୍ଧା ବାହାରିଲା ନାହିଁ ।

ନୀରବତା ଭାଙ୍ଗି ଚୌଳା ପ୍ରଥମେ କହିଲା, "ମହାରାଜ ! କଣ କିଛି ନୂଆ ବିପଦ ଦେଖାଦେଇଛି ? ଆପଣ କାହିଁକି ଏପରି ଗମ୍ଭୀର ଦେଖା ଯାଉଥିଲେ ?"

ଭୀମଦେବ—ଚୌଲ, ହମୀର ଗୁଜରାଟର ଯେଉଁ ଅଞ୍ଚଳ ଦେଇ ଆସୁଛି, ସେ ସବୁ ଅଞ୍ଚଳ ଧ୍ୱଂସ କରି ଆସୁଥିବାର ଖବର ଆଜି ମିଳିଛି । ଯେଉଁ ଗାଁମାନ ଦେଇ ସେ ଆସୁଛି ସେ ଗାଁମାନ ଲୁଣ୍ଠନ କରିବା ସଙ୍ଗେ ସଙ୍ଗେ ସ୍ତ୍ରୀଲୋକ ଓ ବ୍ରାହ୍ମଣମାନଙ୍କ ପ୍ରତି ଅକଥନୀୟ ଅତ୍ୟାଚାର କରୁଛି । ସେ ମୋ ଦେଶରେ ଅତ୍ୟାଚାର କରୁଥିବା ସମୟରେ ମୋତେ ଏଠାରେ ରହିବାକୁ ପଡ଼ୁଥିବାରୁ ଯେଉଁମାନଙ୍କୁ ରକ୍ଷା କରିବା ମୋର କର୍ତ୍ତବ୍ୟ, ସେମାନଙ୍କ ପାଇଁ ମୁଁ କିଛି କରିପାରୁ ନାହିଁ ।

ଚୌଲ—ସେ ଏଠାରେ କେବେ ପହଞ୍ଚିବ ବୋଲି ଆପଣ ଭାବୁଛନ୍ତି ?

ଭୀମଦେବ—ବୋଧହୁଏ କାଲି ବା ପରିଦିନ ।

ଚୌଲ—ଭଲହେଲା—ବିପଦ ଯେତେ ଶୀଘ୍ର ଆସି ଚାଲିଯାଏ ସେତେ ଭଲ ।

ଭୀମଦେବ—ଚୌଲ, ସମସ୍ତଙ୍କର ଯେପରି ମଙ୍ଗଳ ହୁଏ ତାହା ଦେଖିବା ପାଇଁ ପ୍ରଭୁ ସୋମନାଥ ଅଛନ୍ତି । ଏହା କହିବାକ୍ଷଣି ଭୀମଦେବଙ୍କ ସ୍ୱର ପୁଣି ଦୁଃଖପୂର୍ଣ୍ଣ ହୋଇଗଲା ।

ଚୌଲ—ମହାରାଜ, ରାତି ବହୁତ ହେଲାଣି । ଆପଣ ଯାଆନ୍ତୁ ଶୋଇବେ । ବିଶ୍ରାମ ନେଇ ଆପଣଙ୍କୁ ଶକ୍ତି ସଞ୍ଚୟ କରିବାକୁ ହେବ ।

"ସତକଥା" ବୋଲି କହି ଭୀମଦେବ ଯିବା ପାଇଁ ଉଦ୍ୟତ ହେଲେ । ପୁଣି ଥରେ ପଛକୁ ଚାହିଁ ଚୌଲ ନିକଟକୁ ଫେରିବାପାଇଁ ତାଙ୍କର ଲୋଭ ହେଲେ ସୁଦ୍ଧା ସେ ତାହା ସମ୍ବରଣ କରିନେଲେ । ଚୌଲ ଯେପରି ହଠାତ୍ ଆସିଥିଲା ସେହିପରି ଚାଲିଗଲା ।

ଏହି ଗୁପ୍ତ କୌଣସି ପ୍ରକାର କଥା ନ କହି ବା ସେ ସେଠାରେ ଥିବାର ସେମାନଙ୍କୁ ନଜଣାଇ, ସବୁ ନୀରବରେ ଦେଖି ମନେ ମନେ ଖୁସିହୋଇ ହସୁଥାଏ ।

# ଅବରୋଧ ଆରମ୍ଭହେଲା

ଖ୍ରାମଦେବ ଶୋଇବାକୁ ଗଲେ । କିନ୍ତୁ ପ୍ରଥମେ ନିଦ ହେଲାନାହିଁ । ସେ କ୍ଳାନ୍ତ ହୋଇପଡ଼ିଥାନ୍ତି । କିଛି ସମୟ ପରେ ଶୋଇପଡ଼ିଲେ, କିନ୍ତୁ ନିଦ୍ରାର ସ୍ରୋତ ଭାଙ୍ଗି ଭାଙ୍ଗି ଯାଉଥାଏ ।

ସେ ସ୍ୱପ୍ନରେ ଦେଖୁଥାନ୍ତି—ଦୁର୍ଗର ପ୍ରାଚୀର ଗୁଡ଼ିକ ଉଚ୍ଚ ହୋଇ ଯାଇଛି । ବିରାଟକାୟ ରାକ୍ଷସମାନେ ଆସି ଗୋ ବ୍ରାହ୍ମଣଙ୍କୁ ହତ୍ୟା କରୁଛନ୍ତି । ପବନ ପ୍ରଭାସ ନଗରର ଗୃହଆଡ଼େ ନିଆଁ ଜଳୁଛି ଏବଂ ସବୁ ଧ୍ୱଂସ ହୋଇ ଯାଉଥିଲେ ସୁଦ୍ଧା ସେ ଏଭଳି ଅସହାୟ ଅବସ୍ଥାରେ ପଡ଼ିଛନ୍ତି ଯାହା ଫଳରେ ତାଙ୍କ ହାତ ଗୋଡ଼ ଚଳୁନାହିଁ ।

......ହଠାତ୍ ଜଣେ ଉଜ୍ଜ୍ୱଳମୟୀ ବାଳିକା କାହୁଁ ଆସି ତାଙ୍କପାଖରେ ଠିଆହୋଇ ତାର ଉଜ୍ଜ୍ୱଳ ଚକ୍ଷୁରେ ତିରସ୍କାର କରିବା ଭଙ୍ଗିରେ ତାଙ୍କୁ ଚାହିଁ ରହିଲା । ......ବର୍ତ୍ତମାନ ଘୋଡ଼ାର ଶୋଭଯାତ୍ରା ଚାଲିଛି ଏବଂ ଦ୍ରୁତ ବେଗରେ ଶର ବୃଷ୍ଟି ହେଉଛି । ତେବେ ସୁଦ୍ଧା ସେ କିଛି କରି ନପାରି ବିଛଣାରେ ପଡ଼ି ରହିଛନ୍ତି ଓ ସେଇ ସୁନ୍ଦରୀ ଯୁବତୀଟି ତାଙ୍କ ପାଖରେ ଠିଆ ହୋଇ ସେହିପରି ତିରସ୍କାର କରିବା ଭଙ୍ଗିରେ ଚାହିଁରହିଛି ।

ଖ୍ରାମଦେବ ଶ୍ୱାସରୁଦ୍ଧ ହେବାଭଳି ଅନୁଭବ କରି ଉଠିପଡ଼ିଲେ । ଶଯ୍ୟାରୁ ଉଠି ନିଜକୁ ସଂଯତ କରି ସେହି ଅଭୁଲା ଚୁମ୍ବନର ସ୍ୱାଦ ଅନୁଭବ କରି ପୁଣି ଥରେ ଶୋଇବାପାଇଁ କଡ଼ ଲେଉଟାଇଲେ ।

ସ୍ୱପ୍ନ ପୁଣି ତାଙ୍କୁ ଅସ୍ଥିର କଲା । ଏଥର ଗୋଟିଏ ନୂତନ ଦୃଶ୍ୟ ଦେଖାଗଲା । ଯୁବତୀଟି ନାଚୁଛି ଓ ସେ ଦଉଡ଼ୁଛନ୍ତି । ସେମାନଙ୍କ ଚାରିପାଖେ ହାତୀସବୁ ଏଣେ ତେଣେ ଲଙ୍ଗୁଡ଼ ଟେକି ଦଉଡ଼ୁଛନ୍ତି ଏବଂ ଗୁରୁଦେବ ଗୀତ ବୋଲୁଛନ୍ତି । ହଠାତ୍ ଯୁବତୀଟି ତାର ନାଚ ବନ୍ଦକରି ଦଉଡ଼ିଲା । ସେ ମଧ୍ୟ ତା' ପଛେ ପଛେ ଦୌଡ଼ି କିଛି ଦୂର ଗିବା ପରେ କଳାମୁହାଁ ଏକ କାପାଳିକ ସଙ୍ଗେ ଦେଖାହେଲା । ଠିକ୍ ସେତିକବେଳେ ଆକାଶରେ ଚନ୍ଦ୍ର ଦେଖାଦେବାରୁ ଅନ୍ଧାର ରାତି ଉଜ୍ଜ୍ୱଳ ହୋଇଗଲା ଏବଂ କାପାଳିକ ନଦୀକୁ ଡେଇଁ ପଡ଼ିଲା । ସେ ତାଙ୍କ ବାହୁରେ ଯୁବତୀଟିକୁ ଉଠାଇ ନେଲେ ଏବଂ ନାଚି ନାଚି ଓ ନାଗରା ବଜାଇ ସେ ଗୁରୁଦେବଙ୍କ ସମ୍ମୁଖକୁ ଆସିଲେ ।........

ସୈନ୍ୟମାନଙ୍କୁ ନିଦରୁ ଉଠାଇବା ଉଦ୍ଦେଶ୍ୟରେ ବାଜୁଥିବା ନାଗରା ଶବ୍ଦରେ ତାଙ୍କର ଅସ୍ଥିର ନିଦ ଭାଙ୍ଗିଗଲା । ସେ ସଙ୍ଗେ ସଙ୍ଗେ ଉଠିପଡ଼ି ଗୋଡ଼ ହାତ ସିଧା କଲେ । ସାଧାରଣତଃ ସେ ଉଠିଲାବେଳକୁ ବୀର ତାଙ୍କ ପୋଷାକ ଓ ବର୍ମ ଧରି ବିଛଣା ପାଖେ ଠିଆ ହୋଇଥାଏ । ଆଜି ସେ ଉଠିଲା ବେଳକୁ କେହି ନାହାନ୍ତି ।

ସେ ପାଟିକରି ବୀରକୁ ଡ଼ାକଲେ । କିନ୍ତୁ ପାଖରେ କେଉଁଠାରେ ସେ ନଥିଲା । କୋଠରୀର ସ୍ୱଳ୍ପାଲୋକରେ ସେ ଦେଖିଲେ ନିକଟରେ ଅନୁଚ୍ଚ ଏକ ବ୍ୟକ୍ତି ହାତରେ ତାଙ୍କ ପୋଷାକ ଧରି ଠିଆହୋଇଛି । ଏହା ଦେଖି ଭୀମଦେବ ଆଶ୍ଚର୍ଯ୍ୟ ହୋଇଗଲେ । ବୀର କୁଆଡେ ଗଲା ? ତାହାହେଲେ ଏ ପର୍ଯ୍ୟନ୍ତ କଣ ସେ ସ୍ୱପ୍ନ ଦେଖୁଛନ୍ତି । ସେ ହାତ ବଢ଼ାଇ ତାଙ୍କ ପୋଷାକ ଧରି ଠିଆହୋଇଥିବା ବ୍ୟକ୍ତିର ହାତଟିକୁ ଧରିନେଲେ । ହାତଟି ତାଙ୍କୁ ଶ୍ରେଷ୍ଠ ଓ ଅତି କୋମଳ ବୋଧ ହେଲା । ଘରଟି ମୃଦୁ ମଧୁର ହସରେ ପୂରିଗଲା ।

ମହାରାଜ ଭୀମଦେବ ଅତ୍ୟନ୍ତ ଭାବ ବିହ୍ୱଳ ହୋଇଗଲେ । ସେ କୋମଳାଙ୍ଗୀର ଉଭୟ ହାତକୁ ଧରି ନିଜ ଆଡ଼କୁ ଟାଣିଲେ । ଏତ ଚୌଲାର ହାତ ! ଚୌଲା ତାର ମୁଣ୍ଡକୁ ଭୀମଦେବଙ୍କ ଗ୍ରୀବା ଉପରେ ଥୋଇ ଗୁନ ଗୁନ କହିଲା, "ମୋର ପ୍ରଭୁ ଶମ୍ଭୁ !" ଘରର ଗୋଟିଏ କୋଣରେ ଅନ୍ଧକାରର ଅନ୍ତରାଳରେ ଥାଇ ବୀର ତା' ହସକୁ ଅତି କଷ୍ଟରେ ଚାପିନେଲା ।

ତାପରେ ନିସ୍ତବ୍ଧତା............

ନାଗରା ବାଜିବା ସଙ୍ଗେ ସଙ୍ଗେ ମହାରାଜ ଭୀମଦେବ ଘରୁ ବାହାରିଲେ । ସେ ଆଜି ଅସାଧାରଣ ଭାବେ ଆନନ୍ଦିତ ଓ ଉତ୍ସାହିତ । ତାଙ୍କ ଆଖି ଦୁଇଟି ଏପରି ତେଜସ୍ବାନ୍ ଦିଶୁଛି ଯାହାକି କେବେ ଦେଖାଯାଇନଥିଲା । ଧମନୀରେ ରକ୍ତ ପ୍ରଖର ବେଗରେ ପ୍ରବାହିତ ହେଉଥାଏ । ଗୁରୁଦେବ, ରତ୍ନାଦିତ୍ୟ, ପରମାର, ଚାଲୁକ୍ୟ, କମାଲଖାଁ, ତାଙ୍କ ମନ୍ତ୍ରୀବର୍ଗ ତଥା ସେନାପତିମାନଙ୍କ ସହିତ କଥାବାର୍ତ୍ତା କରିବାର ସମୟ ଡେରି ହୋଇଗଲାଣି । ଚଞ୍ଚଳ ଗତିରେ ସେ ଦୁର୍ଗର ପାହାଚ ଚଢ଼ି ଉପରେ ଯାଇ ପହଞ୍ଚିଲେ । ସେ ବହିର୍ବଳୟକୁ ଚାହିଁ ଦେଖିଲେ ଅନ୍ଧକାର ଭେଦକରି ଲୋହିତ ବର୍ଣ୍ଣର ଅଗ୍ନିଶିଖା ଓ ଧୂଆଁ ଦେଖାଯାଉଛି । ହମୀର ଆସୁଥିବାର ଏହା ହେଉଛି ପରିଷ୍କାର ଲକ୍ଷଣ ।

ଯୁଦ୍ଧ ଆସନ୍ନ, ଏହି କଥା ଭାବି ଭୀମଦେବ ମହାରାଜ ଖୁସି ହେଲେ । ଆନନ୍ଦରେ ସେ କହିଲେ, "ଶେଷକୁ ସେ ଆସିଲା ! ରତ୍ନାଦିତ୍ୟ, ଶତ୍ରୁର ସମ୍ମୁଖୀନ ହେବାପାଇଁ ଆମ ସୈନ୍ୟବାହିନୀକୁ ଏବେ ପ୍ରସ୍ତୁତ କର ।

ଅନ୍ଧାର ଦୂର ହୋଇ ଆଲୁଅ ହେବା ପରେ ସେ ଦୁର୍ଗ ଉପରକୁ ଯାଇ ଦେଖିଲେ, ଜଙ୍ଗଲ ଆଡ଼ୁ କଳା ପିମ୍ପୁଡ଼ିର ଦଳପରି ଦେଖାଯାଉଥିବା ଗ୍ରୋଷ୍ଠ ଗ୍ରୋଷ୍ଠ ଦଳ ପ୍ରଭାସ ଆଡ଼କୁ ଆସୁଛନ୍ତି । ପ୍ରଥମେ ଦଳେ, ତା ପରେ ଦୁଇଟି ଦଳ, ପରେ ଶହ ଶହ ଦଳ ଆସିଲେ । ସେମାନେ ନିକଟବର୍ତ୍ତୀ ହେବା ପରେ ଉକ୍ତ ଦଳଗୁଡ଼ିକ ଯେ ମଣିଷଙ୍କ ଦଳ ଏହା ଜାଣିବାକୁ ବାକି ରହିଲା ନାହିଁ । କେତେକ ଘୋଡ଼ା ଉପରେ, କେତେକ ବଳଦ ଗାଡ଼ିରେ ଆସୁଛନ୍ତି ଏବଂ ପ୍ରଭାତର ସମୀରଣରେ ସେମାନଙ୍କ ଚିତ୍କାର ଦୁର୍ଗ ଆଡ଼କୁ ଭାସିଆସୁଛି ।

ରତ୍ନାଦିତ୍ୟ ପ୍ରଥମେ କହିଲେ—ମନେହେଉଛି ଏମାନେ ଦେଲୱାଡ଼ାରୁ ପଳାଇଆସୁଥିବା ଆମର ଲୋକମାନେ ।

ଗୁରୁଦେବ ଗୁଣୁଗୁଣୁ କରି କହିଲେ, "ଭୋଳାନାଥ, ଲୋକଗୁଡ଼ାକ ମୃତ୍ୟୁ ମୁଖରେ ପଡ଼ିବେ !"

ମନ୍ତ୍ରୀ ବିମଳ କହିଲେ, "ଏହି ଶରଣାର୍ଥୀମାନଙ୍କ ମଧ୍ୟରେ ଯଥେଷ୍ଟ ସଂଖ୍ୟକ ସ୍ତ୍ରୀ ଓ ପିଲା ଥିବା ସମ୍ଭବ ।"

ଗୁରୁଦେବ ପାଟିକରି କହିଲେ, "ଦେଖ, ଏହି ଲୋକମାନେ ବିଚରା ପଳାଇ ପଳାଇ କିପରି ପଡ଼ିଯାଉଛନ୍ତି ! ଶିବ ସେମାନଙ୍କୁ ରକ୍ଷା କରନ୍ତୁ ।"

ଭୀମଦେବ ଓଠ ଚିପି କହିଲେ, "ତାହାହେଲେ ଦେଲୱାଡ଼ାର ପତନ ହୋଇଗଲା ।" ତାଙ୍କ ସ୍ୱର ଅତ୍ୟନ୍ତ ଗମ୍ଭୀର ହୋଇଗଲା । ତାଙ୍କର ଆଖି ଲୋକ ସମୁଦ୍ର ଉପରୁ ଯାଇ ପଡ଼ିଲା ଦିଗ୍‌ବଳୟ ଉପରେ । ସେ ପୁଣି ପଛକୁ ଅନାଇଲେ ।

ମହାରାଜ କହିଲେ, "ବିମଳ ସମୁଦ୍ରକୁ ଯିବା ପାଇଁ ଦ୍ୱାରମାନ ଖୋଲିଦିଅ । ଆମର ଯେତେ ନୌକା ଅଛି, ସେ ସବୁ ସମୁଦ୍ରର ଅପ୍ରଶସ୍ତ ପ୍ରଣାଳୀ ପାଖକୁ ପଠାଇଦିଅ । ବଞ୍ଚିକରି ଯେଉଁମାନେ ସମୁଦ୍ର କୂଳକୁ ଆସିବେ, ସେମାନଙ୍କୁ ନେଇଆସ ।

ବୁଢ଼ା କମାଲଖାମା କହିଲେ, "ଚୌଲୁକ୍ୟରାଜ, ଏ ସମସ୍ତଙ୍କୁ ଦୁର୍ଗ ଭିତରକୁ କାହିଁକି ଆଣୁଛନ୍ତି ? ଆମର ଥିବା ଖାଦ୍ୟଦ୍ରବ୍ୟ ଖୁବ୍ ବେଶୀ ହେଲେ ଦୁଇମାସ ମାତ୍ର ଯିବ ।"

ଭୀମଦେବ କହିଲେ, "ଲଖାମ, ହମ୍ମୀରର ଆକ୍ରମଣ କେତେ ଦୁଇମାସ ରହିବ ବୋଲି ଭାବୁଛ ?" ତାପରେ ବିମଳଙ୍କୁ ପଚାରିଲେ, "ଆମର କେତୋଟି ବୋଇତ ଅଛି ?"

ବିମଳ ମହାରାଜ; ତିନୋଟି ଅଛି ।

ଭୀମଦେବ—ଏଇ ବୋଇତମାନଙ୍କରେ ପ୍ରଥମେ ସ୍ତ୍ରୀଲୋକ ଓ ପିଲାମାନଙ୍କୁ ପଠାଇଦିଅ ।

ବିମଳ – ଯେ ଆଜ୍ଞା ମହାରାଜ !

ଭୀମଦେବ—ରତ୍ନାଦିତ୍ୟ, ଯୁଦ୍ଧ ପାଇଁ ଏଥର ପ୍ରସ୍ତୁତ ହେବା । ଧନୁଶରଧାରୀଙ୍କୁ ପାଚେରି ଚାରିପାଖରେ ରଖ ।

ରତ୍ନାଦିତ୍ୟ ସମର ଦୁନ୍ଦୁଭି ବଜାଇଲେ । ତାହାର ପ୍ରତିଧ୍ୱନି ଚାରିଦିଗରେ ବ୍ୟାପିଗଲା । ଏତିକିବେଳକୁ ସୂର୍ଯ୍ୟ ଉଦୟ ହେଲେଣି । ସମଗ୍ର ପ୍ରଭାସ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହୋଇଗଲା । ଆଦେଶ ପାଇଲା ମାତ୍ରେ ସେମାନଙ୍କ ଧନୁଶର ଚାଳନା କରିବା ପାଇଁ ସାତ ହଜାର ଧନୁର୍ଦ୍ଧର ଦୁର୍ଗର ପାଚେରି ଜଗି ରହିଲେ । ବହୁ ସ୍ଥାନରେ ସୈନ୍ୟମାନଙ୍କ ନିମନ୍ତେ ଅସ୍ତ୍ର ଶସ୍ତ୍ର ବୋଝେଇ ଓଟମାନ ଦୁର୍ଗ ଉପରକୁ ଚଢ଼ାଇଦିଆଗଲା ।

ଦୁଇଶହ ଉପରିସ୍ଥ ସାମରିକ କର୍ମଚାରୀ ଅସ୍ତ୍ର ଶସ୍ତ୍ର ସୁସଜ୍ଜିତ ହୋଇ ଘୋଡ଼ା ସହ ପ୍ରସ୍ତୁତ ହୋଇ ରହିଲେ । ସେନାପତିମାନେ ଦୂର ଦିଗ୍‌ବଳୟକୁ ଚାହିଁ ଅବସ୍ଥା ପର୍ଯ୍ୟବେକ୍ଷଣ କରୁଥାନ୍ତି ।

ଗଙ୍ଗା ଓ ଚୌଲା ମନ୍ଦିରର ଏକ ଗୁମ୍ବଜର ଅଳିନ୍ଦକୁ ଗଲେ । ଚାରିଆଡ଼େ ଅଗଣିତ ସୈନ୍ୟ, ଦଳପତି ଏବଂ ସେନାପତି ଦଳ ଦଳ ହୋଇ ଦଣ୍ଡାୟମାନ । ପ୍ରତ୍ୟେକ ଦଳର ଲୋକେ ଭିନ୍ନ ଭିନ୍ନ ରଙ୍ଗର ପୋଷାକ ପିନ୍ଧିଥାନ୍ତି । ତାହା ଦେଖି ଚୌଲା ବିହ୍ୱଳିତା ହୋଇ କହିଲା, "ମାଆ, ଆମ ଦୁର୍ଗ କିପରି ଚମତ୍କାର ଦିଶୁଛି ! ମାତ୍ର ସପ୍ତାହକ ମଧ୍ୟରେ ମହାରାଜ ଅଦ୍ଭୁତ କାର୍ଯ୍ୟ କରିପାରିଛନ୍ତି ।"

ମନ୍ଦିରର ଅନ୍ୟ ଏକ ଉଚ୍ଚ ଗୁମ୍ବଜର ଅଳିନ୍ଦରେ କେତେ ଜଣ ରାଜାଙ୍କ ସହ ଗୁରୁଦେବ ଠିଆହୋଇ ଏହି ଦୃଶ୍ୟ ଦେଖିବା ସଙ୍ଗେ ସଙ୍ଗେ ଯେଉଁଭଳି ଭାବେ ସୈନ୍ୟ ସଜ୍ଜିତ କରାଯାଇଛି ସେଥିପାଇଁ ଭୀମଦେବଙ୍କର ଭୂୟସୀ ପ୍ରଶଂସା କରୁଥାନ୍ତି । ସୂର୍ଯ୍ୟ କିରଣ ପଡ଼ି ସୁଦୃଢ଼ ଓ ଅଭେଦ୍ୟ ପ୍ରଭାସ ଚମକୁ ଥାଏ । ସୈନ୍ୟ ଚାଳନାରେ ବର୍ତ୍ତମାନ ମୁଖରିତ, ବିଶ୍ୱର ସର୍ବ ଶ୍ରେଷ୍ଠ ଶକ୍ତିଶାଳୀ

ଦେବତା ସୋମନାଥଙ୍କ ମନ୍ଦିରର ସର୍ବୋଚ୍ଚ ଶିଖରରେ ଗୈରିକ ରଙ୍ଗର ପତାକା ଉଡ଼ି ଜନତାର ଭକ୍ତି ଆକର୍ଷଣ କରୁଥାଏ ।

ମହାରାଜ ଭୀମଦେବ ନିଜର ଶକ୍ତି ସମ୍ପର୍କରେ ଅବହିତ ଥାଇ ନିଜର ତରବାରି କୋଷୋନ୍ମୁକ୍ତ କରି "ପ୍ରଭୁ ସୋମନାଥଙ୍କର ଜୟ ହେଉ" ବୋଲି ଧ୍ୱନି କଲେ । ସେ ଧ୍ୱନି କରିବା ସଙ୍ଗେ ସଙ୍ଗେ ଉପସ୍ଥିତ ତିରିଶ ହଜାର ସୈନ୍ୟ ମଧ୍ୟ "ପ୍ରଭୁ ସୋମନାଥଙ୍କର ଜୟ ହେଉ" ବୋଲି ପ୍ରତିଧ୍ୱନି କଲେ । ମାତ୍ର ଏହି ପ୍ରତିଧ୍ୱନି ଶେଷ ହେବା ପୂର୍ବରୁ ମହାରାଜ ଭୀମଦେବ ବିସ୍ମୟରେ ଆଖି ତରାଟି ଚାହିଁ କରି କହିଲେ, "ରତ୍ନାଦିତ୍ୟ, ସମୁଦ୍ର କୂଳରେ କଣ ହେଉଛି ଦେଖ !"

ବହୁ ସଂଖ୍ୟାରେ ଅଶ୍ୱାରୋହୀ ଦ୍ରୁତ ବେଗରେ ସେପଟୁ ଦୁର୍ଗ ଆଡ଼କୁ ଆସୁଥାନ୍ତି । ପାରମାର ଅନ୍ୟ ଦିଗକୁ ତାଙ୍କ ଦୃଷ୍ଟି ଆକର୍ଷଣ କରି କହିଲେ, "ଏଣେ ଦେଖନ୍ତୁ !" ଆଉ ଗୋଟିଏ ଦଳ ଅଶ୍ୱାରୋହୀ ଶତ୍ରୁ ସୈନ୍ୟ ସେ ଦିଗରୁ ଦ୍ରୁତ ବେଗରେ ସମୁଦ୍ର କୂଳେ କୂଳେ ଦୁର୍ଗ ନିକଟକୁ ଆସୁଥାନ୍ତି ।

ଭୀମଦେବ କହିଲେ, "ତାହାହେଲେ ସେମାନେ ସମୁଦ୍ରକୁ ଆମର ରାସ୍ତା ବନ୍ଦ କରିଦେବା ପାଇଁ ଯାଉଛନ୍ତି ।"

ପ୍ରଥମ ଦଳ ଠିକ୍ ଏକ ଯନ୍ତ୍ର ପରି ମାଡ଼ିଆସୁଥାନ୍ତି । ସେମାନଙ୍କ ରାସ୍ତାରେ କାଳମୁଖ କାପାଳିକମାନଙ୍କ ବାସସ୍ଥଳ ଶ୍ମଶାନ ଭୂମି ପଡ଼ିଲା । ସେହି କାପାଳିକ ମାନଙ୍କୁ ଦୁର୍ଗ ଭିତରେ ରହିବାକୁ ବା ଖମ୍ଭାତ ଚାଲିଯିବା ପାଇଁ ମନାଇବାକୁ ଗୁରୁଦେବ ଚେଷ୍ଟା କରିଥିଲେ । କିନ୍ତୁ ସେମାନଙ୍କ ଅଦ୍ଭୁତ ତାନ୍ତ୍ରିକ ଶକ୍ତି ମନ୍ତ୍ର ଯୋଗୁଁ ସେମାନଙ୍କ ମନରେ ଏଭଳି ଦୃଢ଼ ବିଶ୍ୱାସ ଥିଲା ଯେ କାପାଳିକମାନେ ଗୁରୁଦେବଙ୍କ ପରାମର୍ଶ ମାନିଲେ ନାହିଁ । ପୂର୍ବରୁ କେତେକ ଯୁଦ୍ଧରେ କେବେ କେହି ସେମାନଙ୍କୁ ଛୁଇଁ ନ ଥିଲେ । କିନ୍ତୁ ହମୀରର ସୈନ୍ୟମାନେ ଇହ ବା ପର ଲୋକରେ କାହାକୁ ଭୟ କରିବା ଜାଣିନଥିଲେ । ସେମାନେ କାପାଳିକମାନଙ୍କୁ ଭ୍ରୂକ୍ଷେପ କଲେ ନାହିଁ । ମାଳି ଘାସ କାଟିଲା ପରି ସେମାନେ ସେଇ କାଳ-ମୁଖମାନଙ୍କୁ କାଟିପକାଇଲେ । ଗୁରୁଦେବଙ୍କର ସେମାନଙ୍କ ପ୍ରତି କୌଣସି ସହାନୁଭୂତି ନଥିଲା । ସେ ଏକ ଦୀର୍ଘଶ୍ୱାସ ପକାଇ କହିଲେ, "ଭୋଳାନାଥ, ତୁମର ଇଚ୍ଛା ପୂର୍ଣ୍ଣ ହେଉ !"

ଭୀମଦେବ ଏକ ଲୟରେ ଦେଲୱାଡ଼ା ଆଡ଼କୁ ଅନାଇଥିଲେ । ସେ ଯାହା ଦେଖିଲେ ସେଥିରେ ସେ ସ୍ତବ୍ଧ ହୋଇଗଲେ । ବହୁ ସଂଖ୍ୟକ ଅଶ୍ୱାରୋହୀ

ତଥାପି ଆସୁଥିବା ଦେଖି ସେ କହିଲେ, "ରତ୍ନାଦିତ୍ୟ ଓ ପାରମାର, ତୁମେ ଦୁହେଁ ସମୁଦ୍ର ପଥକୁ ଜଗ । ଦୁର୍ଗ ଆଡ଼କୁ ଆସୁଥିବା ଶତ୍ରୁର ଏହି ସୈନ୍ୟ ବାହିନୀ ବିଷୟ ମୁଁ ବୁଝୁଛି ।"

ଆବଶ୍ୟକ ବ୍ୟବସ୍ଥା କରିବା ପାଇଁ ରତ୍ନାଦିତ୍ୟ ଓ ପରମାର ସଙ୍ଗେ ସଙ୍ଗେ ଚାଲିଗଲେ । ହମୀରର ସୈନ୍ୟବାହିନୀ ଦେଲୱାଡ଼ା ଜଙ୍ଗଲରୁ ଠିକ୍ ନିଷ୍କ୍ରମଣ କରି ପରେ ପ୍ରବଳ ବେଗରେ ମାଡ଼ି ଆସୁଥାନ୍ତି । ଅଶ୍ୱାରୋହୀ ଦଳମାନ ପାଞ୍ଚ ବା ପଚିଶ ନୁହନ୍ତି,ଅଗଣିତ ସଂଖ୍ୟାରେ ମାଡ଼ି ଆସୁଥାନ୍ତି । ସେମାନେ ମୁଣ୍ଡରେ ଉଜ୍ଜ୍ୱଳ ଟୋପି ଓ ଚମତ୍କାର ପୋଷାକ ପିନ୍ଧି ଏବଂ ବିରାଟ ଧନୁଶରମାନ ହାତରେ ଧରି ଆସୁଥାନ୍ତି । ସେମାନଙ୍କ ପଛରେ ବହୁ ଗଜାରୋହୀ ସୈନ୍ୟ ରହି ଏକ ଗତିଶୀଳ ଅପରାଜେୟ ଦୁର୍ଗ ଭଳି ଦେଖାଯାଉଥାଏ । ଏହି ଗଜମାନଙ୍କ ପଛରେ ଏଭଳି ବିରାଟ ଯନ୍ତ୍ରମାନ ଆସୁଥାଏ, ଯାହାକି ଖିମଦେବ କେବେ ଦେଖିନଥିଲେ ବା କଳ୍ପନା କରିନଥିଲେ ।

ବିମଳ ଚୁପ୍ ଚୁପ୍ କରି କହିଲେ, "ମହାରାଜ, ସାମନ୍ତ କହୁଥିବା କଥା ଠିକ୍ । ଏ ତ ଆକ୍ରମଣ କରିବା ପାଇଁ ଆସୁଥିବା ସୈନ୍ୟବାହିନୀ ନୁହେଁ, ଗୋଟିଏ ଦେଶ ମାଡ଼ିଆସିବା ପରି ଲାଗୁଛି ।"

ଖିମଦେବ କହିଲେ– କିନ୍ତୁ ପ୍ରଭୁ ଆମ ପାଖେ ପାଖେ ଅଛନ୍ତି ।

ଗୁରୁଦେବ ସ୍ନେହରେ ତାଙ୍କ ଉପରେ ହାତ ପକାଇ କହିଲେ, "ବତ୍ସ ଖିମଦେବ, ଏହି ଯୁଦ୍ଧରେ ବୀରତ୍ୱର ପରାକାଷ୍ଠା ଦେଖାଇବା ପାଇଁ ଭୋଳାନାଥ ତୁମକୁ ଯେଉଁ ସୁଯୋଗ ଦେଇଛନ୍ତି, ତାହାକୁ ଦେବତାମାନେ ମଧ୍ୟ ଈର୍ଷା କରିବେ ।"

ଖିମଦେବ ଉତ୍ସାହରେ କହିଲେ—"ଗୁରୁଦେବ, ଆପଣ ଏଭଳି ଏକ ବିରାଟ ଯୁଦ୍ଧ ଦେଖିବେ, ଯାହାକି କୌଣସି ଦେବତା କି ମଣିଷ ଏ ପର୍ଯ୍ୟନ୍ତ ଦେଖିନାହାନ୍ତି ।"

ଏହା ପରେ ହମୀରର ସୈନ୍ୟବାହିନୀ ଜଙ୍ଗଲ ଅତିକ୍ରମ କଲେ ଏବଂ ଦୁର୍ଗର ଚତୁଃପାର୍ଶ୍ୱରେ ଠିଆହୋଇଗଲେ । ସେମାନଙ୍କ ସମବେତ ଯୁଦ୍ଧ ହୁଙ୍କାର "ଆଲ୍ଲା ହୋ ଆକବର" ଶବ୍ଦରେ ଗଗନ ପବନ ପ୍ରକମ୍ପିତ ହୋଇଗଲା ।

"ଗୁରୁଦେବ, ଆପଣ ଏଇଠାରେ ଅପେକ୍ଷା କରନ୍ତୁ" କହି ଭୀମଦେବ ଲଖାମି ଓ ବିମଳଙ୍କ ସହ ମନ୍ଦିର ଶିଖରରୁ ତଳକୁ ଓହ୍ଲାଇ ଆସି ଦୁର୍ଗର ପ୍ରଧାନ ଦ୍ୱାର ନିକଟକୁ ଗଲେ ।

ହମୀରର ଅଶ୍ୱାରୋହୀମାନେ ଆସି ଖାଇର ଅପର ପାର୍ଶ୍ୱରେ ବ୍ୟୂହ ରଚି ଠିଆହେଲେ । ଶତ୍ରୁ ସୈନ୍ୟମାନେ ଦୁର୍ଗର ତିନ ପାଖରେ ଘେରିଯାଇ ନିର୍ଦ୍ଦିଷ୍ଟ ମୂର୍ତ୍ତିପର ନିଜ ନିଜ ସ୍ଥାନରେ ଠିଆ ହୋଇଗଲେ ଓ ଶରଧାରୀ ସୈନ୍ୟମାନେ ନିଜନିଜର ଧନୁଶର ପ୍ରସ୍ତୁତ କରି ରଖିଲେ ।

କେବଳ ସମୁଦ୍ର ପାଖ ଛଡ଼ା ଅନ୍ୟ ତିନି ଦିଗରୁ ପ୍ରଭାସ ଶତ୍ରୁର ଘେର ଭିତରେ ରହିଲା । ହମୀରର ସୈନ୍ୟବାହିନୀର ଯୁଦ୍ଧ ଧ୍ୱନି "ଆଲ୍ଲା ହୋ ଆକବର" ସାଙ୍ଗକୁ ଭୀମଦେବଙ୍କ ସୈନ୍ୟବାହିନୀର ଆହ୍ୱାନ "ଜୟ ସୋମନାଥ" ଶବ୍ଦରେ ଦିଗନ୍ତ ମୁଖରିତ ହେଲା ।

୩୭

# ପୂଜକମାନଙ୍କର ବିଦ୍ରୋହ

ଭୀମଦେବ ଦୁର୍ଗ ପ୍ରାଚୀରର ଗୋଟିଏ ସ୍ୱତନ୍ତ୍ର ସ୍ଥାନରେ ବସି ଶତ୍ରୁର ସୈନ୍ୟ ଶୃଙ୍ଖଳା ପର୍ଯ୍ୟବେକ୍ଷଣ କରୁଛନ୍ତି । ଠିକ୍ ଏହି ସମୟରେ ହମୀରର ସୈନ୍ୟବାହିନୀ ସେମାନଙ୍କ ବ୍ୟୂହର କେନ୍ଦ୍ର ସ୍ଥଳରେ ପତାକା ସ୍ତମ୍ଭ ପୋତି ଶାଗୁଆ ବର୍ଣ୍ଣର ପତାକା ଉଡ଼ାଇଲେ ଓ ହଜାର ହଜାର ଲୋକ ହାତୀ ଧାଡ଼ି ମାନଙ୍କ ପଛରେ ତମ୍ବୁ ପକାଇବା କାର୍ଯ୍ୟ ଆରମ୍ଭ କଲେ ।

ହାତୀମାନଙ୍କ ଆଡ଼େଇ ଗୋଟିଏ ରାସ୍ତା ବାହାର କରାଗଲା ଓ ସେହି ବାଟେ ହମୀରର ସୈନ୍ୟମାନେ ସାମରିକ କାଇଦାରେ ଆସି ପତାକା ପାଖେ ଜଗି ରହିଲେ ଏବଂ ଅନ୍ୟ ପାଖରେ ଅଶ୍ୱାରୋହୀ ସୈନ୍ୟମାନେ ନିଜ ନିଜର ତରବାରି ବାହାର କରି ଜଗିଲେ । ଏହି ମନୁଷ୍ୟ-ଦୁର୍ଗ ଭିତରକୁ ଏକ କଳା ଘୋଡ଼ା ଉପରେ ବସି ଜଣେ ଶକ୍ତିଶାଳୀ ଅଶ୍ୱାରୋହୀର ନେତୃତ୍ୱରେ ପନ୍ଦର ଜଣ ଅଶ୍ୱାରୋହୀ ପ୍ରବେଶ କଲେ । ସେହି ବ୍ୟକ୍ତି ଜଣକ ଖର୍ବ ହୃଷ୍ଟ

ସୃଷ୍ଟ ଦେଖାଯାଉଥାଏ ଏବଂ ତା ମୁଣ୍ଡରେ ଗୋଟିଏ ବଡ଼ ସବୁଜ ପଗଡ଼ି ଥାଏ । ସାମନ୍ତର ବର୍ଣ୍ଣନା ଅକ୍ଷରେ ଅକ୍ଷରେ ସତ୍ୟ ଥିଲା—ଏହି ବ୍ୟକ୍ତି ନିଶ୍ଚୟ ଗଜନୀର ସୁଲତାନ ।

ଭୀମଦେବ କ୍ରୋଧରେ ଦାନ୍ତ ଚିପି ନିଜର ଧନୁ ଉଠାଇଲେ । ଗୁଜରାଟର ଏହି ସର୍ବଶ୍ରେଷ୍ଠ ଧନୁର୍ଦ୍ଧରଙ୍କର ହସ୍ତ ଅଧୀର ହୋଇ ଉଠୁଥାଏ ।

ହମୀର ବହୁ ସମୟ ପର୍ଯ୍ୟନ୍ତ ପ୍ରଭାସର ଚତୁର୍ଦ୍ଦିଗକୁ ନିରୀକ୍ଷଣ କରି ନିଜର ଦୁଇଜଣ କୁଶଳୀ ଧନୁର୍ଦ୍ଧାରୀଙ୍କୁ ଶର ମାରିବାକୁ ଆଦେଶ ଦେଲା । ଗୋଟିଏ ଶର ଗଡ଼ିଯାଇ ପାଖରେ ପଡ଼ିଲା ଓ ଅନ୍ୟଟି ମଧ୍ୟ କିଛି ଦୂରରେ ପଡ଼ିଲା । ଶତ୍ରୁର ଏହି ବିଫଳତା ଦେଖି ରାଜପୁତ୍ ସୈନ୍ୟମାନେ ହସିଲେ । ମାସୁଦ ଏହା ଦେଖି ଅଗ୍ରସର ହୋଇ ନିଜର ଧନୁ କାଢ଼ିଲା । ଭୀମଦେବ ମଧ୍ୟ ପ୍ରସ୍ତୁତ ଥିଲେ । ମୁହୂର୍ତ୍ତକ ମଧ୍ୟରେ ସେ ନିଜର ଧନୁ କାଢ଼ି ଓ ପୂରା ଦମ୍‌ରେ ତୀର ଟାଣି ଛାଡ଼ି-ଦେଲେ । ଦୁଇଜଣଙ୍କ ଶର ପରସ୍ପରକୁ ଅତିକ୍ରମ କରି ଚାଲିଗଲା ।

ମାସୁଦର ଶର ଦୁର୍ଗ କାନ୍ଥରେ ବାଜି ତଳେ ପଡ଼ିଗଲା । ମାତ୍ର ଭୀମଦେବଙ୍କ ଶର ମାସୁଦର ଗୋଡ଼ରେ ପଶି ଘୋଡ଼ାର ପେଟ ଫୁଟାଇ ଦେଲା । ଅଶ୍ୱ ଏବଂ ଅଶ୍ୱାରୋହୀ ତଳେ ପଡ଼ି ଧୂଳିରେ ଲୋଟିଲେ । ରାଜପୁତ୍ ସୈନ୍ୟବାହିନୀ "ଜୟ ସୋମନାଥ" ଧ୍ୱନି ଦେଲେ ।

ଏହା ପରେ ବହୁ ରାଜପୁତ୍ ସୈନ୍ୟ ଶର ମାରିଲେ । କିନ୍ତୁ ତହିଁରୁ ଗୋଟିଏ ସୁଦ୍ଧା ହମୀର ନିକଟରେ ପହଞ୍ଚିଲା ନାହିଁ ।

ସେଦିନ ଯୁଦ୍ଧ କରିବାକୁ ହମୀରର ଇଚ୍ଛା ନଥିଲା । ସୈନ୍ୟବାହିନୀ ବିଶ୍ରାମ ନେବାକୁ ଯିବାପାଇଁ ଆଦେଶ ପାଇବା ପର୍ଯ୍ୟନ୍ତ ନୀରବରେ କିଛି ସମୟ ଠିଆହେଲେ ।

ଭୀମଦେବ ପ୍ରଥମେ ଶତ୍ରୁର ରକ୍ତ ବୁହାଇଥିବାରୁ ଏହି ଉତ୍ସବ ପାଳନ କରିବା ନିମନ୍ତେ ପ୍ରଭାସରେ ଆନନ୍ଦରେ ଘଣ୍ଟା ଧ୍ୱନି ହେଲା । ଉପରବେଳା ଖବର ମିଳିଲା ଯେ ହମୀର ଲଢ଼େଇ କରିବା ପାଇଁ ପ୍ରସ୍ତୁତ ହେଉଛି, ଯାହାକି ମାସ ମାସ ଧରି ଚାଲିବ । ଅଶ୍ୱାରୋହୀ ଓ ଧନୁଶରଧାରୀ ସୈନ୍ୟମାନଙ୍କ ଆଗରେ ତାର ସୈନ୍ୟମାନେ ମାଟିର ଗୋଟିଏ କାନ୍ଥ ପ୍ରସ୍ତୁତ କରିବାକୁ ଲାଗିଲେ ।

ରାଜପୁତ୍ ସୈନ୍ୟମାନେ ଦୁର୍ଗ ପ୍ରାଚୀର ଉପରୁ ଏହା ଦେଖି ଆକ୍ରମଣକାରୀ ସୈନ୍ୟମାନଙ୍କୁ ଥଟ୍ଟା କରୁଥାନ୍ତି ।

× × × ×

ହରଦତ୍ତ ପ୍ରଭାସ ସହରଯାକ ପାଗଳ ପରି ବୁଲୁଥାଏ । ପଚ୍ଚିଶ ବର୍ଷ ମଧ୍ୟରେ ତ୍ରିପୁରସୁନ୍ଦରୀଙ୍କ ମନ୍ଦିର ପ୍ରଥମ ଥର ପାଇଁ ବନ୍ଦ କରାଯାଇଛି । ସେ ଠାକୁରାଣୀଙ୍କ ପୂଜା କରିପାରୁନାହିଁ । ପୂଜା କରିବା ଅଧିକାର ମଧ୍ୟ ତା'ଠାରୁ କାଢ଼ି ନିଆଯାଇଛି । ଖାଲି ସେତିକି ନୁହେଁ, ଠାକୁରାଣୀଙ୍କୁ ଅର୍ପଣ କରାଯାଉଥିବା ପ୍ରସାଦ ଓ ମାଂସ ଗୁରୁଦେବ ବନ୍ଦ କରିବା ସଙ୍ଗେ ସଙ୍ଗେ,ସେ ମନ୍ଦିରରେ ହେଉଥିବା ଯାତ୍ରା ପର୍ବ ମଧ୍ୟ ବନ୍ଦ କରିଛନ୍ତି । ସବୁଠାରୁ ବଡ଼ କଥା, ଗୁରୁଦେବ ତାଙ୍କ ଇଚ୍ଛା ମତେ ଠାକୁରାଣୀଙ୍କ ପୂଜା କରୁଛନ୍ତି ।

ଠାକୁରାଣୀଙ୍କ ମନ୍ଦିରରେ ଆବହମାନ କାଳରୁ ଚଳି ଆସୁଥିବା ପ୍ରଥା ଅନୁସାରେ ପୂଜା ନହୋଇ ମନ୍ଦିର ବନ୍ଦ ହୋଇ ରହିଛି ଏବଂ ଠାକୁରାଣୀ କାରାବାସରେ ଅଛନ୍ତି । ତାର ଜୀବନର ସର୍ବ ଶ୍ରେଷ୍ଠ କାମ୍ୟ କ୍ରିୟାରୁ ତାକୁ ବଞ୍ଚିତ କରାଯାଇଛି । ତେଣୁ ତା ପରଦିନ ଠାରୁ ସେ କ୍ରୋଧରେ ଦାନ୍ତ ଘୋରାଇ ତାର ଚିମୁଟା ହଲାଇ ଏଣେ ତେଣେ ବୁଲୁଥାଏ ।

ସୈନ୍ୟମାନେ ବହୁ ମନ୍ଦିର ଦଖଲ କରି ରହିଥିବାରୁ ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହେଉଥାଏ । ପବିତ୍ର ପ୍ରଭାସ କ୍ଷେତ୍ରରେ ଏପରି ଅନୀତି ସେ ଏହା ପୂର୍ବରୁ କେବେ ଦେଖିନଥିଲି । ତେଣୁ ଏ ସବୁ ହମୀର ଧ୍ୱଂସ କରିବା ଅନିବାର୍ଯ୍ୟ—ଏହା ବୋଧହୁଏ ଦୈବୀ ଇଚ୍ଛା । ଗୁରୁଙ୍କର ପାପ ପାଇଁ ଠାକୁରାଣୀଙ୍କର ଏହା ହେଉଛି ଶାସ୍ତି । ଯୁଦ୍ଧରେ କିଏ ଜିଣୁ ବା ହାରୁ ତହିଁରେ ହରଦତ୍ତର ଆଉ ଆଗ୍ରହ ନାହିଁ । ତାର ମନ୍ଦିର ପୁନର୍ବାର ଖୋଲୁ ଏବଂ ସେ ଯେପରି ପୂଜା କରି ଆସୁଥିଲି ତାହା କରିବାର ସୁଯୋଗ ପାଉ, ଏହାହିଁ ତାର ଏକମାତ୍ର କାମନା ।

ସହରରେ ସେ ବହୁ ପୂଜକ ଦେଖିଛି ଯେଉଁମାନେ ପ୍ରଚଳିତ ବ୍ୟବସ୍ଥାରେ ତାପରି ଅସନ୍ତୁଷ୍ଟ । ଯାତ୍ରୀ ଆଉ ଆସୁନାହାନ୍ତି । ପୂର୍ବେ ଯେପରି ଭୋଗରାଗ ହେଉଥିଲି, ତାହା ବାରଣ କରାଯାଇଛି । ପୂଜକମାନେ ନିଜ ନିଜ ମଧ୍ୟରେ ସେମାନଙ୍କର ଅଭିଯୋଗମାନ ଆଲୋଚନା କରି ସମସ୍ତ ଦୁର୍ଯୋଗ ପାଇଁ ଗୁରୁଦେବ ଦାୟୀ ବୋଲି ଠିକ୍ କଲେ ।

କେତେକ ପୂଜକ ସହ ହରଦତ୍ତ ସେମାନଙ୍କ ଆପତ୍ତି ଜଣାଇବାକୁ ସର୍ବଜ୍ଞଙ୍କ ଘରକୁ ଗଲା । ସେମାନେ ଭାବ ଓ ଭଙ୍ଗୀରେ ସର୍ବଜ୍ଞଙ୍କୁ ଯଥେଷ୍ଟ

ସମ୍ମାନ ଦେଖାଉଥିଲେ ସୁଦ୍ଧା ସେମାନଙ୍କ ଭାଷା ତଥା ସ୍ୱରରେ ଧୃଷ୍ଟତାର ପ୍ରମାଣ ମିଳୁଥାଏ ।

ହରଦତ୍ତ ହାତରେ ଧରିଥିବା ଶମ୍ଭୁଟାକୁ ଜୋର୍‌ରେ ହଲାଇ ହଲାଇ କହିଲା, "ଗୁରୁଦେବ, ଯେ ପର୍ଯ୍ୟନ୍ତ ମନ୍ଦିର ଦ୍ୱାର ପୁନର୍ବାର ନ ଖୋଲୁଛି ସେ ପର୍ଯ୍ୟନ୍ତ ଯେଉଁ ବିପଦ ପଡ଼ୁଛି, ତାହା ଶେଷ ହେବନାହିଁ ! ଆବହମାନ କାଳରୁ ଏ ଦ୍ୱାର କେବେ ବନ୍ଦ ହୋଇ ନଥିଲା ।" ଏହା କହିଲାବେଳେ ତାର ଆଖି ଠିକ୍ ଏକ ପାଗଳ ପଶୁର ଆଖି ପରି ଦିଶୁଥାଏ ।

ଗୁରୁଦେବ ଉତ୍ତର ଦେଲେ, "ମନ୍ଦିରତ ବନ୍ଦ ନାହିଁ ? ମୁଁ ତ ସବୁ-ଦିନେ ପୂଜା କରୁଛି !"

ହରଦତ୍ତ—କିନ୍ତୁ ଆମ ଭଳି ଭକ୍ତମାନଙ୍କୁ ଦେବୀ ଦର୍ଶନ କରି ପୂଜା କରିବାପାଇଁ ଆପଣ ଛାଡ଼ୁନାହାନ୍ତି ।

ଗୁରୁଦେବ—ତୁମମାନଙ୍କ ପାପର ପ୍ରାୟଶ୍ଚିତ ସ୍ୱରୂପ ମୁଁ ପୂଜା ବାରଣ କରିଛି ।

ହରଦତ୍ତ ଧମକାଇ କହିଲା—"ଗୁରୁଦେବ, ଗତ ପଚିଶ ବର୍ଷ ଧରି ମୁଁ କରୁଥିବା କାର୍ଯ୍ୟକୁ କେହି ବାଧା ଦେଇ ନ ଥିଲେ । ଆପଣ ବାଧା ଦେବାରୁ ତାର ଫଳ ସ୍ୱରୂପ ହମ୍ମୀର ଆସି ପହଞ୍ଚିଛି । ଆବହମାନ କାଳରୁ ପ୍ରଚଳିତ ତାଙ୍କର ପୂଜା ଯେପରି ବନ୍ଦ କରିଯାଇଛି, ତାହା ମହାମାୟୀ କେବେହେଲେ ସହ୍ୟ କରି ପାରିବେ ନାହିଁ ।"

ଗଙ୍ଗ ସର୍ବଜ୍ଞ ଦୃଢ଼ତାର ସହିତ ଜବାବ୍ ଦେଲେ, "ହରଦତ୍ତ, ଆମ ସଂପ୍ରଦାୟର ପ୍ରତିଷ୍ଠାତା ଲକୁଳେଶ ଯେଉଁଭଳି ଭାବରେ ପୂଜା ପଦ୍ଧତିର ନିୟମ କରିଥିଲେ, ତାହା ସବୁ ମୁଁ ଭଲରକମ ଜାଣେ । କୌଣସି ପ୍ରଚଳିତ ବିଧି ବନ୍ଦ ନାହିଁ ।"

ହରଦତ୍ତ ପଚାରିଲା, "ତାହାହେଲେ ହମ୍ମୀର କାହିଁକି ଆସିଲା ?"

"ଦେବତାଙ୍କ ପୂଜା ନାମରେ ଆମ ମନ୍ଦିର ମାନଙ୍କରେ ଯଥେଷ୍ଟ ଅନୀତି ପ୍ରବେଶ କରିଯାଇଛି । ସେଥିଲାଗି·········"

ଜଣେ ପୂଜକ କହିଲା, "ଠିକ୍‌କଥା, ହମ୍ମୀର ନଯିବା ପର୍ଯ୍ୟନ୍ତ ମନ୍ଦିର ଖୋଲା ହେବନାହିଁ ।"

ଏହା ଶୁଣି କେତେକ ପୂଜକ ରାଗିଯାଇ କହିଲେ, "ତାହାହେଲେ ଦେବତାଙ୍କ ରାଗ ଆମ ଉପରେ ପଡ଼ିବ ।"

ଗୁରୁଦେବ ଧୀର ସ୍ଥିର ଭାବେ ଜବାବ୍ ଦେଲେ, "ଯେବେ ମୋର କୌଣସି କାର୍ଯ୍ୟ ଯୋଗୁ ଦେବତା ବିରକ୍ତ ହୋଇଥାନ୍ତି, ତାହାହେଲେ ଅନ୍ୟ କାହାରିକୁ ଦଣ୍ଡ ନ ଦେଇ କେବଳ ମୋତେ ଦଣ୍ଡ ଦେବା ନିମନ୍ତେ ମୁଁ ପ୍ରଭୁ ସୋମନାଥଙ୍କୁ ପ୍ରାର୍ଥନା କରୁଛି ।"

ହରଦତ୍ତ ଗଙ୍ଗ ସର୍ବଜ୍ଞଙ୍କର ଆତ୍ମବିଶ୍ୱାସ ଦେଖି ବିରକ୍ତ ହୋଇ କହିଲା, "କିନ୍ତୁ ଏହି ସବୁ ବିପତ୍ତି ଆମ ସମସ୍ତଙ୍କ ଉପରେ ପଡ଼ିବ ।" ଯେ କୌଣସି ମୁହୂର୍ତ୍ତରେ ସେ ଗୁରୁଦେବଙ୍କୁ ଆକ୍ରମଣ କରିବ, ତାର ଭାବଭଙ୍ଗିରୁ ଏହା ଜଣାପଡୁଥାଏ ।

ଗୁରୁଦେବ ଶାନ୍ତ ସ୍ୱରରେ କହିଲେ, "କିନ୍ତୁ ମୋର କୌଣସି କାର୍ଯ୍ୟ-ଯୋଗୁ ନୁହେ । ବହୁ ବର୍ଷ ଧରି ପାଶୁପତ ସଂପ୍ରଦାୟର ଗୁରୁ ଭାବେ ମୋତେ ପ୍ରଭୁ ସୋମନାଥ ଦୟା କରିଛନ୍ତି । ମୁଁ କୌଣସି ଅନ୍ୟାୟ ବା କର୍ତ୍ତବ୍ୟ-ବିରୁଦ୍ଧ କାର୍ଯ୍ୟ କେବେ କରିନାହିଁ । ମୁଁ ପୁଣି ତୁମ ସମସ୍ତଙ୍କୁ କହି ଦେଉଛି, ମହାରାଜ ଭୀମଦେବ ହମୀରକୁ ତଡ଼ି ନଦେବା ପର୍ଯ୍ୟନ୍ତ ମହାମାୟାଙ୍କ ମନ୍ଦିର ବନ୍ଦ ରହିବ !"

ହରଦତ୍ତ କହିଲା, "ଆମର ଆଉ ଅଧିକା କିଛି କହିବାର ନାହିଁ । ଆମେ ତାହାହେଲେ ଆସୁଛୁ ।" ତାର କ୍ରୋଧ ଅଧିକରୁ ଅଧିକ ହେଉଥିବାରୁ କାଳେ ନିଜ ଉପରୁ ନିୟନ୍ତ୍ରଣ ହରାଇବ, ସେଥିପାଇଁ ତାହା ପୂର୍ବରୁ ସେ ସେଠାରୁ ଚାଲିଯିବା ଶ୍ରେୟସ୍କର ବୋଲି ଭାବୁଥାଏ ।

ଗୁରୁଦେବ ଜବାବ୍ ଦେଲେ, "ତୁମେମାନେ ଯାଇପାର ।" ପୂଜକମାନେ କ୍ରୋଧରେ ଗୁରୁଦେବଙ୍କ ଆଡ଼କୁ ଚାହିଁ ଚାହିଁ ଚାଲିଗଲେ ।

ଗୁରୁଦେବ ଧ୍ୟାନ ଆରମ୍ଭ କରି ମନେ ମନେ ଭାବିଲେ, "ଭୀମଦେବ ଯେତେବେଳେ ସମସ୍ତଙ୍କୁ ଏଠାରୁ ପଠାଇଦେବା ପାଇଁ କହୁଥିଲେ, ପଠାଇ ଦେଇଥିଲେ ଭଲହୋଇଥାନ୍ତା । ବର୍ତ୍ତମାନ ଯାହା ହେଉ ପଛକେ ଆମକୁ ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିବ । ଏହାହିଁ ହେବ ପ୍ରଭୁ ସୋମନାଥଙ୍କ ଇଚ୍ଛା ।"

ଗଙ୍ଗ ସର୍ବଜ୍ଞଙ୍କ ନିକଟରୁ ଆସି ହରଦତ୍ତ ଏବଂ ଅନ୍ୟ ପୂଜକମାନେ ଶିବରାଶି ଯେଉଁଠାରେ ପ୍ରାୟଶ୍ଚିତ କରୁଥିଲେ ସେଠାକୁ ସିଧା ଗଲେ ।

ତାଙ୍କର ପ୍ରାୟଶ୍ଚିତ ଯଥେଷ୍ଟ ହୋଇନଥିବା ଯୋଗୁଁ ବିପତ୍ତି ଆସିଲା ବୋଲି ଶିବରାଶିଙ୍କର ବିଶ୍ୱାସ । ତାଙ୍କର ପ୍ରାୟଶ୍ଚିତରେ ଯାହା କିଛି ଅଭାବ ରହିଯାଇଛି, ତାହା ଯେପରି ଶୀଘ୍ର ପୂରଣ ହୋଇଯାଏ ସେଥିପାଇଁ ସେ ବ୍ୟଗ୍ର ଥାନ୍ତି । ଏହି କାରଣରୁ ସେ ଆରାଧନାର ଏକ ନୂତନ ପନ୍ଥା ବାହାର କରିଥାନ୍ତି; ଯଦ୍ୱାରା କି ସର୍ବ ଶକ୍ତିର ଆଧାର ପାର୍ବତୀ ଏବଂ ସର୍ବ ମଙ୍ଗଳର ପ୍ରତୀକ ପ୍ରଭୁ ସୋମନାଥଙ୍କ ନିକଟରେ ତାଙ୍କର ମନ ସ୍ଥିର ରହିପାରିବ ।

ଶିବରାଶି ଆସ୍ତେ ଆସ୍ତେ ନିଜର ଧ୍ୟାନ ଭଙ୍ଗ କରିବା ପର୍ଯ୍ୟନ୍ତ ହରଦତ୍ତ ଏବଂ ଅନ୍ୟ ପୂଜକମାନେ ଭକ୍ତି ସହକାରେ ତାଙ୍କ ନିକଟରେ ବସିଲେ । ଗୁରୁଦେବଙ୍କର ଆଧ୍ୟାତ୍ମିକ ଶକ୍ତି ତଥା ଅଗାଧ ପାଣ୍ଡିତ୍ୟ ବୁଝିବା ସେମାନଙ୍କ ପକ୍ଷେ କଷ୍ଟକର । କିନ୍ତୁ ରାଶିଜୀଙ୍କ ଚାଲିଚଳନ ଅନେକାଂଶରେ ସାଧାରଣ ସାଧୁଙ୍କ ପରି ହୋଇଥିବାରୁ ସେମାନେ ତାହା ଭଲରକମ ବୁଝିପାରୁଥିଲେ । ସେମାନଙ୍କ ଦୃଷ୍ଟିରେ ଗୁରୁଦେବ ଏକ ଦୁର୍ଗମ ପାହାଡ଼ ସ୍ୱରୂପ ଏବଂ ରାଶିଜୀ ବୃକ୍ଷରାଜି ସୁଶୋଭିତ ସମତଳ ଭୂମିରେ ଅବସ୍ଥିତ ଗୋଟିଏ ପବିତ୍ର ମନ୍ଦିର । ଲକୁଲେଶ ସଂପ୍ରଦାୟର ରୀତିନୀତି ତଥା ପ୍ରାୟଶ୍ଚିତ ପଦ୍ଧତିରେ ରାଶିଜୀଙ୍କର ଯଥେଷ୍ଟ ଶ୍ରଦ୍ଧା ଅଛି । ତାହାଛଡ଼ା ପୂଜକମାନଙ୍କ ଆବଶ୍ୟକତା ତଥା ଅଭାବ ଅଭିଯୋଗ ସମ୍ପର୍କରେ ତାଙ୍କର ଭଲ ଜ୍ଞାନ ଥିଲା । ତେଣୁ ବିପଦ ସମୟରେ ତାଙ୍କ ନିକଟକୁ ଯିବାକୁ ପୂଜକମାନଙ୍କର କୌଣସି ସଙ୍କୋଚ ନଥିଲା ।

ଶିବରାଶି ଧ୍ୟାନରୁ ଉଠି ହରଦତ୍ତ ଓ ତାଙ୍କ ବନ୍ଧୁମାନଙ୍କୁ ସ୍ୱାଗତ କଲେ । ହରଦତ୍ତ ଉତ୍ତେଜିତ ସ୍ୱରରେ କହିଉଠିଲା, "ରାଶିଜୀ, ମହାମାୟାଙ୍କ ମନ୍ଦିରର ଦ୍ୱାର ଖୋଲ ନହେଲେ ଆମ୍ଭେମାନେ ଆତ୍ମହତ୍ୟା କରିବୁ । ଗୁରୁଦେବଙ୍କ ଅତ୍ୟାଚାର ଆଉ ଅଧିକ ସହ୍ୟ କରିପାରିବୁ ନାହିଁ ।"

ରାଶିଜୀ ଧୈର୍ଯ୍ୟର ସହିତ ଜବାବ ଦେଲେ, "ଗୁରୁଦେବଙ୍କ ଆଦେଶ ଆମକୁ ଅକ୍ଷରେ ଅକ୍ଷରେ ମାନିବାକୁ ହେବ ।"

ହରଦତ୍ତ ପଚାରିଲା, "ମହାମାୟାଙ୍କୁ ପୂଜା ନକରି ଆମେମାନେ କିପରି ବଞ୍ଚିବୁ ?"

ଶିବରାଶି —ହରଦତ୍ତ, ତୁମେ ଏ ବିଷୟକୁ ଭୌତିକ ଦୃଷ୍ଟିରେ ଦେଖୁଛ । ଆଧ୍ୟାତ୍ମିକ ଦୃଷ୍ଟିରେ ମୋତେ ପରିଷ୍କାର ଜଣାଯାଉଛି ଯେ, ମନ୍ଦିରର ଦ୍ୱାର ବନ୍ଦ ହେବା ମୁହୂର୍ତ୍ତଠାରୁ ମହାମାୟା ତାଙ୍କ ଆସ୍ଥାନ ଛାଡ଼ି ବର୍ତ୍ତମାନ ଦୂର୍

ଭିତରେ ରହୁଛନ୍ତି । ସେ ପ୍ରକୃତ ପୂଜକମାନଙ୍କୁ ଦର୍ଶନ ଦିଅନ୍ତି, ଏପରିକି ସେମାନଙ୍କୁ ମଣିଷ ଶରୀରରେ ଦେଖାଦିଅନ୍ତି ।

ହରଦତ୍ତ—କାହା ଶରୀରରେ ?

ଶିବରାଶି ଏହି ପ୍ରଶ୍ନର ସିଧା ଜବାବ ନଦେଇ କହିଲେ, "ପାର୍ଥିବ ସଂସାର ଲାଗି ଦେବୀ କେବଳ ମନ୍ଦିରର ଗୃହିକାରୁ ଭିତରେ ରହନ୍ତି ।"

ହରଦତ୍ତ—ତାହାହେଲେ ହମୀର କାହିଁକି ଆସିଲା ?

ଶିବରାଶି—ଏହି ପ୍ରଶ୍ନର ଯଥାର୍ଥ ଉତ୍ତର ପାଇବା ପାଇଁ ଗତ ଦୁଇଦିନ ଧରି ମୁଁ ପ୍ରାୟଶ୍ଚିତ୍ତ କରୁଛି ଏବଂ ବର୍ତ୍ତମାନ ପରିଷ୍କାର ଭାବେ ଅବସ୍ଥା ଦେଖିପାରୁଛି ।

ହରଦତ୍ତ—କଣ ଦେଖିପାରୁଛନ୍ତି ?

ଶିବରାଶି—ତାହା ଗୁପ୍ତ ବିଷୟ । କିନ୍ତୁ ମୁଁ ଏହାର ଠିକ୍ ସମାଧାନ କରିବି ବୋଲି ଆଶା କରେ ।

ଜଣେ ପୂଜକ ଜିଦ୍ କରି କହିଲା, "ଆମକୁ ତାହା କୁହନ୍ତୁ । ତାହା-ହେଲେ ଆମେ ବୁଝିପାରିବୁ ।"

ଶିବରାଶି—ମୁଁ ଠିକ୍ ସମୟରେ ତାହା କହିବି ।

ହରଦତ୍ତ ମଧ୍ୟ ଜିଦ୍ କରି କହିଲା, "ନା, ଆପଣ ବର୍ତ୍ତମାନ କୁହନ୍ତୁ ! ଆପଣ ଆମକୁ ନ କହିବା ପର୍ଯ୍ୟନ୍ତ ଆମେ ନଖାଇ ନପିଇ ଏହିଠାରେ ତ୍ରିପୁରସୁନ୍ଦରୀଙ୍କ ମନ୍ଦିର ଆଗରେ ବସିବୁ ।"

ଶିବରାଶି—ତୁମମାନଙ୍କର କଣ ମୋ ଉପରେ ବିଶ୍ୱାସ ନାହିଁ ? ତୁମେମାନେ କଣ ଭାବୁଛ ଦେବୀ ମହାମାୟାଙ୍କର କେବଳ ତୁମେହିଁ ଭକ୍ତ ?

ହରଦତ୍ତ ବ୍ୟଙ୍ଗ ସ୍ୱରରେ କହିଲା, "ଆପଣ ତ ଗୁରୁଦେବଙ୍କର ଅନୁରକ୍ତ ଭକ୍ତ !"

ଶିବରାଶି—ସତ ! ମୁଁ ମହାମାୟାଙ୍କର ତତୋଧିକ ଭକ୍ତ !

ହରଦତ୍ତ ପଚାରିଲା, "ଆପଣ କଣ ନିଶ୍ଚିତ ଯେ ଦେବୀ ମହାମାୟା ବର୍ତ୍ତମାନ ମନୁଷ୍ୟ ଶରୀରରେ ପ୍ରବେଶ କରିଛନ୍ତି ? କଣ ଚୌଲାର ?"

ଶିବରାଶି—ହଁ, ଯେବେ ତୁମମାନଙ୍କର ସନ୍ଦେହ ଅଛି, ସେ ରାତି ଅଧରେ ପ୍ରଭୁ ସୋମନାଥଙ୍କ ସମ୍ମୁଖରେ ନାଚିବା ବେଳେ ଦେଖିପାରିବ ।

ହରଦତ୍ତ—ସତ ?

ଶିବଗଣି—ହଁ, ଏପରିକି ମହାମାନ୍ୟଙ୍କ ଆଗକୁ ଯିବାକୁ ମହାରାଜ ଭୀମଦେବ ମଧ୍ୟ ସାହସ କରନ୍ତି ନାହିଁ ।

ଜଣେ ପୂଜକ ବିନୀତ ସ୍ୱରରେ କହିଲା, "ଗଣିଜୀ, ଆମର ଆପଣଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ । ହମୀର କିପରି ବିତାଡ଼ିତ ହେବ ସେ କଥା ଆମକୁ ସ୍ପଷ୍ଟ ଭାବେ ବୁଝାଇଦିଅନ୍ତୁ । ଆପଣ ଯାହା କହୁଛନ୍ତି ତାହା ଅପେକ୍ଷା ଯଥେଷ୍ଟ ଅଧିକ ଜାଣନ୍ତି ।

ଶିବଗଣି—ସେଥିପାଇଁ ମୋ ଉପରେ ବିଶ୍ୱାସ ସ୍ଥାପନ କରିବାକୁ ମୁଁ ତୁମମାନଙ୍କୁ କହୁଛି ।

ପୂଜକ ଜଣକ ହାତ ଯୋଡ଼ି କହିଲା, "ଏହାର ପ୍ରତିକାର କଣ ତାହା ଆପଣ ହରଦତ୍ତଙ୍କୁ କହିଲେ ଆମେ ସନ୍ତୁଷ୍ଟ ହେବୁ । ଆପଣଙ୍କ ମନରେ କଣ ଅଛି ତାହା ହୁଏତ ଆମେ ବୁଝିପାରିବୁ ନାହିଁ ବୋଲି ଆପଣ ଆମକୁ କହିବାକୁ ଚାହୁଁ ନାହାନ୍ତି !"

ଶିବଗଣି—ଭଲ କଥା । ମୁଁ ହରଦତ୍ତଙ୍କୁ କହିବି । ତୁମେମାନେ ବାହାରକୁ ଯାଇ ଚୁପ୍ ଚାପ୍ ବସ । ମହାମାନ୍ୟ ସବୁ ଠିକ୍ କରିଦେବେ ।

ହରଦତ୍ତ ବ୍ୟତୀତ ସମସ୍ତେ ସଙ୍ଗେ ସଙ୍ଗେ ଘରୁ ଚାଲିଗଲେ ।

ହରଦତ୍ତ ପଚାରିଲା, "ଏହାର ପ୍ରତିକାର କଣ ?"

ଶିବଗଣି ହରଦତ୍ତଙ୍କ କାନରେ "ସେ ଦିନ ଯେଉଁଠାରେ ପୂଜା ଅଧା ଥିଲା ତାହା ଆମକୁ ପୂର୍ଣ୍ଣ କରିବାକୁ ହେବ "ବୋଲି ଚୁପ୍ ଚୁପ୍ କହିବା ବେଳକୁ ଉଭୟଙ୍କ ଆଖିରୁ ଅଦ୍ଭୁତ ଜ୍ୟୋତି ପ୍ରକାଶ ପାଇଲା ।

## ୩୭

# ଧର୍ମ ଦ୍ରୋହ

ଶତ୍ରୁର ପ୍ରଥମ ରକ୍ତ ବୁନ୍ଦା ବାହାର କରିଥିବାରୁ ମହାରାଜ ଭୀମଦେବ ଭାରି ଖୁସି ଅଛନ୍ତି । ସେ ଜଣେ ଭଲ ଲକ୍ଷଭେଦକାରୀ ବୋଲି ପ୍ରକାଶ କରୁଥିବା ଦମ୍ଭ ଆଜି ପ୍ରମାଣିତ ହୋଇଛି ।

ଶତ୍ରୁର ସୈନ୍ୟବାହିନୀ କାର୍ଯ୍ୟ ପନ୍ଥା ସ୍ଥିର କରି ନ ପାରି ଦୁର୍ଗ ଆଗରେ ଛାଉଣୀ ପକାଇ ରହିଛନ୍ତି । କେବଳ ଅବରୋଧ କରିବା ଯେବେ ହମୀରର ଉଦ୍ଦେଶ୍ୟ ହୋଇଥାଏ, ତାହାହେଲେ ମାସ ମାସ ଧରି ତାକୁ ଏହିପରି ରହିବାକୁ ପଡ଼ିବ । ସେ ଯେବେ ଆକ୍ରମଣ କରେ ତାହାହେଲେ ତାକୁ ସମ୍ମୁଖୀନ ହେବା ପାଇଁ ଯଥେଷ୍ଟ ଉପାୟ ଅଛି । ଦୁର୍ଗ ପ୍ରାଙ୍ଗଣରେ ଭୀମଦେବ ଏ ପାଖରୁ ସେ ପାଖକୁ ପରିକ୍ରମା କରୁଥିବା ସମୟରେ ତାଙ୍କ ମନରେ କେବଳ ଏହି ସବୁ କଥା ଆସୁଥାଏ । ସାଙ୍ଗରେ ଏକା ବୀର ଥାଏ ।

ଭୀମଦେବ ସମୁଦ୍ର ପଟର ଦ୍ୱାର ଦେଶରେ ପହଞ୍ଚି ଦେଖିଲେ ସେଠାରେ ରାଓ କମା ଲଖାମି ତାଙ୍କର ଏକ ଆଖିରେ ସମୁଦ୍ରକୁ ଅତି ତୀକ୍ଷ୍ଣ ଭାବେ ଲକ୍ଷ କରୁଛନ୍ତି । ସେ ଗମ୍ଭୀର ଭାବେ ପଚାରିଲେ, "ରାଓ, କଣ ଦେଖୁଛ ?"

ରାଓ—ଦୂରରେ କଣ ହେଉଛି ଦେଖିଲେଣି ?

ମହାରାଜା ଦିଗ୍‌ବଳୟ ଆଡ଼କୁ ଅନାଇ କହିଲେ, "ସେ ଯେ କଳା ମେଘ ପରି ଦେଖାଯାଉଛି କଣ ସେ ?"

ଲଖାମି—ସେ ସବୁ ବୋଇତ ।

ମହାରାଜ—ବୋଇତ ବୋଲି ମୁଁ ଭାବୁନାହିଁ ।

ଲଖାମି—ମୁଁ କଚ୍ଛର ଲୋକ । ପିଲାଦିନୁ ମୋର ଜୀବନ ସମୁଦ୍ରରେ କଟାଇଛି । ସେ ସବୁ ବୋଇତ ଏବଂ ଆମ ଆଡ଼କୁ ଆସୁଛନ୍ତି । ସେଗୁଡ଼ିକ ଆସି ପହଞ୍ଚିଗଲେ ଆମ କଥା ସରିଯିବ ।

ମହାରାଜ—କାହିଁକି ?

ଲଖାମି—ସମୁଦ୍ର କୂଳସାରା ଦୁର୍ଗର ଦୁଇ ପାଖରେ ହମୀର ତାର ଶକ୍ତିଶାଳୀ ଅଶ୍ୱାରୋହୀ ସୈନ୍ୟବାହିନୀ ଛାଉଣୀ କରି ରଖିଛି ଏବଂ ଆମ ବୋଇତ ଗୁଡ଼ିକ ଯେବେ ସେମାନେ ଅଧିକାର କରିନିଅନ୍ତି, ତାହାହେଲେ ସମୁଦ୍ରକୁ ଆମ ବାଟ ବନ୍ଦ ହୋଇଯିବ ।

ଭୀମଦେବ କହିଲେ, "ଆମକୁ ସମୁଦ୍ର ବାଟ ଖୋଲା ରଖିବାକୁ ତ ହେବ ? କଣ କରିବା ?"

ଲଖାମି ତାଙ୍କର ଗୋଟିଏ ଆଖି ମିଞ୍ଜି ମିଞ୍ଜି କରି କହିଲେ, "ଗୋଟିଏ ଉପାୟ ଅଛି । ବୋଇତ ଗୁଡ଼ିକ ଯେପରି କୂଳକୁ ନ ଆସେ ତାହାର ବ୍ୟବସ୍ଥା କରିବାକୁ ହେବ ।"

ଭୀମଦେବ ପଚାରିଲେ, "ଆସୁଥିବା ବୋଇତ ସଂପର୍କରେ କଣ କରିବାକୁ ହେବ ? ଆମକୁ ଏପରି କେତେକ ଭଲ ସୈନ୍ୟ ସେଠାକୁ ପଠାଇବାକୁ ହେବ, ଯେଉଁମାନେ କି ଦରକାର ପଡ଼ିଲେ ଯୁଦ୍ଧ ମଧ୍ୟ କରିବେ ।"

ଲଖାମୀ—"ମହାରାଜ, ଏହାର ଅର୍ଥ ବୋଇତ ପାଖକୁ ଯିବା ପାଇଁ ଅଧଯୋଜନ ପହଁରିବା ! ମୋର ଭୟ ହେଉଛି ଏ ଧରଣର ଯୁଦ୍ଧ କଥା ଆପଣଙ୍କୁ ଜଣାନାହିଁ ।" ଜଣେ ଦକ୍ଷ ସୈନ୍ୟ ଭାବେ ଗର୍ବର ସହିତ ପୁଣି ଲଖାମୀ କହିଲେ, "ମୋର ସୈନ୍ୟବାହିନୀରେ ଅଳ୍ପ କେତେକ ଦକ୍ଷ ସୈନ୍ୟ ଅଛନ୍ତି ଯେଉଁମାନେ କି ମିଶରରୁ ଚିନ୍ ପର୍ଯ୍ୟନ୍ତ ସମୁଦ୍ରରେ ଯାଇଛନ୍ତି । ଏହି କାର୍ଯ୍ୟ କରିବା ପାଇଁ ମୁଁ ସେମାନଙ୍କୁ ପ୍ରସ୍ତୁତ କରିବି ।"

ଭୀମଦେବ –ସମୁଦ୍ରରେ କିପରି ଯୁଦ୍ଧ କରିବାକୁ ହେବ ତାହା କଣ ସେମାନଙ୍କୁ ଜଣାଅଛି ?

ଲଖାନୀ—ପୁରୁଷାନୁକ୍ରମେ ସମୁଦ୍ରରେ ଯୁଦ୍ଧ କରିବା ଆମେ ଶିଖିଛୁ ।

ଭୀମଦେବ—ସେମାନଙ୍କ ସହିତ ସେନାପତି ଭାବେ କିଏ ଯିବ ? ମୋ ପାଖରେ ଖମ୍ବାତର କେତେଜଣ ଏହି ଯୁଦ୍ଧପାଇଁ ଉପଯୁକ୍ତ ସେନିକ ଅଛନ୍ତି, କିନ୍ତୁ ସେମାନେ ସେତେ ଭଲ ନୁହନ୍ତି ।

ଲଖାନୀ ନିଜର ଆଖି ଗୋଟିକ ଟିକିଏ ବନ୍ଦ କରି ଉତ୍ତର ଦେଲେ, "ମୋର ପୁଅ ଥିଲେ ସେ ଏହି ଦାୟିତ୍ୱ ନେଇଥାନ୍ତା । ଭାବିବାର କିଛି ନାହିଁ । ଗଲା ଦୀପାବଳି ଦିନ ମୋତେ ଜମା ବାସ୍ତରୀ ବର୍ଷ ହୋଇଛି । ମୁଁ ବୁଢ଼ା ହୋଇଗଲିଣି ବୋଲି କହିବାକୁ କାହାର ସାହସ ଅଛି ?" ଏହା କହି ନିଜର ଦୁଇ ପାଟିର ବତିଶ ଦାନ୍ତ ଦେଖାଇ କହିଲେ, "ମୁଁ ମୁହୂର୍ତ୍ତକ ମଧ୍ୟରେ ଏତକ ବାଟ ପହଁରି ଯିବି ।"

ଭୀମଦେବ—ସାବାସ୍ ରାଓ ! ସାବାସ୍ !

ଲଖାନୀ—ମୁଁ ଯାଉଛି, ମୋ ଲୋକଙ୍କୁ ଖୋଜେ । ରାତି ହୋଇଗଲାଣି । ଦୁଇହଜାର ଧନୁଶରଧାରୀ ପ୍ରସ୍ତୁତ ରଖିବାକୁ ହେବ । ହମ୍ମୀରର ଶର ଆମ ପର୍ଯ୍ୟନ୍ତ ଆସି ପାରିବ ନାହିଁ । କିନ୍ତୁ ଆମେ ସମୁଦ୍ର ଭିତରକୁ ଗଲାବେଳେ ସେ ଯେବେ ତାର ଅଶ୍ୱାରୋହୀମାନଙ୍କୁ ଆମ ପଛେ ପଛେ ପଠାଏ, ତାହାହେଲେ ଆମକୁ ହଇରାଣ ହେବାକୁ ପଡ଼ିବ । ସେହି ବିପଦରୁ ଆମକୁ ରକ୍ଷା କରିବା ଦାୟିତ୍ୱ ଆପଣଙ୍କର ।

ଭୀମଦେବ ଦୃଢ଼ ବିଶ୍ୱାସର ସହିତ ଜବାବ ଦେଲେ, "ସେ ବିଷୟରେ ଭାବିବାର କିଛି ନାହିଁ । ଆବଶ୍ୟକ ବ୍ୟବସ୍ଥା କରିବା ନିମନ୍ତେ ମୁଁ ସଙ୍ଗେ ସଙ୍ଗେ ଯାଉଛି ।"

ଭୀମଦେବଙ୍କର ଦୁଇ ହଜାର ସର୍ବୋତ୍କୃଷ୍ଟ ସୈନ୍ୟ ଅତ୍ୟନ୍ତ ଗୋପନରେ ସମୁଦ୍ରକୁ ଯିବା ରାସ୍ତା ନିକଟରେ ଠୁଳ ହେଲେ । ସୂର୍ଯ୍ୟାସ୍ତ ପରେ ଅନ୍ଧାର ହୋଇଯିବାରୁ ହମୀରର ଛାଉଣୀରେ ନିଆଁ ଜଳୁଥିବା ଏବଂ ତା ଚାରିପାଖେ ସୈନ୍ୟମାନେ ବସି ନିଆଁ ପୋହଉଥିବା ଦେଖାଗଲା । ଦୁର୍ଗ ଭିତରେ ରାତିରେ କୌଣସି ପ୍ରକାର ନିଆଁ ଜଳିବ ନାହିଁ ବା ଆଲୋକ ବାହାରକୁ ଦେଖା ଦେବ ନାହିଁ ବୋଲି ଭୀମଦେବ ହୁକୁମ ଦେଇଥାନ୍ତି ।

ଅନ୍ଧାର ହେବା ପରେ କାମା ଲଖାନୀ ତାଙ୍କର ତିନିଶହ ସର୍ବୋତ୍କୃଷ୍ଟ ପହଁରାଳିଙ୍କୁ ସାଙ୍ଗରେ ଆଣି ଦୁର୍ଗର ଦ୍ୱାର ଦେଶରେ ପହଞ୍ଚିଲେ । ସେତେବେଳକୁ ଭୀମଦେବ ଓ ମନ୍ତ୍ରୀ ବିମଳ ସେଠାରେ ଉପସ୍ଥିତ ରହିଥାନ୍ତି । ମହାରାଜ ଓ ଲଖାନୀ ପରସ୍ପରକୁ ସ୍ନେହରେ ଆଲିଙ୍ଗନ କଲେ ।

ସାହସୀ ଲଖାନୀ ଅସ୍ତ୍ରରେ ପୂରା ମାତ୍ରାରେ ସଜ୍ଜିତ ହୋଇଥାନ୍ତି ଏବଂ ଏକ ଛୁରିକା ତାଙ୍କ ଅଣ୍ଟାରେ ଝୁଲୁଥାଏ । ପ୍ରଭୁ ସୋମନାଥଙ୍କର ନାମ ଉଚ୍ଚାରଣ କରି ସେ ନୀରବରେ ପାଣି ଭିତରେ ପ୍ରବେଶ କଲେ । ତାହାପରେ ସତେ ଯେପରି ଗୋଟିଏ ବତକ କୂଳରେ ପହଞ୍ଚିବା ଭଳି ଜଣାଗଲା । ଏହା ଥିଲା କଚ୍ଛ ସୈନ୍ୟମାନଙ୍କର ପାଣିରେ ପଶିବାର ସଙ୍କେତ । ପରେ ପରେ ସେ ମଧ୍ୟ ଅଦୃଶ୍ୟ ହୋଇଗଲା । ଗୋଟିଏ ପରେ ଗୋଟିଏ ଏପରି ତିନିଶହ ଯାକ ସମସ୍ତେ ଚୁପ୍‌ଚାପ୍ ପାଣି ଭିତରକୁ ଗଲେ ।

ଏହି ସବୁ କାର୍ଯ୍ୟ ଏଭଳି କୌଶଳପୂର୍ଣ୍ଣ ଭାବରେ ହେଲା, ଯାହା ଫଳରେ କି ଖାଇ ଆର ପାଖରେ ଥିବା ହମୀରର ସୈନ୍ୟମାନେ ଏହାର ଗନ୍ଧ ସୁଦ୍ଧା ଜାଣିଲେ ନାହିଁ । ଶେଷ କଚ୍ଛି ଯୋଦ୍ଧା ସମୁଦ୍ରକୁ ଯିବା ପରେ ଦୁର୍ଗ ଭିତରେ ନିଆଁ ଓ ଆଲୁଅ ଜଳିବାକୁ ଦିଆଗଲା ।

ଲଖାନୀ ଅତି କଷ୍ଟକର କାର୍ଯ୍ୟ ହାତକୁ ନେଇଥିଲେ । ପ୍ରାୟ ଏକ କୋଶ ଦୂରତା ସମୁଦ୍ରରେ ଅନ୍ଧାର ରାତିରେ ପହଁରି ଓ ଆସୁଥିବା ବୋଇତ ପାଖରେ ପହଞ୍ଚି ସେଗୁଡ଼ିକ ଉପରକୁ ଉଠିବା ଅତି କଷ୍ଟକର । ଏହି ବୋଇତ ଗୁଡ଼ିକ ଖମ୍ଭାତରୁ ଆସିଥିଲେ ସୁଦ୍ଧା ଏଗୁଡ଼ିକ କୌଣସି ବ୍ୟବସାୟୀଙ୍କର ବା ଶତ୍ରୁ ପକ୍ଷର ତାହା ସେ ଠିକ୍ ଭାବେ ଜାଣିନାହାନ୍ତି ।

ବହୁ ସମୟ ପର୍ଯ୍ୟନ୍ତ ଖିମଦେବ ଅଧୀର ହୋଇ ସମୁଦ୍ର ଆଡ଼କୁ ଅନାଇ ରହିଲେ । କଣ ହେଉଛି ତାହା ଜାଣିବାପାଇଁ ସେ ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇଥାନ୍ତି । ବହୁ ଥର ତାଙ୍କ ମନରେ ନୈରାଶ୍ୟ ଦେଖାଦେଲା । ଲଖାମୀ ତାଙ୍କ ଲକ୍ଷ୍ୟ ସ୍ଥାନରେ ପହଞ୍ଚିଥିବାର କୌଣସି ଲକ୍ଷଣ ସେ ଦେଖିବାକୁ ପାଇଲେ ନାହିଁ । ଗଭୀର ଦୁଃଖରେ ଖିମଦେବ ଶୋଇବାକୁ ଯାଉଥାନ୍ତି । ଠିକ୍ ସେହିକ୍ଷଣ- ବେଳେ ସୁଦୂର ଦିଗ୍‌ବଳୟରେ ବହୁ ଆଲୋକମାଳା ଉଠୁଥିବା ଓ ପଡ଼ୁଥିବା ତାଙ୍କର ଦୃଷ୍ଟିଗୋଚର ହେଲା । ଏହା ଦେଖି ଆନନ୍ଦଭରା ହୃଦୟରେ ଖିମଦେବ କହିଲେ, "ସାବାସ୍ କାମା ! ଖୁବ୍ କରିଛ !"

ସଙ୍ଗେ ସଙ୍ଗେ ସମୁଦ୍ର କୂଳରେ ଥିବା ହମୀରର ସୈନ୍ୟବାହିନୀ ଚଞ୍ଚଳ ହୋଇଉଠିଲେ । ରଣଦୁନ୍ଦୁଭି ବାଜି ଉଠିଲା ଓ ଘୋଡ଼ାମାନଙ୍କ ଟାପୁ ଶବ୍ଦରେ ଚତୁର୍ଦ୍ଦିଗ କମ୍ପମାନ ହେଲା । ଦୁର୍ଗ ମଧ୍ୟରେ ଧନୁର୍ଦ୍ଧାରୀ ସୈନ୍ୟମାନେ ଆଦେଶ ପାଇ ଶର କ୍ଷେପଣ କରିବାକୁ ପ୍ରସ୍ତୁତ ହୋଇ ଉଠିଲେ । ଶେଷକୁ ଆଲୋକମାଳା ଅଦୃଶ୍ୟ ହେଲା । କ୍ଷଣକ ପାଇଁ ହମୀରର ଛାଉଣୀରେ ଦେଖାଦେଲା ନୀରବତା । ଆନନ୍ଦଭରା ହୃଦୟରେ ଖିମଦେବ ନିଜ କୋଠରୀକୁ ଗଲେ ।

× × × ×

···ରାତି ପାହିବା ପରେ ଶିବରାଶି ସ୍ନାନ ସାରି ଓ ନିଜ ପୂଜା ଶେଷ କରି ପ୍ରଭୁ ସୋମନାଥଙ୍କ ଅର୍ଚ୍ଚନା କରିବା ଉଦ୍ଦେଶ୍ୟରେ ମନ୍ଦିରକୁ ଗଲେ ଓ ଅର୍ଚ୍ଚନା ଶେଷ କରି ଘରକୁ ଫେରି ସିଦ୍ଧେଶ୍ୱର ଦ୍ୱାରା ପ୍ରସ୍ତୁତ ଖାଦ୍ୟ ଖାଇବାକୁ ବସିଲେ ।

ସେଦିନର ଆରାଧନା ଫଳରେ ତାଙ୍କର ପୁଞ୍ଜୀଭୂତ ବହୁ ଭୁଲ ଧାରଣା ଦୂର ହୋଇଗଲା । ଦୁର୍ଗ ମଧ୍ୟରେ ଶୈଳ ରୂପରେ ଯେ ତ୍ରିପୁରସୁନ୍ଦରୀ ବୁଲୁଛନ୍ତି, ଏ ସମ୍ପର୍କରେ ତାଙ୍କର ଆଉ କୌଣସି ସନ୍ଦେହ ନାହିଁ । ତାହାଛଡ଼ା ଯେପର୍ଯ୍ୟନ୍ତ ଠାକୁରାଣୀଙ୍କର ବନ୍ଦ କରାଯାଇଥିବା ପୂଜା ପୂର୍ଣ୍ଣ ନହୋଇଛି, ସେ ପର୍ଯ୍ୟନ୍ତ ହମୀରକୁ ପରାସ୍ତ କରିବା ଅସମ୍ଭବ ଓ ଯୁଦ୍ଧ ଏହିପରି ଚାଲିବା ଅନିବାର୍ଯ୍ୟ ବୋଲି ତାଙ୍କର ଧାରଣା ହେଲା । କିନ୍ତୁ ଥରେ ମହାମାୟାଙ୍କ ପୂଜା ସଂପୂର୍ଣ୍ଣ ହେଲେ ସେ ଶୈଳର ଶରୀର ଛାଡ଼ିବା ନିଶ୍ଚିତ । ତାହାହେଲେ ଚିରାଚରିତ ପ୍ରଥା ଅନୁଯାୟୀ ଶିବରାଶି ଶୈଳାଙ୍କ ସେବେସବା ହେବା ଅବଶ୍ୟମ୍ଭାବୀ । ଏହି ଘଟଣା ଯେ ନିଶ୍ଚୟ ଘଟିବ ଏହା ତାଙ୍କର ବଦ୍ଧ ଧାରଣା ହେଲା ।

ନିଜର ଇନ୍ଦ୍ରିୟ, କ୍ରୋଧ ଓ ଇଚ୍ଛାକୁ ସଂଯତ କରିଥିବା ସାଧୁ ପ୍ରକୃତିର ଲୋକ ପକ୍ଷରେ ଏହା କିଛି ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ । ତାଙ୍କ ଜୀବନଟାସାକ ତ୍ୟାଗପୂତ ହୋଇ ଆସିଛି । ତ୍ରିପୁରସୁନ୍ଦରୀଙ୍କ ପୂଜା ପୂର୍ଣ୍ଣ କରିବାପାଇଁ ସେ ସବୁ ପ୍ରକାର ତ୍ୟାଗ ପାଇଁ ସବୁବେଳେ ପ୍ରସ୍ତୁତ ହୋଇ ଆସିଛନ୍ତି । ଏହାହିଁ ତାଙ୍କର ଶ୍ରେଷ୍ଠ କର୍ତ୍ତବ୍ୟ ।

ସେ ଆସ୍ତେ ଆସ୍ତେ ପ୍ରଭୁଙ୍କ ମନ୍ଦିରକୁ ଯାଇ ଖମ୍ବର ଆଡ଼ୁଆଳରେ ଲୁଚିଲାପରି ବସିଲେ । ପ୍ରଭୁ ସୋମନାଥଙ୍କ ଆଗରେ ଗୋଟିଏ ଘ୍ରେଟ ତେଲ ଦୀପ ଜଳୁଥାଏ । କିଛି କ୍ଷଣ ପରେ ଖ୍ୱାତହସ୍ତ ଭାବେ ଚୌଲା ସେଠାରେ ଆସି ପହଞ୍ଚିଲା । ପ୍ରଭୁଙ୍କ ପାଦ ତଳେ ପଡ଼ି, ତାହା ପରେ ତାଙ୍କ ସମ୍ମୁଖରେ ନାଚିଲା । ଶିବରାଶି ସେଠାରେ ବସିରହି ତାହାର ଶରୀରର ପ୍ରତ୍ୟେକ ଅଂଶର ସୌନ୍ଦର୍ଯ୍ୟରେ ନିଜକୁ ଭୁଲିଗଲେ । ସତେ, ଚୌଲା ଯେପରି ସୁନ୍ଦର ଦିଶୁଛି, ଏହା ତାହାର ନିଜର ସୌନ୍ଦର୍ଯ୍ୟ କେବେହେଲେ ନୁହେଁ । ଏହାତ ଦେବୀ ମହାମାୟୀଙ୍କର ସୌନ୍ଦର୍ଯ୍ୟ ! ଦେବୀଙ୍କର ସେହି ଅପୂର୍ଣ୍ଣ ପୂଜା କଥା ତାଙ୍କ ମନକୁ ଆସି ତାଙ୍କର ପ୍ରତ୍ୟେକ ପ୍ରତ୍ୟଙ୍ଗ ଥରିଉଠିଲା ।

ମହାମାୟୀଙ୍କ ପୂଜା ଯେପରି ଶେଷ ହୁଏ, ସେଥିପାଇଁ ଶିବରାଶି ବଦ୍ଧପରିକର ହେଲେ । ନୃତ୍ୟ ଶେଷ ହେଲା । ସରଳ, ଭାବପୂର୍ଣ୍ଣ ଓ ବାଳିକା-ସୁଲଭ ଢ଼ଙ୍ଗରେ ଚୌଲା ପ୍ରଭୁ ସୋମନାଥଙ୍କୁ ଖୁସି କରିବାକୁ ଚେଷ୍ଟା କଲା । ଶିବରାଶି ସେହି ମୁହୂର୍ତ୍ତରେ ମହାମାୟୀଙ୍କ ପୂଜା ସମ୍ପୂର୍ଣ୍ଣ କରିବାକୁ ପ୍ରଲୋଭିତ ହେଲେ । କିନ୍ତୁ ଆବଶ୍ୟକ ଗୀତମୀତ ବିନା ପୂଜା ସମ୍ପୂର୍ଣ୍ଣ ହୋଇପାରିବ ନାହିଁ ବୋଲି ହୃଦୟଙ୍ଗମ କରି ସେ ନିଜକୁ ସଂଯତ କରିନେଲେ ।

ଚୌଲା ଆସ୍ତେ ଆସ୍ତେ ତାର ଘରକୁ ଫେରିଗଲା । ଶିବରାଶି ମଧ୍ୟ ତା ପଛେ ପଛେ ଗଲେ । ପୂଜା ସମ୍ପୂର୍ଣ୍ଣ କରିବା ପାଇଁ ସେ ବଦ୍ଧପରିକର ହୋଇ-ଥିବାରୁ କେଉଁ ଦିନ ଓ କିପରି ଭାବରେ ତାହା କରିବାକୁ ହେବ, ସେହି ବିଷୟ ତାଙ୍କ ମନରେ ଖେଳୁଥାଏ । ଚୌଲା ପଛେ ପଛେ ସେ ଅନ୍ଧାରରେ ଯାଉଥିଲେ ସୁଦ୍ଧା ନୀରବରେ ତ୍ରିପୁରସୁନ୍ଦରୀଙ୍କର ପ୍ରତ୍ୟେକ ପୂଜା କରିଚାଲିଥାନ୍ତି ।

ଚୌଲା ଦ୍ରୁତଗତିରେ ଘରର ଛାତ ଉପରକୁ ଚାଲିଗଲା—ସତେ ଯେପରିକି ତା ଗୋଡ଼ରେ ଡେଣା ଲାଗିଛି ! ମହାମାୟୀଙ୍କ ପାଦରେ ଡେଣା ନ ଲାଗିଲେ ଆଉ ଲାଗିବ କେଉଁଠି ? ଚୌଲା ଭୀମଦେବଙ୍କ କୋଠରୀ ଆଡ଼କୁ

ଗଲା । ଏହା ଦେଖି ଶିବରାଣୀ ଆଶ୍ଚର୍ଯ୍ୟ ହୋଇଗଲେ । ସେ ତାହା ପଛେ ପଛେ କାନ୍ଥ ଆଡ଼ ଆଲରେ ଗଲେ । ବିନା କାରଣରେ ଯେ ଦେଖା ମହାମାୟା କୁଆଡ଼େ ଯିବେ ନାହିଁ, ଏହା ନିଶ୍ଚିତ କଥା । ସ୍ତୁପ ଉପରେ ଅନ୍ଧାରରେ ଗୋଟିଏ ଲୋକ ଠିଆ ହୋଇଥିଲା । ସେ ହେଉଛନ୍ତି ଖ୍ରାମଦେବ । ତାଙ୍କ ଛଡ଼ା ଆଉ କାହାର ଏପରି ଆକର୍ଷଣୀୟ ଚେହେରା ହୋଇପାରେ ?

ଉତ୍କଣ୍ଠାରେ ଶୈଳ କହିପକାଇଲା, "ମହାରାଜ, କେଉଁଠି ଆପଣ ?"

"ମୁଁ ଏଇଠାରେ ତୁମକୁ ଅପେକ୍ଷା କରୁଛି" ବୋଲି ଜବାବ ଦେଲେ ଖ୍ରାମଦେବ । ଉଭୟେ ପରସ୍ପରକୁ ଆଲିଙ୍ଗନ କରି ଏକ ହୋଇଗଲେ । ନିଶ୍ଚୁଳ ଅନ୍ଧାରରେ ସେମାନଙ୍କ ମଧ୍ୟରେ ବିନିମୟ ହେଉଥିବା ଚୁମ୍ବନର ଶବ୍ଦ ପରିଷ୍କାର ଶୁଣାଗଲା ।

ରାଣୀଜୀ ଏ ଦୃଶ୍ୟ ଦେଖି କ୍ରୋଧରେ ଜଳି ଉଠିଲେ । ତାଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲାପରି ଲାଗିଲା । ତାଙ୍କର ମନେହେଲା ତାଙ୍କ ଆଗରେ ଭୟଙ୍କର ପାପ ଘଟିଯାଉଛି । ଖ୍ରାମଦେବଙ୍କ ଓଷ୍ଠ ଜଗଜ୍ଜନନୀ ମହାମାୟାଙ୍କ ଓଷ୍ଠ ସ୍ପର୍ଶ କଲା !

ଏହି ଦୁର୍ବୃତ୍ତ ଚାଲୁକ୍ୟ ରାଜାର ମସ୍ତକରେ ଦେବାଧିଦେବଙ୍କର କୋପାଗ୍ନି ବୃଷ୍ଟି ହେଉ ବୋଲି କାମନା କରି ଭକ୍ତଶିରୋମଣି ଶିବରାଣୀ କିଛି ନଦେଖିଲା ପରି ନିଜ ଘରକୁ ଚାଲିଗଲେ । ଯେଉଁ ପାପୀ ମହାମାୟାଙ୍କୁ ଅଶୁଦ୍ଧ କରିଛି ସେ ମୁହୂର୍ତ୍ତେ ସୁଦ୍ଧା ବଞ୍ଚିବା ଉଚିତ ନୁହେଁ ।

## ୩୮

# କର୍ମତତ୍ପରତା

ପୂର୍ବ ଅଭ୍ୟାସବଶତଃ ଶିବରାଣୀଙ୍କ ପାଦ ସ୍ୱତଃ ଗୁରୁଦେବଙ୍କ ଆବାସ ଆଡ଼କୁ ପଡ଼ିଲା । ଏକ ଭୟାବହ କାଣ୍ଡ ଘଟିଯାଇଛି । ଏହା ଫଳରେ ପ୍ରତ୍ୟେକ ଲୋକ ଉପରେ ଅଭିଶାପ ପଡ଼ିବ । ଏପରି ଅନ୍ୟାୟ କାର୍ଯ୍ୟ ପ୍ରଭୁ ସୋମନାଥଙ୍କର ପୁଣ୍ୟ ବିକେଶ୍ଥଳୀରେ ଘଟିପାରେ ବୋଲି ସେ କେବେ କଳ୍ପନା କରିନଥିଲେ । ଦରକାର ପଡ଼ିଲେ ଜୀବନ ଦେଇ ଏ ପାପ ଧୋଇବାକୁ ପଡ଼ିବ । ସେଥିପାଇଁ

କଠୋର ପ୍ରାୟଶ୍ଚିତ ଦରକାର । ଦେବୀ ମହାମାୟାଙ୍କ ପବିତ୍ରତା ଯେ କୌଣସି ମତେ ଅକ୍ଷୁଣ୍ଣ ରଖିବା ନିତାନ୍ତ ଆବଶ୍ୟକ ।

ହଠାତ୍ ଶିବରାଶିଙ୍କ ପାଦ ଅଟକି ଗଲା । ଗୁରୁଜୀଙ୍କ ପାଖକୁ ସେ କାହିଁକି ଯିବେ ? ସବୁ ଶୁଣି ସେ ହସିଦେବେ । ହୁଏତ ସେ କହିପାରନ୍ତି ଯେ ଚୌଲା ଜଣେ ସାଧାରଣ ନର୍ତ୍ତକୀ ବାଳିକା ଛଡ଼ା ଆଉ କିଛି ନୁହେଁ । ତାହାର ଶରୀରରେ ଦେବୀ ତ୍ରିପୁରସୁନ୍ଦରୀ ଥିବା ତାଙ୍କ ସାଂସାରିକ ଦୃଷ୍ଟିରେ ସେ ଦେଖିପାରିନାହାନ୍ତି । ଆବହମାନକାଳରୁ ଚାଲି ଆସୁଥିବା ଦେବୀଙ୍କର ପୂଜା ତାଙ୍କର ନିର୍ଦ୍ଦେଶରେ ବନ୍ଦ ହୋଇଛି ଓ ମନ୍ଦିର ଦ୍ୱାର ତାଙ୍କର ଆଦେଶରେ ବନ୍ଦ ହୋଇଛି ।

ଶିବରାଶିଙ୍କ ଦୃଷ୍ଟିରେ ସର୍ବଜ୍ଞ ଯଥେଷ୍ଟ ନ୍ୟୂନ ହୋଇଯାଇଛନ୍ତି । ବର୍ଷ ବର୍ଷ ଧରି ଏକ ସାଧାରଣ ନର୍ତ୍ତକୀ ଗଙ୍ଗାକୁ ସ୍ତ୍ରୀ ଓ ତାର ଝିଅ ଚୌଳାକୁ ନିଜର ଝିଅ ଭାବରେ ନେଇ ସେ ଗୃହସ୍ଥ ପରି ଚାଲି ଆସୁଛନ୍ତି । ନିଜର କୃତଜ୍ଞତାର ନିଦର୍ଶନ ସ୍ୱରୂପ ଏବଂ ତାଙ୍କର ପାଣ୍ଡିତ୍ୟ ତଥା ପ୍ରଭୁ ସୋମନାଥଙ୍କ ପ୍ରତି ଭକ୍ତି ଯୋଗୁଁ କେବଳ ଶିବରାଶି ସର୍ବଜ୍ଞଙ୍କୁ ଯଥେଷ୍ଟ ଭକ୍ତି କରୁଥିଲେ । କିନ୍ତୁ ଯେଉଁ ବ୍ୟକ୍ତି ଧର୍ମଗ୍ରନ୍ଥକୁ ତଥା ପରମ୍ପରାକୁ ଅବଜ୍ଞା କରିପାରନ୍ତି, ତାଙ୍କୁ ଶିବରାଶି କିପରି ଭକ୍ତି ଦେଖାଇବେ ? ପ୍ରକୃତରେ କହିବାକୁ ଗଲେ ଗୁରୁ ଜଣେ ବୃଦ୍ଧ ଓ ଦୁର୍ବଳ ସାଧାରଣ ମନୁଷ୍ୟ ମାତ୍ର । ଶିବରାଶିହିଁ ପ୍ରକୃତ ତପସ୍ୟା କରୁଛନ୍ତି ।

ଶିବରାଶି ଭାବୁଛନ୍ତି, ନିଜର ଆସନ ସୁଦୃଢ଼ କରିବା ଲକ୍ଷ୍ୟରେ ବୃଦ୍ଧ ଗଙ୍ଗସର୍ବଜ୍ଞ ଭୀମଦେବଙ୍କୁ ଗାଦିରେ ବସାଇଛନ୍ତି ଓ ସେହି ଉଦ୍ଦେଶ୍ୟ ଫଳବତୀ କରିବା ନିମନ୍ତେ ଭୀମଦେବଙ୍କୁ ଯାହା କିଛି ଇଚ୍ଛାନୁସାରେ କରିବାକୁ ଛାଡ଼ି ଦେଇଛନ୍ତି । ଏଭଳି ବ୍ୟକ୍ତିକୁ ସମ୍ମାନ ବା ଶ୍ରଦ୍ଧା ଅର୍ପଣ କରିବା ପାଶୁପତ ସଂପ୍ରଦାୟ ପ୍ରତି ବିଶ୍ୱାସଘାତକତା କରିବା ସଙ୍ଗେ ସମାନ । ଏହି ଗୁରୁ ଶିଷ୍ୟ ସଂପର୍କ ତାଙ୍କୁ ଛିନ୍ନ କରିବାକୁ ପଡ଼ିବ । ଶିବରାଶି ଏହି କଥା ଭାବି, ଗୁରୁଦେବ ପିଲାଦିନେ ତାଙ୍କୁ ଦେଇଥିବା ରୁଦ୍ରାକ୍ଷ ମାଳାଟି ବେକରେ କାଢ଼ି ଟାଣି ଛିଣ୍ଡାଇ ଦେଲେ । ବର୍ତ୍ତମାନ ପ୍ରଭୁ ଲକୁଲେଶଙ୍କ ବ୍ୟତୀତ ତାଙ୍କ ଗୁରୁ ଆଉ କେହି ନୁହନ୍ତି । ତାଙ୍କ ଛଡ଼ା ଆଉ କାହାରି ସର୍ବ ଶ୍ରେଷ୍ଠ ସ୍ଥାନ ପାଇବାର ଅଧିକାର ନାହିଁ । ଏବଠାରୁ ନିଜର ପ୍ରାୟଶ୍ଚିତ ବଳରେ ପାଶୁପତ ସଂପ୍ରଦାୟକୁ ରକ୍ଷା କରିବା ହେବ ତାଙ୍କର ପରମ କର୍ତ୍ତବ୍ୟ ।

ସର୍ବଜ୍ଞଙ୍କ ସନ୍ଧାନ ଦେଖା ନକରି ଶିବରାଶି ଫେରିଗଲେ । ତାଙ୍କର ମନ ସେ ସ୍ଥିର କରିନେଲେଣି । ନିଜର କମ୍ବଳଟି ଘୋଡ଼େଇ ହୋଇ ସେ ଆସ୍ତେ ଆସ୍ତେ ପଛକୁ ଫେରିଗଲେ । ନଅଁ ଗୃହପାଖେ ବସିଥିବା ସୈନ୍ୟମାନେ ତାଙ୍କୁ ଦୂରରୁ ଦେଖିଲେ । ତାଙ୍କର ଲମ୍ବ ବାଳ ଓ ଉଜ୍ଜ୍ୱଳ ଆଖିରେ ସେମାନେ ଏପରି ବିହ୍ୱଳ ହୋଇଗଲେ ଯେ, ପ୍ରଭୁ ସୋମନାଥ ନିଜେ ଯୁଦ୍ଧ ପ୍ରସ୍ତୁତି ଦେଖିବା ପାଇଁ ଆସିଛନ୍ତି ବୋଲି ସେମାନେ ଭାବିଲେ । ତାଙ୍କର ଚେହେରା ଏପରି ଉଜ୍ଜ୍ୱଳ ଦେଖାଯାଉଥିଲା ଯେ, ଯେଉଁ ସୈନ୍ୟମାନଙ୍କୁ ହମୀରର ବିରାଟ ସୈନ୍ୟବାହିନୀ ଚମକେଇ ପାରିନଥିଲା, ତାଙ୍କର ଚେହେରା ଦେଖି ସେମାନେ ଥରିବାକୁ ଲାଗିଲେ । କେତେକ ନିଜନିଜର କମ୍ବଳ ତଳେ ମୁହଁ ଲୁଚେଇଲେ ଓ ଅନ୍ୟମାନେ ଭକ୍ତିରେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ଆଉ କେତେକ "ନମଃ ଶିବାୟ" ଧ୍ୱନି ଦେଇ ଉପୂରେ ସ୍ୱାଗତ କଲେ । କୌଣସି ଆଡେ ଦୃଷ୍ଟି ନପକାଇ ଶିବରାଶି ଦୂରକୁ ଚାଲିଗଲେ ।

ଭୃଗୁ କଚ୍ଛ (ଆଧୁନିକ ବ୍ରୋଚ) ର ଶାସକ ଦଣ୍ଡା ଚାଲୁକ୍ୟ ସେତେବେଳକୁ ନିଜର ସୈନ୍ୟ ସାମନ୍ତଙ୍କ ସହ ଦୁର୍ଗ ଭିତରେ କରା ଯାଇଥିବା ପ୍ରତିରକ୍ଷା ବ୍ୟବସ୍ଥାମାନ ବୁଲି ପରିଦର୍ଶନ କରୁଥିଲେ । ଏହି କାର୍ଯ୍ୟର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ଥିଲା ଏବଂ ସେ ନିଜର କର୍ତ୍ତବ୍ୟ ଗମ୍ଭୀର ଆନ୍ତରିକତାର ସହ ସମ୍ପାଦନ କରୁଥିଲେ । ତାଙ୍କୁ ବୟସ ପ୍ରାୟ ୩୫ ବର୍ଷ । ଦଣ୍ଡା ଥିଲେ ଜଣେ ଖୁସି ମିଜାଜର ଲୋକ । ସେ ପାଟଣର ଶାସନ କର୍ତ୍ତାଙ୍କ ଆଦେଶରେ କାର୍ଯ୍ୟ କରୁଥିଲେ ଏବଂ ନାମକୁ ମାତ୍ର ନିଜକୁ ଶାସକ ବୋଲଉଥିଲେ । ହମୀରର ଆକ୍ରମଣରେ ପ୍ରତିରୋଧ କରିବା ପାଇଁ ନିଜର ସୈନ୍ୟବାହିନୀ ସହ ଆସି ଯୋଗଦେବାକୁ ଭୀମଦେବ ତାଙ୍କୁ କହିଥିଲେ । ନିଜର ରାଜପ୍ରାସାଦ ତଥା ନାରୀମାନଙ୍କର ସୁଖ ସମ୍ଭୋଗ ତ୍ୟାଗ କରି ଭୀମଦେବଙ୍କ କଥା ମାନିବା ଛଡ଼ା ଦଣ୍ଡାଙ୍କ ପକ୍ଷରେ ବିକଳ୍ପ ଉପାୟ ନଥିଲା ।

ଯେଉଁ ଦୁର୍ଗ ପ୍ରାଚୀରର ଦୁଇ ପାଖରେ ଦୁଇ ପକ୍ଷର ସୈନ୍ୟମାନେ ପରସ୍ପରର ସମ୍ମୁଖୀନ ହୋଇ ଠିଆ ହୋଇଛନ୍ତି, ସେହି ଦୁର୍ଗକୁ ଏହି ଶୀତହିନଆ ଅନ୍ଧାର ରାତିରେ ଜଗିବା ଦାୟିତ୍ୱ ଦଣ୍ଡାଙ୍କୁ ଦିଆଯାଇଥିଲା । ସେ ନିଜେ ଯେବେ ନିଜର କର୍ତ୍ତା ହୋଇଥାନ୍ତେ ତେବେ ସଙ୍ଗେ ସଙ୍ଗେ ତାଙ୍କ ରାଜଧାନୀକୁ ଚାଲିଯାଇଥାନ୍ତେ । କିନ୍ତୁ ସେ ଆଜି ଭୀମଦେବଙ୍କ କବଳରେ । ସେ ଭୀମଦେବଙ୍କୁ ଅତିମାତ୍ରାରେ ଭୟ କରୁଥିବାରୁ ଫେରି ଯାଇ ପାରୁ ନାହାନ୍ତି, ମାତ୍ର ରହିବାକୁ ଆଦୌ

ଇଚ୍ଛା ନାହିଁ । ଯେତେବେଳେ ତାଙ୍କ ସାଆନ୍ତ-ବାପାଙ୍କୁ ଭୀମଦେବଙ୍କ ସାଆନ୍ତ-ବାପା ଗାଦିରେ ବସାଇଥିଲେ, ବର୍ତ୍ତମାନର କଷ୍ଟ ବିଗ୍ଭରକଲେ ତାହା ଗୋଟିଏ ଦୁଃସମୟ ଥିଲି ବୋଲି ତାଙ୍କର ଏବେ ମନେହେଲା ।

ଶିବରାଶି ତାଙ୍କ ଆଡ଼କୁ ଆସୁଥିବାର ସେ ଦୂରରୁ ଲକ୍ଷ୍ୟ କଲେ । ତାଙ୍କ ଗ୍ଭତି ଥରିଉଠିଲା । ଏହା ପ୍ରଭୁ ସୋମନାଥଙ୍କ ଅନ୍ତର୍ହିତ ଶକ୍ତି ବୋଲି ସେ ପ୍ରଥମେ ଭାବିଲେ । ତାହାପରେ ଏହା କାଳଭୈରବ ବୋଲି ତାଙ୍କର ଧାରଣା ହେଲା । ପଳାଇଯିବା ପାଇଁ ତାଙ୍କର ଇଚ୍ଛା ହେଲା । କିନ୍ତୁ ଅନ୍ୟମାନଙ୍କ ନିକଟରେ ତାଙ୍କର ସମ୍ମାନ ବଜାୟ ରଖିବା ଦୃଷ୍ଟିରୁ ସେ ନିଜକୁ ସଂଯତ କଲେ ।

ଶିବରାଶି ନିକଟବର୍ତ୍ତୀ ହୋଇଯିବାରୁ ସେ ତାଙ୍କୁ ଚିହ୍ନି ପାରିଲେ । ପ୍ରାୟ ତିନି ବର୍ଷ ତଳେ ପୁଣ୍ୟତୋୟା ନର୍ମଦାରେ ସ୍ନାନ କରିବା ଉଦ୍ଦେଶ୍ୟରେ ରାଶିଜୀ ଭୃଗୁ କଚ୍ଛକୁ ତୀର୍ଥ ଯାତ୍ରା କରିଥିଲେ । ସେହି ସମୟରେ ଦଦ୍ଦା ବହୁଥର ରାଶିଜୀଙ୍କ ପଦତଳେ ବସି ତାଙ୍କଠାରୁ ଧର୍ମୋପଦେଶମାନ ଶୁଣିଛନ୍ତି । ଗୁରୁ ରାଶିଜୀଙ୍କ ଆଶୀର୍ବାଦରୁ ତାଙ୍କ ସ୍ତ୍ରୀଙ୍କର ପ୍ରଥମେ ଗୋଟିଏ ପୁତ୍ର ସନ୍ତାନ ଜାତ ହୋଇ ପରେ ପରେ ପାଞ୍ଚଟି କନ୍ୟା ହେଲା । ଦଦ୍ଦା ଶିବରାଶିଙ୍କୁ ବର୍ତ୍ତମାନ ଦେଖି ତାଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ କଲେ ଓ ଶିବରାଶି ମଧ୍ୟ ତାଙ୍କୁ ଆଶୀର୍ବାଦ କଲେ ।

ଦଦ୍ଦା ସୈନ୍ୟ ପରିଦର୍ଶନ କରୁଥିବା ସମୟରେ ରାଶିଜୀ ଆସିଥିବାରୁ ତାଙ୍କର ମନରେ ଆନନ୍ଦ ଜାତ ହେଲା । ସେ ସ୍ନେହରେ ପଚାରିଲେ, "ରାଶିଜୀ, ଏହି ଦୁର୍ଦ୍ଦାନ୍ତ ଆକ୍ରମଣକାରୀ କବଳରୁ ଆମେ କେବେ ରକ୍ଷା ପାଇବୁ ବୋଲି ଆପଣ ଭାବୁଛନ୍ତି ?"

ଶିବରାଶି ଏ ପ୍ରଶ୍ନର କୌଣସି ଜବାବ ଦେଲେ ନାହିଁ । କିଛି କ୍ଷଣ ପାଇଁ ଉଭୟେ ନୀରବରେ ଚ୍ଛଲିଲେ । ଦଦ୍ଦା ପୁଣି ପଚାରିଲେ, "ଗୁରୁମହାରାଜ, ଏ ଯୁଦ୍ଧର ପରିଣତି କଣ ହେବ ବୋଲି ଆପଣ ଭାବୁଛନ୍ତି ?"

ଶିବରାଶି ଏଥର ଦଦ୍ଦାଙ୍କ ଉପରେ ଦୃଷ୍ଟି ନିବଦ୍ଧ ରଖି କହିଲେ, "ପରିଣତି ?"

ଦଦ୍ଦା କହିଲେ, "ହଁ, ରାଶିଜୀ ! ଭବିଷ୍ୟତ ଘଟଣା ଆପଣ ଜାଣିପାରନ୍ତି । କଣ ହେବ ବୋଲି ଆପଣ ଭାବୁଛନ୍ତି ?"

ଦୂର ଦିଗ୍‌ବଳୟକୁ ଚ୍ଛହିଁ ଶିବରାଶି କହିଲେ, " ଯେଉଁ ମାନେ ଦେବୀ ମହାମାୟାଙ୍କର ଅପମାନ କରିଛନ୍ତି, ସେମାନେ କୁକୁର ଭଳି ମରିବେ ।"

ଦଦ୍ଧା ଖୁସି ହୋଇ ପଚାରିଲେ, "ହମୀର ?"

ଶିବରାଣି ହଁ କରିବେ ବୋଲି ଦଦ୍ଧା ଆଶା କରିଥିଲେ । ଶିବରାଣି କିଛି କ୍ଷଣ ନୀରବ ରହି ଦଦ୍ଧାଙ୍କୁ ରାଗରେ ଚାହିଁଲେ । ଦଦ୍ଧା ହାତ ଯୋଡ଼ି ଠିଆ ହେଲେ । ଶିବରାଣି ନରମ ସ୍ୱରରେ କହିଲେ, "ନା, ଭୀମ !"

ସତେ ଯେପରି ବଜ୍ରନାଳ ଏକ ଶକ୍ତ ଧକ୍କା ମାରିଲା, ଦଦ୍ଧା ସେହିପରି ସ୍ତମ୍ଭୀଭୂତ ହୋଇଗଲେ ।

"ପ୍ରଭୁ ସୋମନାଥଙ୍କର ଅର୍ଦ୍ଧାଙ୍ଗିନୀ ତାଙ୍କୁ ଶାପ ଦେଇଛନ୍ତି" ବୋଲି କହି ଶିବରାଣି ସେଠାରୁ ଚଞ୍ଚଳ ଚଞ୍ଚଳ ଚାଲିଗଲେ । ଦଦ୍ଧା ବାକ୍‌ଶକ୍ତିହୀନ ହୋଇ ରାଣିଙ୍କ ପଛକୁ ଅନାଇ ରହିଲେ । ଚିନ୍ତା କରିବାକୁ ସେ ବେଶୀ ସମୟ ପାଇଲେ ନାହିଁ ।

× × × ×

ସନ୍ଧ୍ୟୋପାଦୟ ହେବାର ଠିକ୍ ପୂର୍ବରୁ ହମୀରର ଛାଉଣୀ କର୍ମମୁଖର ହୋଇ ଉଠିଲା । ଦଦ୍ଧା କମ୍ପିତ ହାତରେ ଉଚ୍ଚ ସ୍ୱରରେ ତାର ଶଙ୍ଖ ଧ୍ୱନି କରିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଦ୍ୱାରର ଜଗୁଆଳମାନେ ସଙ୍କେତ ପାଇ ସତର୍କ ଧ୍ୱନି କଲେ । ଭୀମଦେବ ପ୍ରସ୍ତୁତ ହେବାକୁ ଉଠି ବସିଲେ । ତାଙ୍କ ତକିଆ ଉପରେ ଆଶ୍ରିତ କମଳ ମୃଣାଳ ପରି କୋମଳ ହାତ ଦୁଇଟି ଆଉଜିକୁ ନଚାହିଁ, ସେ ବିଛଣାରୁ ଡେଇଁପଡ଼ି ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ହେଲେ । ସେ ନିଜର ଶଙ୍ଖ ଧ୍ୱନି କରି ଦୁର୍ଗର ଫାଟକ ଦେଶକୁ ଗଲେ । ଠିକ୍ ସେହି ସମୟରେ ରାଓ ମଧ୍ୟ ଅସ୍ତ୍ର ଶସ୍ତ୍ରରେ ପୂର୍ଣ୍ଣଭାବେ ସଜ୍ଜିତ ହୋଇ ଆସିଲେ ଏବଂ ଏହାର ଅଳ୍ପ ସମୟ ମଧ୍ୟରେ ପରମାର ତଥା ବିମଳ ମଧ୍ୟ ଆସି ପହଞ୍ଚିଲେ । ଦୁର୍ଗର ଦ୍ୱାରଦେଶର ଗୁମ୍ଫରେ ଭୀମଦେବ ମହାରାଜା ନିଜର ଆସ୍ଥାନ ଗ୍ରହଣ କରିଥିବାରୁ ସମସ୍ତେ ସେହିଠାରେ ପହଞ୍ଚିଲେ ।

ହମୀରର ଛାଉଣୀ ଅତି ମାତ୍ରାରେ ସକ୍ରିୟ ହୋଇଉଠିଲା । ଏକ ଅବୋଧ୍ୟ ଭାଷାରେ ଉଚ୍ଚ ସ୍ୱରରେ ହୁକୁମ୍ ମାନ ଦିଆଗଲା । ଘୋଡ଼ାସବାର ସୈନ୍ୟମାନଙ୍କୁ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ କରାଗଲା । ଜଙ୍ଗଲ ପାଖ ଅଞ୍ଚଳରେ ଥିବା ହମୀରର ତମ୍ବୁ ଆଲୋକିତ ହୋଇଗଲା । ଗୋଟିଏ ବିରାଟ ଯନ୍ତ୍ର ପରି ହମୀରର ସୈନ୍ୟମାନେ ନିଜନିଜର ସୁଦୃଢ଼ ଆସ୍ଥାନ ଜମାଇଲେ ।

ଭୀମଦେବ ତାଙ୍କ ପକ୍ଷରୁ ଯୁଦ୍ଧ ଆୟୋଜନ କରିବା ପାଇଁ ମୁହୂର୍ତ୍ତେ ସୁଦ୍ଧା ସମୟ ନଷ୍ଟ କଲେ ନାହିଁ । ଏକ ଧାଡ଼ି ଧନୁର୍ଦ୍ଧାରୀ ସୈନ୍ୟ ହୁକୁମ ପାଇବା ମାତ୍ରେ

ନିଜର ଶର କ୍ଷେପଣ କରିବା ନିମନ୍ତେ ପ୍ରସ୍ତୁତ ହୋଇ ଆଗେଇ ରହିଲେ । ତାଙ୍କ ପଛରେ ସେମାନଙ୍କୁ ରକ୍ଷା କରିବା ପାଇଁ ଆଉ ଧାଡ଼ିଏ ସୈନ୍ୟ ପ୍ରସ୍ତୁତ ହୋଇ ରହିଲେ । ସେମାନଙ୍କ ପଛରେ ଆଉ ଧାଡ଼ିଏ ଅସ୍ତ୍ର ଶସ୍ତ୍ର ସଜ୍ଜିତ ରାଜପୁତ୍ ସୈନ୍ୟ ରହିଲେ ।

ଠିକ୍ ଏହି ସମୟରେ ଆସି ପହଞ୍ଚିଲେ ଗୁରୁଦେବ । ତାଙ୍କୁ ଦେଖି ଭୀମଦେବ ପ୍ରଣିପାତ କରିବାରୁ, ସେ ଆଶୀର୍ବାଦ କଲେ । ତାହାପରେ ଏକତ୍ର ହୋଇଥିବା ଶାସକମାନଙ୍କ ମସ୍ତକରେ ଗୁରୁଦେବ ବିଜୟର ଟୀକା ଲଗାଇଲେ । ଠିକ୍ ଏହି ମୁହୂର୍ତ୍ତରେ "ଜୟ ସୋମନାଥ" ଧ୍ୱନିରେ ଗଗନ ପବନ ମୁଖରିତ ହେଲା । ଅଳ୍ପ ସମୟ ପରେ ରାତ୍ରିର ଅନ୍ଧକାର ପରିବର୍ତ୍ତେ ଉଜ୍ଜ୍ୱଳ ଦିବାଲୋକ ହେଲା ଏବଂ ଭୀମଦେବ ଚତୁର୍ଦ୍ଦିଗ ସ୍ପଷ୍ଟ ଭାବେ ଦେଖିପାରିଲେ । ହମୀରର ସୈନ୍ୟବାହିନୀର ଢଙ୍ଗ ପୂରାପୂରି ବଦଳିଯାଇଛି ।

ଦୁର୍ଗର ତିନି ପାଖରେ ସୈନ୍ୟମାନେ ଧାଡ଼ି ବାନ୍ଧି ଏପରି ସଜ୍ଜିତ ହୋଇ ଠିଆ ହୋଇ ଥାଆନ୍ତି ଯେ ପ୍ରତ୍ୟେକ ସୈନ୍ୟର ଖଣ୍ଡା ଦେଖାଯାଉଥାଏ । ପ୍ରତ୍ୟେକ ସେ ନ୍ୟ ବିଶିଷ୍ଟ ପ୍ରକାର ଢାଲ ଲଗାଇଥାନ୍ତି ।

ଏମାନଙ୍କ ପଛରେ ଚୁରି ଛ ଧାଡ଼ି ଧନୁଶରବାହିନୀ ଠିଆ ହୋଇଥାନ୍ତି । ସେମାନେ ମୋଟା ଚମଡ଼ାର ପୋଷାକ ପିନ୍ଧିଥାନ୍ତି । ସେମାନଙ୍କ ଲମ୍ବା ଲମ୍ବା ଦାଢ଼ି ସେମାନେ ପିନ୍ଧିଥିବା ପୋଷାକକୁ ଢାଙ୍କି ଦେଉଥିଲା । ମୁଣ୍ଡରେ ଯେପରି କୌଣସି ପ୍ରକାର ଆଘାତ ନବାଜେ, ସେଥିପାଇଁ ପଶୁ ଚମଡ଼ାରେ ତିଆରି ଟୋପିମାନ ଲଗାଇଥାନ୍ତି ।

ଗୋଟିଏ ହୁକୁମ୍‌ରେ ଭୀମଦେବଙ୍କ ସୈନ୍ୟଙ୍କୁ ଆକ୍ରମଣ କରିବାକୁ ଦଶ ହଜାର ଶତ୍ରୁର ଶର ଉଦ୍ୟତ ହୋଇ ରହିଥାଏ । ସେମାନଙ୍କର ଠିକ୍ ପଛରେ ଏକ ଜୀବନ୍ତ ଦୁର୍ଗ ପରି ହାତୀମାନେ ଠିଆହୋଇଥାନ୍ତି । ପ୍ରତ୍ୟେକ ହାତୀ ପଛରେ ତିନି ଚୁରିଜଣ ଲେଖାଏ ଧନୁର୍ଦ୍ଧାରୀ ସୈନ୍ୟ ଠିଆ ହୋଇଥାନ୍ତି ଏବଂ ଦୁର୍ଗର ପ୍ରାଚୀର ଉପରକୁ ଯେପରି ଉଠି ପାରିବେ, ସେଥିପାଇଁ ପ୍ରତ୍ୟେକ ପାଖରେ ଗୋଟିଏ ଲେଖାଏଁ ଦଉଡ଼ିର ସିଡ଼ି ଥାଏ ।

ହମୀରର ସୈନ୍ୟବାହିନୀରେ ଅଦ୍ଭୁତ ସଂଗଠନ ଓ ଶୃଙ୍ଖଳା । ରାଓ ଏବଂ ଭୀମଦେବ ଏହି ଶକ୍ତି ଓ ସଂଗଠନକୁ ପ୍ରଶଂସାସୂଚକ ଦୃଷ୍ଟିରେ ଦେଖୁଥାନ୍ତି । ରାଓ ଚୁପ୍‌ଚାପ୍ କରି କହିଲେ, "ମହାରାଜ, ଯେବେ ଆମେ ଜିଣୁ ତେବେ ଭଗବାନଙ୍କ ଦୟାରୁହିଁ ଜିଣିବୁ ।"

"ଭଗବାନଙ୍କ ଦୟା ତଥା କ୍ଷତ୍ରିୟ କୂଳର ଦୃଢ଼ତା ହେତୁ" ମହାରାଜ ସଗର୍ବେ କହିଲେ । "ଆମ ପକ୍ଷରେ ସତ୍ୟ ଅଛି । ଆମର ପରାଜୟ କେବେ ହେବନାହିଁ ।" ଦୁର୍ଗ ଉପରୁ ତଳକୁ ଯାଉଥିବା ବେଳେ ଗୁରୁଦେବ ହସି ହସି କହିଲେ, "ସତ୍ୟର ସବୁବେଳେ ଜୟ ହୁଏ ।"

କିଛି ଦୂରରେ ଗୋଟିଏ ପ୍ରକାର ଅଦ୍ଭୁତ ଶବ୍ଦ କରି ବାଦ୍ୟ ବାଜି ଉଠିଲା । ସଙ୍ଗେ ସଙ୍ଗେ ଅନ୍ୟମାନେ ମଧ୍ୟ ବାଦ୍ୟ ବଜାଇଲେ । ତମ୍ବୁରୁ ବାହାରୁଥିବା ହମୀର ନିମନ୍ତେ ମୁସଲମାନ ସୈନ୍ୟମାନେ ରାସ୍ତା ପରିଷ୍କାର କରିଦେଲେ । ରଣଦୁନ୍ଦୁଭି ସହ ପଚିଶଟି ଘୋଡ଼ା ହମୀରର ଦୁଇ ପାଖରେ ଆସ୍ତେ ଆସ୍ତେ ଚାଲିଲେ ଏବଂ ତାଙ୍କ ପଛରେ ପଚାଶ ଷାଠିଏ ଜଣ ଅଶ୍ୱାରୋହୀ ଚାଲିଲେ ।

ବୃହତ୍କାୟ ହମୀର ଗୋଟିଏ କଳା ଘୋଡ଼ା ଉପରେ ବସିଥାଏ । ସେ ସବୁଜ ରଙ୍ଗର ପଗଡ଼ି ମୁଣ୍ଡରେ ବାନ୍ଧିଥାଏ । ତାର ଚାରି ପାଖରେ ଅଶ୍ୱାରୋହୀମାନେ ଅର୍ଦ୍ଧବୃତ୍ତ ଆକାରରେ ଧନୁଶର ସହ ପ୍ରସ୍ତୁତ ହୋଇ ରହିଥାନ୍ତି ।

ଭୀମଦେବ ତାଙ୍କ ପାଇଁ ପ୍ରସ୍ତୁତ ହୋଇ ରହିଥିବା ଘୋଡ଼ା ଉପରେ ଡେଇଁ ବସିଗଲେ ଏବଂ ତାଙ୍କ ଚାରିପାଖରେ ଏକଜୁଟ ହୋଇଥିବା ଯୋଦ୍ଧାମାନଙ୍କୁ ନିରୀକ୍ଷଣ କଲେ । ତାହାପରେ ସେ କହିଲେ, "ମୋ ନିଜର, ପାଟଣର ତଥା ପ୍ରଭୁ ସୋମନାଥଙ୍କର ସମ୍ମାନ ଆଜି ଆପଣମାନଙ୍କ ହାତରେ । ସାହସୀ ଯୋଦ୍ଧାଗଣ, ଆଜି ଆମ ଆଗରେ ସ୍ୱର୍ଗକୁ ବାଟ ପଡ଼ିଛି । ପ୍ରତ୍ୟେକ କ୍ଷତ୍ରିୟକୁ ଏକହଜାର କରି ଶତ୍ରୁ ସୈନ୍ୟ ନିହତ କରିବାକୁ ହେବ । ଯେ ପଛଘୁଞ୍ଚା ଦେବ ସେ କ୍ଷତ୍ରିୟ ନୁହେଁ ।" ଏହା ଶୁଣି ରାଓ ଓ ରାଦିତ୍ୟ ଅତିଶୟ ଭାବପ୍ରବଣ ହୋଇ-ଗଲେ । ସେମାନେ ସେମାନଙ୍କ ଘୋଡ଼ା ଉପରକୁ ଉଠିଯାଇ ନିଜର ତରବାରି ବାହାର କରି "ଭୀମଦେବ ମହାରାଜାଙ୍କର ଜୟହେଉ" ବୋଲି ଧ୍ୱନି କରି ଉଠିଲେ । ଅନ୍ୟ ସୈନ୍ୟମାନେ ଏହି ଆହ୍ୱାନର ପ୍ରତିଧ୍ୱନି କଲେ । ଭୀମଦେବ ମହାରାଜ ସନ୍ତୋଷ ପ୍ରକାଶ କରି ଓ ନିଜ ତରବାରି ଉତ୍ତୋଳନ କରି ଅତି ଉଚ୍ଚ ସ୍ୱରରେ "ଜୟ ସୋମନାଥ" ବୋଲି ଧ୍ୱନି ଦେଲେ । ସମଗ୍ର ସୈନ୍ୟବାହିନୀର ମୁଖନିସୃତ "ଜୟ ସୋମନାଥ" ପ୍ରତିଧ୍ୱନି ଠିକ୍ ଏକ ବଜ୍ରନାଦ ପରି ହମୀରର କାନରେ ବାଜିଲା ।

# ଶିବରାଣି ଗୁରୁଙ୍କୁ ଅମାନ୍ୟ କଲେ

ହମୀର ନିଜର ଦାଢ଼ିରେ ହାତ ମାରି ଦୁର୍ଗ ଆଡ଼କୁ ଚାହିଁଲା । ତାର ପୃଥିବୀ ଦଖଲ କରିବା ଯୋଜନାରେ ସେ ଏହିଭଳି ବହୁ ଦୁର୍ଗ ଆକ୍ରମଣ କରିଛି, କିନ୍ତୁ କେବେହେଲେ ଏଭଳି ସୁରକ୍ଷିତ ଏକ ପୁଣ୍ୟ ଭୂମିର ସମ୍ମୁଖୀନ ହୋଇ-ନଥିଲା । ସେ ବହୁ ଯୁଦ୍ଧରେ ଅକଥନୀୟ ଦୁଃଖ କଷ୍ଟ ସହ୍ୟ କରିଛି, କିନ୍ତୁ ଏଭଳି ଅଭିଜ୍ଞତା ତାର ପୂର୍ବରୁ କେବେହେଲେ ହୋଇନଥିଲା । ବର୍ତ୍ତମାନ ତାର ବିରାଟ ସୈନ୍ୟବାହିନୀ ଯୁଦ୍ଧ ଅପେକ୍ଷାରେ । ଶେଷ ପର୍ଯ୍ୟନ୍ତ ଲଢ଼େଇ କରିବାକୁ ପ୍ରତିଜ୍ଞାବଦ୍ଧ ଗୋଟିଏ ଶ୍ରେଷ୍ଠ କ୍ଷତ୍ରିୟ ସୈନ୍ୟବାହିନୀ ତାର ସମ୍ମୁଖରେ ଏକତ୍ରିତ । ଏହି ଦୁର୍ଗକୁ ଆସିବା ବାଟରେ ସେ ନିଜ ତରବାରିରେ ଯେପରି ହଜାର ହଜାର ରାଜପୁତ୍ର ନିପାତ କରିଛି ସେହିପରି ଏହି କ୍ଷୁଦ୍ର ସୈନ୍ୟବାହିନୀକୁ ସେ ଧ୍ୱଂସ କରିଦେବ, ଏ ସମ୍ପର୍କରେ ତାର ଟିକେହେଲେ ସନ୍ଦେହ ନଥାଏ । ତଥାପି ଏତେ ଲୋକଙ୍କର ନିପାତର ଯେ ସେ କାରଣ ହେବ, ଏହି ଚିନ୍ତାରେ ସେ କିଛି କ୍ଷଣ ଦୁଃଖିତ ହେଲା ।

ସେ ଭାବିଲା, ଆଲ୍ଲା ତାର ସପକ୍ଷରେ ଥିବା ସତ୍ତ୍ୱେ ସେ କାହିଁକି ବିନା ରକ୍ତପାତରେ ବିଜୟୀ ନ ହେବ ? ଏହି ଚିନ୍ତା ହମୀର ମନକୁ ଆସିଲା ସତ,କିନ୍ତୁ ସଙ୍ଗେ ସଙ୍ଗେ ଉଭେଇଗଲା । ସେ ଏପରି ଯଶ ଅର୍ଜନ କରିବାକୁ ଚାହେଁ ଯାହା ଅତୁଳନୀୟ ବୋଲି ଇତିହାସ ଲିପିବଦ୍ଧ କରିବ । ସୋମନାଥ ମନ୍ଦିରର ବିଜୟ ଓ ଲୁଣ୍ଠନ ଏହି ଯଶାବଳୀ ଭିତରେ ହେବ ସର୍ବଶ୍ରେଷ୍ଠ । ନିଜର ଅଭିଳଷିତ ଲକ୍ଷ୍ୟ ପୂରଣ ପଥରେ ପ୍ରତିବନ୍ଧକ ରୂପେ ଦଣ୍ଡାୟମାନ ହୋଇଛି ଏହି କ୍ଷୁଦ୍ର ସୈନ୍ୟ ବାହିନୀ । ଏହି କାଫେରମାନଙ୍କୁ ଧ୍ୱଂସ କରି ନିଜର ଯଶ ବଢ଼ାଇବା ତା ଭାଗ୍ୟରେ ଲେଖାଅଛି । ସେ "ଆଲ୍ଲା ହୋ ଆକ୍‌ବର" ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ତା ଆଖି ଉଜ୍ଜ୍ୱଳ ହୋଇଗଲା ।

ବାଦ୍ୟକାରମାନେ ସେହି ସ୍ୱରର ପ୍ରତିଧ୍ୱନି ଦେଲେ । ସଙ୍ଗେ ସଙ୍ଗେ ମୁସଲମାନ ସୈନ୍ୟବାହିନୀର ପ୍ରତ୍ୟେକଙ୍କ କଣ୍ଠରୁ "ଆଲ୍ଲା ହୋ ଆକବର" ଧ୍ୱନି ଉଚ୍ଚାରିତ ହୋଇ ଗଗନ ପବନ ପ୍ରକମ୍ପିତ ହେବାକୁ ଲାଗିଲା । ପ୍ରତ୍ୟେକ ସୈନ୍ୟ

ଦଳ ନିଜ ନିଜର ବାଜା ବଜାଇଲେ ଏବଂ ସମଗ୍ର ବାହିନୀ ବିଶାଳକାୟ ଏକ ଅଜଗର ସାପ ପରି ଆସ୍ତେ ଆସ୍ତେ ଆଗକୁ ଚାଲିଲା ।

ଭୀମଦେବ ଦୁର୍ଗର କେନ୍ଦ୍ର ଜଗଣା ଉପରୁ ଏହି ବିରାଟ ସୈନ୍ୟବାହିନୀକୁ ଦେଖୁଥାନ୍ତି । ସେ ଦେଖିଲେ ଏକ ବିରାଟ କଚ୍ଛପୀବାହିନୀ ପିଠିରେ କାଠ ପଟାର ଆବରଣ ସହ ଅଗ୍ରଗତି କଲେ । "ଅଶ୍ୱାରୋହୀଗଣ ନିକଟବର୍ତ୍ତୀ ହେଲେ ଶର ସନ୍ଧାନ କର । କଚ୍ଛପୀମାନଙ୍କୁ ଲକ୍ଷ୍ୟ କରି ଶର ନଷ୍ଟ କର ନାହିଁ"-ଏହି ଆଦେଶ ଦେଇ ଭୀମଦେବ ଓହ୍ଲାଇପଡ଼ିଲେ ।

ତାହା ପରେ ସେ ବୀରକୁ ଅନାଇ କହିଲେ, "ବିମଳ କେଉଁଠି ବୀର ? ବିମଳକୁ କହ ଶୀଘ୍ର ପଥର ସହ ସୈନ୍ୟ ଏଠାକୁ ପଠାଉ । ଏହି କଚ୍ଛପୀମାନେ ପାଣିକୁ ଓହ୍ଲାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ ଆମେ ବୁଡ଼ାଇଦେବା ଦରକାର ।" ବୀର ଭୀମଦେବଙ୍କ ଘୋଡ଼ା ଚଢ଼ି ମନ୍ତ୍ରୀ ବିମଳଙ୍କୁ ଖୋଜିବାକୁ ଚାଲିଗଲା ।

ଭୀମଦେବ ନିଜ ତୂଣୀରୁ ଶର କାଢ଼ି ତାଙ୍କ ଧନୁର୍ଦ୍ଧାରୀମାନଙ୍କୁ ହୁକୁମ ଦେଲେ, "ମୁଁ ମୋର ତୀର ନିକ୍ଷେପ କରିବା ସଙ୍ଗେ ସଙ୍ଗେ ତୁମେମାନେ ନିଜ ନିଜର ତୀର ମାରିବ, କିନ୍ତୁ ଏ କଚ୍ଛପୀମାନଙ୍କୁ ବା ଅଶ୍ୱାରୋହୀମାନଙ୍କୁ ନୁହେଁ, ବରଂ ଘୋଡ଼ାମାନଙ୍କୁ ଲକ୍ଷ୍ୟ କରି ମାରିବାକୁ ହେବ ।" କଚ୍ଛପୀମାନେ ହାତ ଓ ଗୋଡ଼ରେ ଭରାଦେଇ ଆଗକୁ ଚାଲିଲେ ଏବଂ ସେମାନଙ୍କ ପଛରେ ଚାଲିଲେ ଘୋଡ଼ା ଓ ହାତୀମାନେ । ଅଶ୍ୱାରୋହୀମାନେ ସେମାନଙ୍କ ତୀରର ଦୂରତା ଭିତରେ ପହଞ୍ଚିବା କ୍ଷଣି ଭୀମଦେବଙ୍କ ଧନୁର୍ଦ୍ଧାରୀମାନେ ତୀର ମାରି ସେମାନଙ୍କ ଘୋଡ଼ା ଗୁଡ଼ିକୁ ଜଖମ କରିଦେଲେ । କଚ୍ଛପୀମାନେ ବର୍ତ୍ତମାନ ଠିଆହୋଇ ଦଉଡ଼ିଲେ । ଏକା ସମୟରେ ତିନି ଦିଗରୁ ଆକ୍ରମଣ ଚାଲିଲା ।

ଠିକ୍ ମୁହୂର୍ତ୍ତ ଦେଖି ଭୀମଦେବ ନିଜର ତୀର ମାରିଲେ । ତାଙ୍କର ନିର୍ଦ୍ଦେଶ ମତେ ତାଙ୍କ ପାଖେ ଥିବା ହଜାର ହଜାର ଧନୁର୍ଦ୍ଧାରୀ ଏକ ସଙ୍ଗେ ନିଜ ନିଜର ଶର ନିକ୍ଷେପ କଲେ । ଶତ୍ରୁ ପକ୍ଷର ଶହ ଶହ ଘୋଡ଼ା ଖଣ୍ଡିଆ ଖାବରା ହୋଇ ତଳେ ପଡ଼ିଗଲେ ଏବଂ ଅନ୍ୟମାନେ ଏଣେ ତେଣେ ଦୌଡ଼ି ପଳାଇଲେ । ଭୀମଦେବଙ୍କର କେତେକ ଧନୁର୍ଦ୍ଧାରୀ ସୈନ୍ୟ ମଧ୍ୟ ଶତ୍ରୁର ଆକ୍ରମଣରେ କ୍ଷତ ବିକ୍ଷତ ହୋଇପଡ଼ିଲେ । କିନ୍ତୁ ତାଙ୍କର ଅନ୍ୟ ସୈନ୍ୟମାନେ ହମୀରର ଅଶ୍ୱାରୋହୀଙ୍କ ସହିତ ଏଭଳି ଲଢ଼େଇ କଲେ, ଯାହା ଫଳରେ ସେମାନେ ନିଜ ନିଜ ଘୋଡ଼ାମାନଙ୍କୁ ଆପଣା

ଆୟତ୍ତରେ ରଖିବା ଅସମ୍ଭବ ହୋଇପଡ଼ିଲା । ଏତେ ସଂଖ୍ୟାରେ ଘୋଡ଼ା ମରି ପଡ଼ିଲେ ଯେ, ସେମାନଙ୍କୁ ଡେଇଁ ଆଗକୁ ଯିବା ହାତୀମାନଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିଲା । ଅଶ୍ୱାରୋହୀମାନେ ଇତସ୍ତତଃ ହୋଇ ଶର ମାରିବେ କି ନାହିଁ ସ୍ଥିର କରି ପାରିଲେ ନାହିଁ । ତେଣୁ, ଅଶ୍ୱାରୋହୀ ଓ ହାତୀମାନଙ୍କ ବିନା ସାହାଯ୍ୟରେ କଚ୍ଛପୀ ଦଳ ଖାଇ ଆଡ଼କୁ ଅଗ୍ରସର ହେଲେ ।

ଯାହା ସବୁ ଘଟିଯାଇଛି, ତାହା ଜାଣିଲକ୍ଷଣି ହମୀର ଗୋଟିକ ପରେ ଗୋଟିଏ ଏକାଧିକ ହୁକୁମ ଦେଲା । କଚ୍ଛପୀ ସୈନ୍ୟମାନଙ୍କୁ ରକ୍ଷା କରିବା ନିମନ୍ତେ ନୂଆ ଅଶ୍ୱାରୋହୀ-ବାହିନୀମାନ ପଠାଗଲା । ଉଭୟ ପକ୍ଷରୁ ଶର ନିକ୍ଷେପ ଚାଲିଲା । ଭୀମଦେବ ଏବଂ ତାଙ୍କର ସୁଦକ୍ଷ ଧନୁର୍ଦ୍ଧାରୀମାନଙ୍କର ଗୋଟିଏ ସୁଦ୍ଧା ଶର ଲକ୍ଷ୍ୟହୀନ ହେଲନାହିଁ । ଆହତ ଘୋଡ଼ାମାନଙ୍କ ଉପରେ ଚଢ଼ିଥିବା ସୈନ୍ୟମାନଙ୍କର ଅବସ୍ଥା ଅରକ୍ଷ ହୋଇ ପଡ଼ିବାରୁ ସେମାନେ ଗୁଜରାତ ଧନୁର୍ଦ୍ଧାରୀମାନଙ୍କ ଶରର ଶିକାର ହେଲେ । ଭୀମଦେବ ଏଭଳି ସଫଳତାର ସହିତ ସୈନ୍ୟମାନଙ୍କୁ ସଜାଇଥିଲେ ଯେ, ତାଙ୍କ ସୈନ୍ୟଙ୍କର ପ୍ରତ୍ୟେକ ଶର ଶତ୍ରୁ ପକ୍ଷର ଠିକ୍ ସ୍ଥାନରେ ଆଘାତ କଲା, ଏପରିକି ନିକଟସ୍ଥ ହାତୀମାନେ ମଧ୍ୟ ଏଥିରୁ ବାଦ୍ ପଡ଼ିନଥିଲେ । ଏତେବେଳକୁ କଚ୍ଛପୀ ସୈନ୍ୟମାନେ ଖାଇ ନିକଟରେ ଆସି ପହଞ୍ଚିଥିଲେ ଏବଂ ସେମାନଙ୍କର ତାଙ୍କ ପକ୍ଷର ହାତୀମାନଙ୍କ ମଧ୍ୟରେ ଦୂରତ୍ୱ କମିବା ସଙ୍ଗେ ସଙ୍ଗେ ହାତୀମାନଙ୍କ ଉପରେ ଚଢ଼ିବା ପାଇଁ ଯଥେଷ୍ଟ ସଂଖ୍ୟକ ସିଡ଼ି ଖଞ୍ଜା ହୋଇଗଲା ।

ଏତେବେଳକୁ ହମୀରଙ୍କର ସେନାପତିଗଣ ଅବସ୍ଥା ବୁଝିସାରିଲେଣି । ହାତୀମାନଙ୍କ ନିକଟରେ ଥିବା ସିଡ଼ିମାନ ଘୋଡ଼ାମାନଙ୍କ ନିକଟକୁ ନିଆଗଲା । ଆତ୍ମରକ୍ଷାକାରୀମାନଙ୍କ ପକ୍ଷରୁ ଶର ବର୍ଷଣ ହେଉଥିଲେ ସୁଦ୍ଧା, ସେଥିପ୍ରତି ଭ୍ରୂକ୍ଷେପ ନକରି ଯଥେଷ୍ଟ ସଂଖ୍ୟକ ଅଶ୍ୱାରୋହୀ ଘୋଡ଼ା ଉପରେ ଚଢ଼ି କେତେକ ସିଡ଼ି କଚ୍ଛପୀ ସୈନ୍ୟମାନଙ୍କ ନିକଟରେ ପହଞ୍ଚାଇଦେଲେ ।

ଭୀମଦେବ ପୁଣି ହୁକୁମ ଦେଲେ, "ଏହି କଚ୍ଛପୀ ସୈନ୍ୟମାନଙ୍କୁ ମାରିବାରେ ତୁମମାନଙ୍କ ଶର ନଷ୍ଟ ନ କରି ଘୋଡ଼ାସବାର ଓ ଧନୁର୍ଦ୍ଧାରୀମାନଙ୍କ ସହିତ ଯୁଦ୍ଧ କରିବା ପାଇଁ ରଖ ।"

ହମୀରର ଅଶ୍ୱାରୋହୀଦଳ ନିକଟବର୍ତ୍ତୀ ହୋଇ ପାଟଣର କେତେକ ଧନୁର୍ଦ୍ଧାରୀଙ୍କୁ ମାରିପକାଇଲେ । ସେଥିପ୍ରତି ଭ୍ରୂକ୍ଷେପ ନ କରି ଭୀମଦେବ

ମହାରାଜଙ୍କର ସମସ୍ତ ଧନୁର୍ଦ୍ଧାରୀ ସୈନ୍ୟ ପ୍ରଗମାଶରେ ଏହି ଯୁଦ୍ଧରେ ଝାସ ଦେଲେ । ଏହି ଶକ୍ତିଶାଳୀ ଯୋଦ୍ଧାମାନେ ନିଜର ଲକ୍ଷ୍ୟକୁ ଆଘାତ କରିବାରେ କେବେହେଲେ ବିଫଳ ହେଲେନାହିଁ । କଚ୍ଛପୀ ସୈନ୍ୟମାନେ ଏକ ହାତରେ ସେମାନଙ୍କ ପିଠିରେ ବନ୍ଧାହୋଇଥିବା ଢାଲ ଏବଂ ଅନ୍ୟ ହାତରେ ସିଡ଼ି ଧରି ଖାଇଁରେ ଝାମ୍ପ ଦେଲେ ।

"ବିମଳ ! ବିମଳ !" ବୋଲି ଭୀମଦେବ ପାଟିକଲେ ।

"ମହାରାଜ, ମୁଁ ଏଇଠି ଅଛି ।" ବିମଳ ଉତ୍ତର ଦେଲେ ।

ମହାରାଜ ପଚାରିଲେ, "ପଥର ଆଣିଛ ?"

ବିମଳ—"ଆଣିଛି ଆଜ୍ଞା !"

ଭୀମଦେବ—"ତୁମ ଶରମାନ ଏହି କ୍ଷୁଦ୍ର ପ୍ରାଣୀମାନଙ୍କୁ ମାରିବାରେ ନଷ୍ଟ କରନାହିଁ"—ଏହା କହି ଭୀମଦେବ ନିଜ ଧନୁକୁ ବାମ ହାତକୁ ବଢ଼ାଇ ଦେଇ ଖଣ୍ଡେ ବଡ଼ ପଥର ଉଠାଇ ଅପର ପକ୍ଷର ଜଣେ କଚ୍ଛପୀକୁ ଲକ୍ଷ୍ୟକରି ପକାଇଲେ । ପଥର ଆଘାତରେ ସେ ସୈନ୍ୟ ଚିତ୍କାର କରି ପାଣି ଭିତରେ ବୁଡ଼ିଗଲା ।

ଭୀମଦେବଙ୍କଠାରୁ ଏହି ସଙ୍କେତ ପାଇ ତାଙ୍କର ସୈନ୍ୟମାନେ ଶତ୍ରୁ ପକ୍ଷର କଚ୍ଛପୀ ସୈନ୍ୟମାନଙ୍କୁ ଲକ୍ଷ୍ୟ କରି ପଥର ବର୍ଷଣ କଲେ । ଏହି ଯୁଦ୍ଧ ବହୁତ ସମୟ ଧରି ଚାଲିଲା ଏବଂ କଚ୍ଛପୀ ସୈନ୍ୟମାନଙ୍କ ପକ୍ଷରେ ଏହାର ସମ୍ମୁଖୀନ ହେବା ଅସମ୍ଭବ ହୋଇ ପଡ଼ିଲା । ଯେଉଁ କେତେକ ଏହି ପଥରମାଡ଼ରୁ ବଞ୍ଚିଗଲେ, ସେମାନେ ଦୁର୍ଗର ପାଚେରି ପାଖକୁ ଆସିବାରୁ ଶର ଆଘାତରୁ ରକ୍ଷା ପାଇପାରିଲେ ନାହିଁ ।

ଦୁର୍ଗ କାନ୍ଥ ପାଖେ ବହୁ ସଂଖ୍ୟକ ଶତ୍ରୁ ସୈନ୍ୟ ମୃତାହତ ହୋଇ ପଡ଼ିଲେ । ତଥାପି ଶର ବର୍ଷଣ ଚାଲିଥାଏ, ଏପରିକି ଅଳ୍ପ କେତେକ ସୈନ୍ୟ ସେମାନଙ୍କ ଶେଷ ନିଶ୍ୱାସ ଛାଡ଼ିବା ସମୟରେ ମଧ୍ୟ ପଥର ଖଣ୍ଡମାନ ନିକ୍ଷେପ କରି ଶତ୍ରୁ ପକ୍ଷର ସୈନ୍ୟ ଧ୍ୱଂସ କରୁଥାନ୍ତି ।

ଭୀମଦେବ ଯେପରିକି ସବୁଠାରେ ଥାନ୍ତି । କେତେବେଳେ ଚାଲି ଚାଲି, ଆଉ କେତେବେଳେ ବା ଘୋଡ଼ା ଉପରେ ଚଢ଼ି ଯାଉଥାନ୍ତି । ଶତ୍ରୁ ସୈନ୍ୟମାନଙ୍କୁ ଶର ଓ ପଥର ପକାଇ ପ୍ରତି ଆକ୍ରମଣ କରିବା ନିମନ୍ତେ ସେ ତାଙ୍କ ସୈନ୍ୟମାନଙ୍କୁ ହୁକୁମ୍ ଦେଇ ଉତ୍ସାହିତ କରୁଥାନ୍ତି ଓ ଉତ୍ସାହିତ କରିବାବେଳେ ସେ ପ୍ରତି ମୁହୂର୍ତ୍ତରେ "ଜୟ ସୋମନାଥ" ଧ୍ୱନି ଦେଉଥାନ୍ତି । ତାଙ୍କ ଗୈରିକ ପଗଡ଼ିକୁ

ଲକ୍ଷ୍ୟକରି ଶତ୍ରୁ ସୈନ୍ୟ ପକ୍ଷରୁ ଶର ନିକ୍ଷେପ କରାଯାଉଥିଲେ ସୁଦ୍ଧା ତାଙ୍କର କିଛି କ୍ଷତ ହୋଇ ନ ଥିଲା । ସେ ଏକ ଶକ୍ତ ବର୍ମ ଧାରଣ କରିଥିଲେ ଓ ଅଣ୍ଟାରେ ସୁନାର ପଟିରୁ ମୁକ୍ତା ଖଚିତ ତରବାରି ଝୁଲୁଥିଲା । ତାଙ୍କୁ ଅସ୍ତ୍ର ଶସ୍ତ୍ର ଯୋଗାଇବା ପାଇଁ ଛଜଣ ସୈନ୍ୟ ଅସ୍ତ୍ର ଶସ୍ତ୍ର ସହିତ ତାଙ୍କ ପଛରେ ଥାନ୍ତି । ସେ ଠିକ୍ ଲକ୍ଷ୍ୟସ୍ଥାନକୁ ବରାବର ଶର ମାରୁଥାନ୍ତି । ଗୋଟିଏ ସୁଦ୍ଧା ଶର ଲକ୍ଷ୍ୟହୀନ ହେଉ ନ ଥାଏ ।

ମନ୍ଦିରର ଉଚ୍ଚ ଜଗତି ଉପରୁ ଗଙ୍ଗା ଓ ଚୌଲା ପରସ୍ପର ହାତ ଧରାଧରି ହୋଇ ଗୈରିକ ପଗଡ଼ିଧାରୀ ବ୍ୟକ୍ତିଙ୍କର ଗତି ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । ସମୟ୍ୟସମୟରେ "ସେଠି ସେ ଯାଉଛନ୍ତି"......"ଓଃ ! ଓଃ... ଭଗବାନଙ୍କୁ ବଢ଼ାଇଲେ !.........ହେ ମୋର ନାଥ !" ଏହିପରି ବାକ୍ୟମାନ ସେମାନଙ୍କ ମୁଖରୁ ଅଜାଣତରେ ବାହାରିପଡ଼ୁଥାଏ । ସେହି ପଗଡ଼ି ଦୃଷ୍ଟିର ଅନ୍ତରାଳକୁ ଚାଲିଯାଉଥିଲାବେଳେ ଚୌଲା ତାର ନିଜ ମୁହଁକୁ ମାରି ବାହୁତଳେ ଲୁଚାଇ ରଖୁଥାଏ ଏବଂ ସେହି ପଗଡ଼ି ପୁଣି ତା'ର ଦୃଷ୍ଟିଗୋଚର ହେଲେ ତାର ହୃଦୟ ଆନନ୍ଦ ଉଲ୍ଲାସରେ ପୂରିଯାଇ ତା' ପାଦ ଅଜାଣତରେ ନୀରବରେ ନୃତ୍ୟ କରୁଥାଏ । ଚୌଲାର ହୃଦୟ ଓ ଆଖି ସେହି ପଗଡ଼ି ଉପରେ ଲାଖି ରହିଥାଏ ।

ଭୀମଦେବଙ୍କର ଏହି ଅଦ୍ଭୁତ ଯୁଦ୍ଧକୌଶଳ ଗୁରୁଦେବ ଲକ୍ଷ୍ୟ କରୁଥାନ୍ତି । ଚୌଲା ତାଙ୍କୁ ପ୍ରଣାମ କରି ପଚାରିଲା, "ଗୁରୁଦେବ ! ମହାରାଜ କଣ ରୁଦ୍ରଙ୍କର ଅବତାର ନୁହନ୍ତି ?" ଗୁରୁଦେବ ହସି ହସି ଜବାବ ଦେଲେ, "ହଁ, ଝିଅ ! ଏଥିରେ କଣ ସନ୍ଦେହ ଅଛି ?"

ତ୍ରିପୁରସୁନ୍ଦରୀଙ୍କ ପୂଜା କରିବା ପାଇଁ ଗୁରୁଦେବ ଚାଲିଗଲେ । ତାଙ୍କର ହୃଦୟ ଆଜି ଆନନ୍ଦରେ ପୂରି ଯାଇଛି । ଭୀମଦେବଙ୍କ ସାହସିକତା ସମ୍ପର୍କରେ ସେ ପୂର୍ବରୁ ଯଥେଷ୍ଟ ଶୁଣିଥିଲେ—ଆଜି ସେ ନିଜେ ତାହା ପ୍ରତ୍ୟକ୍ଷରେ ଦେଖିବାକୁ ପାଇଛନ୍ତି । କିନ୍ତୁ ଭୀମଦେବ ଯେ ଏଡ଼େ ସାହସୀ ସେ କେବେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନଥିଲେ । ହମୀରର ସୈନ୍ୟବାହିନୀର ଆକାର ଯେଡ଼େ ବଡ଼ ବୋଲି ସେ ଭାବିଥିଲେ, ତାହା ଅପେକ୍ଷା ଥିଲା ଯଥେଷ୍ଟ ବଡ଼ । ଅନ୍ୟ ପକ୍ଷରେ ଭୀମଦେବଙ୍କ ଶକ୍ତି ଯେତେ ବୋଲି ସେ ଭାବିଥିଲେ, କାର୍ଯ୍ୟକ୍ଷେତ୍ରରେ ତାହା ଯଥେଷ୍ଟ ଅଧିକ ବୋଲି ସେ ଦେଖିବାକୁ ପାଇଲେ ।

ପ୍ରଭୁ ଯେ ଏ ପର୍ଯ୍ୟନ୍ତ ସେମାନଙ୍କ ପଛେ ପଛେ ଅଛନ୍ତି ଏ ବିଷୟରେ ତାଙ୍କର କୌଣସି ସନ୍ଦେହ ରହିଲା ନାହିଁ ।

ଗୁରୁଦେବ ତ୍ରିପୁରସୁନ୍ଦରୀଙ୍କ ମନ୍ଦିରରେ ପହଞ୍ଚି କେହି ଜଣେ ବାହାରୁ ତାଲା ଭାଙ୍ଗିଥିବା ଦେଖି ଅତ୍ୟନ୍ତ ମର୍ମାହତ ହେଲେ । ଏହା ହରଦତ୍ତର କୁକର୍ମ ବୋଲି ଭାବି ଅଧିକ ଅନୁସନ୍ଧାନ କରିବା ପାଇଁ ସେ ଭିତରକୁ ଯାଇ ଦେଖନ୍ତି ଯେ, ଭିତର ଦ୍ୱାର ମଧ୍ୟ ଖୋଲା । କେହି ଜଣେ ଜାଣିଶୁଣି ତାଙ୍କ ହୁକୁମ୍ ଅମାନ୍ୟ କରିଥିବା ସେ ମନେକଲେ ।

ସେ ମନ୍ଦିର ଭିତରକୁ ଆସି ଦେଖନ୍ତି, ଶିବରାଣି ପ୍ରତିମା ଆଗରେ ଧ୍ୟାନ ମଗ୍ନ ରହିଛନ୍ତି । ତାଙ୍କ ପାଖରେ ଭୋଗ ଉଦ୍ଦେଶ୍ୟରେ ମାଂସ ଓ ମଦ୍ୟ ରଖା ହୋଇଛି । ତାଙ୍କ ମୁଖ୍ୟ ଶିଷ୍ୟ ଏଭଳି ପ୍ରକାଶ୍ୟରେ ତାଙ୍କ ହୁକୁମ ଅମାନ୍ୟ କରିଥିବାରୁ ଗୁରୁଦେବ ଆଶ୍ଚର୍ଯ୍ୟ ହୋଇଗଲେ । ଏହା ତାଙ୍କର କଳ୍ପନାତୀତ । ଶିବରାଣି କଣ ପାଗଳ ହୋଇଗଲା ?

ଗୁରୁଦେବ ନୀରବ ରହିଲେ । କିଛି ସମୟ ପରେ ଶିବରାଣି ଆଖି ଖୋଲି ଗୁରୁଦେବଙ୍କୁ ଉଦ୍ଧତ ଭାବରେ ଚାହିଁଲେ । ସବୁଙ୍କ ଦୁଃଖିତ ହୋଇ କେବଳ ହସିଲେ । ଯେଉଁ ଲୋକ ତାଙ୍କ ହୁକୁମ ଜୀବନ ସାରା ମାନି ଆସିଛି, ତାହା ଉପରେ ସେ କିପରି ଏତେ ଶୀଘ୍ର ବିରକ୍ତ ହେବେ ? ଶିବରାଣିର ଏଭଳି ମତିଗତି ହୁଏତ ତାର ନିର୍ବୋଧତା ବା ମାନସିକ ବ୍ୟାଧିର ଲକ୍ଷଣ ହୋଇପାରେ । ହୁଏତ ଏଥିପାଇଁ ତାକୁ ଦଣ୍ଡ କରିବାକୁ ହେବ ବା କୌଣସି ସ୍ୱତନ୍ତ୍ର ବ୍ୟବସ୍ଥା କରିବାକୁ ହେବ । ଏହିପରି ଭାବି ଗୁରୁଦେବ କେବଳ ନୀରବରେ ଚାହିଁ ରହିଲେ ।

ଶିବରାଣି ଗୁରୁଦେବଙ୍କୁ ବେଖାତିର ଭାବରେ କହିଲେ, "ଆପଣଙ୍କର କଣ କହିବାକୁ ଅଛି କୁହନ୍ତୁ ।"

ଗୁରୁଦେବ—ମୋର କିଛି କହିବାର ନାହିଁ ।

ଶିବରାଣି—ଏହି ତାଲା ସବୁ ମୁଁ ଭାଙ୍ଗିଛି । ତ୍ରିପୁରସୁନ୍ଦରୀଙ୍କ ପୂଜା ମୁଁ କରିଛି ।

ଗୁରୁଦେବ ନରମ ସ୍ୱରରେ କହିଲେ, "ତୁମେ ଭଲ କରିଛ । ମୋତେ ଆଜି ଅସୁବିଧାରୁ ରକ୍ଷା କଲ ।"

ଗୁରୁଦେବଙ୍କର ଏହି ନରମ କଥା ଶିବରାଣିଙ୍କୁ ଅଧିକ ଉତ୍ୟକ୍ତ କଲା ଏବଂ ସେ କହିଲେ, "କାଲିଠାରୁ ମୁଁ ଆପଣଙ୍କୁ ଗୁରୁ ରୂପେ ସ୍ୱୀକାର ନ କରିବା ପାଇଁ ସ୍ଥିର କରିଛି ।"

ଗୁରୁଦେବ କହିଲେ, "ତୁମ ପରି ଲୋକର ଗୁରୁ ହେବା ପାଇଁ ମୁଁ ଉପଯୁକ୍ତ ନୁହେଁ ବୋଲି ଗତ କେତେ ଦିନ ହେଲା ମୁଁ ଭାବୁଛି ।"

ଶିବରାଶି ଠିଆ ହୋଇପଡ଼ି କହିବାକୁ ଲାଗିଲେ, "ଆଜିଠାରୁ ପାଶୁପତ ସଂପ୍ରଦାୟର ଗୁରୁ ପଦବୀ ମୁଁ ଲାଭ କରିଛି ।"

ଗୁରୁଦେବ କହିଲେ, "ନିଜର ବଳ ପ୍ରୟୋଗ କରି କେହି ଗୁରୁ ପଦବୀ ଲାଭ କରିପାରେ ନାହିଁ । ପରମ୍ପରା ତଥା ନିଜ ଯୋଗ୍ୟତା ବଳରେ ତାହା ଲାଭ କରାଯାଏ ।"

ପଛରୁ ସିଦ୍ଧେଶ୍ୱର ଓ ହରଦତ୍ତ ଅନ୍ୟ ଦୁଇଜଣ ସାଧୁଙ୍କ ସହ ଆସି ପହଞ୍ଚିଲେ । ଗୁରୁଦେବ ଓ ଶିବରାଶିଙ୍କ ମଧ୍ୟରେ ହେଉଥିବା କଥାବାର୍ତ୍ତା ସେମାନେ ଏକ ଲୟରେ ଶୁଣୁଥିଲେ । ସେମାନଙ୍କୁ ଦେଖି ବେଶୀ ଉତ୍ସାହିତ ହୋଇ ଶିବରାଶି ଚିତ୍କାର କରି କହିବାକୁ ଲାଗିଲେ, "ଆପଣ ମୋର ଗୁରୁ ନୁହନ୍ତି । ସେହି ପଦ ଆପଣ ମୋତେ ଦିଅନ୍ତୁ, ତାହା ମଧ୍ୟ ମୁଁ ଗ୍ରହଣ ନାହିଁ । ଆପଣଙ୍କର ଅଧୋଗତି ହୋଇଛି । ପାଶୁପତ ସଂପ୍ରଦାୟର ପାରମ୍ପରିକ ପ୍ରଥା ଆପଣ ଭାଙ୍ଗିଛନ୍ତି । ମହାମାୟାଙ୍କ ପୂଜା ଆପଣ ବନ୍ଦ କରିଛନ୍ତି ।"

ଗୁରୁଦେବ—ତାପରେ ?

ଶିବରାଶି—ଆପଣ ମହାମାୟାଙ୍କ ମନ୍ଦିର ବନ୍ଦ କରି ଦେବୀଙ୍କ ପୂଜା ବନ୍ଦ କରିଥିଲେ । ଯାହା ଶରୀରରେ ମହାମାୟା ଅବତାର ଗ୍ରହଣ କରିଛନ୍ତି, ତାକୁ ନିଜର ସ୍ୱାର୍ଥ ସାଧନ ନିମନ୍ତେ ଭୀମକୁ ଅର୍ପଣ କରିଛନ୍ତି ।

ଗୁରୁଦେବ— ଆଉ କଣ କହିବାର ଅଛି ?

ଶିବରାଶି —"ଆପଣଙ୍କ ସମ୍ମତିରେ ସେହି ପାପୀ ଦେବୀ ମହାମାୟା ତଥା ତାଙ୍କ ମନ୍ଦିରକୁ ଅପବିତ୍ର କରିଛି । ଆପଣଙ୍କ ପରି ଲୋକଙ୍କର ଦଣ୍ଡେ ସୁଦ୍ଧା ବଞ୍ଚି ରହିବା ଉଚିତ ନୁହେଁ ।" ଗୁରୁଦେବଙ୍କ ନୀରବତା ଶିବରାଶିଙ୍କ କ୍ରୋଧ ବଢ଼ାଇ ଦେଲା । ପୁରାଣ ବର୍ଣ୍ଣିତ ଦୁର୍ବାସା ଶାପ ଦେଲାବେଳେ ଯେପରି କ୍ରୋଧରେ ପ୍ରଜ୍ଜ୍ୱଳିତ ହୋଇଥିଲେ, ତାଙ୍କର ଚେହେରା ଠିକ୍ ସେହିଭଳି ଦେଖାଗଲା ।

ଗୁରୁଦେବ କହିଲେ, "ବତ୍ସ ! ତୁ ଯେପରି ବ୍ୟବହାର କରୁଛୁ, ତାହା ପରିଷ୍କାର ସୂଚନା ଦେଉଛି ଯେ ମୋର ଦଣ୍ଡେ ସୁଦ୍ଧା ଅଧିକା ବଞ୍ଚିବାର ଅଧିକାର ନାହିଁ । କିନ୍ତୁ ଯେ ପର୍ଯ୍ୟନ୍ତ ମୁଁ ବଞ୍ଚିଛି, ସେ ପର୍ଯ୍ୟନ୍ତ ମୋର ସ୍ଥାନ ଅଧିକାର କରିବାକୁ ସ୍ୱର୍ଗରେ କିମ୍ବା ମର୍ତ୍ତ୍ୟରେ କାହାର କ୍ଷମତା ନାହିଁ ।"

ଶିବରାଶି କହିଲେ, "ବୃଦ୍ଧ, ତୁମେ ବହୁ ଦିନ ପୂର୍ବରୁ ଚିରକାଳ ପାଇଁ ଗୁରୁ ପଦବୀ ହରାଇବସିଲଣି ।"

ଗୁରୁଦେବ କହିଲେ, "ଯେଉଁ ମୁହୂର୍ତ୍ତରେ ମୁଁ ଗର୍ବ ଓ ଔଦ୍ଧତ୍ୟ ପ୍ରକାଶ କରିବି, ସେହି ମୁହୂର୍ତ୍ତରେ ଏହି ପଦବୀ ହରାଇବି ।"

ଶିବରାଶି ପୁଣି ପାଟିକରି କହିଲେ, "ଆପଣ ଏହି ପଦବୀ ହରାଇ ସାରିଛନ୍ତି । ସେହି ପଦକୁ ଯିବାର ଅଧିକାରୀ ମୁଁ । ଆପଣଙ୍କର ଦିନକାଳ ଶେଷ ହୋଇଗଲାଣି ।"

ଗୁରୁଦେବ କହିଲେ, "ନିର୍ବୋଧ, ମୁଁ ଯେବେ ଏହି ପଦ ହରାଇଥାଏ, ତାହାହେଲେ ତାର ପ୍ରକୃତ ଅଧିକାରୀ ତୁ ନୁହଁ; ଖମ୍ଭାତ୍‌ରେ ବସିଥିବା ଗଗନ । ସେ ଯିବା ପୂର୍ବରୁ ଗୃହ ଜଣ ଶାସକଙ୍କ ସମ୍ମୁଖରେ ମୁଁ ତାହାକୁ ମୋର ଉତ୍ତରାଧିକାରୀଭାବେ ମନୋନୀତ କରିଛି । ତାକୁ ମଧ୍ୟ ପ୍ରଭୁ ଲକୁଲେଶଙ୍କ ଚନ୍ଦନ ଓ ଧନୁଃଶର ଦେଇଛି ।"

ତାହାହେଲେ ଏ ବୁଢ଼ା ତାଙ୍କୁ ଧୋକ୍କା ଦେଇଛି—ଶିବରାଶି ଅବାକ୍ ହୋଇଗଲେ । ବହୁ ସମୟ ପର୍ଯ୍ୟନ୍ତ ତାଙ୍କ ପାଟିରୁ ପଦେ ସୁଦ୍ଧା କଥା ବାହାରିଲା ନାହିଁ ।

ଗୁରୁଦେବ ପୁଣି କହିଲେ, "ଶିବରାଶି, ପାଶୁପତ ସମ୍ପ୍ରଦାୟର ଗୁରୁର ଆସ୍ଥାନହିଁ ସମଗ୍ର ବିଶ୍ୱର ଗୁରୁର ଆସ୍ଥାନ । ଯାହାର ସେହିପରି ଜ୍ଞାନ ଅଛି, ଯାହାର ଭକ୍ତି ତଥା ଯୋଗ୍ୟତା ଅଛି, ଯେ ବହୁଦିନ ଧରି ଆରାଧନା କରିବା ସଙ୍ଗେ ସଙ୍ଗେ ଭଗବତ୍ ଆଶ୍ରିତ, ସେହିହିଁ ଏ ପଦବୀ ପାଇବାକୁ ହକ୍‌ଦାର । ଔଦ୍ଧତ୍ୟ ବା କ୍ରୋଧ ସାହାଯ୍ୟରେ ଏହା ଲାଭ କରାଯାଇ ନ ପାରେ ।"

ଶିବରାଶି କହିଲେ, "ବୃଦ୍ଧ, ମୋତେ ତମର ପଦବୀ ଲୋଡ଼ା ନାହିଁ । ତମର ସୋମଦେବ ମହାମାୟାଙ୍କ ଅସନ୍ତୋଷର ପାତ୍ର ହୋଇଛି । ମୃତ୍ୟୁ ତୁମମାନଙ୍କ ମୁଣ୍ଡ ଉପରେ ଘୂରି ବୁଲୁଛି ।"

ଗୁରୁଦେବ କହିଲେ, "ହୋଇପାରେ ମୁଁ ମରିଯିବି । ସେପରି ଅବସ୍ଥାରେ ତୁମମାନଙ୍କ କବଳରୁ ପାଶୁପତ ସମ୍ପ୍ରଦାୟକୁ ଗଗନରାଶି ରକ୍ଷା କରିବ ।" ଏହା କହି ଗୁରୁଦେବ ଧୀର ପାଦରେ ତ୍ରିପୁରସୁନ୍ଦରୀଙ୍କ ମନ୍ଦିରରୁ ଚାଲିଗଲେ ।

ଗୁରୁଦେବ ସ୍ଥାନ ତ୍ୟାଗକରି ଚାଲିଗଲାବେଳେ ହରଦତ୍ତ ତାଙ୍କ ଉପରେ କ୍ରୋଧାଏ ଥୁଙ୍କ ପକାଇଦେଲା । ଗୁରୁଦେବ ତା ଆଡ଼କୁ ଚାହିଁ ଅଳ୍ପ ହସି କହିଲେ, "ତୁ ଚାହୁଁଛୁ ମୁଁ ରାଗିଯାଏ । ନବୋଧ, ତୁମର ଗୁରୁ ହୋଇ ତୁମପରି ନବୋଧଙ୍କୁ ମୁଁ ଯେବେ କ୍ଷମା ନ କରିବି, ଆଉ କିଏ କରିବ ?" ଦୁର୍ମୁଖ ହରଦତ୍ତକୁ ଚାହିଁ ଦୁଃଖଭରା ହୃଦୟରେ ଗୁରୁଦେବ ସେଠାରୁ ଚାଲିଗଲେ । ମାତ୍ର ଏହାର କୌଣସି ପ୍ରଭାବ ହରଦତ୍ତ ଓ ଉପସ୍ଥିତ ଅନ୍ୟ ପୂଜକମାନଙ୍କ ଉପରେ ପଡ଼ିଲା ନାହିଁ । ସେମାନେ ସର୍ବଜ୍ଞଙ୍କୁ ପୂର୍ବପରି ଗାଳିଦେବାରେ ଲାଗିଥାନ୍ତି ।

## ୪୦

## ଆକ୍ରମଣ

ଦୁର୍ଗର ଜୁନାଗଡ଼ ଦରଜା ପାଖରେ ଅବସ୍ଥା ଭୟଙ୍କର ହୋଇଉଠିଲା । ଭୀମଦେବଙ୍କ ନିର୍ଦ୍ଦେଶ ଅନୁଯାୟୀ ଆବୁର ଯୁବକ ପାରମାର ଶତ୍ରୁ ପକ୍ଷର ଅଶ୍ୱାରୋହୀମାନଙ୍କୁ ଆକ୍ରମଣ କରିବାରେ ମନୋନିବେଶ କରିଥାନ୍ତି । ଦୁର୍ଭାଗ୍ୟକୁ ତାଙ୍କ ପାଖରେ ଅଳ୍ପ ସଂଖ୍ୟକ ସଶସ୍ତ୍ର ସୈନ୍ୟ ଥିଲେ ଏବଂ ସେମାନଙ୍କ ମଧ୍ୟରୁ ଅନେକେ ଶତ୍ରୁ ଶରରେ ଆହତ ହୋଇଥିଲେ । ଉପରୁ ଆକ୍ରମଣ କରି ଶତ୍ରୁ ସୈନ୍ୟମାନଙ୍କୁ କାବୁ କରିଦେବା ଭୀମଦେବଙ୍କ ଯୁଦ୍ଧ କୌଶଳ ଏପର୍ଯ୍ୟନ୍ତ ସେ କାର୍ଯ୍ୟକାରୀ କରିନଥାନ୍ତି । ତେଣୁ ଶତ୍ରୁ ପକ୍ଷର ସୈନ୍ୟବାହିନୀ ସେମାନଙ୍କ ପରିକଳ୍ପନା ଅନୁସାରେ ଆଗକୁ ମାଡ଼ି ଚାଲିଥାନ୍ତି । କଚ୍ଛପୀମାନେ ଗଡ଼ଖାଇରେ ପହଞ୍ଚିଥାନ୍ତି । ଏଣେ ଶତ୍ରୁ ପକ୍ଷର ଅଶ୍ୱାରୋହୀ ବାହିନୀ ଦୁର୍ଗ ରକ୍ଷା କରୁଥିବା ଧନୁର୍ଦ୍ଧାରୀମାନଙ୍କୁ କର୍ମବ୍ୟସ୍ତ ରଖିଥାନ୍ତି । ହସ୍ତୀବାହିନୀର ସୈନ୍ୟମାନେ ଅଗ୍ରସର ହୋଇ କଚ୍ଛପୀମାନଙ୍କୁ ସିଡ଼ି ଯୋଗାଇ ଦେଲେ । ଶକ୍ତିଶାଳୀ କଚ୍ଛପୀବାହିନୀଙ୍କଠାରୁ ଗଡ଼ ରକ୍ଷା କରିବା ଉଦ୍ୟମ ବ୍ୟର୍ଥତାରେ ପରିଣତ ହେବାକୁ ବସିଲା ।

ସୈନ୍ୟମାନଙ୍କୁ ସାହସର ସହକାରେ ଲଢ଼େଇ କରିବାଲାଗି ଉତ୍ସାହିତ କରିବା ନିମନ୍ତେ ପାରମାର ଆପ୍ରାଣ ଚେଷ୍ଟା କରୁଥାନ୍ତି । ସେ ଏବଂ ତାଙ୍କ ସୈନ୍ୟମାନେ ସାହସର ସହକାରେ ଲଢ଼ୁଥାନ୍ତି । ଦୁର୍ଗ ରକ୍ଷା କରିବାକୁ ଯାଇ

ବହୁ ସଂଖ୍ୟକ ସୈନ୍ୟ ପ୍ରାଣ ଦେଲେ । କିନ୍ତୁ ପାରମାରଙ୍କ ସମସ୍ତ ଉଦ୍ୟମ ସତ୍ତ୍ୱେ କଚ୍ଛପୀବାହିନୀ ଗଡ଼ଖାଇ ପହଁରି ପାରହୋଇ ନିଶୁଣି ସାହାଯ୍ୟରେ ଦୁର୍ଗ ଉପରକୁ ଚଢ଼ିବାକୁ ଉଦ୍ୟତ ।

ଶତ୍ରୁର ଅଶ୍ୱାରୋହୀମାନଙ୍କ ଅଶ୍ୱମାନେ ପହଁରିବାରେ ଧୁରନ୍ଧତ ହୋଇଥିବାରୁ ସେମାନେ କଚ୍ଛପୀବାହିନୀ ପଛେ ପଛେ ଗଡ଼ଖାଇକୁ ପଶିଆସିଲେ । ହସ୍ତୀବାହିନୀର ଧନୁର୍ଦ୍ଧାରୀମାନେ ଗଡ଼ ରକ୍ଷାକରୁଥିବା ପାରମାରଙ୍କ ସୈନ୍ୟମାନଙ୍କୁ ଆକ୍ରମଣ କରି ସେମାନଙ୍କ ମଧ୍ୟରେ ଆତଙ୍କ ସୃଷ୍ଟି କଲେ ।

ସୌଭାଗ୍ୟବଶତଃ ଶତ୍ରୁ ପକ୍ଷର ଅଧିକାଂଶ ସଂଖ୍ୟକ ସୈନ୍ୟ ଦୁର୍ଗର ପ୍ରଧାନ ଦରଜା ପାଖେ ବ୍ୟସ୍ତ ରହିଥିଲେ । ହମୀର ଓ ତାର ସେନାପତିମାନଙ୍କର ଦୃଷ୍ଟି ସେହି ପ୍ରଧାନ ଦରଜା ଉପରେ କେନ୍ଦ୍ରୀଭୂତ ହୋଇଥାଏ । ତେଣୁ ଜୁନାଗଡ଼ ଦରଜା ପାଖେ ଆକ୍ରମଣକାରୀ ପାଇଁ ଯେଉଁ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇଥିଲା, ସେମାନେ ତାର ପୂର୍ଣ୍ଣ ସୁଯୋଗ ନେଇପାରି ନ ଥିଲେ ।

ଅଧିକ ସଂଖ୍ୟକ ସୈନ୍ୟ ସାହାଯ୍ୟ ନ ଆସିଲେ ମଧ୍ୟାହ୍ନ ପରେ ଅବସ୍ଥା କଷ୍ଟକର ହେବ ଜାଣି ଏହା ଭୀମଦେବଙ୍କୁ ଜଣାଇବା ନିମନ୍ତେ ପରମାର ତାଙ୍କର ବିଶ୍ୱସ୍ତ ସେନାପତିଙ୍କୁ ସଙ୍ଗେ ସଙ୍ଗେ ମହାରାଜାଙ୍କ ନିକଟକୁ ପଠାଇଲେ । ସୌଭାଗ୍ୟକ୍ରମେ ଭୀମଦେବ ପରମାରଙ୍କୁ ସାହାଯ୍ୟ ଦେଇ ପାରିବା ଅବସ୍ଥାରେ ଥିଲେ । କେନ୍ଦ୍ର ଦରଜାର ଅବସ୍ଥା ଦୃଢ଼ୀଭୂତ ହୋଇଥିବାରୁ ସେ ଦିଗରୁ ଆକ୍ରମଣର ଆଶଙ୍କ କମିଯାଇଥିଲା । ଶତ୍ରୁ ପକ୍ଷ ସେଠାରେ ଦୁର୍ଗକୁ ରକ୍ଷା କରୁଥିବା ସୈନ୍ୟବାହିନୀର ବିଶେଷ କିଛି କ୍ଷତି କରିପାରୁନାହାଁନ୍ତି । ପ୍ରାୟ ତିନିଶହ କଚ୍ଛପୀ ସେନା ନିଶୁଣି ସାହାଯ୍ୟରେ ଦୁର୍ଗର କାନ୍ଥ ଚଢ଼ିବାକୁ ଚେଷ୍ଟା କରିଥିଲେ ସୁଦ୍ଧା ସେମାନଙ୍କ ମଧ୍ୟରୁ ଜଣେ ମଧ୍ୟ ଦୁର୍ଗ ପ୍ରାଚୀରରେ ନିଶୁଣି ଲଗାଇ ପାରି-ନାହାଁ । ନୂତନ ଅଶ୍ୱାରୋହୀ ତଥା କଚ୍ଛପୀବାହିନୀ ଆସିବା କମିଗଲାଣି ।

ମନ୍ତ୍ରୀ ବିମଳଙ୍କୁ କେନ୍ଦ୍ର ଦରଜାର ଅବସ୍ଥା ଦେଖିବା ପାଇଁ ଦାୟିତ୍ୱ ଦେଇ ଭୀମଦେବ ନିଜେ ପାରମାରଙ୍କୁ ସାହାଯ୍ୟ କରିବା ପାଇଁ ଜୁନାଗଡ଼ ଦରଜାକୁ ଗଲେ । ଶତ୍ରୁର ଅଜ୍ଞାତସାରରେ ତାଙ୍କର ସମସ୍ତ ଅଶ୍ୱାରୋହୀ ନିଜ ସାଙ୍ଗରେ ନେବା ପାଇଁ ସେ ଠିକ୍ କଲେ । ଶତ୍ରୁକୁ ଅଧିକ ମାତ୍ରାରେ ପ୍ରତାରିତ କରିବା ଉଦ୍ଦେଶ୍ୟରେ ସେ ବିମଳଙ୍କ ମୁଣ୍ଡରେ ନିଜେ ପିନ୍ଧିବାପରି ଏକ ଗୈରିକ ରଙ୍ଗର ପଗଡ଼ି ପିନ୍ଧାଇ ଦେଇଥିଲେ । ଦୁର୍ଗର ଦ୍ୱାରିକା ଦରଜାରେ ରନ୍ଧାଦିତ୍ୟ

ଚମତ୍କାର କାର୍ଯ୍ୟ କରିଛନ୍ତି । ନିଜର ନୈପୁଣ୍ୟ, ସାହସ ତଥା ତାଙ୍କ ସୈନ୍ୟବାହିନୀର ଅଦମ୍ୟ ଚେଷ୍ଟା ଫଳରେ ଶତ୍ରୁକୁ ଦୂରରେ ରଖିବା ଦିଗରେ ସେ ସଫଳ ହୋଇଛନ୍ତି । ଯୁଦ୍ଧର ଏହିପରି ଅବସ୍ଥାରେ ଭୀମଦେବ ତିନିଶହ ସୈନ୍ୟଙ୍କ ସହ ପାରମାରଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଯାଆନ୍ତି ଆଲେ ।

ସେତେବେଳକୁ ଜୁନାଗଡ଼ ଦରଜାର ଅବସ୍ଥା ଆସ୍ତେ ଆସ୍ତେ ଖରାପ ହେଉଥାଏ । ଶତ୍ରୁ ପକ୍ଷର ପ୍ରାୟ ପାଞ୍ଚଶହ ଅଶ୍ୱାରୋହୀ ମିଳିତଭାବରେ ଗଡ଼ଖାଇ ଭିତରକୁ ପଶି ଏକ ଭୟମାନ ବୋଇତରେ ପରିଣତ ହୋଇଥାନ୍ତି । କେତେକ କଚ୍ଛପୀ ଦୁର୍ଗ ପ୍ରାଚୀର ଚଢ଼ିବା ଉଦ୍ୟମରେ ସଫଳତା ଲାଭକରି ଦୁର୍ଗ କାନ୍ଥରେ ନିଶୁଣି ଲଗାଉଛନ୍ତି । ଶତ୍ରୁ ପକ୍ଷର ଏଭଳି ଦ୍ରୁତ ଗତିରେ ଲକ୍ଷ୍ୟଭେଦୀ ଶରମାନ ଆସୁଛି ଯେ, ତାହା ବିରୁଦ୍ଧରେ ବିଶେଷ କିଛି କରିବା କଷ୍ଟକର ହୋଇ ଉଠୁଛି । କଚ୍ଛପୀ ଏବଂ ଅଶ୍ୱାରୋହୀମାନେ ଆତ୍ମରକ୍ଷାକାରୀଙ୍କର ତୀବ୍ର ଶର ନିକ୍ଷେପକୁ ଖାତିର ନ କରି କାଠ ପଟାରେ ଗଡ଼ଖାଇ ଉପରେ ଗୋଟିଏ ପୋଲ ତିଆରି କରିଦେଲେ । ଏହି ସମୟରେ କେତେକ ନୂତନ କଚ୍ଛପୀ ଆକ୍ରମଣରେ ଯୋଗଦେଇ ନିଶୁଣୀ ସାହାଯ୍ୟରେ ଦୁର୍ଗ ପ୍ରାଚୀର ଉପରକୁ ଚଢ଼ିବାକୁ ଉଦ୍ୟମ କଲେ । ଏହି ସଫଳତା ପରେ ଶତ୍ରୁ ଛାଉଣୀରେ ଆନନ୍ଦର କୋଳାହଳ ଖେଳିଗଲା । କାରଣ ଖାଲି ଯେ କଚ୍ଛପୀମାନେ ଗଡ଼ଖାଇ ପାର ହୋଇ ଯାଇଛନ୍ତି ସେତିକି ନୁହେଁ, ତାହା ସଙ୍ଗେ ସଙ୍ଗେ ପଦାତିକ ଧନୁର୍ଦ୍ଧାରୀମାନେ ଦୁର୍ଗ ପ୍ରାଚୀର ଉପରେ ଥାଇ ଯୁଦ୍ଧ କରୁଥିବା ଭୀମଦେବଙ୍କ ସୈନ୍ୟମାନଙ୍କୁ ଆକ୍ରମଣ କରି ସେମାନଙ୍କୁ ବିଚଳିତ କରିପାରିଛନ୍ତି ।

ମାତ୍ର ପାରମାରଙ୍କ ବୀରତ୍ୱ ଥିଲା ଅଦ୍ଭୁତ । ଶତ୍ରୁଦ୍ୱାରା ନିର୍ମିତ ପୋଲଟିକୁ ନଷ୍ଟ କରିବାକୁ ସେ ବହୁତ ଚେଷ୍ଟା କଲେ ଏବଂ ନିଜେ ଏକାକୀ ବହୁସଂଖ୍ୟକ କଚ୍ଛପୀଙ୍କୁ ହତ୍ୟା କଲେ । କିନ୍ତୁ ତାଙ୍କ ସୈନ୍ୟମାନେ ଦୁର୍ବଳ ହୋଇଯାଉଥିବାରୁ ସେ ଶତ୍ରୁ ଆକ୍ରମଣର ସମ୍ମୁଖୀନ ହୋଇ ପାରିଲେ ନାହିଁ । ପ୍ରତି ମୁହୂର୍ତ୍ତରେ ସେ ପଚାରୁଥାନ୍ତି, "ଭୀମଦେବ ମହାରାଜ କାହାନ୍ତି ?" ଭୀମଦେବ ସେଠାରେ ପହଞ୍ଚିବା ପର୍ଯ୍ୟନ୍ତ ଦୁର୍ଗର ସେହି ଦ୍ୱାରକୁ ରକ୍ଷା କରିବା ପାଇଁ ପାରମାର ଦୃଢ଼ପ୍ରତିଜ୍ଞ ଥାନ୍ତି । ସେ ଶତ୍ରୁର ବହୁ ସଂଖ୍ୟକ କଚ୍ଛପୀ ଓ ଅଶ୍ୱାରୋହୀ ସୈନ୍ୟଙ୍କୁ ମାରିଥିଲେ ମଧ୍ୟ ସେ ଯେତେ ମାରୁଥାନ୍ତି ତାଙ୍କ ସ୍ଥାନରେ ଦୁଇଗୁଣ ଆସି ପହଞ୍ଚୁଥାନ୍ତି । ଶେଷକୁ ସେ ଏକ ସୁଦୃଢ଼ ଗଦା

ହାତରେ ଧରି ପାଚେରି ଧାରରେ ଠିଆହେଲେ ଓ ପାଚେରି ଚଢ଼ିବାକୁ ଚେଷ୍ଟା କରୁଥିବା କଚ୍ଛପୀମାନଙ୍କୁ ଗଦାରେ ପିଟି ତଳକୁ ଖସାଇବାକୁ ଲାଗିଲେ ।

ପାରମାରଙ୍କ ଅଦ୍ଭୁତ ବୀରତ୍ୱରେ ଅନୁପ୍ରାଣିତ ହୋଇ ତାଙ୍କ ସୈନ୍ୟମାନେ ଅଧିକ ବୀରତ୍ୱ ଦେଖାଇବା ପାଇଁ ଚେଷ୍ଟା କଲେ । ଦ୍ୱାରର ସର୍ବୋଚ୍ଚ ସ୍ଥାନରେ ପଚାଶ ଜଣ ସଶସ୍ତ୍ର ସୈନ୍ୟ ତାଙ୍କୁ ଘେରି ଜଗିବା ପାଇଁ ଠିଆ ହେଲେ । ପାରମାର ପ୍ରାଣ ମୂର୍ଚ୍ଛାରେ ଲଢୁଥାନ୍ତି । ପରାଜୟର ବହୁ ସୂଚନା ମିଳୁଥାଏ ।

ଏହି ସମୟରେ ଗୋଟିଏ ଖୁବ୍ ସବଳ କର୍କେଶୀୟ ସୈନ୍ୟ ନିଜକୁ ସୁଦୃଢ଼ ପୋଷାକରେ ଆବୃତ କରି ନିଶୁଣିରେ ଚଢ଼ିବାକୁ ଆରମ୍ଭ କଲା । ସେ ଦୁର୍ଗ ଉପରକୁ କୁଦାମାରି ଚଢ଼ିଯିବାକୁ ଉଦ୍ୟମ କରୁଥିବା ଅବସ୍ଥାରେ ପାରମାର ତାହା ଉପରକୁ ଡେଇଁପଡ଼ି ତାକୁ ଦୁର୍ଗ ତଳକୁ ଗଡ଼ାଇ ଦେବାକୁ ଚେଷ୍ଟାକଲେ । ଏହି ପରିସ୍ଥିତିରେ ତାହା ପଛରେ ଆସୁଥିବା ତାର ତିନିଜଣ ସାହାଯ୍ୟକାରୀ କଚ୍ଛପୀ ସୈନ୍ୟ ତାକୁ ସାହାଯ୍ୟ କରିବାକୁ ଚେଷ୍ଟା କଲେ । ଠିକ୍ ଏହି ସମୟରେ ଶତ୍ରୁ ପକ୍ଷର ଗୋଟିଏ ଶର ଆସି ପାରମାରଙ୍କ କଣ୍ଠରେ ବିଦ୍ଧ ହୋଇଗଲା । ପାରମାର ଭୀମଦେବଙ୍କ ନାମ ଉଚ୍ଚାରଣ କରି ସେହି ପୃଥୁଳକାୟ କର୍କେଶୀୟ ସୈନ୍ୟଟି ଉପରେ ମାଡି ପଡ଼ିଲେ । ଏହା ଫଳରେ ଆକ୍ରମଣକାରୀ କର୍କେଶୀୟ ସୈନ୍ୟଟି ଓ ସେ ନିଜେ ପ୍ରାଚୀର ତଳକୁ ପେଲ ହୋଇଗଲେ ଓ ପର ମୁହୂର୍ତ୍ତରେ ଉଭୟେ ଶୂନ୍ୟେ ଶୂନ୍ୟେ ଖସି ଖାଇରେ ପଡ଼ିଲେ । କଚ୍ଛପୀମାନଙ୍କ ନିଶୁଣି ମଧ୍ୟ ଦୁର୍ଗ ପାଚେରିରୁ ଖସି ପଡ଼ିଲା । ଦୁର୍ଗ ଉପରୁ ଧନୁର୍ଦ୍ଧାରୀମାନେ ଶରମାରି କଚ୍ଛପୀମାନଙ୍କୁ ଶେଷ କଲେ । ପାରମାର ନିଜେ ଜୀବନକୁ ମୃତ୍ୟୁ ମୁଖରେ ଦେଇ ଜୁନାଗଡ଼ ଦ୍ୱାର ରକ୍ଷା କରିବାରେ ସଫଳ ହେଲେ ।

ପାରମାରଙ୍କ ଏ ଦୁର୍ଗତିରେ ତାଙ୍କ ସୈନ୍ୟମାନଙ୍କ ମଧ୍ୟରେ ହତାଶ ଭାବ ଖେଳିଗଲା । ଠିକ୍ ଏହି ମୁହୂର୍ତ୍ତରେ ଭୀମଦେବ ନିଜର ଧନୁର୍ଦ୍ଧାରୀମାନଙ୍କ ସହ ଆସି ସେଠାରେ ପହଞ୍ଚି କଚ୍ଛପୀମାନଙ୍କ ସହ ପାରମାର ତଳକୁ ପଡ଼ିଯାଉଥିବା ଦେଖିଲେ । ଭେଲା ଓ ଘୋଡ଼ାଗୁଡ଼ିକ ପାଣିରେ ଏକାଠି ପଡ଼ିଛନ୍ତି । ପାରମାର ଭୀମଦେବଙ୍କର ନିଜ ପୁଅ ଅପେକ୍ଷା ଅଧିକ ପ୍ରିୟ ଏବଂ ବନ୍ଧୁ ଅପେକ୍ଷା

ଅଧିକ ବିଶ୍ୱାସୀ ଥିଲେ । ତାଙ୍କର ଆଦେଶ କ୍ରମେ ପାରମାର ନିଜର ପିତା, ମାତା ଓ ନବ ବିବାହିତା ପତ୍ନୀଙ୍କୁ ଗୁପ୍ତ ଯୁଦ୍ଧରେ ଯୋଗ ଦେଇଥିଲେ । ଦୁର୍ଗ ପ୍ରାଚୀର ଉପରୁ ପତନ ସମୟରେ ତାଙ୍କ ମୁହଁରୁ "ଭୀମଦେବ" ବୋଲି ଏକମାତ୍ର ଶବ୍ଦ ବାହାରିଥିଲି । ପାଟଣ ତଥା ନିଜ ପରିବାରର ଦେବତାଙ୍କର ରକ୍ଷା ନିମନ୍ତେ ପାରମାର ପ୍ରାଣ ପ୍ରାୟଶ୍ଚିତ କରିଥିଲେ ।

ଏ ପରିସ୍ଥିତିରେ ଭୀମଦେବ ମହାରାଜ ତାଙ୍କ ପ୍ରିୟ ବନ୍ଧୁ ଛଡ଼ା ଆଉ କିଛି ଭାବି ପାରିଲେ ନାହିଁ । ଆହତ ପାରମାର ସିଂହପରି ଏକୁଟିଆ ଲଢ଼ୁଥିବା ଦୃଶ୍ୟ ସେ ନିଜ ଆଖିରେ ଦେଖିଛନ୍ତି । "ଧୈର୍ଯ୍ୟଧର ପାରମାର" ବୋଲି କହି ଭୀମଦେବ ଗଡ଼ଖାଇକୁ ଡେଇଁପଡ଼ିଲେ । ଏହି ଅଦ୍ଭୁତ ସାହସ ଓ ଆତ୍ମତ୍ୟାଗ ଦେଖି ପ୍ରତ୍ୟେକ ଲୋକ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ନିଜ ପ୍ରଭୁଙ୍କର ସମ୍ମାନ ପାଇଁ ଲଢ଼ୁଥିବା ପାଟଣର ଧନୁର୍ଦ୍ଧାରୀମାନେ ମୃତ୍ୟୁକୁ ଭୟ କରନ୍ତି ନାହିଁ । ଭୀମଦେବଙ୍କ ପରେ ପରେ ପଚଶ ଜଣ ଯାକ ଧନୁର୍ଦ୍ଧାରୀ ମଧ୍ୟ ଗୋଟିକ ପରେ ଗୋଟିଏ ଗଡ଼ ଖାଇ ଭିତରକୁ ଡେଇଁପଡ଼ିଲେ । ପାଣି ଭିତରେ ପଡ଼ି ଯୁଦ୍ଧ କରୁଥିବା ରାଜା ଓ ସୈନ୍ୟମାନଙ୍କର ଶତ୍ରୁ ପକ୍ଷର ହସ୍ତୀବାହିନୀ ଓ ଧନୁର୍ଦ୍ଧାରୀ-ମାନେ ଯେପରି କିଛି କ୍ଷତି କରି ନ ପାରନ୍ତି ଦୁର୍ଗ ଉପରେ ଥିବା ଅନ୍ୟ ସୈନ୍ୟ ମାନେ ତାହାର ପ୍ରତିକାର କଲେ ।

ତଳେ ଗଡ଼ ଖାଇ ଭିତରେ ପ୍ରବଳ ଯୁଦ୍ଧ ଚାଲିଲା । ପାରମାରଙ୍କୁ ହତ୍ୟା କରିବା ପାଇଁ ଆଘାତ କରୁଥିବା ଶତ୍ରୁବାହିନୀର ଗୋଟିଏ ସୈନ୍ୟ ଉପରକୁ ଭୀମଦେବ ଡେଇଁପଡ଼ି ତାକୁ ହତ୍ୟା କଲେ । ତାହା ପରେ ପହଁରିବାକୁ ଚେଷ୍ଟା କରୁଥିବା ଏକ ଘୋଡ଼ା ଉପରେ ବସି ଯାଇ ଭୀମଦେବ ପାଟିକରି କହିଲେ, "ପାରମାର, ଆସ, ପହଁରୁଥିବା ଗୋଟିଏ ଘୋଡ଼ା ଉପରେ ବସିଯାଇ ମୋ ପଛେ ପଛେ ଆସ ।" କିନ୍ତୁ ଆହତ ପାରମାରଙ୍କ ପକ୍ଷେ ଘୋଡ଼ା ଚଢ଼ିବା ସହଜ ହେଲା ନାହିଁ ।

ମୁସଲମାନ ସୈନ୍ୟମାନେ ଏ ଦୃଶ୍ୟ ଦେଖି ଆବା କାବା ହୋଇଗଲେ । ଦୁର୍ଗ ଉପରୁ ଡେଇଁଥିବା ଭୀମଦେବଙ୍କର ପ୍ରତ୍ୟେକଟି ସୈନ୍ୟ ଖାଇରେ ପଡ଼ି ଶତ୍ରୁ ସୈନ୍ୟ ସହିତ ପ୍ରବଳ ଯୁଦ୍ଧ କଲେ । ଶାଣିତ ତରବାରି ଚତୁର୍ଦ୍ଦିଗରେ ଝଲକୁଥାଏ । ଶତ୍ରୁର ବହୁ ସଂଖ୍ୟକ ସୈନ୍ୟ ଥିବା ସ୍ଥଳେ ପାଟଣର ମାତ୍ର ପଚଶଟିରୁ ଅଧିକ ସୈନ୍ୟ ନ ଥିଲେ ।

ଏହି ସମୟରେ ରନ୍ନାଦିତ୍ୟ ଆସି ସେଠାରେ ପହଞ୍ଚି ଭୀମଦେବ ମହାରାଜାଙ୍କ ଅସାଧାରଣ ବୀରତ୍ୱ ଓ ସାହସ ଦେଖି ଉଦ୍‌ଭ୍ରାନ୍ତ ହେଲେ । ସେ ଜଣେ କୌଶଳୀ ଯୋଦ୍ଧା । ଯୁଦ୍ଧକ୍ଷେତ୍ରରେ ଅପ୍ରତ୍ୟାଶିତ ଆକ୍ରମଣ ଫଳରେ ଜୟ ଲାଭ ହୁଏ ବୋଲି ସେ ଭଲ ରୂପେ ଜାଣିଥିଲେ । ସେ ଚତୁରତାର ସୀମା ଟପିଗଲେ ଏବଂ ନିଜର ସୈନ୍ୟମାନଙ୍କୁ ତାଙ୍କ ପଛେ ପଛେ ଆସିବାକୁ କହି ସେ ଯାଇ ହଠାତ୍ ଜୁନାଗଡ଼ ଦ୍ୱାର ଖୋଲିଦେଲେ । ସେ ଏହା କରୁଛନ୍ତି ବୋଲି କେହି ସୁଦ୍ଧା ଭାବି ନ ଥିଲେ ।

ଶରଜାଲର ଅନ୍ତରାଳରୁ ଧନୁର୍ଦ୍ଧାରୀମାନେ ତାଙ୍କୁ ଦେଖିପାରୁନଥିଲେ । ଯେଉଁ ଦଉଡ଼ିରେ ଡଙ୍ଗାମାନ ଖାଇ କୂଳରେ ବନ୍ଧା ହୋଇଥିଲା ତାହା ରନ୍ନାଦିତ୍ୟ ଏବଂ ତାଙ୍କ ସୈନ୍ୟମାନେ ଖୋଲି ଦେଇ ଡଙ୍ଗାରେ ବସିଥିବା ଶତ୍ରୁ ସୈନ୍ୟମାନଙ୍କୁ ମାରିଦେଲେ ବା ବୁଡ଼ାଇଦେଲେ । ତାହାପରେ ରନ୍ନାଦିତ୍ୟଙ୍କ ସୈନ୍ୟମାନେ ଭୀମଦେବ ଯୁଦ୍ଧ କରୁଥିବା ସ୍ଥାନରେ ପହଁରି ପହଁରି ଯାଇ ପହଞ୍ଚିଲେ । ରନ୍ନାଦିତ୍ୟ "ଜୟ ସୋମନାଥ" ଧ୍ୱନି କରି ଉଠିବାରୁ ଭୀମଦେବ ସଙ୍ଗେ ସଙ୍ଗେ "ଜୟ ସୋମନାଥ" କହି ପ୍ରତ୍ୟୁତ୍ତର ଦେଲେ । ପାରମାର ମଧ୍ୟ କ୍ଷୀଣ ସ୍ୱରରେ "ଜୟ ସୋମନାଥ" ଉଚ୍ଚାରଣ କଲେ ।

କିଛି ସମୟ ପାଇଁ ପ୍ରବଳ ଯୁଦ୍ଧ ଚାଲିଲା । ରନ୍ନାଦିତ୍ୟ ଓ ତାଙ୍କ ସୈନ୍ୟମାନେ ଭୀମଦେବଙ୍କୁ ଦୁର୍ଗର ଦ୍ୱାର ଦେଶକୁ ନେଇ ଆସିଲେ । ପାରମାର ଏବଂ ଜୀବିତ ଥିବା ସତରଜଣ ପାଟଣ ସୈନ୍ୟ ମଧ୍ୟ ଦୁର୍ଗ ଭିତରେ ପଶିଗଲେ । ଜୁନାଗଡ଼ ଦ୍ୱାର ଯେପରି ହଠାତ୍ ଖୋଲିଥିଲା, ସେହିପରି ହଠାତ୍ ବନ୍ଦ ହୋଇଗଲା ।

ଭୀମଦେବ ଆହତ ପାରମାରଙ୍କର ମୁଣ୍ଡକୁ ତାଙ୍କ କୋଳ ଉପରେ ରଖି ପାଣି ପିଆଇଲେ । ପାରମାରଙ୍କର ଟିକିଏ ଚେତା ଆସିବାରୁ ସେ ଭୀମଦେବଙ୍କ ଉପରେ ଆଖି ରଖି "ଭୀମଦେବ ମହାରାଜ !" ବୋଲି କହିଉଠିଲେ ।

ଭୀମଦେବ ଆନନ୍ଦରେ ତାଙ୍କୁ କୁଣ୍ଢାଇପକାଇ ଲୋତକ ପୂର୍ଣ୍ଣ ଚକ୍ଷୁରେ କହିଲେ, "ପାରମାର ! ଆଜି ତୁମେ ଅମରତ୍ୱ ଲାଭ କରିଛ ।"

ପାରମାର କ୍ଷୀଣ ସ୍ୱରରେ କହିଲେ, "ଜୟ ସୋମନାଥ ! ମହାରାଜ, ମୋତେ ବିଦାୟ ଦିଅନ୍ତୁ !" ଏତିକି କହିବା କ୍ଷଣି ତାଙ୍କର ପ୍ରାଣ ବାୟୁ ଉଡ଼ିଗଲା ।

ଭୀମଦେବ ପାରମାରଙ୍କ ଗ୍ରୀବା ଉପରେ ମୁଣ୍ଡ ରଖି ଶିଶୁପରି ଚିତ୍କାର କରି ଉଠିଲେ । ସର୍ବଜ୍ଞ ପଛରୁ ଆସି ତାଙ୍କ ହାତ ମହାରାଜାଙ୍କ ବାହୁ ଉପରେ ରଖି କହିଲେ, "ମହାରାଜ ! ନିଜର କର୍ତ୍ତବ୍ୟ କରୁ କରୁ ପାରମାରଙ୍କର ମୃତ୍ୟୁ ହୋଇଛି । ଆମର କର୍ତ୍ତବ୍ୟ କରିବାକୁ ଆହୁରି ବାକି ଅଛି । ଅପେକ୍ଷା କରନ୍ତୁ, ମୁଁ ଆପଣଙ୍କ କ୍ଷତସ୍ଥାନ ବାନ୍ଧିଦିଏ ।"

"ଗୁରୁଦେବ, ଆପଣ ଠିକ୍ କହୁଛନ୍ତି !" କହି ଭୀମଦେବ ଉଠିଲେ । ପାରମାରଙ୍କ ମୃତ ଦେହକୁ ଗୁରୁଦେବଙ୍କ ଜିମା ଦେଇ ସେ ସିଧା ଦୁର୍ଗ କାନ୍ଥ ନିକଟକୁ ଗଲେ ।

## ୪୧

## ଶିବରାଶିଙ୍କ ଗୁରୁ ଅବଜ୍ଞା

ବୀର ସହିତ କଥାବାର୍ତ୍ତା କରୁ କରୁ ଭୀମଦେବ ଅଳ୍ପ ସମୟ ମଧ୍ୟରେ ଅବସ୍ଥା ପର୍ଯ୍ୟବେକ୍ଷଣ କରିନେଲେ । ପ୍ରଧାନ ଦ୍ୱାରଦେଶରେ ଶତ୍ରୁର ପରାଜୟ ହୋଇଛି । ଶତ୍ରୁର ଗଜାରୋହୀ ଧନୁର୍ଦ୍ଧାରୀମାନେ ପଛଘୁଞ୍ଚା ଦେଇଥିଲେ ସୁଦ୍ଧା ଅଶ୍ୱାରୋହୀ-ଧନୁର୍ଦ୍ଧାରୀମାନେ ପ୍ରବଳ ଯୁଦ୍ଧ କରୁଛନ୍ତି । ଭୀମଦେବ ମନ୍ତ୍ରୀ ବିମଳଙ୍କ ସହିତ ଆଲୋଚନା କରିସାରି ଏବଂ ସେଠିକା ଦାୟିତ୍ୱ ତାଙ୍କୁ ଦେଇ ଦ୍ୱାରକା ଦ୍ୱାରକୁ ଗଲେ । ଏହି ଦ୍ୱାର ଆଗରେ ଗଡ଼ଖାଇ ସମୁଦ୍ରରେ ମିଶିଛି, ଫଳରେ ଏହି ଦ୍ୱାର ରକ୍ଷା କରିବା ଯଥେଷ୍ଟ ସହଜ ହୋଇଛି । ଏହିଠାରେ ଯୁଦ୍ଧ ପ୍ରାୟ ଶେଷ ହୋଇଯାଇଛି । ରତ୍ନାଦିତ୍ୟ ଚିନ୍ତାମଗ୍ନ ହୋଇ ଠିଆ ହୋଇଛନ୍ତି । ମହାରାଜ ଦଉଡ଼ିଯାଇ ତାଙ୍କୁ କୁଣ୍ଢାଇ ପକାଇ କହିଲେ, "ଧନ୍ୟ ରତ୍ନାଦିତ୍ୟ, ତୁମେ ଆଜି ମୋ ଜୀବନ ରକ୍ଷା କରିଛ ।"

ରତ୍ନାଦିତ୍ୟ ଉତ୍ତର ଦେଲେ, "ମୁଁ କଣ ବଡ଼କାମ କରିଛି ? ଆପଣଙ୍କୁ ରକ୍ଷା କରି ମୁଁ ମୋର କର୍ତ୍ତବ୍ୟ କରିଛି ମାତ୍ର ।"

ମହାରାଜ—ଦ୍ୱାର ଫିଟାଇ ଦେଇ ତୁମେ ଅପୂର୍ବ ସାହସ ଓ କୌଶଳର ପରିଚୟ ଦେଇଛ । ତୁମ ବ୍ୟତୀତ ଅନ୍ୟ ଯେକୌଣସି ଲୋକ ସେ ପରିସ୍ଥିତିରେ ଇତସ୍ତତଃ ହୋଇଯାଇଥାନ୍ତା ।

ରତ୍ନାଦିତ୍ୟ ହସି ହସି କହିଲେ, "ତାହା ହୋଇପାରେ, କିନ୍ତୁ ଏତେ ବଡ଼ ଦୁର୍ଗ ପ୍ରାଚୀରରୁ ଖାଇକୁ ଡେଇଁବାକୁ ମୋର ଶକ୍ତି କାହିଁ ?" ଉଭୟ ସାହସୀ ବନ୍ଧୁ ପରସ୍ପରକୁ ପୁଣି ଆଲିଙ୍ଗନ କଲେ ।

ମହାରାଜ—ରତ୍ନାଦିତ୍ୟ; ଶତ୍ରୁ କାହିଁକି ଏତେ ଖେଳୁଛନ୍ତି ?

ରତ୍ନାଦିତ୍ୟ—"ମୋତେ ମଧ ତାହା ଆଶ୍ଚର୍ଯ୍ୟ ଲାଗୁଛି । ମୁଁ ଭାବୁଛି, ସେମାନେ କୌଣସି କୌଶଳ କରିବାକୁ ଚେଷ୍ଟା କରୁଛନ୍ତି । ଅନ୍ଧକାର ହେବା ପୂର୍ବରୁ ଆମେ ଏହି ସ୍ଥାନରେ ଅଧିକ ସୈନ୍ୟ ରଖିବା ଉଚିତ ।" ଏହା କହିଲା-ବେଳେ ସେ ତାଙ୍କ ନିଶ ମୋଡ଼ୁଥାନ୍ତି ।

ମହାରାଜ—ମୁଁ ତୁମ ସହିତ ଏକମତ । ମୁଁ ସାଙ୍ଗେ ସାଙ୍ଗେ ଏଠାକୁ ଅଧିକ ସୈନ୍ୟ ପଠାଉଛି ।

ରତ୍ନାଦିତ୍ୟ—ମହାରାଜ ! ଆପଣ କ୍ଳାନ୍ତ ହୋଇଯାଇଥିବେ । ମୁଁ କ୍ଳାନ୍ତ ହୋଇନାହିଁ । ବର୍ତ୍ତମାନ ତ ସବୁ ଚୁପ୍‌ଚାପ୍ । ଆପଣ ଟିକିଏ ବିଶ୍ରାମ କାହିଁକି ନେଉନାହାନ୍ତି ? ରାତିକି ଆମ ଅବସ୍ଥା କଣ ହେବ କିଏ କହିବ ?

ଭୀମଦେବ ମହାରାଜ ଉପରୁ ଆସି ଦେଖିଲେ, କେତେକ ସାଧୁ ସଂସ୍କାର କରିବା ପାଇଁ ମୃତ ସୈନ୍ୟମାନଙ୍କ ଶବ ସଂଗ୍ରହ କରୁଛନ୍ତି । ଗୁରୁଦେବ ଆହତ ସୈନ୍ୟମାନଙ୍କର ସେବା ଶୁଶ୍ରୂଷା କରିବାରେ ବ୍ୟସ୍ତ । ଭିତର ଦୁର୍ଗର ମନ୍ଦିରରେ ସେ ସେମାନଙ୍କ ରହିବାର ବ୍ୟବସ୍ଥା କରିଛନ୍ତି ।

ଯେଉଁ ମହାନ୍ ଗଙ୍ଗସର୍ବଜ୍ଞଙ୍କ ପାଦ ଶକ୍ତିଶାଳୀ ରାଜାମାନେ ଭକ୍ତିରେ ପୂଜା କରନ୍ତି, ସେ ଆଜି ସାଧାରଣ ଚିକିତ୍ସକ ଭାବେ ଆହତ ସୈନ୍ୟମାନଙ୍କର ସେବା ଶୁଶ୍ରୂଷା କରୁଛନ୍ତି । ଲୋକମାନଙ୍କ ଖାଇବାର ଦାୟିତ୍ୱ ନେଇଛନ୍ତି ଘୋଘ କୋଠାରୀ ନିଜେ । ଏ ସବୁ କାର୍ଯ୍ୟ ଦେଖିସାରି ମହାରାଜା ଖୁସି ହୋଇ ଓ ସମସ୍ତଙ୍କୁ ଉତ୍ସାହ ଦେଇ ତାଙ୍କ କୋଠରୀକୁ ଗଲେ ।

ପ୍ରଧାନ ମନ୍ଦିର ନିକଟରେ ସେ ଯେତେବେଳେ ପହଞ୍ଚିଲେ ତାଙ୍କ ଆଗରେ ଠିଆ ହୋଇ ହରଦତ୍ତ ପାଟିକରି କହିଲା, "ମହାମାୟାଙ୍କର ଅପବିତ୍ରକାରୀ ! ତୁମ ମୁଣ୍ଡ ଉପରେ ମୃତ୍ୟୁ ଝୁଲୁଛି ।" ଏହା ଶୁଣି ପ୍ରଥମେ ନିଜ ଖଣ୍ଡା ବାହାର କରିବାକୁ ଭୀମଦେବ ଭାବିଲେ । କିନ୍ତୁ ସାଧୁ ପାଖରେ କୌଣସି ଅସ୍ତ୍ର ନ ଥିବା ଦେଖି ସେ ହସିଦେଲେ ଓ ହରଦତ୍ତଙ୍କୁ ବାଟ ଛାଡ଼ି ଚାଲିଗଲେ ।

ଭୀମଦେବ ତାଙ୍କ କୋଠରୀରେ ପ୍ରବେଶ କରିବାବେଳେ ଉଲ୍ଲସିତ ଅନୁଭବ କରୁଥାନ୍ତି । ସତେ ଯେପରି କଣ ଖୋଜୁଛନ୍ତି, ସେହିପରି ଚାରିଆଡ଼କୁ

ଅନାଇଲେ । ଭୀମଦେବଙ୍କ ମନର କଥା ଜାଣିପାରି ବୀର ସଙ୍ଗେ ସଙ୍ଗେ କହିଲା, "ମହାରାଜ,ଏହି ପାଗଳୀ ଝିଅଟା—ଆପଣ ସେ ଘରକୁ ଗଲାଣି । ଦିନ ଯାକ ସେ ସେଠାରେ ତାର ମା ପାଖରେ ଠିଆହୋଇ ଆପଣଙ୍କ କାର୍ଯ୍ୟ ଦେଖିଲାଗିଛି ।"

ଭୀମଦେବ—ବୀର, ସାରା ଦୁନିଆ ଯେବେ ଏମିତି ପାଗଳ ହୁଅନ୍ତା ତେବେ କେତେ ଭଲ ହୁଅନ୍ତା ? ଥରେ ସେ ମୋ ପ୍ରତି ଆକୃଷ୍ଟ ହୋଇ ଯେପରି ଚାହିଁଥିଲା, ତାହା ମୁଁ ଭୁଲି ପାରିବି ନାହିଁ ।

ବୀର—ସେ ଯାହା ହେଉ, ଆପଣଙ୍କ ବ୍ୟତୀତ ଏବେ ତା ଆଖି ଆଗରେ ଆଉ କେହି ବସୁ ନାହାନ୍ତି ।

ମହାରାଜ ତାଙ୍କର ଅସ୍ତ୍ରଶସ୍ତ୍ର ଥୋଇ, ସ୍ନାନ ଓ ଭୋଜନ ସାରି ଶୋଇବାକୁ ଗଲେ । ତାଙ୍କୁ ନିଦ ହେବା ପୂର୍ବରୁ ସେ ଏକ ପାଦ ଶବ୍ଦ ଶୁଣିବାକୁ ପାଇଲେ—ଠିକ୍ ଏକ ହସ୍ତୀ ହରିଣୀ ପରି । ଆଖି ଫିଟାଇ ସେ ଚାହିଁଲେ—ଗୋଲାପୀ ଦୁଇଟି ପାଦ, ସୁକୋମଳ ଶରୀର, ଉନ୍ମୁକ୍ତ କେଶଦାମ ଭିତରେ ଲଜ୍ଜାବନତ ମୁଖ । ମଧୁର ସ୍ୱରରେ ସେ କହୁଛି, "ମାଆ, ମହାରାଜ ଆଜି ଚମତ୍କାର କାର୍ଯ୍ୟ କରିଛନ୍ତି ।" ଭୀମଦେବ ମନକୁମନ କହିଲେ, "ଶେଷ ଅଙ୍କ ଏବେବି ବାକିଅଛି ।"

ଚୌଲା ମହାରାଜଙ୍କୁ ଦେଖିଲା । ତାର ମୁଖରେ ଲଜ୍ଜାର ରକ୍ତିମା ଦେଖା-ଦେଲା ଓ ପରିଧେୟ ସମ୍ଭାଳି ହସି ହସି ଲଜ୍ଜାବନତ ମୁଖରେ ତଳକୁ ଚାଲିଗଲା । କ୍ଲାନ୍ତ ଭୀମଦେବ ଆଖି ବନ୍ଦ କଲେ । ସେ ସ୍ୱପ୍ନରେ ତାର ସେହି ଗୋଲାପୀ ପାଦ, ସୁନ୍ଦର ସୁଢ଼ଳ ମୁଖ ଏବଂ ତାଙ୍କୁ ସ୍ୱାଗତ କରୁଥିବା ସେଇ ସୁନ୍ଦର ଆଖି ଦୁଇଟି ଦେଖିବାକୁ ପାଇଲେ ।

ମହାରାଜ ଦୁଇଘଡ଼ିମାତ୍ର ଶୋଇଛନ୍ତି କି ନାହିଁ, ଗୋଳମାଳ ଶବ୍ଦରେ ଉଠିପଡ଼ିଲେ ଓ ତାଙ୍କ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ହୋଇ ବାହାର ଘର ଉପରକୁ ଚାଲିଆସିଲେ । ଗୋଧୂଳି ସମୟ ହୋଇଗଲାଣି । ସୈନ୍ୟମାନେ ନାଚି ନାଚି, ଗୀତଗାଇ ଓ "ଜୟ ସୋମନାଥ" ଧ୍ୱନି ଦେଇ ବିଶ୍ରାମସ୍ଥାନକୁ ଯାଉଛନ୍ତି । ଆଗରେ ଗୁରୁଦେବ, ରତ୍ନାଦିତ୍ୟ ଏବଂ ଦଦ୍ଦା, ତାଙ୍କ ଚାରିପାଖେ ଆଲୋକଧାରୀ-ମାନେ ଚାଲିଛନ୍ତି । ଭୀମଦେବଙ୍କୁ ଶୁଭ ଖବର ଦେବାଲାଗି ବିମଳ ସମସ୍ତଙ୍କ ଆଗରେ ଚାଲିଛନ୍ତି ।

ମହାରାଜ ହସି ହସି ପଚାରିଲେ, "ବିମଳ, କଣ ହେଲା ?"

ବିମଳ—ଶତ୍ରୁସୈନ୍ୟ ପଛକୁ ହଟିଯାଉଛନ୍ତି ।

ମହାରାଜ—ସତେନାଁ ? ସେମାନେ କଣ ଆଉ ଆକ୍ରମଣ କରୁ ନାହାନ୍ତି ?

ବିମଳ—ଆକ୍ରମଣ ? ତିନି ଦିଗରୁ ପ୍ରାୟ ଅଧ ମାଇଲ ପର୍ଯ୍ୟନ୍ତ ଶତ୍ରୁ ସୈନ୍ୟ ପଛକୁ ହଟିଗଲେଣି । ଆମର ବିଜୟ ।

ମହାରାଜା ଶୀଘ୍ର ଶୀଘ୍ର ପୋଷାକ ପିନ୍ଧି ପକାଇ ସୈନ୍ୟମାନଙ୍କର ସମ୍ବର୍ଦ୍ଧନା ଗ୍ରହଣ କରିବାକୁ ତଳକୁ ଗଲେ । "ଭୀମଦେବ ମହାରାଜାଙ୍କର ଜୟ" ଧ୍ୱନି ଶୁଣାଗଲା । ମହାରାଜା ଗୁରୁଦେବଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲେ, "ଗୁରୁଦେବ, ଆପଣଙ୍କର ଆଶୀର୍ବାଦ ହିଁ ଆମର ସମ୍ବଳ ।"

ଗୁରୁଦେବ—"ବତ୍ସ, ତୁମେ ଦୀର୍ଘଜୀବୀ ହୁଅ । ଆଜ ଆମେ ସମସ୍ତେ ପ୍ରଭୁ ଭୋଳାନାଥଙ୍କ ଆଶୀର୍ବାଦ ପାଇଁ ପ୍ରାର୍ଥନା କରିବା । ମୁଁ ତାଙ୍କର ଅକିଞ୍ଚନ ଭୃତ୍ୟ ମାତ୍ର । କିନ୍ତୁ ତୁମର ବୀରତ୍ୱ ଓ ଶୌର୍ଯ୍ୟ ଅମର ହେବ । ଠିକ୍ କାର୍ଯ୍ୟ କରିଛ । ଆସ ବତ୍ସ, ମୁଁ ଆଲିଙ୍ଗନ କରେ ।" ଗୁରୁଦେବ ମହାରାଜାଙ୍କୁ ଆଲିଙ୍ଗନ କରିବା ପରେ ରତ୍ନାଦିତ୍ୟ, ଦଦ୍ଧା ଏବଂ ତା ପରେ ସେନାପତିମାନଙ୍କୁ ଆଲିଙ୍ଗନ କଲେ । ସମବେତ ସୈନ୍ୟ ଓ ସାଧାରଣ ଜନତା "ଜୟ ସୋମନାଥ" ଏବଂ "ଭୀମଦେବ ମହାରାଜାଙ୍କର ଜୟ" ଧ୍ୱନି ଦେଉଥାନ୍ତି । ସୈନ୍ୟମାନେ ଆନନ୍ଦରେ ନାଚି ଓ ଗୀତ ଗାଇ ବାଜା ବଜାଉଥାନ୍ତି ।

ଗୁରୁଦେବ କହିଲେ, "ମହାରାଜ, ସନ୍ଧ୍ୟା ପ୍ରାର୍ଥନାର ସମୟ ହେଲାଣି । ଯେଉଁ ପ୍ରଭୁଙ୍କ କଲ୍ୟାଣ ଫଳରେ ଆମର ବିଜୟ ହୋଇଛି ଚାଲନ୍ତୁ ତାଙ୍କୁ ପ୍ରାର୍ଥନା କରିବା ।"

ସମସ୍ତେ ଆନନ୍ଦରେ ହସି, ନାଚି ଓ ଚିତ୍କାର କରି ମନ୍ଦିରର ପ୍ରାର୍ଥନା ମଣ୍ଡପକୁ ଗଲେ । ଗୁରୁଦେବ ସନ୍ଧ୍ୟା ପ୍ରାର୍ଥନା ଆରମ୍ଭ କଲେ । ଉପସ୍ଥିତ ଜନତା କ୍ଳାନ୍ତ ହୋଇଥିଲେ ସୁଦ୍ଧା, ଆନନ୍ଦଭରା କଣ୍ଠରେ ତାହା ଗାନକଲେ ।

ପ୍ରାର୍ଥନା ଶେଷ ହେବା ପରେ ଗୁରୁଦେବ କହିଲେ, "ବନ୍ଧୁଗଣ, ଏଠାକୁ ପ୍ରଭୁଙ୍କ ରକ୍ଷା ନିମନ୍ତେ ଆସିଥିବା ଯୋଦ୍ଧାମାନଙ୍କୁ ମୁଁ ଆଶୀର୍ବାଦ କରୁଛି । ଆପଣମାନେ ଶହ ଶହ ବର୍ଷ ବଞ୍ଚି ଆମ ଧର୍ମର ଶତ୍ରୁମାନଙ୍କୁ ଧ୍ୱଂସ କରନ୍ତୁ । ଏହି କର୍ତ୍ତବ୍ୟ ପାଳନ କରି ମର୍ତ୍ତ୍ୟରେ ତଥା ସ୍ୱର୍ଗରେ ଆପଣଙ୍କ ଯଶ ବୃଦ୍ଧି ପାଉ । ଆପଣମାନଙ୍କର ଏହି ଦୃଢ଼ତା ସବୁସମୟରେ ଅକ୍ଷୁଣ୍ଣ ରହିବ ବୋଲି ମୋର ଆଶା । ଆପଣମାନଙ୍କର ଏହି କାର୍ଯ୍ୟ ଭବିଷ୍ୟତ୍ ବଂଶଧରମାନଙ୍କୁ ଅନୁପ୍ରାଣିତ କରି ସେମାନଙ୍କୁ ଠିକ୍ ପଥରେ ଚଳାଉ । ମହାରାଜାଧିରାଜ, ପରମ ଭକ୍ତ

ଶ୍ରୀ ଗୁରୁଜ୍ୟ, ତୁମର ଶତାଧିକ ବର୍ଷ ପରମାୟୁ ହେଉ ।” ତାଙ୍କ ବକ୍ତବ୍ୟ ଶେଷ ହେବା କ୍ଷଣି ସମସ୍ତେ ପୂର୍ଣ୍ଣ ନୀରବ ହୋଇଗଲେ ।

ହଠାତ୍ କିଛି ଦୂରସ୍ଥ ଏକ ଅନ୍ଧାରୁଆ ଖୁଣ୍ଟ ଆଡ଼୍ ଆଳରୁ କଦାକାର ଚେହେରା ବିଶିଷ୍ଟ ଜଣେ ବ୍ୟକ୍ତି ବାହାରିଆସି ଗୁରୁଦେବଙ୍କଠାରୁ କିଛି ଦୂରରେ ଠିଆ ହେଲା—ସତେ ଯେପରି ପ୍ରଭୁ ରୁଦ୍ର ଦେଖାଦେଇଛନ୍ତି । ସେ ତାର ତ୍ରିଶୂଳଟି ଗୁରୁଦେବଙ୍କ ଆଡ଼କୁ ଦେଖାଇ ଆତଙ୍କଜନକ ସ୍ୱରରେ କହିଲା, “ତୁମେମାନେ ଆମ ଧର୍ମର ବିଶ୍ୱାସଘାତକ । ଗଜ୍ନୀରେ ତୁମେମାନେ ଯାହାକରିଯାଉଛ ତାହା ସମସ୍ତଙ୍କୁ ବିନାଶ କରିବ । ମହାମାୟୀଙ୍କର ଅପବିତ୍ରକାରୀ ଭୀମଦେବ, ତୁମେ ଓ ତୁମର ଗୁରୁ, ଯେଉଁମାନେ କି ଆମ ଧର୍ମ ନଷ୍ଟ କରିଛ, ଦୁହେଁ ଯାକ ଅଚିରେ ମୃତ୍ୟୁ ମୁଖରେ ପଡ଼ିବ । ଯେଉଁ ସ୍ଥାନରେ ତୁମେମାନେ ଏପରି ଅନ୍ୟାୟ କରିଛ, ସେଠାରେ ଶୃଗାଳ ବୁଲିବେ ଏବଂ ତୁମ ଶବଉପରେ ଶାଗୁଣା ଉଡ଼ିବେ ।” ଏ ଭୟାନକ ବିକଟାଳ ସ୍ୱର କ୍ଷଣକ ମଧ୍ୟରେ ନୀରବ ହେଲା । ସମବେତ ସୈନ୍ୟ-ମାନେ ଏହି ଲୋକକୁ ହତ୍ୟା କରିବା ପାଇଁ ନିଜ ନିଜର ଖଣ୍ଡା ବାହାର କଲେ । ଭୀମଦେବ ତାଙ୍କ ତରବାରି ଓ ରମ୍ନାଦିତ୍ୟ ତାଙ୍କ କଟାରି ଉଞ୍ଚାଇଲେ । ଦଦ୍ଦା ନିଜ ହାତରେ ଆଖି ବନ୍ଦ କରି ଥରି ଥରି ବସିପଡ଼ିଲେ । ଗୁରୁଦେବ ଶାନ୍ତି ପ୍ରତିଷ୍ଠା କରିବା ପର୍ଯ୍ୟନ୍ତ କୋଳାହଳ ଲାଗିରହିଲା ।

ଗୁରୁଦେବ କହିଲେ, “ସାହସୀ ଯୋଦ୍ଧା ବୃନ୍ଦ, ଯୁଦ୍ଧ ପାଇଁ ପ୍ରସ୍ତୁତି ଜନିତ କ୍ଳାନ୍ତି ଏବଂ ପ୍ରାୟଶ୍ଚିତର କଠୋରତାରେ ମୋର ଶିଷ୍ୟ ଶିବରାଶିଙ୍କର ମୁଣ୍ଡ ଗୋଳମାଳ ହୋଇଛି । ସେ ଯାହା କହିଲେ ତାହା ଭୁଲିଯାଅ । କ୍ଷମା ଦେବାହିଁ ବୀରତ୍ୱର ପରିଚୟକ ।” ଏହା କହିସାରି ଗୁରୁଦେବ ଶିବରାଶିଙ୍କ ଆଡ଼କୁ ଗଲେ । ଦୁଇଜଣଙ୍କର ଚିତ୍ର ଠିକ୍ ପରସ୍ପରର ବିପରୀତ ଦେଖାଯାଉଥାଏ । ଶିବରାଶି ଦୀର୍ଘ ଜଟା ଓ କମ୍ବଳ ଆବୃତ । ସେ ଭୟାବହ ବେଶରେ ପ୍ରଳୟର ଅବତାର ରୁଦ୍ରଙ୍କ ପରି ଦେଖାଯାଉଥିଲେ । ଅନ୍ୟ ଦିଗରେ ଦୀର୍ଘ ଶୁଭ୍ର-କେଶ ବିଶିଷ୍ଟ ଗୁରୁଦେବ ସତ୍ୟ, ଶିବ ଓ ସୁନ୍ଦରର ଅବତାର ପ୍ରଭୁ ଶମ୍ଭୁଙ୍କ ପରି ଦେଖାଯାଉଥାନ୍ତି । ଦୁଇଜଣଯାକ ତପସ୍ୱୀ—ଶିବରାଶି ତୀବ୍ର କ୍ରୋଧୀ,ଅନ୍ୟ ପକ୍ଷରେ ଗୁରୁଦେବ ଶାନ୍ତି ଓ ଦୟାର ପ୍ରତୀକ । ମୁହୂର୍ତ୍ତିକ ପାଇଁ ଗୁରୁଦେବ ଓ ଶିଷ୍ୟ ପରସ୍ପରକୁ ଚାହିଁଲେ । ସତେ ଯେପରି ସ୍ନେହମୟୀ ମାଆ କହୁଛି, ସେହିପରି ସ୍ୱରରେ ଗୁରୁଦେବ କହିବାର ଶୁଣାଗଲା, “ଶିବରାଶି, ଯେ ନିଜକୁ ସଂଯତ କର

ନପାରେ, ସେ ଆତ୍ମଘାତୀ । ତୁମେ ଆସ । ନିଜ ଆପୁତ୍ତରେ ତୁମେ ନାହିଁ । ତୁମେ ଅସୁସ୍ଥ ।"

ପଦେ ସୁଦ୍ଧା କଥା ନ କହି ଶିବରାଶି ତାଙ୍କ ଓଠ ଚପି ମୁହଁ ବନ୍ଦ କଲେ । ସେ କହିବାକୁ ଚେଷ୍ଟା କରି ସୁଦ୍ଧା କିଛି କହିପାରିଲେ ନାହିଁ ।

ଗୁରୁଦେବ ସ୍ନେହଭରା କଣ୍ଠରେ ପୁଣି କହିଲେ, "ବତ୍ସ ! ଆସ !" ଶିବରାଶିଙ୍କ ହୃଦୟରୁ ସତେ ଯେପରି ଅଗ୍ନିଶିଖା ଉଠୁଥାଏ, ସେହିପରି ଜଣାଗଲା । ତାଙ୍କ କଣ୍ଠ ରୁଦ୍ଧ ଓ ଆଖି ନାଲି । ଏହି ବୃଦ୍ଧଙ୍କୁ ଆଘାତ କରିବାକୁ ତାଙ୍କର ମନ ହେଲା, କିନ୍ତୁ ଏହି ଇଚ୍ଛାକୁ କାର୍ଯ୍ୟକାରୀ କରିବାପାଇଁ ହାତ ଉଠିଲା ନାହିଁ ।

ଏକ ଦୁଷ୍ଟ ସାପକୁ ପୋଷା ମନାଇଲାଭଳି ସ୍ୱରରେ ଗୁରୁଦେବ କହିଲେ, "ଆସ ବତ୍ସ !" ଏହି ସ୍ୱରରେ ଦୃଢ଼ତା ଥିଲାପରି ଜଣାଯାଉଥିଲା ।

ତାଙ୍କ କଥା ଅମାନ୍ୟ କରିବା ପାଇଁ ଶିବରାଶି ପୁଣି ଉଦ୍ୟମ କଲେ । କିନ୍ତୁ ବହୁ ବର୍ଷର ଅଭ୍ୟାସ ବଶତଃ ଗୁରୁଦେବଙ୍କ ଶାନ୍ତ ଓ ସ୍ନେହପୂର୍ଣ୍ଣ ବାଣୀକୁ ଅମାନ୍ୟ କରିବା ସମ୍ଭବପର ହେଲାନାହିଁ । ସେ ଚାରିଆଡ଼କୁ ଅନାଇଲେ ଏବଂ ଚାରିପାଖରେ ଠିଆ ହୋଇଥିବା ସୈନ୍ୟମାନଙ୍କୁ ଛାଡ଼ି ଗୁରୁଦେବଙ୍କର ସମ୍ମୁଖୀନ ହେଲେ ।

ଗୁରୁଦେବ ଶିବରାଶିଙ୍କ କାନ୍ଧ ଉପରେ ହାତ ପକାଇ ଏଥର କ୍ଷୀଣ ସ୍ୱରରେ କହିଲେ, "ମୋ ସାଙ୍ଗରେ ଆସ ।" ଠିକ୍ ପୋଷା ମେଣ୍ଢାଟିଏପରି ଶିବରାଶି ଗୁରୁଦେବଙ୍କ ସାଙ୍ଗରେ ଗଲେ । ମୁହୂର୍ତ୍ତକ ମଧ୍ୟରେ ଉଭୟେ ଦୃଷ୍ଟିର ଅନ୍ତରାଳକୁ ଚାଲିଗଲେ ।

ଏହା ପରେ ରତ୍ନାଦିତ୍ୟ "ଭୀମଦେବ ମହାରାଜାଙ୍କର ଜୟ ହେଉ" ଧ୍ୱନି କରି ସ୍ଥାନର ନୀରବତା ଭାଙ୍ଗିଲେ । ସମସ୍ତେ ଏକ ସମୟରେ କଥାବାର୍ତ୍ତା ବା ଜୟ ଧ୍ୱନି କରିବାକୁ ଲାଗିଲେ ।

ଭୀମଦେବ କହିଲେ, "ମୋର ପ୍ରିୟ ଯୋଦ୍ଧାଗଣ, ଆମେ ଖୁସି ହେଲେ ସୁଦ୍ଧା ନିଶ୍ଚିନ୍ତ ହେଲେ ଚଳିବ ନାହିଁ । ଆମର ଯେଉଁ ବୀର ଯୋଦ୍ଧାମାନେ ଜୀବନ ଦେଇଛନ୍ତି, ପ୍ରଥମେ ସେମାନଙ୍କର ଶବ ସଂସ୍କାର କରିବାକୁ ହେବ । ତା ପରେ ଆପଣମାନେ ଭୋଜନ କରି ଓ ବିଶ୍ରାମ ନେଇ ପୁଣି ଅକ୍ଳାନ୍ତ ପରିଶ୍ରମ ପାଇଁ ପ୍ରସ୍ତୁତ ହେବାକୁ ହେବ । ଶତ୍ରୁର କଣ ଅସତ୍ କଳ୍ପନା ଅଛି ତାହା କିଏ କହିପାରିବ ?"

ମୃତ ସାଥୀମାନଙ୍କର ଶବ ସଂସ୍କାର କରିବା ଉଦ୍ଦେଶ୍ୟରେ ସୈନ୍ୟମାନେ ଦ୍ୱାରିକା ଦରଜାକୁ ଗଲେ । କୋଡ଼ିଏଶହ ସୈନ୍ୟ ମରିଥିଲେ ଓ ପନ୍ଦରଶହ କ୍ଷତ ବିକ୍ଷତ ହୋଇଥିଲେ । ପ୍ରତ୍ୟେକ ଯୋଦ୍ଧା ଶତ୍ରୁ ପକ୍ଷର ପାଞ୍ଚ ସାତ ଜଣ ସୈନ୍ୟ ମାରିଥିବାରୁ ଗର୍ବ ଅନୁଭବ କରୁଥାନ୍ତି ।

ପରେ ସନ୍ଧ୍ୟାବେଳେ ଭୀମଦେବ ମହାରାଜ ଓ ରତ୍ନାଦିତ୍ୟ ଉଭୟେ ପୁଣି ଦୁର୍ଗ ପର୍ଯ୍ୟବେକ୍ଷଣ କରି ସମସ୍ତ ଆୟୋଜନ ଦେଖିଲେ । ପରଦିନ ପାଇଁ ସବୁ ବ୍ୟବସ୍ଥା ହେବା ପରେ ସେମାନେ ନିଜ ନିଜ କକ୍ଷକୁ ବିଶ୍ରାମ ନେବାପାଇଁ ଗଲେ ।

ରତ୍ନାଦିତ୍ୟ କହିଲେ, "ମହାରାଜ, ଟିକିଏ ବିଶ୍ରାମ ନେଇ ସାରିବା ପରେ କାମରେ ହାଜର ହେବି । ହମୀର ତାର ସୈନ୍ୟ ପଛକୁ ହଟାଇ ନେଉଛି । ଏଥିରେ କୌଣସି ଷଡ଼ଯନ୍ତ୍ର ଥିବାର ମୁଁ ସନ୍ଦେହ କରୁଛି ।"

ଭୀମଦେବ କହିଲେ, "ଉତ୍ତମ, ଦରକାର ହେଲେ ମୋତେ ଖବର ଦେବ ।"

## ୪୨

## ଅନନ୍ଦର ମୁହୂର୍ତ୍ତ

ଭୀମଦେବ ଅତ୍ୟନ୍ତ ଆନନ୍ଦ ମନରେ ଶୟନ କକ୍ଷକୁ ଫେରିଗଲେ—ସତେ ଯେପରି ସେ ଦିବ୍ୟ ସଙ୍ଗୀତର ନିଶାରେ ଝୁଲୁଛନ୍ତି । ସେ ଅସାଧାରଣ ବୀରତ୍ୱର ପରିଚୟ ଦେଇ ହମୀରର ସୈନ୍ୟ-ବାହିନୀକୁ ପରାସ୍ତ କରିବାରେ ସଫଳ ହୋଇଛନ୍ତି । ତାହା ଫଳରେ ସେ ନିଜ ସୈନ୍ୟବାହିନୀ ମଧ୍ୟରେ ଶ୍ରଦ୍ଧାର ପାତ୍ର ହେବା ସଙ୍ଗେ ସଙ୍ଗେ ମହାନ୍ କୀର୍ତ୍ତି ମଧ୍ୟ ଅର୍ଜି ଛନ୍ତି । ମହାଭାରତର ବୀରମାନଙ୍କ ମଧ୍ୟରେ କୁନ୍ତୀଙ୍କ ପୁତ୍ର ଭୀମଙ୍କର ଯେଉଁ ସ୍ଥାନ ଥିଲା, ଭୀମଦେବଙ୍କ ନାମ ଯେ ତାଙ୍କ ସମସାମୟିକ ବୀର ରାଜାମାନଙ୍କ ମଧ୍ୟରେ ସେହି ପର୍ଯ୍ୟାୟରେ ରହିବ ଏ ବିଷୟରେ କୌଣସି ସନ୍ଦେହ ନାହିଁ । ପ୍ରଭୁ ଭୋଳାନାଥ ତାଙ୍କୁ ଯେଉଁ ଶକ୍ତି ଦେଇଛନ୍ତି, ସେ ତାହାର ସଦ୍‌ବ୍ୟବହାର କରିଥିବାରୁ ସେ ନିଜ ପାଇଁ

ସ୍ୱର୍ଗରେ ମଧ୍ୟ ସ୍ଥାନର ଅଧିକାରୀ ହୋଇଛନ୍ତି । ଶିଖରୀ ଶିଖରରୁ କଳ କଳ ନାଦ କରି ତଳକୁ ବୋହିଆସୁଥିବା ଜଳଧାର ପରି ସେହି ଲାସ୍ୟମୟୀ ଯୁବତୀ ନର୍ତ୍ତକୀ, ତାର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗରେ ଚପଳତା ଯେମିତି ତାଙ୍କୁ ସ୍ୱାଗତ କରିବା ପାଇଁ ବସିଥିବ ।

ତାଙ୍କର ଚିନ୍ତାରେ ହଠାତ୍ ସ୍ଥାନ ପାଇଲା ଶୈଳୀ । ସେ ଗୁରୁଦେବଙ୍କ ଝିଅ ରୂପେ ପରିଚିତା ଏବଂ ସେ ନିଜକୁ ପାବର୍ତୀ ବୋଲି ଭାବେ । ବିଚିତ୍ରମୟୀ ସେ ବାଳିକା । ତାର ମନ ଓ ଚିନ୍ତା ସତେ ଯେପରି ଆକାଶରେ ଖେଳି ବୁଲୁଛି; ସାଂସାରିକ ବିଷୟ ତାକୁ ସ୍ପର୍ଶ କରି ନାହିଁ । ତାର ଦୃଷ୍ଟିରେ ଏ ଜୀବନ ଏକ ଦୀର୍ଘ ନୃତ୍ୟ । ସେ ଯେତେବେଳେ ମନ୍ଦିରରେ ନୃତ୍ୟ କରେ, ଅପୂର୍ବ ଆନନ୍ଦରେ ନିମଜ୍ଜିତ ହୋଇଯାଏ । ସମୁଦ୍ରର ଅସ୍ଥିର ଲହରୀମାଳା ଉପରେ ଯେପରି ଖଣ୍ଡ ଖଣ୍ଡ ଉଡ଼ନ୍ତା ମେଘ ସ୍ୱଳ୍ପ କ୍ଷଣ ସ୍ଥାୟୀ ଛାଇ ପକାଇ ଚାଲିଯାଏ, ଠିକ୍ ସେହିପରି ସଙ୍କଟଗୁଡ଼ିକ ତା ଉପର ଦେଇ ଭାସି ଚାଲିଯାନ୍ତି । ତାର ହସ ଓ କାନ୍ଦ ଏବଂ ଆଶା ଓ ଆନନ୍ଦ ଭିତରେ ଏକ ମାତ୍ର ଆଶ୍ୱାସନା ଯେ, ଏହି ଦୁନିଆରେ ସେ ଜୀବନକୁ ଉପଭୋଗ କରୁଛି ।

ଭୀମଦେବଙ୍କର ଦୁଇଟି ରାଣୀ ଥିଲେ । ଉଭୟେ ସୁନ୍ଦରୀ, ବୁଦ୍ଧିମତୀ ତଥା ଅନୁଗତା । ତାଙ୍କର ଦାୟିତ୍ୱ ଭାରାକ୍ରାନ୍ତ ଜୀବନକୁ ସେମାନେ ହାଲୁକା ତଥା ସୁଖମୟ ଓ ଉପଭୋଗ୍ୟ କରିଥିଲେ । ବାକ୍ୟରେ ବା କାର୍ଯ୍ୟରେ ସେମାନେ କେବେହେଲେ ତାଙ୍କ କଥା ଅବଜ୍ଞା କରି ନ ଥିଲେ । କିନ୍ତୁ ଶୈଳୀର ସ୍ପର୍ଶ ତାଙ୍କୁ କେବଳ ଆନନ୍ଦ ନ ଦେଇ ଅଧିକ କିଛି ଦେଇଛି । ତାଙ୍କ ଦୃଷ୍ଟିରେ ଏ ସଂସାର ସ୍ୱର୍ଗୀଭ ହୋଇଉଠିଛି । ତାହା ସହିତ ସାଂସାରିକ ବା ପାରିବାରିକ ବିଷୟରେ ଅଥବା ରାଜ୍ୟ ଶାସନ ସଂକ୍ରାନ୍ତ ଗୁରୁତର ବିଷୟରେ କୌଣସି କଥାବାର୍ତ୍ତା କରିବାକୁ ସେ ସ୍ୱପ୍ନରେ ସୁଦ୍ଧା ଭାବନ୍ତି ନାହିଁ । ତାଙ୍କ ଦୃଷ୍ଟିରେ ସେ ଚନ୍ଦ୍ର ପରି ସ୍ନିଗ୍ଧ ଓ ଫୁଲ ପରି ସୁଗନ୍ଧମୟୀ ଏବଂ ତାହାର ନୃତ୍ୟ ସମୁଦ୍ରର ଲହରୀ ପରି ଛନ୍ଦମୟ । ତାହା ପାଖରେ ଥିଲାବେଳେ ସେ ଭାବନ୍ତି ଯେପରି ସେ ଫୁଲଭରା କାନନରେ ବୁଲୁଛନ୍ତି ବା ସମୁଦ୍ରରେ ଗତିହୀନ ଭାବରେ ଭାସୁଛନ୍ତି ବା ତୁଷାରପୂର୍ଣ୍ଣ ପର୍ବତ ପ୍ରାନ୍ତରେ ବିଚରଣ କରୁଛନ୍ତି । ଭୀମଦେବ ଶୈଳୀର କଥା ଯେତେ ବେଶୀ ଭାବୁଥାନ୍ତି, ତାଙ୍କ ମନ ସେତିକି ବେଶୀ ଉତ୍ସାହିତ ହେବା ସଙ୍ଗେ ସଙ୍ଗେ ଶରୀରରେ ଶକ୍ତି ବଢ଼ୁଥିବା ଭଳି ଅନୁଭବ କରୁଥାନ୍ତି ।

ଭୀମଦେବ ନିଜ କକ୍ଷରେ ପହଞ୍ଚିବା ବେଳକୁ ଏହି ସବୁ କଥା ଭାବୁଥିଲେ । ସେ ଅସ୍ତ୍ର ଶସ୍ତ୍ର ରଖିଦେଇ ପାନାହାର ପରେ ଗ୍ରୁଡ଼ ଉପରେ କିଛି ସମୟ ବୁଲିବାକୁ ଗଲେ । ଚନ୍ଦ୍ର ଆକାଶରେ ଉଚ୍ଚକୁ ଉଠିଲେଣି । ଯୁଦ୍ଧର ସମସ୍ତ ଅସ୍ୱସ୍ତିକର କୋଳାହଳ ବନ୍ଦ ହୋଇ ଗଲାଣି । ସବୁ ଆଡ଼େ ଶାନ୍ତି ବିରାଜୁଛି । ଶୈଳର ପାଦ ଶବ୍ଦ ଶୁଣିବା ଅପେକ୍ଷାରେ ଅଧୀର ହୋଇ ଭୀମଦେବ ବହୁତ ସମୟ ବୁଲିଲେ ।

କିନ୍ତୁ ଶୈଳ ସେତେବେଳେ ଗ୍ରୁଡ଼ର ଗୋଟିଏ ଅନ୍ଧାରିଆ କୋଣରେ ଲୁଚିରହି ପଲକହୀନ ଦୃଷ୍ଟିରେ ତାଙ୍କର ଗତି ବିଧି ଲକ୍ଷ୍ୟ କରୁଥାଏ । ସୁତରାଂ ସେ ତା'ର ପଦଧ୍ୱନି କିପରି ବା ଶୁଣିପାରିବେ ?

ଆଜି ଦିନ ସାରା ଶୈଳର ହୃଦୟ ଆନନ୍ଦରେ ନାଚୁଛି । ମନ୍ଦିରର ଉପର ଗ୍ରୁଡ଼ ତା' ପକ୍ଷରେ ହୋଇଛି ସ୍ୱର୍ଗ । ତାର ଦୃଷ୍ଟିରେ ଭୀମଦେବ ଆଜି ଯୁଦ୍ଧରତ ପାଟଣର ଶାସକ ଭୀମଦେବ ନୁହନ୍ତି—ରାକ୍ଷସ ତ୍ରିପୁରାସୁର ସହିତ ଯୁଦ୍ଧରତ ନିଜେ ପ୍ରଭୁ ସୋମନାଥ । ବ୍ରହ୍ମା ରଙ୍ଗ ସର୍ବଜ୍ଞଙ୍କ ରୂପରେ ଆସିଛନ୍ତି । ବିଷ୍ଣୁ ହେଉଛନ୍ତି ତାଙ୍କର ଧନୁ । ବେଦ ସବୁ ତାଙ୍କର ଶର ଓ ତାଙ୍କର ଆଭୂଷଣ ଧ୍ରୁବ ଏବଂ ଅନ୍ୟାନ୍ୟ ନକ୍ଷତ୍ରମାଳା । କଳ୍ପନା ଚକ୍ଷୁରେ ସେ ଦେଖିଛି ଦେବତା-ଶ୍ରେଷ୍ଠ ଶିବ ସର୍ବଜ୍ଞ ବୁଲି ବୁଲି ସଂସାରର ପ୍ରତ୍ୟେକ ଜୀବ ମଧ୍ୟରେ ଭୟ ସୃଷ୍ଟି କରୁଛନ୍ତି ଓ ଆକାଶରେ ଋଷିମାନେ ବିଚରଣ କରି ପ୍ରଭୁଙ୍କର ସ୍ତୋତ୍ରମାନ ଗାଉଛନ୍ତି ।

ସେ ସମସ୍ତଙ୍କୁ ଚିହ୍ନିଥିଲା । ତାର ଦୃଷ୍ଟିରେ ବୀର ସୁଣ୍ଡା ପ୍ରଭୁଙ୍କର ବାହନ ନନ୍ଦୀ, ବିମଳ ମେହେତା ଗଣପତି ଓ ରନ୍ନାଦିତ୍ୟ ଦେବରାଜ ଇନ୍ଦ୍ର । ତାଙ୍କ ଗ୍ରୁଡ଼ପାଖରେ ଗଣମାନେ ବେଢ଼ି ପ୍ରଭୁଙ୍କର ବିଜୟ ଘୋଷଣା କରୁଛନ୍ତି ।

ଆକାଶରେ, ସତେ ଯେପରି ଶିବଙ୍କର ନୈସର୍ଗିକ ଅର୍ଦ୍ଧାଙ୍ଗିନୀ ହିମାଳୟ-ଦୁହିତା ରୂପରେ ସେ ନିଜେ, ପ୍ରଭୁଙ୍କର ଆଗମନକୁ ଅପେକ୍ଷା କରି ରହିଛି । ସେ ଖୁବ୍ ଶୀଘ୍ର ଫେରି ଆସିବେ, ତାକୁ ସାଙ୍ଗରେ ନେଇଯିବେ ଓ ଉଭୟେ ଜୀବନର ଜୟଯାତ୍ରା ଆରମ୍ଭ କରିବେ ।

ତାର ସମ୍ମୁଖରେ ତ୍ରିପୁରାସୁରର ସୈନ୍ୟ ବାହିନୀ ଠିଆ ହୋଇଛନ୍ତି । ନାଳଦାଢ଼ିଆ, ପଗଡ଼ି ପିନ୍ଧିଥିବା ଅସୁରକୁ ସେ ଦେଖିଛି । ତା'ର ପ୍ରଭୁ ନିଜର ଅସ୍ତ୍ର ସାହାଯ୍ୟରେ ହଜାର ହଜାର ଅସୁର ମାରିଥିବା ସେ ଦେଖିଛି ।

ପ୍ରଭୁଙ୍କର କ୍ରୋଧ ମଧ୍ୟ ସେ ଦେଖିଛି । ଦୁର୍ଗ ରକ୍ଷା କରୁଥିବା ସମଗ୍ର ସୈନ୍ୟବାହିନୀ ତାଙ୍କୁ (ଭୀମଦେବଙ୍କୁ) ପୂଜା କରୁଥିବାର ସେ ଦେଖିଛି । ଶେଷରେ ତ୍ରିପୁରାସୁର ପରାଜିତ ହୋଇଛି । ତାହା ପରେ ଇନ୍ଦ୍ର ଓ ଅନ୍ୟାନ୍ୟ ଦେବତା-ମାନେ ତାଙ୍କ ରାଜପୁରରେ ଆନନ୍ଦ ଉଲ୍ଲାସ ପ୍ରକାଶ କରି ତାଙ୍କୁ ପୂଜା କରିବାକୁ ପରସ୍ପର ସହିତ ପ୍ରତିଯୋଗିତା କରିଛନ୍ତି ।

ଠିକ୍ ଏହି ସମୟରେ ତାର ଦେବତା ଆସି ସମ୍ମୁଖରେ ଠିଆ ହେବାର ସେ ଦେଖିଲା । ତାଙ୍କର ମୁଖମଣ୍ଡଳରୁ ଅସଂଖ୍ୟ ସୂର୍ଯ୍ୟର ରଶ୍ମି ବିକିରିତ ହେଲାଭଳି ଦୀପ୍ତି ବାହାରୁଛି । ତାଙ୍କ ଆଖିରେ ଅଦ୍ଭୁତ ଜ୍ୟୋତି ଏବଂ ତାଙ୍କ ଆଭୂଷଣରେ ଅସାଧାରଣ ପ୍ରଭା । ତାଙ୍କ ଜଟାଗୁଚ୍ଛ ଅତ୍ୟନ୍ତ ଦୀପ୍ତିମୟ ଦିଶୁଛି । ଏହି ସବୁ କଳ୍ପନାରେ ଚୌଲା ଏପରି ନିମଗ୍ନ ହୋଇ ଯାଇଥାଏ ଯେ, ତାହାର ଅଜାଣତରେ ତାର ମୁହଁରୁ ଶିବ ପୁରାଣର ପଦମାନ ସ୍ୱତଃ ବାହାରୁ ଥାଏ । ସେ ଭାବୁଥାଏ ରାଜପ୍ରୀ ପ୍ରଭୁ ତାକୁ ଆଲିଙ୍ଗନ କରିବାକୁ ଅପେକ୍ଷା କରି ରହିଛନ୍ତି ।

ଭୀମଦେବ ଅତିଶୟ ବ୍ୟସ୍ତ ହୋଇ ପଡ଼ିଲେ । ଚୌଲା ଏ ପର୍ଯ୍ୟନ୍ତ ଆସିନାହିଁ କାହିଁକି ? ସେ ଅସ୍ଥିର ହୋଇ ଦ୍ରୁତ ପଦଚାଳନା କଲେ ଓ ତାର ପଦଧ୍ୱନି ଶୁଣିବା ପାଇଁ ମନଧ୍ୟାନ ଦେଇ କାନ ଡେରିଲେ ।

ଚୌଲା ମଧ୍ୟ ନିଜକୁ ଆଉ ବେଶୀ ସମୟ ସମ୍ଭାଳି ପାରିଲା ନାହିଁ । ସେ ହସି ଉଠିଲା । ଭୀମଦେବ ହସର ଶବ୍ଦ ଶୁଣି ଚୌଲା ଲୁଚିଥିବା ସ୍ଥାନକୁ ଗଲେ ଓ ତାକୁ ବାହାରକୁ ଉଠାଇ ଆଣି ତାର ହାତ ନିଜ ମୁଠିରେ ଚାପି ଧରିଲେ ।

"ଓଃ, ମରିଗଲି"—ଭୀମଦେବଙ୍କ ଆଲିଙ୍ଗନରେ ଚୌଲା ଛଳନା ପ୍ରକାଶ କରି ପାଟି କରି ଉଠିଲା ।

ଭୀମଦେବ—"ମରିଗଲି ! କାହିଁକି ଏତେ ସମୟ ମୋତେ ଅପେକ୍ଷାରେ ରଖିଲୁ ?"

ଚୌଲା—ଆପଣଙ୍କର ଦୃଷ୍ଟି କେଉଁଠି ଥିଲା ? ଆପଣଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ପାଇଁ ମୁଁ ତ ବହୁତ ସମୟ ଧରି ଅପେକ୍ଷା କରି ରହିଛି ।

ଭୀମଦେବ—ମିଛ କଥା । ତୁମକୁ ଚାହିଁ ଚାହିଁ ମୋ ଆଖି ଥକିଗଲାଣି ।

ଚୌଲା—"ମୋର ପ୍ରଭୁ ସୋମନାଥ ! ମୁହୂର୍ତ୍ତେ ଅପେକ୍ଷା କରନ୍ତୁ । ମୁଁ ଆପଣଙ୍କୁ ପୂଜା କରିବା ପାଇଁ ଚନ୍ଦନ ଓ ଫୁଲ ଆଣିଛି । ତ୍ରିପୁରାସୁର ପରି

ଦୁର୍ଦ୍ଧର୍ଷ ରାକ୍ଷସଙ୍କୁ ପରାଜିତ କରିଥିବାରୁ ମୁଁ ଆପଣଙ୍କୁ ପୂଜା କରିବି ।” “ଏହା କହି ସେ ଭୀମଦେବଙ୍କ ବାହୁ ବନ୍ଧନରୁ ମୁକ୍ତ ହୋଇ ଗୋଟିଏ ଫୁଲହାର ଆଣି ତାଙ୍କ ଗଳାରେ ଲମ୍ବାଇଦେଲା ।

ଭୀମଦେବ କହିଲେ, “ଚୌଲା ! ଏ ମାଳା କେବଳ ମୋ ପାଇଁ ନୁହେଁ—ଏହା ଆମ ଦୁହିଁଙ୍କ ପାଇଁ”—ଏହା କହି ସେ ଫୁଲ ହାରଟିକୁ କାଢ଼ି ଚୌଲା ଗଳାରେ ପିନ୍ଧାଇଦେଲେ । ଉଭୟେ ଆନନ୍ଦରେ ହସିଉଠିଲେ ।

ଚୌଲା କହିଲା, “ପ୍ରଭୁ ଆମ ଉପରେ ଖୁସିହୋଇ ଆଶୀର୍ବାଦ କରନ୍ତୁ । ପାର୍ବତୀ ଓ ପରମେଶ୍ୱରଙ୍କ ପରି ଆମେ କଣ ଆନନ୍ଦ ଲଭ କରିପାରିବା ?” ଏହା କହି ସେ ପୁଣି ଭୀମଦେବଙ୍କ ଆଲିଙ୍ଗନ ଭିତରେ ଆତ୍ମଗୋପନ କଲା ।

ବିଚିତ୍ର ରାତି—ଚନ୍ଦ୍ରଙ୍କର ସ୍ନିଗ୍ଧ କିରଣ ଗୃହଆଡ଼େ ଖେଳି ବୁଲୁଛି । ତାର ପ୍ରଭୁଙ୍କ ନିକଟରେ ଶରଣ ପଶିବା କ୍ଷଣି ଚୌଲା ନିଜ ଆଖି ଦୁଇଟି ବନ୍ଦ କରିଦେଲା । ଜୀବନରେ ଏପରି ଆନନ୍ଦ ସେ କେବେହେଲେ ଅନୁଭବ କରିନାହିଁ । ନର୍ତ୍ତକୀ କୁଳରେ ତାର ଜନ୍ମ । ନିଜର ଭକ୍ତି ବଳରେ ସେ ଆଜି ଏ ସୌଭାଗ୍ୟ ଲଭ କରିଛି । ଚୌଲା ତାର ଉଭୟ ହାତ ଭୀମଦେବଙ୍କ ବେକରେ ଜଡ଼ାଇ ଓହଳିପଡ଼ିଲା ଓ ନିର୍ବାକ୍ ହୋଇ ତାଙ୍କ ମୁହଁକୁ ଚାହିଁରହିଲା । ଭୀମଦେବ ଚୌଳାର ଅଭିପ୍ରାୟ ବୁଝିପାରି ତାକୁ ନିଜ ହାତରେ ଉଠାଇନେଇ ନିଜ କୋଠରୀକୁ ଯାଇ ଦରଜା ବନ୍ଦ କରିଦେଲେ । ତରବାରି ହାତରେ ପାହାଚ ତଳେ ପ୍ରହରୀଭାବେ ଠିଆ ହୋଇଥିବା ବୀର ଚନ୍ଦ୍ରଙ୍କୁ ଚାହିଁ ହସୁଥାଏ ।

× × ×

ରତ୍ନାଦିତ୍ୟଙ୍କ ଆଶଙ୍କା ଭିତ୍ତିହୀନ ନଥିଲା । ଭୀମଦେବ ଚାଲିଯିବାର କିଛି ସମୟ ପରେ ସେ ଗୋଟିଏ ଅଦ୍ଭୁତ ଶବ୍ଦ ଶୁଣିଲେ । ସମୁଦ୍ରକୂଳର ଏକ ସ୍ଥାନରୁ, ଯାହାକି ତାଙ୍କ ଦୃଷ୍ଟିର ଅନ୍ତରାଳରେ ଥିଲା, ସେହି ଦିଗରୁ ବହୁଲୋକ ସମୁଦ୍ର କୂଳରୁ ଛୋଟ ଛୋଟ ନୌକାରେ ଚଢ଼ି ଆସୁଥିବାର ଶବ୍ଦ ସେ ଶୁଣିଲେ ।

କ୍ଷୀଣ ଚନ୍ଦ୍ର ଆଲୋକରେ ଦୂରରେ କଣ ଘଟୁଛି ସେ ପରିଷ୍କାର ଭାବେ ଦେଖିପାରୁ ନଥିଲେ । ଦୁର୍ଗର ବିଭିନ୍ନ ସ୍ଥାନରେ ଜଗି ରହିଥିବା ତାଙ୍କ ଅଧୀନସ୍ଥ ସେନାପତିମାନଙ୍କୁ ଖବର ଜଣାଇବା ପାଇଁ ସଙ୍ଗେ ସଙ୍ଗେ ଲୋକ ପଠାଇଲେ । ଅଳ୍ପ ସମୟ ମଧ୍ୟରେ ହଜାର ହଜାର ଧନୁର୍ଦ୍ଧାରୀଙ୍କୁ ସେ ଏକାଠି କଲେ । ଦୂରରେ, ଯେଉଁଠାରେ ଶାନ୍ତ ଚନ୍ଦ୍ର କିରଣ ସମୁଦ୍ର ଉପରେ

ବିଚ୍ଛୁରିତ ହେଉଛି । ସେଠାରେ କେତେକ ମଣିଷ ଚଳାଚଳ ହେଉଥିବାର ଦେଖାଗଲା । ଗଡ଼ଖାଇ ସମୁଦ୍ର ସଙ୍ଗେ ମିଶିଥିବା ସ୍ଥାନରେ ଥିବ ଆମ୍ବ ତୋଟାରେ କେତେକ ଲୋକ ଏକତ୍ରିତ ହୋଇଥିବା ଭଳି ଜଣାଗଲା । ଏପରି ସମୟରେ କୌଣସି ଆକ୍ରମଣ ସମ୍ଭବପର ନୁହେଁ । ହମୀରର ସୈନ୍ୟବାହିନୀ ମଧ୍ୟ ଗଡ଼ଖାଇଠାରୁ ବହୁ ଦୂରକୁ ପଛେଇ ଯାଇଛନ୍ତି । ଏଣୁ ଏସବୁ କାର୍ଯ୍ୟର ଉଦ୍ଦେଶ୍ୟ ଅନ୍ୟ କିଛି ବୋଲି ରତ୍ନାଦିତ୍ୟ ଭାବିଲେ ।

ପ୍ରଭାସ ଦିଗକୁ ଲଖାମାଙ୍କର ଗୋଟିଏ ବୋଇତ ଆସ୍ତେ ଆସ୍ତେ ଆସୁଥିବାର ଦେଖାଗଲା । ହୁଏତ ଆମ୍ବ ତୋଟାରେ ଏକତ୍ର ହୋଇଥିବା ଶତ୍ରୁ ସୈନ୍ୟମାନଙ୍କର ଉଦ୍ଦେଶ୍ୟ ଏହି ବୋଇତକୁ କୂଳକୁ ଆସିବାକୁ ନଦେବା ବା ହାତ କରିନେବା । ଏମାନେ ବି ମୁସଲମାନ ସୈନ୍ୟ ନହୋଇ ପାରନ୍ତି—ହୁଏତ ଭୀମଦେବଙ୍କ ସୈନ୍ୟମାନେ ଚନ୍ଦ୍ର କିରଣରେ ସମୁଦ୍ରରେ ପହଁରୁଛନ୍ତି । ଏହିପରି ନାନାପ୍ରକାର ଚିନ୍ତା ରତ୍ନାଦିତ୍ୟଙ୍କ ମନରେ ଦେଖାଦେଲା ।

ଆସୁଥିବା ବୋଇତକୁ ସଙ୍କେତ ଦେଖାଇ ବା ପାଟିକରି ସତର୍କ କରିବା ତାଙ୍କ ପକ୍ଷରେ ବିଜ୍ଞତାର କାର୍ଯ୍ୟ ହେବ ନାହିଁ ବୋଲି ରତ୍ନାଦିତ୍ୟ ଠିକ୍ କଲେ । ସେ ଉପସ୍ଥିତ ଅବସ୍ଥା ସଂପର୍କରେ କିଛି ସମୟ ଭାବି ଗୋଟିଏ ସାହସିକ ରଣ କୌଶଳର ନିଷ୍ପତ୍ତି କଲେ । ତାଙ୍କ ସୈନ୍ୟ ବାହିନୀରେ ଖାଗ୍ର ଓ ମାଗ୍ର ନାମକ ଭେଲ୍ଲବଳର ଦୁଇଜଣ ବିଚକ୍ଷଣ ସନ୍ତରଣକାରୀ ଥିଲେ । ସେମାନେ ଅତି ଗୋପନରେ ବୋଇତ ପର୍ଯ୍ୟନ୍ତ ପହଁରି ଯିବେ ଏବଂ ସେଠାରେ ପହଞ୍ଚି ସେଦିନ ଯାହାସବୁ ଘଟି ଯାଇଛି ତାହା ବିଶଦ୍‌ଭାବେ ବୋଇତ ଚାଳକଙ୍କୁ ଜଣାଇ କୂଳକୁ ଆସିବାକୁ ଚେଷ୍ଟା କଲେ ଯେଉଁ ବିପଦର ସମ୍ମୁଖୀନ ହେବାକୁ ପଡ଼ିବ ସେ ସଂପର୍କରେ ସଚେତନ କରାଇଦେବେ ।

ଖାଗ୍ର ଓ ମାଗ୍ର ସମୁଦ୍ର ଭିତରେ ପ୍ରାୟ ଏକ ହଜାର ହାତ ଯାଇଛନ୍ତି କି ନାହିଁ, ଆମ୍ବ ତୋଟାରେ ଯାହାସବୁ ଘଟୁଛି ତାହାର ପ୍ରକୃତ ଗୁରୁତ୍ୱ ରତ୍ନାଦିତ୍ୟ ବୁଝିପାରିଲେ । ସେ ଜାଣିପାରିଲେ ଶତ୍ରୁ ପକ୍ଷର ସୈନ୍ୟମାନେ ସମୁଦ୍ରର କୂଳେ କୂଳେ ବହୁତଗୁଡ଼ିଏ ଭେଳା ମାରିବରେ ଓ ବିଚକ୍ଷଣତାର ସହ ଆଣୁଛନ୍ତି । ଏ ବିପଦର କିପରି ସମ୍ମୁଖୀନ ହେବାକୁ ହେବ ତାହା ରତ୍ନାଦିତ୍ୟ ଠିକ୍ କରି ପାରିଲେ ନାହିଁ । ସେ ଯେବେ ତାଙ୍କ ସୈନ୍ୟମାନଙ୍କୁ ନିର୍ଦ୍ଦେଶ ଦେବେ ସେଠାକୁ ଯାଇ ଭେଳାଗୁଡ଼ିକ ବୁଡ଼େଇ ଦେବାପାଇଁ, ତାହାହେଲେ

ସେମାନେ ସେଠାରେ ପହଞ୍ଚିବା ପୂର୍ବରୁ ହୁଏତ ମୃତ୍ୟୁ ମୁଖରେ ପଡ଼ିବେ । ଯେବେ ସମୁଦ୍ର କୂଳରେ ଶତ୍ରୁ ସୈନ୍ୟମାନେ ଥିବା ଅବସ୍ଥାରେ ବୋଇତ ଆସି ପହଞ୍ଚେ, ତାହାହେଲେ ବୋଇତଗୁଡ଼ିକ ବିପନ୍ନ ହେବ ଏବଂ ହୁଏତ ତାହା ଶତ୍ରୁ ସୈନ୍ୟଙ୍କ କବଳରେ ପଡ଼ିବ । ପ୍ରଭାସର ପ୍ରତିରକ୍ଷା ଦିଗରୁ ଏହା ମାରାତ୍ମକ ହୋଇପଡ଼ିବ । ସବୁ ବିଷୟ ଚିନ୍ତା କରି ଶତ୍ରୁ ସୈନ୍ୟ ଭେଲାଗୁଡ଼ିକୁ ଯେଉଁଠାକୁ ଆଣିବାକୁ ଚାହୁଁଛନ୍ତି ସେଠାରେ ରଖି ଚାଲିଯିବା ପର୍ଯ୍ୟନ୍ତ ଅପେକ୍ଷା କରିବା ବାଞ୍ଛିତାର କାର୍ଯ୍ୟ ହେବ ବୋଲି ରତ୍ନାଦିତ୍ୟ ନିଷ୍ପତ୍ତି କଲେ । କ୍ରମେ ଶତ୍ରୁସୈନ୍ୟ ଶହ ଶହ ଭେଲା ଏକାଠି କରି ଗୋଟିଏ ବିରାଟ ପୋଲ ତିଆରି କଲେ ଏବଂ ଗଡ଼ଖାଇ ମୁହଁରୁ ଅଳ୍ପ ଦୂରକୁ ଏପରି ଏକ ସ୍ଥାନକୁ ଆଣିଲେ ଯେଉଁଠାରେ କି ଭୀମଦେବଙ୍କ ସୈନ୍ୟବାହିନୀର ଧନୁର୍ଦ୍ଧାରୀମାନେ କିଛି କ୍ଷତି କରି ପାରିବେ ନାହିଁ । ଯୁଦ୍ଧ ଆରମ୍ଭ ହେବା ସଙ୍ଗେ ସଙ୍ଗେ ପୋଲଟି ଗଡ଼ଖାଇରେ ଲଗାଇ ଦେବାକୁ ବୋଧେ ଶତ୍ରୁପକ୍ଷ ଚାହୁଁଥିଲେ । ତାହା କରା-ଗଲେ ଶତ୍ରୁ ସୈନ୍ୟମାନଙ୍କ ପକ୍ଷରେ ଦୁର୍ଗ ପାଚେରି ଚଢ଼ିବା ସୁବିଧାଜନକ ହେବ । ତେଣୁ ଏହି ପୋଲକୁ କୌଣସି ପ୍ରକାରେ ବୁଡ଼ାଇ ଦେବାକୁ ହେବ । କିନ୍ତୁ ଏହି କାର୍ଯ୍ୟ କିପରି କରିବାକୁ ହେବ ତାହା ରତ୍ନାଦିତ୍ୟଙ୍କ ପକ୍ଷରେ ଚିନ୍ତାର ବିଷୟ ହେଲା । ପ୍ରଭାସ ଅଭିମୁଖେ ଆସୁଥିବା ବୋଇତ କୂଳଠାରୁ କିଛି ଦୂରରେ ରହିଗଲା । ଜୁଆର ଛାଡ଼ିଯିବାକୁ ଆରମ୍ଭ କଲାଣି । ଖାରି ଏବଂ ମାରି ବୋଧହୁଏ ଠିକ୍ ସମୟରେ ଜାହାଜ ନିକଟରେ ପହଞ୍ଚି ତାହା ଯେପରି ଶତ୍ରୁ କବଳରେ ନ ପଡ଼େ ସେଥିପାଇଁ ଆବଶ୍ୟକ କାର୍ଯ୍ୟ କରିବାରେ ସଫଳତା ଲାଭ କରିଛନ୍ତି ।

ହମୀରର ସୈନ୍ୟମାନେ ଅସ୍ଥାୟୀ ପୋଲଟିକୁ ଠିକ୍ ସ୍ଥାନରେ ବାନ୍ଧିବା ପାଇଁ ଚେଷ୍ଟା କରୁଥିବା ସମୟରେ ରତ୍ନାଦିତ୍ୟ ଦୂରରୁ ଗୋଟିଏ ପ୍ରକାର ଶବ୍ଦ ଶୁଣିଲେ । ଯେଉଁ ଦିଗରୁ ଏହି ଶବ୍ଦ ଆସୁଥିଲା ସେହି ଆଡ଼କୁ ଚାହିଁ ସେ କିଛି ଦେଖି ପାରିଲେ ନାହିଁ । ଅଳ୍ପ ସମୟ ପରେ ଶବ୍ଦ ବନ୍ଦହୋଇଗଲା । ଶତ୍ରୁ ସୈନ୍ୟ-ମାନେ ତାଙ୍କ କାର୍ଯ୍ୟ ଶେଷ କରି ଚାଲିଯିବା ପରେ ରତ୍ନାଦିତ୍ୟ ଏହି ପୋଲକୁ ନଷ୍ଟ କରିବାଭଳି ଅସମ୍ଭବ କାର୍ଯ୍ୟ କରିବା ନିମିତ୍ତ ନିଷ୍ପତ୍ତି କଲେ । ଭଲ ପହଁରି ଜାଣିଥିବା ତାଙ୍କର ପଚିଶଜଣ ସୈନ୍ୟଙ୍କୁ ଡ଼କାଇ ଆଣି ଦୁର୍ଗ ପାଖରୁ ଗଡ଼ଖାଇରେ ପଶି ପୋଲଟିକୁ ବୁଡ଼ାଇ ଦେବାପାଇଁ ସେ ନିର୍ଦ୍ଦେଶ ଦେଲେ ।

ଏହି ସୈନ୍ୟମାନେ ଦଉଡ଼ି ସାହାଯ୍ୟରେ ଗଡ଼ଖାଇରେ ପଶିବା ପୂର୍ବରୁ ଗୋଟିଏ ଘଟଣା ଘଟିଲା, ଯାହାକି କେହି ହେଲେ ସୁଦ୍ଧା ଭାବିନଥିଲେ । ସେମାନେ ଦେଖିଲେ ପୋଲଟି ଆପେ ଆପେ ଭାଙ୍ଗିଯାଇ ଭେଲା ଗୁଡ଼ିକ ଅଲଗା ଅଲଗା ହୋଇଗଲା—ସତେ ଯେପରି କୌଣସି ଅଦୃଶ୍ୟ ଶକ୍ତି ସମୁଦ୍ରର ଭିତରୁ ସହିତ ଏଗୁଡ଼ିକୁ ପରସ୍ପରଠାରୁ ବିଚ୍ଛିନ୍ନ କରିଦେଉଛି ।

ସେ ଜାଗ୍ରତ କି ସ୍ୱପ୍ନ ଦେଖୁଛନ୍ତି ଭାବି ରତ୍ନାଦିତ୍ୟ ତାଙ୍କ ଆଖି ମଳିଲେ । ଭେଲାଗୁଡ଼ିକ ଛିନ୍ନ ବିଚ୍ଛିନ୍ନ ହୋଇ ସମୁଦ୍ର ଭିତରକୁ ଚାଲିଯାଇ ଅଦୃଶ୍ୟ ହେବା ପରେ ଆମ୍ଭ ତୋଠାରୁ କୋଳାହଳ ଶୁଣାଗଲା । ରତ୍ନାଦିତ୍ୟ ହସି ହସି ମନେ ମନେ ଭାବିଲେ—ପ୍ରକୃତରେ ପ୍ରଭୁ ସୋମନାଥଙ୍କର ଆଶୀର୍ବାଦ ନଥିଲେ ଏଭଳି ଅଦ୍ଭୁତ ଘଟଣା ଘଟିନଥାନ୍ତା ।

୪୩

# ମର୍ମାହତ ସାମନ୍ତ ଚୌହାନ

ରତ୍ନାଦିତ୍ୟ ଦେଖିଲେ ଏହି ସମୟରେ ତିନିଜଣ ଲୋକ ପହଁରି ପହଁରି ଦୁର୍ଗର ଦ୍ୱାର ନିକଟରେ ପହଞ୍ଚିଲେ ଏବଂ ତା' ଭିତରୁ ଜଣେ ଲୋକ "ବାପୁ" ବୋଲି ଡାକ ଦେଲା । ଏହା ଖାଗର ସ୍ୱର । ସେ ଏବଂ ତାର ସାଥୀବୃନ୍ଦଙ୍କୁ ଗଡ଼ଖାଇର ପାଣି ଭିତରୁ ଉଦ୍ଧାର କରାଗଲା । ରତ୍ନାଦିତ୍ୟ ପଚାରିଲେ, "ତୃତୀୟ ଲୋକଟି କିଏ ?"

ତୃତୀୟ ଜଣକ ଉତ୍ତର ଦେଲା, "ଚିହ୍ନି ପାରିଲେ ନାହିଁ; ମୁଁ ସାମନ୍ତ ଚୌହାନ ।" ରତ୍ନାଦିତ୍ୟ ସଙ୍ଗେ ସଙ୍ଗେ ତାଙ୍କର ସ୍ୱର ବାରିପାରି ହାର୍ଦ୍ଦିକ ସମ୍ବର୍ଦ୍ଧନା କରି କହିଲେ, "ତୁମେ ଚୌହାନରାଜ ? ଏହି ଛିନ୍ନଭିନ୍ନ ପୋଲର ଦଉଡ଼ି ତୁମେ କାଟିଛ ?"

ସାମନ୍ତ ବିନମ୍ର ଭାବ ପ୍ରକାଶ କରି ଉତ୍ତର ଦେଲେ, "ହଁ, ଆଉ କଣ କରାଯାଇପାରିଥାନ୍ତା ! ଆମେ ପହଁରି ପହଁରି ଦୁର୍ଗ ଆଡ଼କୁ ଆସୁଥିଲୁ । ଭେଲା ଗୁଡ଼ିକୁ ଦେଖି ମୁଁ ତାର ଉଦ୍ଦେଶ୍ୟ ବୁଝିପାରିଲି । ଆପଣଙ୍କର ଦୁଇଜଣ ଲୋକ ଓ

ମୁଁ ଭେଲା ପାଖକୁ ଯାଇ ଯେଉଁ ଦଉଡ଼ିରେ ସେ ଗୁଡ଼ିକ ବନ୍ଧା ହୋଇଥିଲା ତାକୁ କାଟିଦେଲୁ ।’’

ରତ୍ନାଦିତ୍ୟ ଖୁସି ହୋଇ କହିଲେ, ‘‘ଶ୍ବେତହାନ ! ତୁମେ ପ୍ରଭାସ ଦୁର୍ଗକୁ ରକ୍ଷା କରିଛ । ଶତ୍ରୁର ଏହି ନୂତନ କୌଶଳର କିପରି ସମ୍ମୁଖୀନ ହେବାକୁ ହେବ ତାହା ମୋର ଚିନ୍ତାର ବିଷୟ ହୋଇଥିଲା । ଠିକ୍ କାର୍ଯ୍ୟ କରିଛ ।’’

ସାମନ୍ତ—ଆମ ସମସ୍ତଙ୍କର ଧନ୍ୟବାଦ ଆପଣଙ୍କର ପ୍ରାପ୍ୟ । ଆଜି ଯାହା ଘଟଣା ଘଟିଛି ତାହା ସବୁ ମୁଁ ଶୁଣିଛି । ମହାରାଜ ଭୀମଦେବ କାହାନ୍ତି ?

ରତ୍ନାଦିତ୍ୟ—ସେ ଆଜି ଯଥେଷ୍ଟ କ୍ଳାନ୍ତ ହୋଇଥିବାରୁ ବର୍ତ୍ତମାନ ବିଶ୍ରାମ ନେବାକୁ ଯାଇଛନ୍ତି । ମୁଁ ତାଙ୍କୁ ବ୍ୟସ୍ତ କରିବାକୁ ଚାହେଁ ନାହିଁ । ତମେ ଏଠାକୁ କିପରି ଆସିଲ ?

ସାମନ୍ତ—ରତ୍ନାଦିତ୍ୟ, ଆପଣମାନେ ପାଟଣ ଛାଡ଼ି ଯିବା ପରେ ଗୁରୁ ନନ୍ଦୀଦତ୍ତ ଓ ମୁଁ ଆପଣ ଛାଡ଼ି ଆସିଥିବା ତିନିଶହ ସୈନ୍ୟଙ୍କ ସହ ଆଖ ପାଖ ଜଙ୍ଗଲରେ ଲୁଚିକରି ରହିଲୁ । ହମୀର ପାଟଣରେ ପହଞ୍ଚି ତାହା ଜନଶୂନ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ଏହାର ପ୍ରକୃତ ଅର୍ଥ ସେ ବୁଝି ପାରିଲା ନାହିଁ । ଘୋଘାବାପାଙ୍କ ଭୂତ କଥା ତାର ସୈନ୍ୟ-ବାହିନୀରେ ପ୍ରଚାର କରିବାରେ ମଧ୍ୟ ଆମେ ସାଫଲ୍ୟ ଲାଭ କଲୁ । ଏହା ମଧ୍ୟ ଯଥେଷ୍ଟ କାମ ଦେଲା । ହମୀର ପାଟଣ ଛାଡ଼ି ସେଠାରୁ ସିଧା ସୋମନାଥ ଆସିଲା ।

ରତ୍ନାଦିତ୍ୟ—ତା’ପରେ ପାଟଣର ଅବସ୍ଥା କଣ ହେଲା ?

ସାମନ୍ତ—ମହାରାଜାଙ୍କ ରାଜ୍ୟଚ୍ୟୁତ ଭାଇ ଦୁର୍ଲ୍ଲଭ ସେନ୍, ହମୀର ପାଟଣ ଛାଡ଼ିବାବେଳେ ଆସି ପହଞ୍ଚିଲେ । ସେ ଆସି ଆତ୍ମସମର୍ପଣ କରିବାରୁ ହମୀର ତାଙ୍କୁ ପାଟଣର ରାଜଗାଦିରେ ବସାଇ ଓ ତାଙ୍କ ଜିମା ପାଞ୍ଚଶହ ରାଜପୁତ୍ ସୈନ୍ୟ ଦେଇ ତା’ (ହମୀର) ଫେରିବା ପର୍ଯ୍ୟନ୍ତ ପାଟଣର ଦାୟିତ୍ୱରେ ରହିବାକୁ ନିର୍ଦ୍ଦେଶ ଦେଲା ।

ରତ୍ନାଦିତ୍ୟ—ବୁଝିଲି ! ତାପରେ ?

ସାମନ୍ତ—ଆମ କାର୍ଯ୍ୟ ସହଜ ହେଲା । ରାଜଗାଦି ଲାଭ କରିବାରୁ ଦୁର୍ଲ୍ଲଭ ସେନ୍ ଖୁସି ହେଲେ । ଯେଉଁ ଦିନ ହମୀର ପାଟଣ ଛାଡ଼ି ଆସିଲା, ଠିକ୍ ସେହିଦିନ ନନ୍ଦୀ ଦତ୍ତ ନାମକ ଜଣେ ବ୍ରାହ୍ମଣ ଘୋଘାବାପାଙ୍କ ଭୂତ ତାଙ୍କୁ ଡରାଇଛି ବୋଲି କହି ଦୁର୍ଲ୍ଲଭ ସେନଙ୍କ ନିକଟରେ ଆତ୍ମସମର୍ପଣ କଲେ । ପରଦିନ ଆଖ ପାଖ ଗାଁର ବହୁ ସଂଖ୍ୟକ ଲୋକ ଘୋଘାବାପାଙ୍କ ଭୂତ

ଉପୃରେ ପାଟଣରେ ଆସି ଆଶ୍ରୟ ନେଲେ । ଏହି ଭୂତ କଥାରେ ପାଟଣରେ ମହଜୁଦ ଥିବା ହମୀରର ସୈନ୍ୟମାନେ ଏଭଳି ଭୟଭୀତ ହୋଇଗଲେ ଯେ, ଦୁର୍ଗର ଦ୍ୱାର ବନ୍ଦ କରିଦେବା ବଳଙ୍କତାର କାର୍ଯ୍ୟ ବୋଲି ମହାରାଜ ଦୁର୍ଲ୍ଲଭ ସେନ୍ ଭାବିଲେ ।

ଏ ସବୁ ଶୁଣି ରତ୍ନାଦିତ୍ୟଙ୍କ କୌତୂହଳ ଅଧିକ ବଢ଼ିଲା । ତାହା ପରେ କଣ ହେଲା ଜାଣିବାକୁ ସେ ଚାହିଁଲେ ।

ସାମନ୍ତ—ତୃତୀୟ ଦିନ ରାତିରେ ବୁଢ଼ା ବ୍ରାହ୍ମଣ ନନ୍ଦୀଦତ୍ତ ଭୂତ ବୁଲୁଥିବା ଦେଖି ଥିବାର କହିଲେ । ଏହା ଶୁଣି ସୈନ୍ୟମାନେ ଅଧିକ ଭୟଭୀତ ହୋଇ ଯେଝା ଘରେ କବାଟ ଦେଇ ରହିଲେ । ଦୁର୍ଗର ଦ୍ୱାର ପାଖରେ ଥିବା ସୋମେଶ୍ୱର ମନ୍ଦିରରେ ନନ୍ଦୀ ଦତ୍ତ ଯଜ୍ଞ ଆରମ୍ଭ କଲେ । ଏହି ଯଜ୍ଞ ଦେଖିବା ନିମନ୍ତେ ଗ୍ରାମବାସୀମାନେ ସେଠାରେ ଏକତ୍ର ହେଲେ ।

ରତ୍ନାଦିତ୍ୟ—ତା'ପରେ କଣ ହେଲା ?

ସାମନ୍ତ—ରାତି ଅଧରେ ଦୁର୍ଗର ପ୍ରଧାନ ଦ୍ୱାରରେ କେହି ଧକ୍କା ମାରୁଥିବାର ଶବ୍ଦ ଶୁଣାଗଲା—ସତେ ଯେପରି ଘୋଘାବାପାଙ୍କ ଭୂତ ଦୁର୍ଗରେ ପ୍ରବେଶ କରିବାକୁ ଚାହୁଁଛି ! ଭୂତକୁ ଚାଲିଯିବା ପାଇଁ କହିବାକୁ କାହାରି ସାହସ ହେଲା ନାହିଁ । ଦୁର୍ଗରକ୍ଷକ ଦ୍ୱାର ଖୋଲିଦେଲା ଏବଂ ନନ୍ଦୀ ଦତ୍ତ ଭୂତକୁ ସ୍ୱାଗତ କଲେ । ଘୋଘାବାପା ସହରଟା ଯାକ ଦଖଲ କରିଥିବାରୁ କେବଳ ମୃତ ଲୋକଙ୍କ ଛଡ଼ା ଦୁର୍ଗଭିତରେ ଆଉ କେହି ରହି ପାରିବେ ନାହିଁ । ଗ୍ରାମବାସୀମାନେ ସୈନ୍ୟ ହୋଇଯାଇ ସହରରେ ଥିବା ମୁସଲମାନ ସୈନ୍ୟମାନଙ୍କୁ ମାରିଦେଲେ । ପ୍ରତିରୋଧ କରିଥିବା ରାଜପୁତ ସୈନ୍ୟମାନଙ୍କୁ ମଧ୍ୟ ମାରିଦିଆଗଲା ।

ରତ୍ନାଦିତ୍ୟ—ଦୁର୍ଲ୍ଲଭ ସେନଙ୍କର କଣ ହେଲା ?

ସାମନ୍ତ—ସେ ଘୋଘାବାପାଙ୍କ ପାଦତଳେ ପଡ଼ି ସମସ୍ତ ପ୍ରକାର ଶପଥ କରି କହିଲେ ଯେ, ପାଟଣରେ ରାଜତ୍ୱ କରିବାପାଇଁ ତାଙ୍କର ଥିବା ବାସନା ସେ ତ୍ୟାଗ କରିବେ । ସେ ଏବଂ ତାଙ୍କ ନିକଟତମ ବନ୍ଧୁମାନଙ୍କୁ ସହରରୁ ବିଦା କରି ଦିଆଯିବାରୁ ସେମାନେ ଆଖ ପାଖ ଜଙ୍ଗଲକୁ ଚାଲିଗଲେ ।

ରତ୍ନାଦିତ୍ୟ - ଠିକ୍ କରିଛ ଚୌହାନ, ଠିକ୍ କରିଛ ! ତା'ପରେ କଣ ହେଲା ?

ସାମନ୍ତ—ମନ୍ତ୍ରୀ ମେହେତାଙ୍କ ଦାୟିତ୍ୱରେ ପାଟଣକୁ ଗ୍ରାଉଣ୍ଡଆଗଲ ଓ ଭୀମଦେବ ମହାରାଜଙ୍କ ନାମରେ ମୁଁ ସୈନ୍ୟ ସଂଗ୍ରହ ଆରମ୍ଭ କଲି । ମେହେତାଜୀ ମଧ୍ୟ ଖମ୍ଭାତ୍‌ରୁ ସୈନ୍ୟ ସାମନ୍ତ ଆଣିଲେ । ଭୟରେ ଜଙ୍ଗଲକୁ ପଳାଇ ଯାଇ ଆଶ୍ରୟ ନେଇଥିବା ସୈନ୍ୟମାନେ ପାଟଣକୁ ଫେରିଲେ । ଆମ୍ଭେମାନେ ଉତ୍ତରଭୂମିରୁ ମଧ୍ୟ ସାହାଯ୍ୟ ପାଇଲୁ । ହମୀରର ସୈନ୍ୟମାନେ ପ୍ରଭାସକୁ ଆସିବା ପଛେ ପଛେ ସେମାନେ ସଂଗଠିତ ହେଲେ ।

ରତ୍ନାଦିତ୍ୟ—ଏହି ସୈନ୍ୟମାନଙ୍କୁ କିଏ ନେତୃତ୍ୱ ଦେଲା ?

ସାମନ୍ତ—ଦାମୋଦର ମେହେତା । ସେ ନେତୃତ୍ୱ ଦେବାକୁ ଅନିଚ୍ଛୁକ ଥିଲେ ସୁଦ୍ଧା ଶେଷକୁ ରାଜି ହେଲେ ।

ରତ୍ନାଦିତ୍ୟ—ତମେ କାହିଁକି ନେତୃତ୍ୱ ନେଲ ନାହିଁ ?

ସାମନ୍ତ—ମୋର ବାପା ଓ ବଡ଼ବାପା ହମୀର ବିରୁଦ୍ଧରେ ଲଢିଥିଲେ । ମୋର ଲଢିବା ପାଳି ଏ ପର୍ଯ୍ୟନ୍ତ ପଡ଼ିନାହିଁ । ତେଣୁ ମୁଁ ଖମ୍ଭାତ୍ ଗଲି ।

ରତ୍ନାଦିତ୍ୟ ହସିକରି କହିଲେ, "ତା' ହେଲେ ବର୍ତ୍ତମାନ ଘୋଘାବାପା ଆସିଛନ୍ତି ?" ଏହା କହି ସେ କଥାବାର୍ତ୍ତା ଶେଷ କଲେ ।

ସାମନ୍ତ ଦୁଃଖପୂର୍ଣ୍ଣ ସ୍ୱରରେ କହିଲେ, "ଯେଉଁଠାରେ ସମ୍ମାନ ଓ ସାହସ ବିଦ୍ୟମାନ ସେଠାରେ ଘୋଘାବାପା ବରାବର ଉପସ୍ଥିତ । ଆପଣ ଶୁଣୁଥିବା ଜନଶମାନ ମୁଁ ଆଣିଛି ।" ସମୁଦ୍ରକୁ ଦେଖାଇ ସେ କହିଲେ, "ସେଠାରେ ରାଓ କମା ଲଖାଣୀଙ୍କ ସହିତ ମୋର ଦେଖା ହୋଇଥିଲା । ମୁଁ ଏଠାକୁ ଆସିଲି ଓ ସେ ସେଠାରେ ରହିଲେ ।"

ରତ୍ନାଦିତ୍ୟ—ପ୍ରଭୁ ସୋମନାଥଙ୍କର ଆଶୀର୍ବାଦ ଆମ୍ଭମାନଙ୍କ ପ୍ରତି ଏ ପର୍ଯ୍ୟନ୍ତ ଅଛି । ଗୁଜରାଟ୍‌ର ଯୋଦ୍ଧାମାନେ କଣ କରିପାରନ୍ତି, ତାହା ବର୍ତ୍ତମାନ ଆମେ ହମୀରକୁ ଦେଖାଇ ଦେଇ ପାରିବା ।

ସାମନ୍ତ—ମୋର ମହାରାଜାଙ୍କ ସହିତ ଅବିଲମ୍ବେ ଦେଖା ହେବା ଦରକାର, କାରଣ ସକାଳ ହେବା ପୂର୍ବରୁ ମୁଁ ଜାହାଜରେ ପହଞ୍ଚିବାକୁ ହେବ ।

ରତ୍ନାଦିତ୍ୟ ଓ ସାମନ୍ତ ପୁଣି ଥରେ ପରସ୍ପର ଆଲିଙ୍ଗନବଦ୍ଧ ହେଲେ ଏବଂ ତାଙ୍କୁ ମହାରାଜାଙ୍କର ରହିବା ସ୍ଥାନ ଦେଖାଇ ଦେବା ପାଇଁ ରତ୍ନାଦିତ୍ୟ ଜଣେ ସୈନ୍ୟକୁ ନିର୍ଦ୍ଦେଶ ଦେଲେ ।

ଭିତର ଦୁର୍ଗକୁ ଯାଉଥିବା ସମୟରେ ଅଳ୍ପଦିନ ତଳେ ଯାହାସବୁ ଘଟିଥିଲା ତାହା ସାମନ୍ତଙ୍କର ମନକୁ ଆସିଲା । ଯେଉଁ ଖୁଣ୍ଟ ପାଖରେ ବସି ସେ କାନ୍ଦିଥିଲେ ତାହାଆଖିରେ ପଡ଼ିଲା । ନର୍ତ୍ତକୀ କୁଣ୍ଡଳାର ଚେହେରା ଏବଂ ତାହା ସଙ୍ଗେ ସଙ୍ଗେ ତ୍ରିପୁରସୁନ୍ଦରୀ ମନ୍ଦିରରେ ଘଟିଥିବା ଘଟଣାମାନ ତାଙ୍କ ମାନସପଟରେ ଅଙ୍କିତ ହେଲା । ମହାମାତ୍ୟଙ୍କ ପୂଜା ଆରାଧନା ପୁନର୍ବାର ପ୍ରତିଷ୍ଠିତ ହୋଇଥିବା ସେ ଦେଖିପାରିଲେ ଏବଂ ସେହି ଯୁବତୀ ନର୍ତ୍ତକୀ ଯେତେବେଳେ ପ୍ରଥମେ ମନ୍ଦିରରେ ପ୍ରବେଶ କଲା, ସେତେବେଳେ ତାହା ମନରେ ଯେଉଁ ଆନନ୍ଦ ଓ ଉତ୍ସାହ ଦେଖାଦେଇଥିଲା, ସେସବୁ ଗୋଟି ଗୋଟି ହୋଇ ମନେପଡ଼ିଲା । ତାଙ୍କ ନୀରସ ଜୀବନରେ ସେହି ଯୁବତୀର ପ୍ରଶାନ୍ତ ମୁଖମଣ୍ଡଳର ସ୍ମୃତି ମରୁଭୂମିର ମରୁଦ୍ୱୀପ ପରି ଶାନ୍ତିପ୍ରଦ ମନେହେଲା ।

ତାଙ୍କ ଜୀବନର ଅମାଅନ୍ଧକାର ଏବଂ ଅଙ୍ଗେ ନିଭେଇଥିବା କଷ୍ଟଦାୟକ ସ୍ମୃତି ରାଶି ମଧ୍ୟରେ ଆଶାର କିରଣ ଦେଇଥିଲା ସେହି ସୁନ୍ଦରୀ ଶୈଳର ଶାନ୍ତ ମୂର୍ତ୍ତି । ଯେତେବେଳେ ସେ ଖମ୍ବାତ୍ତରେ ପହଞ୍ଚି ଶୁଣିଲେ ଯେ ପ୍ରଭାସରୁ ମନ୍ଦିରର ନର୍ତ୍ତକୀମାନେ ସେଠାକୁ ଆସିଛନ୍ତି, ଶୈଳୀକୁ ପୁଣି ଥରେ ଦେଖିବାର ସୁଯୋଗ ପାଇବେ ଭାବି ତାଙ୍କ ମନରେ ମୁହୂର୍ତ୍ତକ ପାଇଁ ଆନନ୍ଦ ଜନ୍ମିଲା । କିନ୍ତୁ ପରେ ଗଗନରାଶିଙ୍କ ଠାରୁ ଶୁଣିଲେ ଯେ, ଗଙ୍ଗା ଏବଂ ଶୈଳୀ ଗୁରୁଦେବଙ୍କ ନିକଟରେ ପ୍ରଭାସରେ ଅଛନ୍ତି । ବର୍ତ୍ତମାନ ସେ ପ୍ରଭାସକୁ ଆସିଥିବାରୁ କାଲେ ଶୈଳୀକୁ ଦେଖିପାରିବେ, ସେହି ଆଶାରେ ଗୁରୁଦେବଙ୍କ ଘରକୁ ଯିବାକୁ ବ୍ୟଗ୍ର ଥାନ୍ତି । କିନ୍ତୁ ମହାରାଜାଙ୍କ ସହିତ ଦେଖାକରି ତାଙ୍କୁ ଶେଷ ଖବର ଜଣାଇବା ହେଉଛି ତାଙ୍କର ପ୍ରଥମ କର୍ତ୍ତବ୍ୟ ।

ସାମନ୍ତଙ୍କ ସହିତ ଯାଇଥିବା ସୈନ୍ୟଟି ମହାରାଜାଙ୍କ ରହିବା ସ୍ଥାନ ଦେଖାଇ ଦେଲା । କିନ୍ତୁ ଦ୍ୱାର ଜଗି ରହିଥିବା ବୀର ଗୁଣ୍ଡା ତାଙ୍କୁ ଭିତରକୁ ଯିବାକୁ ଦେଲା ନାହିଁ ।

ସାମନ୍ତ ନିଜର ପରିଚୟ ଦେଇ କହିଲେ—ମୁଁ ସାମନ୍ତ ଚୌହାନ ।

ବୀର, ମହାରାଜା କଣ ଚେଇଁଛନ୍ତି ?

ଏହା ଶୁଣି ବୀର ଅତ୍ୟନ୍ତ ବିସ୍ମୟରେ ଓ ଧୀର ସ୍ୱରରେ କହିଲା, "ବାପୁ ! ଆପଣ ?"

ସାମନ୍ତ—ହଁ, ମୁଁ ବର୍ତ୍ତମାନ ସମୁଦ୍ରବାଟେ ଖମ୍ଭାତରୁ ଆସୁଛି । ଜାହାଜ ପାଖରୁ ମୁଁ ପହଁରି ପହଁରି ଆସିଛି । ମହାରାଜାଙ୍କୁ ଖବର ଦେବାକୁ ଚାହେ । ମୁଁ ସଙ୍ଗେ ସଙ୍ଗେ ଫେରିଯିବି । ମୋତେ ଭିତରକୁ ଛାଡ଼ ।

ୱୀର ତାଙ୍କ ହାତଧରି କହିଲା, "ନାଁ, ଆପଣ ଭିତରକୁ ଯାଇ ପାରିବେ ନାହିଁ ।"

ସାମନ୍ତର ମୁହଁ ଗମ୍ଭୀର ହୋଇଗଲା । ସେ କହିଲେ, "ମୁଁ କଣ କହିଲି ଶୁଣିଲ ନାହିଁ ? ମୋର ମହାରାଜାଙ୍କ ସହିତ ଗୁରୁତ୍ୱପୂର୍ଣ୍ଣ କଥାବାର୍ତ୍ତା ଅଛି ।"

ୱୀର—ବାପୁ, ଆପଣ ଟିକିଏ ଅପେକ୍ଷା କରନ୍ତୁ । ମୁଁ ଭିତରକୁ ଯାଇ ଆପଣ ଆସିଥିବା ମହାରାଜାଙ୍କୁ କହିବି । ସେ ବର୍ତ୍ତମାନ ଏକୁଟିଆ ନାହାନ୍ତି ।

ସାମନ୍ତ—ଏ ସମୟରେ ତାଙ୍କ ପାଖରେ ପୁଣି କିଏ ଅଛି ?

ୱୀରର ଉଚ୍ଚ ହାସ୍ୟ ସାମନ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଲା । ସେ କହିଲା, "ତାଙ୍କ ପାଖରେ ବର୍ତ୍ତମାନ ଯୁବତୀ ନର୍ତ୍ତକୀ ଚୌଳା ।"

ସାରା ସଂସାରଟା ନିଜ ଉପରେ ଭାଙ୍ଗି ପଡ଼ିବା ପରି ସାମନ୍ତଙ୍କୁ ଲାଗିଲା । ସାମନ୍ତ ଅସ୍ଥିର ହୋଇ ଉଠିଲେ ଓ ପଡ଼ିଯିବା ଭୟରେ ନିଜକୁ ସମ୍ଭାଳିବା ପାଇଁ କାନ୍ଥରେ ହାତ ଭରା ଦେଲା । ତାଙ୍କର ହୃଦୟ ଫାଟି ପଡ଼ିବା ଭଳି ବୋଧ ହେଲା । ସେ ପାହାଚ ଉପରେ ବସିପଡ଼ିଲେ ।

ୱୀର କହିଲା—ବାପୁ ! ଆପଣ ଏଇଠି ଅପେକ୍ଷା କରିଥାନ୍ତୁ । ମୁଁ ଆପଣଙ୍କ ଆସିବା ଖବର ମହାରାଜାଙ୍କୁ ଜଣାଇ ଦେବାକୁ ଯାଉଛି ।

ସତେ ଯେପରି ଜଣେ ମଲା ମଣିଷ କଥା କହୁଛି, ସେହିପରି ସ୍ୱରରେ ସାମନ୍ତ ଆସ୍ତେ ଆସ୍ତେ କହିଲେ, "ୱୀର, ମହାରାଜ କେତେବେଳେ ବିଶ୍ରାମ ନେବାକୁ ଗଲେ ?"

ୱୀର—ଅଳ୍ପ କ୍ଷଣ ହେଲା ଯାଇଛନ୍ତି ।

ରୁଦ୍ଧ କଣ୍ଠରେ ସାମନ୍ତ କହିଲେ, "ସେ ବିଶ୍ରାମ ନିଅନ୍ତୁ—ସେ ବିଶ୍ରାମ ନିଅନ୍ତୁ !"

ସାମନ୍ତ କପାଳରେ ହାତ ଦେଇ କିଛି କ୍ଷଣ ବସିରହିଲେ । ବର୍ତ୍ତମାନ କାନ୍ଦିବା ମଧ୍ୟ ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ତାଙ୍କର ସମସ୍ତ ଆଶା ଶେଷ ହୋଇଛି । ମୃତ୍ୟୁ ମଧ୍ୟ ଦୂରେଇ ଯାଇଛି । ପରିବାରହୀନ, ଭବିଷ୍ୟତଶୂନ୍ୟ, ସାନ୍ତ୍ୱନା ତଥା ସହାୟଶୂନ୍ୟ ଭାବେ ଜୀବନ କାଟିବା ତାଙ୍କ ଭାଗ୍ୟରେ ଅଛି । ସେ

ବଞ୍ଚିଥିଲେ ସୁଦ୍ଧା ମୃତ । ତାଙ୍କ ମୁହଁରେ ଦୁଃଖପୂର୍ଣ୍ଣ ହସ ଦେଖାଦେଲା । ପ୍ରଭୁ ସୋମନାଥ ତା ଲାଗି ଦୁନିଆରେ କିଛି ରଖି ନାହାଁନ୍ତି ।

ଉପରୁ ସ୍ୱର ଡାକିଲା, "ମହାରାଜ ଆପଣଙ୍କ ପାଇଁ ଅପେକ୍ଷା କରିଛନ୍ତି, ଚୌହାନରାଜ ! ଆସନ୍ତୁ ।"

ସାମନ୍ତ ଅତି କଷ୍ଟରେ ପାହାଚ ଉଠି ଉପରକୁ ଗଲେ । ତାଙ୍କୁ ସ୍ୱାଗତ କରିବା ପାଇଁ ସିଡ଼ିର ଶେଷ ପାହାଚରେ ଦଣ୍ଡାୟମାନ ଭୀମଦେବ ହାତ ବଢ଼େଇ କହିଲେ, "ବୀର ସାମନ୍ତ, ଆସ ! କେଉଁଠୁ ଆସିଲ ?"

ସାମନ୍ତ ମହାରାଜ ଭୀମଦେବଙ୍କ ସହିତ ଏକ ନାରୀ ମୂର୍ତ୍ତି ପରି ମିଳିତ ହେଲେ । ଚୌଳା ଘର ଭିତରୁ କହି କହି ଆସିଲା, "କିଏ ଚୌହାନ ?" ଚିରାଚରିତ ପ୍ରଥା ଅନୁଯାୟୀ ଭଉଣୀ ଯେପରି ଭାଇର ପଦସ୍ପର୍ଶ କରେ ଓ ତା ପରେ ସେ ଆଙ୍ଗୁଳିକୁ ନିଜ ଆଖିରେ ଲଗାଏ, ଚୌଳା ସେହିପରି ରୀତିରେ ତାଙ୍କୁ ସ୍ୱାଗତ କଲା ।

କମ୍ପିତ ଚୌହାନ ଚୌଳାର ହସ୍ତ ସ୍ପର୍ଶ ସମ୍ଭାଳି ପାରିଲେ ନାହିଁ । ସାହସୀ ଭୀମଦେବଙ୍କ ରାଣୀ ହେବା ପାଇଁ ଚୌଳା କିପରି ଯୋଗ୍ୟା, ତାହା ସେ କ୍ଷଣକେ ଦେଖିପାରିଲେ ଓ ସେମାନେ ପରସ୍ପର ପ୍ରତି ଆକୃଷ୍ଟ ହୋଇଥିବାର ଲକ୍ଷଣ ଉଭୟଙ୍କ ଆଖିରେ ଦେଖିଲେ ।

ସେ ଅତି କଷ୍ଟରେ ନିଜକୁ ସମ୍ଭାଳି ନେଇ ଦୁହିଁଙ୍କୁ ହାତଯୋଡ଼ି ସମ୍ବର୍ଦ୍ଧନା କରି କହିଲେ, "ମହାରାଜ, ଚୌଳା ! ଆପଣ ଉଭୟେ ଏକତ୍ରିତ ହେବା ଭାଗ୍ୟର ବିଷୟ ।"

ସାମନ୍ତ ଅନେକ ସମୟରେ କଳ୍ପନାରେ ଦେଖିଛନ୍ତି ଯେ ସେ ଘୋଘା-ବାପାଙ୍କର ଅପହୃତ ରାଜ୍ୟ ଫେରିପାଇଛନ୍ତି ଏବଂ ତାଙ୍କପାଖରେ ଅର୍ଦ୍ଧାଙ୍ଗିନୀ ରୂପେ ଚୌଳା ସିଂହାସନରେ ବସିଛି । ଚୌଳାକୁ ନମସ୍କାର କରିବା ସଙ୍ଗେ ସଙ୍ଗେ ଏହି ଭାବନା ତାଙ୍କ ମନକୁ ଆସିଲା । କିନ୍ତୁ ସେ ତତ୍‌କ୍ଷଣାତ୍ ଏହି ଚିନ୍ତା ମନରୁ ଦୂର କରିବାକୁ ଚେଷ୍ଟା କଲେ ।

ଭୀମଦେବ କହିଲେ, "ସାମନ୍ତ, ମୁଁ ଦେଖୁଛି ତୁମେ ଓ ଚୌଳା ଉଭୟେ ପରସ୍ପରକୁ ଜାଣିଛ !"

ସାମନ୍ତ ଉତ୍ତର ଦେଲେ, "ମହାରାଜ, ଏହି ସଂସାର ପଥରେ ମୁଁ ଏକାକୀ ବୁଲୁଛି ଏବଂ ମୋର ନିଃସଙ୍ଗ ଜୀବନରେ ସେ ମୋର ଅନୁରକ୍ତା ଭଗିନୀର ସ୍ଥାନ ଅଧିକାର କରିଛି । ସେ ସବୁଦିନ ପାଇଁ ସୁଖୀ ହେଉ ।" ତାପରେ ସେ

ଚୌଲକୁ ଲକ୍ଷ୍ୟକରି କହିଲେ, "ଆଚ୍ଛା ଭଉଣୀ ! ମୋର ମହାରାଜାଙ୍କ ସହିତ ଏକାନ୍ତରେ କିଛି କଥାବାର୍ତ୍ତା କରିବାକୁ ଅଛି । ଆମ ଦୁହିଁଙ୍କୁ ଟିକିଏ ନିରୋଳାରେ କଥାବାର୍ତ୍ତା ହେବାକୁ ସୁଯୋଗ ଦେବ ?"

ଏହା ଶୁଣି ଚୌଲା ଘର ଭିତରକୁ ଚାଲିଗଲା । ସାମନ୍ତ ଭୀମଦେବଙ୍କୁ ଛୁଡ଼ର ଗୋଟିଏ କଣକୁ ଡାକି ନେଇ କହିଲେ—"ମହାରାଜ ! ମୋର ଆପଣଙ୍କ ସହିତ ଯଥେଷ୍ଟ କଥାବାର୍ତ୍ତା ହେବାକୁ ଥିଲେସୁଦ୍ଧା ସମୟ ଅଳ୍ପ । ମୁଁ ରତ୍ନାଦିତ୍ୟଙ୍କୁ ସବୁ ବିଷୟ କହିଛି ଏବଂ ସେ ତାହା ଆପଣଙ୍କୁ ଜଣାଇବେ । ପାଟଣରେ ଆପଣଙ୍କ ବାକ୍ୟ ବେଦବାକ୍ୟ ସ୍ୱରୂପ । ହମୀରର ସୈନ୍ୟବାହିନୀ ପଛରେ ଦାମୋଦର ମେହେତା ଆପଣଙ୍କୁ ସାହାଯ୍ୟ କରିବାକୁ ସୈନ୍ୟ ନେଇ ଆସୁଛନ୍ତି । ମାରଓ୍ୱାଡ଼ ଏବଂ ଉଜ୍ଜୟିନୀର ସୈନ୍ୟମାନେ ମଧ୍ୟ ଏଠାରେ ଶୀଘ୍ର ପହଞ୍ଚିବେ । ଖମ୍ବାତ୍‌ରୁ ମୁଁ ଖାଦ୍ୟଦ୍ରବ୍ୟ ଏବଂ ଅସ୍ତ୍ରଶସ୍ତ୍ର ପୂର୍ଣ୍ଣ ଜାହାଜମାନ ଆଣି ଆସିଛି ।"

ଭୀମଦେବ—ଅଦ୍ଭୁତ କାର୍ଯ୍ୟ, ଅଦ୍ଭୁତ କାର୍ଯ୍ୟ ତୁମେ କରିଛ ସାମନ୍ତ ! ଶତ ଧନ୍ୟବାଦ !

ସାମନ୍ତ—ମୋତେ ସାଙ୍ଗେ ସାଙ୍ଗେ ଫେରିଯିବାକୁ ପଡ଼ିବ । ମୁଁ କାଲି ପୁଣି ଫେରିବି ।

ଭୀମଦେବ—ସାମନ୍ତ, ତୁମେ ମଣିଷ ନୁହଁ, ସାକ୍ଷାତ ଦେବତା !

ସାମନ୍ତ—ଆପଣ ଠିକ୍ କହିଛନ୍ତି ବୋଲି ମୋର ବିଶ୍ୱାସ । ମୁଁ ମଣିଷ ନୁହେଁ । ମଣିଷ ହୋଇଥିଲେ ବହୁ ପୂର୍ବରୁ ମୁଁ ମରିଥାନ୍ତି । ଏତେ କଷ୍ଟ ଭୋଗ କରୁନଥାନ୍ତି ।

ଭୀମଦେବ—ଏପରି କଥା କୁହନା । ତୁମେ ମୋର ଡାହାଣ ହାତ ସ୍ୱରୂପ ।

ସାମନ୍ତ - "ଏବେ ଆପଣଙ୍କୁ କହିବା ପାଇଁ ମୋର ଆଉ ଗୋଟିଏ ବିଷୟ ଅଛି ।" ଏହା କହିବା ସଙ୍ଗେ ସଙ୍ଗେ ସାମନ୍ତର ଗଳା କଠୋର ହେଲା । ଭୀମଦେବ ଟିକିଏ ଆଶ୍ଚର୍ଯ୍ୟ ହୋଇ ପଛକୁ ଘୁଞ୍ଚିଯାଇ ପଚାରିଲେ, "କଣ କହିବାକୁ ଚାହଁ ?"

ସାମନ୍ତ ମୁହୂର୍ତ୍ତକ ମଧ୍ୟରେ ଉଗ୍ରରୂପ ଧାରଣ କରି କହିଲେ, "ଚୌଲ ପ୍ରତି ଆପଣଙ୍କ ଦୁର୍ବଳତା କଣ ସାମୟିକ ? ସେ କଣ କେବଳ କେତୋଟି ରାତି ଲାଗି ଆପଣଙ୍କ ନିକଟରେ ଖେଳନା ?"

ସାମନ୍ତ ଏହି ପ୍ରଶ୍ନ ପଚାରିବାକ୍ଷଣି ଭୀମଦେବ ଇତସ୍ତତଃହୋଇ ପଚାରିଲେ, "ତୁମେ କାହିଁକି ଏପରି ପ୍ରଶ୍ନ କରୁଛ ?"

ସାମନ୍ତ—ମନ୍ଦିରର ନର୍ତ୍ତକୀ ଭାବେ ତାର ଜନ୍ମ । ପାଟଣ ରାଜାଙ୍କ ପ୍ରାସାଦରେ ତାହାର ସ୍ଥାନ କଅଣ ?

ସାମନ୍ତଙ୍କ ପ୍ରଶ୍ନର ଉଦ୍ଦେଶ୍ୟ ବୁଝିପାରି ଭୀମଦେବ ହସି ହସି ଉତ୍ତର ଦେଲେ, "ସାମନ୍ତ, ତୁମର ଆଶଙ୍କା ବୃଥା । ଚୌଳ ମୋ ହୃଦୟରେ ଉଚ୍ଚତମ ସ୍ଥାନ ଅଧିକାର କରିଛି । ମୁଁ କେବେହେଲେ ତାକୁ ଭୁଲି ପାରିବି ନାହିଁ ।"

ସାମନ୍ତ—"ସେ ଗୁରୁଦେବଙ୍କ ଝିଅ ଓ ମୋର ଧର୍ମଭଉଣୀ । ଆପଣ ପ୍ରକୃତରେ ଯଦି ତାକୁ ରାଣୀ କରିବା ଇଚ୍ଛା କରନ୍ତି, ତାହା ହେଲେ ସେ ବିଷୟ ସଙ୍ଗେ ସଙ୍ଗେ ନିଷ୍ପତ୍ତି ହେବା ଦରକାର ।" ଏହା କହିବା ସଙ୍ଗେ ସଙ୍ଗେ ସାମନ୍ତ ଭୀମଦେବଙ୍କ ଗୁଡ଼ିକୁ ନିଜର ଛୁରି ଉଠାଇଲା । ସେ ଭୀଷଣ ମୂର୍ତ୍ତି ଧାରଣ କରିଥାଏ ।

ଭୀମଦେବ ଉଚ୍ଚହାସ୍ୟ କରି କହିଲେ, "ଚୌଳ, ଏପରି ଏକ ଭାଇ ତୋର ଅଛି ! ତୁ ଭାଗ୍ୟବତୀ ! କିଛି ବ୍ୟସ୍ତ ହୁଅନାହିଁ ସାମନ୍ତ । ମୁଁ ତାକୁ ଦେଖିବା ମୁହୂର୍ତ୍ତରୁ ମୋର ଭାବୀ ରାଣୀ ଭାବେ ଦେଖିଆସିଛି ।" ଏହା ଶୁଣି ଛୁରିକା ତଳେ ପକାଇଦେଇ ସାମନ୍ତ କହିଲେ, "ମହାରାଜ, ମୋତେ କ୍ଷମା କରନ୍ତୁ ! ଆପଣଙ୍କୁ ସନ୍ଦେହ କରିବା ମୋର ଉଚିତ ନ ଥିଲା ।"

ଭୀମଦେବ କହିଉଠିଲେ, "ସେଥିପାଇଁ ଦୁଃଖିତ ହୁଅ ନାହିଁ । ତୁମେ ମୋର ଭାଇ ନୁହଁ, ମୋର ପତ୍ନୀର ଭାଇ । ଏହି ଯୁଦ୍ଧ ଶେଷ ହେବା ସଙ୍ଗେ ସଙ୍ଗେ ତୁମେହିଁ ଚୌଳକୁ ମୋତେ ଅର୍ପଣ କରିବ ।"

ସାମନ୍ତଙ୍କର ମୁହଁ ଶୁଖିଗଲା ଏବଂ ସେ କହିଲେ, "ମହାରାଜ, ସେ ଆପଣଙ୍କର ପତ୍ନୀ ହୋଇସାରିଲାଣି । ପ୍ରଭୁ ସୋମନାଥଙ୍କ ଇଚ୍ଛା କଣ ତାହା ତାଙ୍କୁହିଁ ଜଣା । କାଲି କଣ ହେବ ତାହା ଭଗବାନହିଁ ଜାଣନ୍ତି ।"

ଭୀମଦେବ କିଛି ସମୟ ଚୁପ୍ ରହି ଚିନ୍ତା କରି କହିଲେ, "ସାମନ୍ତ, ତୁମେ ଠିକ୍ କଥା କହୁଛ । ବୀର, ତୁ ଯାଇ ରତ୍ନାଦିତ୍ୟ, ବିମଳ ଓ ଦାମୋଦରଙ୍କୁ ଗୁରୁଦେବଙ୍କ ଘରକୁ ଡାକିଆଣ । ଏହି ମୁହୂର୍ତ୍ତ ପରି ଶୁଭ ମୁହୂର୍ତ୍ତ ଆଉ ଆସିବ ନାହିଁ । ଚୌହାନ, ଚୌଳ ଏବଂ ମୁଁ ସିଧା ଗୁରୁଦେବଙ୍କ ପାଖକୁ ଯାଉଛୁ । ବିବାହ ବିଧାନ ସଙ୍ଗେ ସଙ୍ଗେ ସମ୍ପନ୍ନ ହେବ ।

× × ×

ବିବାହ ଉତ୍ସବ ଶେଷ ହେଲା । ଗୁରୁଦେବ ନବ ଦମ୍ପତିଙ୍କୁ ଆଶୀର୍ବାଦ କଲେ । ଏ ଦୃଶ୍ୟ ଦେଖି ଗଙ୍ଗାର ଆଖିରୁ ଆନନ୍ଦାଶ୍ରୁ ବହିବାରେ ଲାଗିଥାଏ । ସାମନ୍ତ ଠିଆ ହୋଇପଡ଼ି କହିଲେ, "ମହାରାଜ, ସିନ୍ଧୁର ଫାଟି ଆସୁଛି । ମୋତେ ବିଦାୟ ଦିଅନ୍ତୁ !"

ଭୀମଦେବ ଏବଂ ଚୌଲା ତାଙ୍କୁ ବିଦାୟ ଦେବାକୁ ଗୁରୁଦେବଙ୍କ ଘର ବାହାର ପର୍ଯ୍ୟନ୍ତ ଗଲେ । ଚୌଲା ଆନନ୍ଦାଶ୍ରୁ ପୂର୍ଣ୍ଣ ଆଖିରେ ଚାହିଁ କହିଲା, "ଭାଇ, ଭଗବାନ ତୁମକୁ ଶୀଘ୍ର ଫେରାଇ ଆଣନ୍ତୁ ।"

ସାମନ୍ତ କହିଲେ—"ଭଉଣୀ, ଯେବେ ମୁଁ ବଞ୍ଚିକରି ଥାଏ, ତାହା-ହେଲେ ତୁ ଦିନେ ନା ଦିନେ ମୋ ହାତରେ ରାଖୀ ବାନ୍ଧିବାକୁ ଆସିବୁ । ଯେବେ ମୋର ମୃତ୍ୟୁ ହୁଏ, ତାହାହେଲେ······ମୋତେ ମନେକରିବୁ ।"

ସାମନ୍ତ ଆଉ ପଛକୁ ନ ଚାହିଁ ଦୁର୍ଗର ଦ୍ୱାରକାଦ୍ୱାର ଆଡ଼କୁ ଚାଲିଲେ ।

## ୪୪

## ପ୍ରତିଶୋଧ ନେବାଲାଗି ଶିବରାଶିଙ୍କ ପ୍ରସ୍ତୁତି

ଶିବରାଶି ଗୁରୁଦେବଙ୍କ ସହିତ ନୀରବରେ ତାଙ୍କ ଘରକୁ ଗଲେ । ଯେତେବେଳେ ସର୍ବଜ୍ଞ ତାଙ୍କ ଆଗରେ ଠିଆହେଲେ, ସେ କଳ୍ପନା କରୁଥାନ୍ତି ସତେ ଯେପରି ଶିବଙ୍କର ସାକ୍ଷାତ ଅବତାର ଓ ପାଶୁପତ ସଂପ୍ରଦାୟର ପ୍ରତିଷ୍ଠାତା ଲକୁଲେଶ ନିଜେ ତାଙ୍କୁ ସାଙ୍ଗରେ ନେବା ପାଇଁ ଆସିଛନ୍ତି । ଶିବରାଶି ଭାବିଲେ— ତାଙ୍କ ତପସ୍ୟା ପାଇଁ ସେ ପୁରସ୍କାର ପାଇଛନ୍ତି । ପାଶୁପତ ସଂପ୍ରଦାୟର ପ୍ରତିଷ୍ଠାତା ନିଜେ ତାଙ୍କୁ ଏହି ପାପମୟ ସ୍ଥାନରୁ ନେବା ପାଇଁ ଆସିଛନ୍ତି ଓ ଦେବୀ ମହାମାୟା ତ୍ରିପୁରସୁନ୍ଦରୀ ଆଗେ ଆଗେ ଆନନ୍ଦରେ ନାଚି ନାଚି ବାଟ କଢ଼ାଉଛନ୍ତି । ଚାରିଆଡ଼େ ଅନ୍ଧକାର ଘୋଟି ରହିଥିବା ସମୟରେ ତାଙ୍କ ଗୁରୁ ଏବଂ ପୂଜ୍ୟା ଦେବୀ ତାଙ୍କୁ ଅନ୍ଧକାରରୁ ଆଲୋକକୁ ନେଉଛନ୍ତି ।

ଗୁରୁଦେବ ଚାଲିଯିବା ପରେ ବହୁ ସମୟ ପର୍ଯ୍ୟନ୍ତ ଅନ୍ଧକାରକୁ ଚାହିଁ ରହି ଶିବରାଶି ସେହିଠାରେ ଠିଆ ହୋଇ ରହିଲେ । ସିଦ୍ଧେଶ୍ୱର ଆସି ତାଙ୍କୁ

ଡାକବାରେ ସେ ପ୍ରକୃତିସ୍ଥ ହେଲେ । କୋମଳ ଏବଂ ଉତ୍ସାହପୂର୍ଣ୍ଣ ସ୍ୱରରେ ଶିବରାଣି କହିଲେ, "ସିଦ୍ଧେଶ୍ୱର, ପ୍ରଭୁ ମୋତେ ଦେଖିବାକୁ ବର୍ତ୍ତମାନ ଆସିଥିଲେ ।"

ସିଦ୍ଧେଶ୍ୱର ଆଶ୍ଚର୍ଯ୍ୟ ହୋଇ କହିଲା, "ଆପଣ ପୁଣି ସର୍ବଜ୍ଞଙ୍କୁ କଣ ଦେବତା ଦୃଷ୍ଟିରେ ଦେଖିଲେଣି ?"

ଶିବରାଣୀ—ନାଁ, ନାଁ, ପ୍ରଭୁ ଲକୁଳେଶ ନିଜେ ଏଠାକୁ ଆସିଥିଲେ ।

ସିଦ୍ଧେଶ୍ୱର—ପ୍ରଭୁ ଲକୁଳେଶ ?

ଶିବରାଣି—ହଁ, ବର୍ତ୍ତମାନ ଆସିଥିଲେ । ପ୍ରଭୁ ଶଙ୍କରଙ୍କ ରୂପରେ ସେ ମୋତେ ଦେଖାଦେଲେ ।

ଶିବରାଣି ପୁଣି ଭକ୍ତିଭରା କଣ୍ଠରେ କହିଲେ, "ପ୍ରଭୁ ନିଜେ କହିଲେ, ମନ୍ଦିରଟା ପାପରେ ପୂରି ଗଲାଣି । ସେ ମୋତେ ଅନ୍ୟ ସ୍ଥାନକୁ ଚାଲି ଯିବାକୁ କହିଲେ । ପାପ ବିମୁକ୍ତ ଏକ ସ୍ଥାନରେ ପ୍ରଭୁ ସୋମନାଥ ଏବଂ ମହାମାୟୀ ତ୍ରିପୁରସୁନ୍ଦରୀଙ୍କର ନୂତନ ମନ୍ଦିର ସ୍ଥାପନ କରି ଯେପରି ପରଂପରା ସିଦ୍ଧ ରୀତିରେ ପୂଜା କରାଯାଇଆସୁଥିଲା, ସେହିପରି ପୂଜା କରିବାକୁ ପ୍ରଭୁ କହିଛନ୍ତି ।"

ଶିବରାଣୀଙ୍କର ଏଭଳି ବାଗ୍ମିତାରେ ଟିକିଏ ବିସ୍ମିତ ହୋଇ ସିଦ୍ଧେଶ୍ୱର ତାଙ୍କ ଆଡ଼କୁ ଅନାଇଲା । ଗତ କିଛି ଦିନ ମଧ୍ୟରେ ରାଣୀଜୀଙ୍କ ବ୍ୟକ୍ତିତ୍ୱରେ ଦେଖାଦେଇଥିବା ଏହି ପରିବର୍ତ୍ତନ ସେ ବୁଝିପାରୁ ନଥାଏ । ଶିବରାଣି ବର୍ତ୍ତମାନ ପୂର୍ବଭଳି ଦୁର୍ବଳ ନୁହନ୍ତି ବା ଅନ୍ୟର କ୍ରୀଡ଼ା ପୁତ୍ତଳିକା ନୁହନ୍ତି । ତାଙ୍କଠାରେ ଏଭଳି ଆତ୍ମବିଶ୍ୱାସ ଦେଖାଦେଇଛି, ଯାହା କେବଳ ଦେବତାମାନଙ୍କଠାରେ ଦେଖାଯାଏ । ଯେଉଁଦିନୁ ଶିବରାଣି ସର୍ବଜ୍ଞଙ୍କୁ ଆଉ ଗୁରୁରୂପେ ମାନିବେ ନାହିଁ ବୋଲି ନିଷ୍ପତ୍ତି କଲେ, ସେହି ଦିନୁ ତାଙ୍କୁ ଗୁରୁଦେବ ପଦରେ ଅଭିଷିକ୍ତ କରିଥିବା ସିଦ୍ଧେଶ୍ୱର କହିଲା, "ଗୁରୁଦେବ, ହମ୍ମୀରର ବିରାଟ ସୈନ୍ୟବାହିନୀ ଦେଖିବା ଦିନୁଁ ଏଠାରେ ରହିବା ବିଜ୍ଞତାର କାର୍ଯ୍ୟ ନୁହେଁ ବୋଲି ମୁଁ ଭାବୁଛି । ଆମେ ବର୍ତ୍ତମାନ ଯେବେ ଗୁରୁଦେବଙ୍କୁ—ନା, ଗଙ୍ଗ ସର୍ବଜ୍ଞଙ୍କୁ—ଅନୁରୋଧ କରିବା, ସେ ଆମର ଖମ୍ଭାତ ଯିବାର ବ୍ୟବସ୍ଥା କରିଦେବେ । ରାଓ କାମା ତାଙ୍କ ବୋଇତ ସମୁଦ୍ର କୂଳରେ ଲଗାଇଛନ୍ତି । ସେ ଆମକୁ ନେଇଯିବେ ।"

ଉତ୍କ୍ଷିପ୍ତ ସିଂହପରି ଗର୍ଜିଉଠି ଶିବରାଣି କହିଲେ "ସେହି ପାପୀଠାରୁ କୌଣସି ପ୍ରକାର ସାହାଯ୍ୟ ନେବା ଅପେକ୍ଷା ଏଠାରେ ରହିବା ଶ୍ରେୟସ୍କର ।"

ସିଦ୍ଧେଶ୍ୱର—ତାହାହେଲେ ଆମେ ଯିବା କିପରି ?

ଶିବରାଶି—ମୁଁ ପଳାଇଯିବାକୁ ଚାହେଁ ନାହିଁ । କେବଳ ପ୍ରଭୁ ଲକୁଳେଶଙ୍କ ଆଦେଶ କାର୍ଯ୍ୟକାରୀ କରିବାକୁ ଚାହେଁ । କଣ କରିବା ଉଚିତ୍ ସେ ବିଷୟରେ ମହାମାୟା ତ୍ରିପୁରସୁନ୍ଦରୀ ନିଶ୍ଚୟ ମୋତେ ନିର୍ଦ୍ଦେଶ ଦେବେ । ସେ ଯେଉଁଠାକୁ ଯିବେ ମୁଁ ତାଙ୍କ ସଙ୍ଗେ ସଙ୍ଗେ ଯିବି । ପାଶୁପତ ସମ୍ପ୍ରଦାୟକୁ ତାଙ୍କ ନିର୍ଦ୍ଦେଶ ଅନୁଯାୟୀ ରକ୍ଷା କରିବା ମୋର ପରମ କର୍ତ୍ତବ୍ୟ ହେବ । ମହାମାୟା ! ଜଗଜ୍ଜନନୀ !” ଏହା କହିସାରି ଶିବରାଶି ନିସ୍ପନ୍ଦ ହୋଇ ଠିଆହେଲେ ଏବଂ ଦୂର ଅନ୍ଧକାରକୁ ଅପଲକ ନୟନରେ ଚାହିଁ ରହିଲେ । ତାଙ୍କୁ ଜଣାଗଲା ଯେପରି ସେହି ଅନ୍ଧକାର ଭିତରୁ ଦେବୀ ତ୍ରିପୁରସୁନ୍ଦରୀ ତାଙ୍କୁ ଆନନ୍ଦରେ ଡ଼ାକୁଛନ୍ତି । ତାଙ୍କର ସୌନ୍ଦର୍ଯ୍ୟ ଅପୂର୍ବ । ପଦ୍ମ ଫୁଲ ତୁଲ୍ୟ ତାଙ୍କର ପାଦ ସେ ସୌନ୍ଦର୍ଯ୍ୟକୁ ଆହୁରି ବର୍ଦ୍ଧିତ କରୁଥାଏ । ମହାମାୟା ଦିବ୍ୟ ହସ ହସୁଥାନ୍ତି । ଅନ୍ତରର ସମସ୍ତ ଆବେଗ ଯେମିତି ଦେବୀ ହସିଉଠୁଥାନ୍ତି ।

ଶିବରାଶି କହିଲେ—ସିଦ୍ଧେଶ୍ୱର, ମୁଁ ଆଦେଶ ପାଇଛି । କଣ ହେବାକୁ ଯାଉଛି ତାହା ମହାମାୟା ଜଣାଇଦେଲେଣି । ଏହି ଅପବିତ୍ର ସ୍ଥାନରୁ ଆସ ଚାଲିଯିବା ।

ସିଦ୍ଧେଶ୍ୱର—ଆମେ କିପରି ଯିବା ?

ଗୁରୁ ଶିବରାଶିଙ୍କ ମନରେ କଣ ଅଛି ତାହା ବୁଝିବା ସିଦ୍ଧେଶ୍ୱର ପକ୍ଷରେ କଷ୍ଟକର ହେଲା ।

ନିଦ୍ରା ତ୍ୟାଗ କରି ଉଠିଲାଭଳି ସଚେତ ହୋଇ ଶିବରାଶି ଅସ୍ଥିର ଭାବେ ଚାରିଆଡ଼କୁ ଚାହିଁଲେ । ତାହାପରେ ପ୍ରକୃତିସ୍ଥ ହୋଇ କହିଲେ, “ସିଦ୍ଧେଶ୍ୱର, ତୁମେ ଯାଇ ଦଦ୍ଧା ଚାଲୁକ୍ୟଙ୍କୁ ଆଣ ।”

ସିଦ୍ଧେଶ୍ୱର—ସେ ବର୍ତ୍ତମାନ ଜୁନାଗଡ଼ ଦ୍ୱାର ଜଗିଛନ୍ତି ।

ଶିବରାଶି—ମୁଁ ଜାଣେ । କିନ୍ତୁ ସେ ଶୀଘ୍ର ଏଠାକୁ ଆସିବା ମୋର ଆଜ୍ଞା ବୋଲି କୁହ ।

ଅନ୍ୟ କିଛି ପ୍ରଶ୍ନ ନ ପଚାରି ସିଦ୍ଧେଶ୍ୱର ସିଧା ଚାଲିଗଲା । କିଛି ସମୟ ପରେ ହରଦତ୍ତ ଏବଂ ଅନ୍ୟ ଜଣେ ସାଧୁ ଆସି ପହଞ୍ଚି ଶିବରାଶିଙ୍କୁ ସସମ୍ମାନେ ଅଭିବାଦନ ଜଣାଇ କହିଲେ, “ଗୁରୁଦେବ, ଆମ ସାଙ୍ଗରେ ଆସିବାକୁ ଆପଣ ପ୍ରସ୍ତୁତ ଅଛନ୍ତି ? ତ୍ରିପୁରସୁନ୍ଦରୀଙ୍କ ପୂଜା ନିମନ୍ତେ ସବୁ ଆୟୋଜନ

ହୋଇଛି । କେବଳ ଆପଣଙ୍କୁ ଆମେ ଅପେକ୍ଷା କରୁଛୁ । ଆପଣ ଆସିଲେ ଆମେ ଚୌଳକୁ ଆଣିବୁ ।"

ଶିବରାଶି—ଚୌଳ, ମହାମାୟୀ ?

ହରଦତ୍ତ – ହଁ !

ଶିବରାଶି—"ମୂର୍ଖ, ଅନ୍ଧ ! ପୂଜା ସମ୍ପୂର୍ଣ୍ଣ କରି ଲାଭ କଣ ?" ଶିବରାଶି ରାଗରେ ଦାନ୍ତ ଚିପି କହିଲେ । ସେ ପୁଣି କହିଲେ, "ବର୍ତ୍ତମାନ ଆମ୍ଭେମାନେ ଏହି ପାପପୂର୍ଣ୍ଣ ସ୍ଥାନ ପରିତ୍ୟାଗ କରି ଅନ୍ୟ କୌଣସି ପବିତ୍ର ସ୍ଥାନରେ ତ୍ରିପୁରସୁନ୍ଦରୀଙ୍କ ପୂଜାର ବ୍ୟବସ୍ଥା କରିବା ଦରକାର । ତାହାହିଁ ହେଉଛି ପ୍ରଭୁ ଲକୁଲେଶଙ୍କ ଆଦେଶ ଏବଂ ତାହା କରିବା ପାଇଁ ଦେବୀ ମହାମାୟୀ ନିଜେ ମୋତେ ନିର୍ଦ୍ଦେଶ ଦେଇଛନ୍ତି ।"

ହରଦତ୍ତ—ଆମେ ଯିବା କୁଆଡ଼େ ?

ଶିବରାଶି—ଏହି ଅପବିତ୍ର ସ୍ଥାନ ଛାଡ଼ି ଆମ୍ଭେମାନେ ସଙ୍ଗେ ସଙ୍ଗେ ଅନ୍ୟତ୍ର ଚାଲିଯିବା ଦରକାର । ତୁମେ ମୋ ସାଙ୍ଗରେ ଯିବ ? କାଲିକୁ ଯେଉଁମାନେ ଏଠାରେ ଥିବେ ସେମାନେ ସମସ୍ତେ ଭସ୍ମ ହୋଇଯିବେ ।

ହରଦତ୍ତ—ଆମେ କିପରି ଯିବା ?

ଶିବରାଶି—ମହାମାୟୀ ବାଟ ଦେଖାଇବେ । ତୁମେମାନେ ଯିବାକୁ ପ୍ରସ୍ତୁତ ତ ?

ହରଦତ୍ତ – ହଁ ।

ଶିବରାଶି—ଭଲକଥା । ତୁମେମାନେ ଯାଇ ଚୌଳକୁ ଆଣ । କିନ୍ତୁ ସାବଧାନ, ତୁମେ କଣ କରୁଛ ତାହା ଯେପରି କେହି ନ ଜାଣନ୍ତି । ଆମେ ସଙ୍ଗେ ସଙ୍ଗେ ପ୍ରଭାସ ଛାଡ଼ି ଚାଲିଯିବା ।

ହରଦତ୍ତ ଏବଂ ତାର ସାଥୀ ଗୁରୁଙ୍କ ଆଦେଶ କାର୍ଯ୍ୟକାରୀ କରିବା ପାଇଁ ସଙ୍ଗେ ସଙ୍ଗେ ବାହାରିପଡ଼ିଲେ । ଗୁରୁଦେବ ରୁଦ୍ରଙ୍କ ପରି ଶକ୍ତିଶାଳୀ ଦେଖାଯାଉଥାନ୍ତି । ଶିବରାଶିଙ୍କ ଦୃଷ୍ଟି ଚୌଳରୂପିଣୀ ତ୍ରିପୁରସୁନ୍ଦରୀଙ୍କ ଉପରେ ଥିଲା । ସତେ ଯେପରି ସେ ତାଙ୍କ ଆଗରେ ଠିଆ ହୋଇ ଏହି ପର୍ବତ ଓ ସମୁଦ୍ରର ଅପର ପାର୍ଶ୍ୱରେ ଥିବା ଦେଶକୁ ଦେଖାଇଦେଉଛନ୍ତି ଓ ସେଠାରେ ନୂଆ ତୀର୍ଥସ୍ଥାନ ପ୍ରତିଷ୍ଠା ହେବ ବୋଲି ଯେପରି କହୁଛନ୍ତି । କଳ୍ପନାରେ ସେ ଦେଖିଲେ ଧରିତ୍ରୀ ନୂତନ ବସ୍ତ୍ର ପରିଧାନ କଲା । ଯେଉଁ ସ୍ଥାନରେ ମହାମାୟୀରୂପରେ ତ୍ରିପୁରସୁନ୍ଦରୀ ଠିଆହୋଇଥିଲେ, ସୂର୍ଯ୍ୟଙ୍କ କିରଣରେ ତାହା ସୁନେଲି ପାହାଡ଼

ଭଳି ଦେଖାଗଲା । ପାହାଡ଼ ତଳ ଉପତ୍ୟକାରେ ସେ ନିଜେ ଜଗଦ୍‌ଗୁରୁଙ୍କ କାର୍ଯ୍ୟ କରୁଥିବା ପରି ତାଙ୍କୁ ଜଣାଗଲା ।

ସିଦ୍ଧେଶ୍ୱରର ଆଗମନକୁ ଶିବରାଶି ଉଦ୍‌ବିଗ୍ନ ଭାବେ ଅପେକ୍ଷା କରି ରହିଥିଲେ । ସେ ଫେରିଆସି କହିଲା, "ମୁଁ ବଡ଼ା ଗୃହଲୁକ୍ୟଙ୍କୁ ପାଇଲିନାହିଁ । ସେ ସର୍ବଜ୍ଞଙ୍କ ପାଖକୁ ଯାଇଛନ୍ତି ।"

ଶିବରାଶି କହିଲେ—ତାହାହେଲେ ତୁମେ ଯାଇ ବାହାରେ ଅପେକ୍ଷା କର । ସେ ଫେରିଆସିଲେ ତାଙ୍କୁ ଏଠାକୁ ଆଣ ।

କିଛି ସମୟ ପରେ ହରଦତ୍ତ ଏବଂ ତାର ସାଥୀ ଆସି ପହଞ୍ଚିଲେ । ଉଭୟେ ଅତ୍ୟନ୍ତ ଉତ୍ତେଜିତ ହୋଇଥାଆନ୍ତି । ସେମାନେ ଆସି କହିଲେ, "ଗୁରୁଦେବ, ଅତ୍ୟନ୍ତ ଭୟାବହ ଘଟଣା ଘଟିଛି !"

ଶିବରାଶି —ଏଁ ?

ହରଦତ୍ତ ଏବଂ ତାର ସାଥୀ କହିଲେ, "ଗୁରୁଦେବ, ଗଙ୍ଗ ସର୍ବଜ୍ଞ ଚୌଳାକୁ ଭୀମଦେବ ସହିତ ବିବାହ କରିଦେଇଛନ୍ତି ।"

ଶିବରାଶି ଗର୍ଜି ଉଠି ପଚାରିଲେ, "ତୁମେ ଠିକ୍ କହୁଛ ?"

ହରଦତ୍ତ—ସେମାନଙ୍କର ବିବାହ ବର୍ତ୍ତମାନ ସରିଲା । ମୁଁ ଛାତ ଉପରୁ ଦେଖୁଥିଲି ।

ଶିବରାଶିଙ୍କ ମୁହଁ କ୍ରୋଧରେ ନାଲିପଡ଼ିଗଲା ଓ ଆଖି ଦୁଇଟି ତରାଟି ହୋଇଗଲା । ଦୁଇହାତରେ ସେ ନିଜ ମୁଣ୍ଡରୁ ବାଳ ଛିଣ୍ଡାଇଲେ । ସେ ନିଜ ଉପରୁ ତାଙ୍କର ଆୟତ୍ତ ହରାଇ ବସିଲେ ଏବଂ ତାଙ୍କ ନିଜର ପ୍ରତିଷ୍ଠା ମଧ୍ୟ ଭୁଲିଗଲେ । ତ୍ରିପୁରସୁନ୍ଦରୀ ବର୍ତ୍ତମାନ ପାଟଣର ଭୀମଦେବଙ୍କର ବିବାହିତା ସ୍ତ୍ରୀ ! ଏହାର ପ୍ରତିଶୋଧ ନେବା ପାଇଁ ସେ ପାଗଳ ହୋଇଗଲେ ।

ହରଦତ୍ତ ବାରମ୍ବାର ପଚାରି ଲାଗିଲେ, "ଗୁରୁଦେବ; ଆମେ କଣ କରିବା ? ଆମେ ଅନ୍ୟ କେଉଁଠାକୁ ଯିବା କି ନାହିଁ ?"

ଶିବରାଶି ପୂର୍ବପରି କ୍ରୋଧରେ କହିଲେ—ଏହି ପାପୀମାନେ ଭସ୍ମ ନ ହେବା ପର୍ଯ୍ୟନ୍ତ ଆମେ କିପରି ଯିବା ? ତୁମେ ବର୍ତ୍ତମାନ ଯାଅ । ଦରକାର ହେଲେ ମୁଁ ଡକାଇବି । ସାଧୁ ଦୁଇଜଣ ଶିବରାଶିଙ୍କର କ୍ରୋଧ ଦେଖି ଡରିଯାଇ ସଙ୍ଗେ ସଙ୍ଗେ ଚାଲିଗଲେ ।

ଅଳ୍ପ କ୍ଷଣ ପରେ ସିଦ୍ଧେଶ୍ୱର ଏବଂ ବଡ଼ା ଚାଳୁକ୍ୟ ଆସି ପହଞ୍ଚିଲେ । ଶିବରାଶିଙ୍କ କ୍ରୁଦ୍ଧ ମୂର୍ତ୍ତି ଦେଖି ବଡ଼ା ଆଶ୍ଚର୍ଯ୍ୟ ହୋଇଗଲେ ।

ଶିବଗଣି କହିଲେ—ଦଦ୍ଧା, ମୋର ଗୋଟିଏ ଆଦେଶ ତୁମକୁ କାର୍ଯ୍ୟକାରୀ କରିବାକୁ ହେବ ।

ଦଦ୍ଧା - ନିଷ୍ଚୟ କରିବ !

ଶିବଗଣି—ସିଦ୍ଧେଶ୍ୱରଙ୍କୁ ଯେ କୌଣସି ମତେ ଏହି ଦୁର୍ଗରୁ ବାହାର କରିବା ନିମନ୍ତେ ତୁମକୁ ବ୍ୟବସ୍ଥା କରିବାକୁ ହେବ ।

ଗୁରୁଦେବଙ୍କ ମନର ଅଭିପ୍ରାୟ ବୁଝିବାକୁ ଅସମର୍ଥ ହୋଇ ଆଶ୍ଚର୍ଯ୍ୟାନ୍ୱିତ ଭାବେ ସିଦ୍ଧେଶ୍ୱର ପଚାରିଲା, "ଆପଣ ମୋତେ ପଠାଇବା ନିମନ୍ତେ କହୁଛନ୍ତି ?"

ଶିବଗଣି—ହଁ, ତୁମକୁ ।

ଗଣିଜୀଙ୍କ କ୍ରୋଧ ଦେଖି ପଦେ ସୁଦ୍ଧା ପ୍ରତିବାଦ କରିବାକୁ ସିଦ୍ଧେଶ୍ୱରର ସାହସ ହେଲା ନାହିଁ ।

ଦଦ୍ଧା କହିଲେ, "କିନ୍ତୁ ଗୁରୁଦେବ, ମୁଁ ଏହା କରିବ କିପରି ? ମହାରାଜ ଜାଣିଲେ ମୋର ପ୍ରାଣ ନେଇଯିବେ ।"

ଶିବଗଣି—ଦଦ୍ଧା ' ମୋର ଆଶୀର୍ବାଦ ଫଳରେ ତୋର ପୁଅ ହୋଇଛି । ମୁଁ ଅଭିଶାପ ବଳରେ ତୋର ସେ ପୁଅକୁ ନାଶ କରିପାରେ । ଜବାବ୍ ଦେ ।

ଦଦ୍ଧାଙ୍କ ମନରେ ଭୟ ଜାତହେଲା । ଏହି ଶକ୍ତିଶାଳୀ ସାଧୁଙ୍କ ଆଦେଶ ସେ କିପରି ବା ଅମାନ୍ୟ କରିବେ ? ସେ କହିଲେ, "ଭଲକଥା ! ତାଙ୍କୁ ଅଳ୍ପ ସମୟ ମଧ୍ୟରେ ଦ୍ୱାରକା ଦ୍ୱାରକୁ ପଠାଅ । ମୁଁ ବ୍ୟବସ୍ଥା କରିବ ।"

ସାମନ୍ତ ଯେପରି ଭାବେ ଦୁର୍ଗରେ ପ୍ରବେଶ କରିଥିଲେ, ରତ୍ନାଦିତ୍ୟ ତାହା ଦଦ୍ଧାଙ୍କୁ କହିଥିଲେ । ସିଦ୍ଧେଶ୍ୱରଙ୍କୁ ସେହିଭଳି ବାହାରକୁ ପଠାଇଦେବେ ବୋଲି ସେ ଭାବିଲେ । ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ସେ ଚାଲିଗଲେ ।

ଶିବଗଣିଙ୍କ କଥା ଶୁଣି ସିଦ୍ଧେଶ୍ୱର କଣ କରିବ ଠିକ୍ କରି ନ ପାରି ଅତ୍ୟନ୍ତ ଖିନ୍ନ ହୋଇଗଲା । କିନ୍ତୁ ମୃତ୍ୟୁର ଭୟଙ୍କର ବଧ୍ୟକ୍ଷିକାପୂର୍ଣ୍ଣ ପ୍ରାସାଦରୁ ପଳାଇଯିବାର ବାସନା ସେ ରୋକି ପାରିଲା ନାହିଁ । ଖାରା ଓ ମାରା ସମୁଦ୍ରରେ ସାମନ୍ତଙ୍କୁ ପାରି କରାଉଥାନ୍ତି । ଦଦ୍ଧା ଏବଂ ଅନ୍ୟ ଦୁଇଜଣ ନାବିକଙ୍କ ଛଡ଼ା ଆଉ କେହି ନାହାନ୍ତି । ଦଦ୍ଧା ଖାରାକୁ କହିଲେ, "ମହାରାଜାଙ୍କ ଇଚ୍ଛା, ଏହାଙ୍କୁ ଚୌହାନଙ୍କ ସହିତ ଯିବାକୁ ଛାଡ଼ିଦିଅ ।" "ଆପଣଙ୍କର ଯେ ଇଚ୍ଛା"—ଏହା କହିବା ସଙ୍ଗେ ସଙ୍ଗେ ସେ ସିଦ୍ଧେଶ୍ୱରଙ୍କୁ ଦଉଡ଼ି ସାହାଯ୍ୟରେ ସମୁଦ୍ର ଭିତରକୁ ଓହ୍ଲାଇଦେଲା ।

# ୪୫

# ଦୁର୍ଗର ଦ୍ୱାରମାନଙ୍କରେ ଯୁଦ୍ଧ

ଦୁର୍ଗରେ ଥିବା ରାଜପୁତ୍ ସୈନ୍ୟବାହିନୀ ଶତ୍ରୁର ସମ୍ମୁଖୀନ ହେବାକୁ ପ୍ରଭାତରୁ ପ୍ରସ୍ତୁତ ହୋଇଗଲେ । କିନ୍ତୁ ଯବନ ସୈନ୍ୟବାହିନୀର ଗତିବିଧିର କୌଣସି ସଙ୍କେତ ମିଳି ନ ଥାଏ । ଦ୍ୱାରକା ଦ୍ୱାର ଓ ଜୁନାଗଡ଼ ଦ୍ୱାର ନିକଟରେ ଅଳ୍ପ କେତେକ ଶତ୍ରୁସୈନ୍ୟ ଥାଆନ୍ତି ଏବଂ ସେ ଦିଗରୁ କୌଣସି ବିପଦର ଆଶଙ୍କା କରାଯାଉନଥାଏ । ମୁଖ୍ୟତଃ ପ୍ରଧାନ ଦ୍ୱାର ସମ୍ମୁଖରେ ଶତ୍ରୁସୈନ୍ୟମାନେ ଠୁଳ ହୋଇଥାନ୍ତି । କିନ୍ତୁ ସେମାନଙ୍କର ଆକ୍ରମଣ କେଉଁ ଆକାର ଧାରଣ କରିବ, ତାହା ଜାଣିବା କଷ୍ଟକର ହୋଇଥାଏ । ଯେତେ ଅଧିକ ସଂଖ୍ୟକ ସୈନ୍ୟ ସମ୍ଭବ, ସମସ୍ତେ ପ୍ରଧାନ ଦ୍ୱାରରେ ଏକତ୍ର ହେବା ନିମନ୍ତେ ଭୀମଦେବ ହୁକୁମ ଦେଲେ ।

ହମୀର ପୂର୍ବଦିନ ପରି ସେ ଦିନର ଯୁଦ୍ଧ ଆଦେଶ ଦେବା ପୂର୍ବରୁ ନିଜ ଛାଉଣୀରୁ ଆସି ସୈନ୍ୟବାହିନୀ ପରିଦର୍ଶନ କଲା । ବିଭିନ୍ନ ଯୁଦ୍ଧବାଦ୍ୟ ବଜାଇ ପରସ୍ପରଠାରୁ ଦୂରରେ ଥିବା ଦୁଇଟି ଅଶ୍ୱାରୋହୀବାହିନୀ ଗଡ଼ଖାଇ ଦିଗକୁ ଅଗ୍ରସର ହେଲେ । ତାହାର ଅନ୍ୟ ଏକ ଆଦେଶରେ ଶହ ଶହ ସୈନ୍ୟ ଛଅଟି ଲମ୍ବା କାଠ କଡ଼ରେ ତିଆରି ସୁଦୃଢ଼ ଏକ ପୋଲ ନେଇ ପ୍ରଧାନ ଦ୍ୱାର ସମ୍ମୁଖସ୍ଥ ଗଡ଼ଖାଇ ନିକଟକୁ ଗଲେ । ଏମାନଙ୍କ ସଙ୍ଗେ ବହୁ ସଂଖ୍ୟକ ବଢ଼େଇ ମଧ୍ୟ ନିଜର ଯନ୍ତ୍ରପାତି ସହ ଆସିଲେ । ସେମାନଙ୍କୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବା ପାଇଁ ଅଶ୍ୱାରୋହୀମାନେ ଚାରିପଟେ ବେଢ଼ିଗଲେ । ଗଡ଼ଖାଇ ଉପରେ ଗୋଟିଏ ପୋଲ ତିଆରି କରିବା ଶତ୍ରୁର ଉଦ୍ଦେଶ୍ୟ ବୋଲି ଏଥିରୁ ବେଶ୍ ଜଣାଗଲା ।

ଭୀମଦେବଙ୍କ ଧନୁର୍ଦ୍ଧାରୀମାନଙ୍କ ମଧ୍ୟରୁ ଗୋଟିଏ ଦଳ ଅଶ୍ୱାରୋହୀମାନଙ୍କ ଉପରେ ଆକ୍ରମଣ କଲେ ଏବଂ ଆଉ ଗୋଟିଏ ଦଳ ଶତ୍ରୁସୈନ୍ୟ ଓ ବଢ଼େଇ-ମାନଙ୍କୁ ଛତ୍ରଭଙ୍ଗ କରିବା ନିମିତ୍ତ ପାରୁ ପର୍ଯ୍ୟନ୍ତ ଚେଷ୍ଟା କଲେ । ସମଗ୍ର ଅଞ୍ଚଳ "ଜୟ ସୋମନାଥ" ଓ "ଆଲ୍ଲାହୋ ଆକବର" ଧ୍ୱନିରେ ମୁଖରିତ ହୋଇଉଠିଲା ।

ଶତ୍ରୁ ପକ୍ଷର ଏହି ଆକ୍ରମଣ ସାମାନ୍ୟ ଧରଣର ନ ଥିଲା । ଯେଉଁ ସୈନ୍ୟ ମରୁଥାନ୍ତି ବା ଆହତ ହେଉଥାନ୍ତି, ସଙ୍ଗେ ସଙ୍ଗେ ଅନ୍ୟମାନେ ସେମାନଙ୍କ ସ୍ଥାନ ଗ୍ରହଣ କରୁଥାନ୍ତି । ରାଜପୁତ୍ ସୈନ୍ୟବାହିନୀର ଶରରେ ସେମାନଙ୍କର ଯଥେଷ୍ଟ କ୍ଷତି ଘଟିଲା । ତଥାପି ମୃତ ସୈନ୍ୟମାନଙ୍କ ସ୍ଥାନରେ ଅଧିକରୁ ଅଧିକ ସୈନ୍ୟ ଅଣାଯାଉଥିଲା ।

କେନ୍ଦ୍ର ଦ୍ୱାରରେ ଶତ୍ରୁର ଏହି ଆକ୍ରମଣକୁ ନିଷ୍ଫଳ କରିଦେବା ପାଇଁ ମହାରାଜା ଭୀମଦେବ ଓ ରତ୍ନାଦିତ୍ୟ ଆଉ ଗୋଟିଏ ରଣ କୌଶଳ ଚିନ୍ତା କଲେ । ସେ ହାତୀମାନଙ୍କ ସାହାଯ୍ୟରେ ଢ଼ିମା ପଥରମାନ ଅଣାଇ ଦ୍ୱାର ପାଖରେ ଜମା କଲେ । ଦ୍ୱାରମାନଙ୍କରେ ଆକ୍ରମଣ କରିବା ପାଇଁ ଚେଷ୍ଟା କରୁଥିବା ସୈନ୍ୟମାନେ ପଥର ମାଡ଼ରେ ମରି ଶୋଇଲେ । ଉଭୟ ପକ୍ଷର ଶର ବର୍ଷା ଠିକ୍ ଏକ ଛତା ଆକାର ଧାରଣ କଲା । ତା' ତଳେ ହମୀରର ସୈନ୍ୟ ବାହିନୀ ପକ୍ଷରୁ ପୋଲ ତିଆରି କରିବା ନିମନ୍ତେ ଏବଂ ଭୀମଦେବଙ୍କ ସୈନ୍ୟମାନଙ୍କ ପକ୍ଷରୁ ତାହା ଧ୍ୱଂସ କରିବା ନିମିତ୍ତ ପ୍ରାଣପଣେ ଉଦ୍ୟମ ଚାଲିଲା । ଏହି ଉଦ୍ୟମରେ ଶହ ଶହ ସଂଖ୍ୟାରେ ରାଜପୁତ୍ ତଥା ମୁସଲମାନ ସୈନ୍ୟ ମୃତ୍ୟୁ ମୁଖରେ ପଡ଼ିଲେ ।

ହମୀରର ଏହି ପ୍ରାଣମୂର୍ଚ୍ଛା ଉଦ୍ୟମରେ କେତେ ସୈନ୍ୟ ବା ପଶୁ ନଷ୍ଟ ହେଲେ ତାର ସେଥିପ୍ରତି ଭ୍ରୂକ୍ଷେପ ନ ଥାଏ । ଗଡଖାଇରେ ଓ ତାହା କୂଳରେ ଗଦା ଗଦା ଶବ ଦେଖିବାକୁ ମିଳିଲା । ଭୀମଦେବଙ୍କ ସୈନ୍ୟମାନଙ୍କର ପ୍ରଚଣ୍ଡ ଆକ୍ରମଣ ସତ୍ତ୍ୱେ ଦ୍ୱିପ୍ରହର ସୁଦ୍ଧା ହମୀରର ସୈନ୍ୟମାନେ ପୋଲ ତିଆରି କାର୍ଯ୍ୟ ଶେଷ କରି ଲୁହା ଜଞ୍ଜିର ସାହାଯ୍ୟରେ ତାହାକୁ ଦୁର୍ଗର ଦ୍ୱାର ସହିତ ଯୋଗ କରିଦେଲେ । ଦ୍ୱାରର ଭିତର ପଟେ ପଥର ଢିମାମାନ ଏପରି ପ୍ରଚୁରଭାବେ ଜମା ହୋଇଥିଲା ଯେ, ଯେତେ ଚେଷ୍ଟା କଲେ ମଧ୍ୟ ତାହା ହଲିବ ନାହିଁ ବା ସ୍ଥାନାନ୍ତରିତ ହୋଇ ପାରିବ ନାହିଁ । ନିକଟବର୍ତ୍ତୀ ଘର, ବାରଣ୍ଡା ଓ ମନ୍ଦିରମାନଙ୍କରୁ ପଥର ସଂଗ୍ରହ କରାଯାଇ ଦ୍ୱାର ଦେଶରେ ଜମା କରାଯାଇଥିଲା । ଉଭୟ ପକ୍ଷରୁ ପ୍ରାଣମୂର୍ଚ୍ଛା ଉଦ୍ୟମ କରାଯାଉଥାଏ ।

ଏହି ସମୟରେ ହମୀରର ଛଅଟି ହାତୀ ଶୁଣ୍ଢରେ ଗୋଟିଏ ବିରାଟ କାଠ ଗଡ଼ ଉଠାଇ ଆଣି କେନ୍ଦ୍ର ଦରଜାରେ ଆଘାତ କଲେ । କିନ୍ତୁ ଯେତେ ଆଘାତ ଲାଗିଲେ ସୁଦ୍ଧା ଦ୍ୱାର ଭାଙ୍ଗିଲା ନାହିଁ । ରାଜପୁତ ସୈନ୍ୟମାନେ ଆନନ୍ଦରେ "ଜୟ ସୋମନାଥ" ଧ୍ୱନି କଲେ ।

ମାତ୍ର ମହାରାଜ ଭୀମଦେବ ଚିନ୍ତିତ ହୋଇପଡ଼ିଲେ । ଏହି ଦ୍ୱାର କେତେ ସମୟ ପର୍ଯ୍ୟନ୍ତ ଏଭଳି ଆକ୍ରମଣର ସମ୍ମୁଖୀନ ହୋଇପାରିବ ? ଲୁହା ସାଞ୍ଜୁରେ ଆଚ୍ଛାଦିତ ହୋଇଥିବା ଶତ୍ରୁର ବଳବାନ୍ ହାତୀମାନଙ୍କୁ କିଭଳି ନଷ୍ଟ କରାଯାଇ-ପାରିବ, ଏହାହିଁ ହେଲା ବର୍ତ୍ତମାନର ମୁଖ୍ୟ ପ୍ରଶ୍ନ । ମହାରାଜ ଏବଂ ରତ୍ନାଦିତ୍ୟ ପରସ୍ପର ସହିତ ପରାମର୍ଶ କଲେ । ନିଶ୍ଚିତ ପରାଜୟ ସ୍ଥାନରେ ବିଜୟ ଲାଭ କରିବା ନିମିତ୍ତ ଯେ କୌଣସି ପ୍ରକାରେ ଯୁଦ୍ଧ କୌଶଳ ଉଦ୍ଭାବନ କରିବାକୁ ହେବ ।

ଶହ ଶହ ସଂଖ୍ୟାରେ ସୈନ୍ୟ ତଥା ରତ୍ନାଦିତ୍ୟ ନିଜେ ପ୍ରାଣ ବଳି ଦେବାକୁ ପ୍ରସ୍ତୁତ ଥିଲେ ସୁଦ୍ଧା, ଗୁରୁଦେବ ସେମାନଙ୍କୁ ବାରଣ କଲେ । ଯୁଦ୍ଧର ଏହା ଦ୍ୱିତୀୟ ଦିନ ମାତ୍ର । ଏତେ ଶୀଘ୍ର ନିଜର ଜୀବନରୁ କାହିଁକି ବିପନ୍ନ କରିବେ ?

ଦ୍ୱାରକୁ ଧକ୍କା ଦେଉଥିବା ହାତୀମାନଙ୍କ ମଧ୍ୟରୁ ଗୋଟିଏ ଆହତ ହେବା ପରେ, ତାହା ପରିବର୍ତ୍ତେ ଆଉ ଗୋଟିଏ ହାତୀ ଆସିଲା । ତାହା ପରେ ଆଉ ଯୋଡ଼ିଏ ହାତୀ । ଆଠଟି ଦନ୍ତାବଳ ଦ୍ୱାର ଖୋଲିବାକୁ ଚେଷ୍ଟା କଲେ । ହାତୀ-ମାନଙ୍କର ଅନ୍ତିଶୟ ଗୁରୁ ଭାରରେ ପୋଲ ଥରଉଠିଲା । ଏହି ଧକ୍କାରେ ଦ୍ୱାର ଯଥେଷ୍ଟ ଆଘାତ ପାଇଲା । ହାତୀମାନଙ୍କ ଶରୀର ସାଞ୍ଜୁରେ ଏପରି ସୁରକ୍ଷିତ ହୋଇଥିଲା ଯେ, ରାଜପୁତ୍ ସୈନବାହିନୀର ଶର ସେମାନଙ୍କର ଟିକିଏ ହେଲେ କ୍ଷତି କରି ପାରିଲା ନାହିଁ ।

କିନ୍ତୁ ଦୁର୍ଗ ଦ୍ୱାର ଏହି ପ୍ରବଳ ଆକ୍ରମଣ ସମ୍ଭାଳିନେଲା । ହମୀରର ହାତୀମାନେ ପଛଘୁଞ୍ଚା ଦେଲେ । ଉଭୟ ପକ୍ଷରୁ ଶହ ଶହ ସଂଖ୍ୟାରେ ସୈନ୍ୟ ଅନବରତ କ୍ଷତ ବିକ୍ଷତ ହେଉଥାନ୍ତି ବା ମରୁଥାନ୍ତି । ରତ୍ନାଦିତ୍ୟ ଓ ମନ୍ତ୍ରୀ ବିମଳ ଉଭୟେ ମଧ୍ୟ କ୍ଷତବିକ୍ଷତ ହେଲେ । ହୁଏତ ପ୍ରଭୁ ସୋମନାଥଙ୍କ କୃପାରୁ ମହାରାଜାଙ୍କର କ୍ଷତି ହୋଇନଥାଏ ।

ତୃତୀୟ ଥର ପାଇଁ ଦୁଇଟି ଆହତ ହାତୀଙ୍କ ସ୍ଥାନରେ ଦୁଇଟି ସୁସ୍ଥ ହାତୀ ଆସି ପହଞ୍ଚିଲେ । ଆଠଗୋଟି ହାତୀ ସେମାନଙ୍କ ଶୁଣ୍ଢ ସାହାଯ୍ୟରେ କାଠ ଗଣ୍ଡି ନେଇ ପ୍ରଧାନ ଦ୍ୱାର ଆଡ଼କୁ ଗଲେ । ପ୍ରଥମ ହାତୀଟି ପୋଲ ଉପରେ ଗୋଡ଼ ଦେଇଛି କି ନାହିଁ, ଦୁର୍ଗ ଉପରୁ ଏକ ବିରାଟ ଶବ୍ଦ ଶୁଣାଗଲା । ତେଲ ଓ ଗନ୍ଧକରେ ତିଆରି ଜଳନ୍ତା ଅଗ୍ନି ପିଣ୍ଡୁଳାମାନ ହାତୀମାନଙ୍କ ଉପରେ ବୃଷ୍ଟି ହେଲା ।

ଗନ୍ଧକର ଗନ୍ଧ ବାସ୍ନ ଓ ନିଆଁ ଦେଖି ଆଗରେ ଥିବା ହାତୀଟି ଚମକି ପଡ଼ିଲା । ତା ପଛରେ ଥିବା ହାତୀଟି ସେହି ଅନୁପାତରେ ପଛେଇ ପାରିଲା ନାହିଁ । ଏହି ସଂଘର୍ଷ ଫଳରେ ଆଗ ହାତୀ ନିଜକୁ ସମ୍ଭାଳି ନ ପାରି ପଡ଼ିଗଲା ।

ଏହି ଗୋଳମାଳର ସୁଯୋଗ ନେଇ ପଚିଶ ଜଣ ସୈନ୍ୟ ମସାଲ ଧରି ଦୁର୍ଗରୁ ପୋଲ ଉପରକୁ ଡେଇଁଲେ । ପୋଲ ଉପରେ ଉଭୟ ପକ୍ଷ ମଧ୍ୟରେ ଭୀଷଣ ଯୁଦ୍ଧ ଲାଗିଗଲା । ହାତୀମାନେ ଏହି ନୂତନ ଆକ୍ରମଣରେ ଭୀତତ୍ରସ୍ତ ହୋଇ ପଛେଇଗଲେ । ପଛରେ ଥିବା ସୈନ୍ୟମାନେ ଆଗରେ କଣ ହେଉଛି ବୁଝି ନ ପାରି ଅଗ୍ରସର ହେବାରୁ ଅବସ୍ଥା ଅଧିକ ଜଟିଳ ହେଲା । ଉଭୟ ପକ୍ଷରୁ ଶର ବର୍ଷଣ ଚାଲିଲା ଏବଂ କଣ ହେଉଛି ତାହା କେହି ବୁଝି ପାରିଲେ ନାହିଁ । ରାଜପୁତ ସ୍ୱେଚ୍ଛାସେବକମାନେ ଲୁହା ଜଞ୍ଜିର କାଟି ଦେଇ ପୋଲରେ ନିଆଁ ଲଗେଇ ଦେଲେ । ବହୁ ସମୟ ପର୍ଯ୍ୟନ୍ତ ଭୀଷଣ ଯୁଦ୍ଧ ଚାଲିଲା । ଭୀମଦେବ ଶତ୍ରୁପକ୍ଷର ବହୁ ଲୋକଙ୍କୁ ମାରିଲେ ଓ କ୍ଷତବିକ୍ଷତ କଲେ । ରତ୍ନାଦିତ୍ୟଙ୍କର ବାଣ ମଧ୍ୟ ଅବ୍ୟର୍ଥ କାମ କଲା । ବିମଳ ମନ୍ତ୍ରୀ ପ୍ରତି ଶରରେ ଶତ୍ରୁର ସୈନ୍ୟ କ୍ଷୟ କଲେ ।

ହମୀର ପୋଲ ଉପରକୁ ପୁଣି ନୂତନ ସୈନ୍ୟ ପଠାଇଲା । ଦୁର୍ଗ ଉପରୁ ପୁଣି ପଚିଶ ଜଣ ସୈନ୍ୟ ପୂର୍ବ ଭଳି ଡେଇଁପଡ଼ିଲେ । ଦଳ ଦଳ ଆହତ ଓ ମୃତ ସୈନ୍ୟର ସ୍ତୂପରେ ସ୍ଥାନଟି ପୂରିଗଲା । ଶବରେ ଗଡ଼ ଖାଇ ମଧ୍ୟ ପୂରିଗଲା । କିଛିକ୍ଷଣ ପାଇଁ ଉଭୟ ସୈନ୍ୟବାହିନୀର ଦଶା ସୂତା ଖିଅରେ ଝୁଲିଲା ।

ହଠାତ୍ ଅବସ୍ଥା ପରିଷ୍କାର ହୋଇଗଲା । ପୋଲ ମଝିରେ ନିଆଁ ଜଳି ଉଠିଲା । ଯେଉଁ ଜଞ୍ଜିରଟି ପୋଲକୁ ଦ୍ୱାର ସହିତ ସଂଯୋଗ କରିଥିଲା, ତାହା ଛିଣ୍ଡି ଯିବାରୁ ପୋଲଟି ଗୁଏଁ ଗୁଏ ପାଣିରେ ପଡ଼ି ବୁଡ଼ିଗଲା । ଦୁର୍ଗ ଉପରୁ ଭୀମଦେବ ଆନନ୍ଦରେ "ଜୟ ସୋମନାଥ" ଧ୍ୱନି କଲେ । ହଜାର ହଜାର ସୈନ୍ୟ ଏହି ବିଜୟସୂଚକ ଧ୍ୱନିର ପ୍ରତିଧ୍ୱନି ଦେଲେ ।

## ୪୭

# ବିଶ୍ୱାସଘାତକତାର ସୂତ୍ରପାତ

ଶିବରାଶି ଖୁବ୍ ଭୋରରୁ ଗଣପତି ମନ୍ଦିରରେ ପ୍ରବେଶ କଲେ । ତାଙ୍କ ମନ ପ୍ରଭୁ ଶଙ୍କରଙ୍କଠାରେ ନାହିଁ ବା ଗଣପତିଙ୍କଠାରେ ନାହିଁ । ସମ୍ମୁଖରେ କାନ୍ଥ ପାଖରେ ଥିବା ଖଣ୍ଡିଏ ପଥର ଉପରେ ତାଙ୍କ ମନ ଆବଦ୍ଧ ଥିଲା । କଳ୍ପନା ଚକ୍ଷୁରେ ସେ ଦେଖୁଥାନ୍ତି—ପ୍ରଭାସ ଧ୍ୱଂସ ହୋଇଯାଉଛି—ବିଶ୍ୱସ୍ତ ଶିଷ୍ୟ ସିଦ୍ଧେଶ୍ୱର, ଯେ କି ଦିନେ ତାଙ୍କର ଉତ୍ତରାଧିକାରୀ ହେବାର କଥା, ସେ ସମୁଦ୍ରରେ ଝାସ ଦେଇ ପ୍ରବଳ ଲହରୀରେ ପହଁରୁଛି—ହମୀରର ସୈନ୍ୟ-ବାହିନୀର ଜଣେ ସେନାପତି ସହିତ ଦେଖା କରିବାରୁ ତାକୁ ହମୀର ନିକଟକୁ ନିଆଯାଉଛି । ସେ ଏହାସବୁ କଳ୍ପନା କରି କିଞ୍ଚିତ୍ ଆନନ୍ଦ ଅନୁଭବ କଲେ । ଶିବରାଶି ଆହୁରି ମଧ୍ୟ କଳ୍ପନା କଲେ ଯେ ଦୂତ ଭାବରେ ସିଦ୍ଧେଶ୍ୱର ସଦମ୍ଭେ ହମୀର ସହିତ ଦେଖାକରୁଛି—ମହାନ୍ ଋଷି ଶିବରାଶିଙ୍କ ପ୍ରତିନିଧିଙ୍କର ପାଦ ହମୀର ଛୁଉଁଛି—ସିଦ୍ଧେଶ୍ୱର ପ୍ରତିଶ୍ରୁତି ଗୃହୁଁଛି—ହମୀର ଶେଷରେ ତାକୁ ପ୍ରତିଶ୍ରୁତି ଦେଉଛି । ତାହା ଫଳରେ ସଙ୍କଟେଶ୍ୱର ମହାଦେବଙ୍କ ମନ୍ଦିର ନିକଟରେ ଦୁର୍ଗ ଭିତରକୁ ପଡ଼ିଥିବା ଗୁପ୍ତ ରାସ୍ତାଟି ସିଦ୍ଧେଶ୍ୱର ହମୀରକୁ ବତାଇ ଦେଉଛି । ଏହିସବୁ କଳ୍ପନା କରି ଶିବରାଶି ଖୁବ୍ ଜୋର୍‌ରେ ହସିଉଠିଲେ ଏବଂ ଭୀମଦେବ ଓ ତାଙ୍କ ଗୁରୁଦେବଙ୍କର ଅପରିଣାମଦର୍ଶିତା ବିଷୟ ଭାବିଲେ ।

ଗତ ସପ୍ତାହରେ ଉକ୍ତ ରାସ୍ତାବାଟେ ଯେପରି ବାହାରୁ କେହି ନଆସନ୍ତି, ସେଥିପାଇଁ ଏହାର ଦ୍ୱାର ବନ୍ଦ କରି ଦିଆଯାଇଥିଲା । ଗୁରୁଦେବ ଶିବରାଶିଙ୍କୁ ନିଜର ଉତ୍ତରାଧିକାରୀ ଭାବେ ବାଛିଥିବାରୁ ତାଙ୍କୁ ଯେ ଏହି ଗୁପ୍ତ ରାସ୍ତା କଥା କହିଛନ୍ତି, ସେ କଥା ଗୁରୁଦେବ ଭୁଲିଯାଇଥିଲେ । ଏହି ରାସ୍ତା କଥା କେବଳ ଗଙ୍ଗସର୍ବଜ୍ଞଙ୍କୁ ଏବଂ ତାଙ୍କୁ ଜଣାଥିଲା । ଗଙ୍ଗ ସେହି ରାସ୍ତା ବନ୍ଦ କରିଥିଲେ ସୁଦ୍ଧା ଶିବରାଶି ଏହାକୁ ଖୋଲିବେ । ଗଙ୍ଗ ପାଶୁପତ ସମ୍ପ୍ରଦାୟକୁ ନଷ୍ଟ କରୁଥିବା ବେଳେ ଶିବରାଶି ଏହାକୁ ରକ୍ଷା କରିବେ । ଶିବରାଶି ଅଟ୍ଟହାସ୍ୟ କଲେ ଓ ନିଜ ହସରେ ନିଜେ ଚମକି ପଡ଼ିଲେ । ସେହି ଗୁପ୍ତ ରାସ୍ତାବାଟେ ହମୀର ଧ୍ୱଂସକାରୀ କାଳ ଭୈରବ ରୂପେ ଆସି ପ୍ରଭାସକୁ ଧ୍ୱଂସ କରିବ ।

ଉଦ୍ଧତ ଭାବେ ସେ ନିଜର ଶକ୍ତି ବିଷୟରେ କଳ୍ପନା କଲେ ଯେ ସେହି ଭଣ୍ଡ ଗୁରୁଦେବ ଏବଂ ଚୈଲକୁ ଅପହରଣ କରିଥିବା ନିର୍ବୋଧ ଭୀମଦେବ ସମେତ ସମସ୍ତ ସୈନ୍ୟବାହିନୀର ଜୀବନନାଟିକା ଆଜି ତାଙ୍କ ହାତ ମୁଠାରେ । ଦୁଇଟି ଅଙ୍ଗୁଳିରେ ଚିପି ପୋକକୁ ଯେପରି ସହଜରେ ମାରିଦିଆଯାଇପାରେ, ସେହିପରି ସେ ଏହି ମଣିଷ ଦୁଇଟିକୁ ମୂହୂର୍ତ୍ତକ ମଧ୍ୟରେ ଧ୍ୱଂସ କରିଦେବେ ।

ପ୍ରତି ମୁହୂର୍ତ୍ତରେ ତାଙ୍କର ଅଧୀରତା ବଢ଼ୁଥାଏ । ଯଦି ସିଦ୍ଧେଶ୍ୱର ବୁଡ଼ିଯାଏ ? ଯଦି ସେ ଗଙ୍ଗସର୍ବଜ୍ଞଙ୍କ ପାଖକୁ ଯାଇ ସବୁ ଘଟଣା କହିଦିଏ ? ତାହାହେଲେ ମଧ୍ୟ ଏହାର ସମାପ୍ତି ଘଟିବ ନାହିଁ । ଯେବେ ହମୀର ଆଜି ନ ଆସେ, ତାହାହେଲେ ସେ ଏକାକୀ ତା ପାଇଁ ରାସ୍ତା ଠିକ୍ କରିଦେବେ । ପ୍ରଭୁ ସୋମନାଥଙ୍କ ପରି ସେ ପୃଥିବୀକୁ ଧ୍ୱଂସ କରିବାକୁ ପ୍ରସ୍ତୁତ । ତାଙ୍କର ତୃତୀୟ ଆଖି ଖୋଲିବ···ପ୍ରଭାସ ଧ୍ୱଂସ ହେବ । ଚୈଲକୁ ଅପହରଣ କରିଥିବା ଭୀମଦେବର ଚିତାଭସ୍ମ ମଧ୍ୟ ଦେଖିବା କଷ୍ଟକର ହେବ । ସେ ଅବଶେଷରେ ଚୌଲକୁ ପାଇବେ ।

ଶିବରାଶିଙ୍କର ଅତୃପ୍ତ କାମନା ପୂରଣ କରିବା ଚିନ୍ତାରେ ଏହିସବୁ କଥା ଗୋଟିକ ପରେ ଗୋଟିଏ ମନକୁ ଆସିଲା । କିନ୍ତୁ "ଜୟ ସୋମନାଥ" ଧ୍ୱନିରେ ସେ ଚିନ୍ତା ବାଧା ପାଇବାରୁ ତାଙ୍କର କ୍ରୋଧ ଶତଗୁଣ ବଢ଼ିଗଲା । ଦିନ ଦ୍ୱିପ୍ରହର ଗଡ଼ିଗଲା । ସୂର୍ଯ୍ୟାସ୍ତ ନିକଟ ହେଲା । କିନ୍ତୁ ଏପର୍ଯ୍ୟନ୍ତ କୌଣସି ସମ୍ବାଦ ମିଳିନାହିଁ । ଶିବରାଶି ହଠାତ୍ ସେ ବସିଥିବା ସ୍ଥାନରେ ତଳୁ କେହି ଧକ୍କା ଦେଉଥିବା ଶବ୍ଦ ଶୁଣିଲେ । ଯେଉଁ ପଥର ଉପରେ ତାଙ୍କର ଦୃଷ୍ଟି ନିବଦ୍ଧ ଥିଲା, ସେଠାକୁ ସେ ଗଲେ । ତାହାର ଚାରିପାଖ ମାଟି ଖୋଳି ପଥର ଖଣ୍ଡି ଉଠାଇବାକୁ ଚେଷ୍ଟା କଲେ, ମାତ୍ର ତାହା ଉଠାଇ ପାରିଲେ ନାହିଁ । ମତ୍ତ ଦାନବ ପରି ଈର୍ଷା ଓ ଆନନ୍ଦରେ ସେ ନାଚିଗଲେ । ଭୀମ, ଚୈଲ ଏବଂ ଗଙ୍ଗ ଅବଶେଷରେ ଭସ୍ମରେ ପରିଣତ ହେବେ ।

ପଥରରେ କେହି ଜଣେ ତଳୁ ଧକ୍କା ମାରୁଛି । ଏକ, ଦୁଇ, ତିନି··· ପଞ୍ଚମ ଧକ୍କାରେ ଭାରି ପଥରଟି ଉଠିଗଲା । ଶିବରାଶି ଆନନ୍ଦରେ ପାଟି କଲେ । ସେହି ଗଳି ରାସ୍ତାରୁ ସିଦ୍ଧେଶ୍ୱରର ମୁଣ୍ଡଟି ଦେଖାଦେଲା । ବର୍ତ୍ତମାନ ସିଦ୍ଧେଶ୍ୱରର ଚେହେରା ମହାନ୍ ଗୁରୁଙ୍କର ଦୂତର ଚେହେରା ପରି ନଥିଲା । ତାହାର ଦେହସାରା କାଦୁଅ ଲଟପଟ ଏବଂ ମୁଣ୍ଡରେ ବାଳ ଇତସ୍ତତଃ ହୋଇ-ପଡ଼ିଥାଏ । ସେ ଭୟରେ ଥରି ଥରି ଆସିଲା । ତାର ଅଣ୍ଟାରେ ବନ୍ଧାହୋଇଥିବା

ଲୁହା ଜଞ୍ଜିରକୁ ତା ପଛରେ ଆସୁଥିବା ଗୋଟିକ ପରେ ଗୋଟିଏ କରି ବାରଜଣ ସୈନ୍ୟ ଧରିଥିଲେ ।

ଶିବରାଶି ଏହି ଶିଷ୍ୟକୁ ଆଲିଙ୍ଗନ କରିବାକୁ ଉତ୍କଣ୍ଠାର ସହ ଉଦ୍ୟତ ହେଲେ । କିନ୍ତୁ ସିଦ୍ଧେଶ୍ୱର ପଛକୁ ହଟିଯାଇ ଦାନ୍ତ ରଗଡ଼ି କହିଲା, "ଧୂର୍ତ୍ତ, ବଦମାସ୍, ତୋ ପାଇଁ ମୁଁ କଣ କଲି ?" ଶତ୍ରୁ ହାତରେ ଦଣ୍ଡ ପାଇ କ୍ଷୁଧାର୍ତ୍ତ ଓ କ୍ଳାନ୍ତ ସିଦ୍ଧେଶ୍ୱର ବେହୋସ ହୋଇ ପଡ଼ିଲା । ଶିବରାଶି ଘୃଣାରେ ତାକୁ ଚାହିଁଲେ । ତାଙ୍କର ଏପରି ଖଳରୁ ଶିଷ୍ୟର ଆବଶ୍ୟକତା ନଥିଲା ।

କୋଠରି ଭିତରକୁ ବାରଜଣଯାକ ଶତ୍ରୁ ସୈନ୍ୟ ପଶି ଆସିଲେ । ତାହା ଭିତରୁ କେବଳ ଜଣେ ମୁସଲମାନ ଏବଂ ଅନ୍ୟମାନେ ହିନ୍ଦୁ । ଏହି କାର୍ଯ୍ୟ କାଫେର୍‌ମାନେ କରିବା ଶ୍ରେୟସ୍କର ବୋଲି ହମୀର ଠିକ୍ କରିଥାଏ ।

ରୁକ୍ଷଭାବେ ଜଣେ ପଚାରିଲା, "ତୁମେ ଶିବରାଶି ?" ଶିବରାଶି ଆଶ୍ଚର୍ଯ୍ୟ ହୋଇ ତାହାର ଅପମାନଜନକ ପ୍ରଶ୍ନ ଶୁଣି ତାହା ଆଡ଼କୁ ଚାହିଁଲେ । ଆଉ ଜଣେ ସୈନ୍ୟ ତାଙ୍କୁ ପେଲିଦେଇ କହିଲା, "ଚାଲ୍ ! ଆମ ଆଗରେ ଚାଲ୍ ! ଜୁନାଗଡ଼ ଦ୍ୱାରକୁ ରାସ୍ତା ଦେଖା ।"

ଶିବରାଶି ରାଗରେ ଉନ୍ମତ୍ତ ହୋଇ ଉଠୁଥିଲେ ସୁଦ୍ଧା ନୀରବ ରହି ଚିନ୍ତିତ ମନରେ ଆଗକୁ ଚାଲିଲେ । ଶେଷକୁ ଭୀମଦେବ, ଚୌଳା ଏବଂ ଗଙ୍ଗଙ୍କ ସହିତ ଦେଖାହେବ ଏବଂ ସନ୍ଧ୍ୟା ପୂର୍ବରୁ ପ୍ରଭାସ ଜଳପୋଡ଼ ପାଉଁଶରେ ପରିଣତ ହେବ ।

## ୪୬

## ବିଶ୍ୱାସଘାତକ

ମନ୍ଦିରର ଛାତ ଉପରୁ ଗୁରୁଦେବ, ଗଙ୍ଗା ଏବଂ ଚୌଳା ଆଗ୍ରହ ସହକାରେ ଦେବତା ଓ ରାକ୍ଷସମାନଙ୍କ ମଧ୍ୟରେ ହେଉଥିବା ଯୁଦ୍ଧ ଦେଖୁଥାନ୍ତି । ଚୌଳା ନିଜର ଆନନ୍ଦ ସମ୍ବରଣ କରିପାରୁ ନ ଥାଏ । ସେ ପ୍ରଭୁ ସୋମନାଥଙ୍କର ଅର୍ଦ୍ଧାଙ୍ଗିନୀ ପାର୍ବତୀ ଏବଂ ପ୍ରଭୁ ସୋମନାଥଙ୍କ ଅବତାର ଭୀମଦେବଙ୍କ ରାଣୀ ।

ତାର ପ୍ରଭୁ ଆଜ ରାକ୍ଷସ ସହ ଯୁଦ୍ଧ କରୁଛନ୍ତି । ସେ ସନ୍ଧ୍ୟାବେଳକୁ ଫେରିବା ସମୟରେ ଚୌଲା କୁଙ୍କୁମ ଓ ପୁଷ୍ପ ହସ୍ତରେ ତାଙ୍କୁ ସ୍ୱାଗତ କରିବାର ପରିକଳ୍ପନା କରିଛି । ଗୁରୁଦେବ ମନେ ମନେ ଶିବକବଚ ପାଠ କରି ସେମାନଙ୍କୁ ରକ୍ଷା କରିବା ଲାଗି ପ୍ରଭୁ ଶମ୍ଭୁଙ୍କୁ ପ୍ରାର୍ଥନା କରୁଛନ୍ତି । ଗଙ୍ଗାର ଆନନ୍ଦ ଆଜ ପୂର୍ଣ୍ଣତା ଲାଭ କରିଛି । ତା ପାଖରେ ଗୁରୁଦେବ ଏବଂ ଚୌଲା ଉଭୟେ ଥିବା ସଙ୍ଗେ ସଙ୍ଗେ ଚୌଲାର ବିବାହ ହୋଇଯାଇଥିବାରୁ ତାହାର ଆଉ କିଛି ଚିନ୍ତା ନାହିଁ ।

ଗଡଖାଇ ଉପରେ ଶତ୍ରୁର କାଠପୋଲ ଭାଙ୍ଗିଯିବା ସଙ୍ଗେ ସଙ୍ଗେ ରାଜପୁତ୍ ସୈନ୍ୟ-ବାହିନୀରେ ଆନନ୍ଦର କୋଳାହଳ ଦେଖାଦେଲା । ପ୍ରଧାନ ଦ୍ୱାର ନିକଟରେ ସମସ୍ତେ ବିଜୟ ଉନ୍ମାଦନାରେ ନାଚିବାକୁ ଆରମ୍ଭ କଲେ । ହମୀରର ସୈନ୍ୟବାହିନୀ ମଧ୍ୟରେ ନୈରାଶ୍ୟ ଦେଖାଦେଲା । ଗୋଟିଏ ନୂତନ ପୋଲ ତିଆରି କରିବା ନିମନ୍ତେ ଅଧିକ ବାଉଁଶ ଖୋଜିବା ଉଦ୍ଦେଶ୍ୟରେ ସେମାନେ ଇତସ୍ତତଃ ଦଉଡ଼ାଦଉଡ଼ି କଲେ । ଆକ୍ରମଣର ସମ୍ମୁଖୀନ ହୋଇ ଆତ୍ମରକ୍ଷା କରୁଥିବା ସୈନ୍ୟବାହିନୀ ପକ୍ଷେ ଏହା ଏକ ବିରାଟ ବିଜୟ । ଗୁରୁଦେବ ହଠାତ ଜୁନାଗଡ଼ ଦ୍ୱାର ଆଡ଼କୁ ଆଖି ପକାଇ "ସେ ପାଗଳ ସେଠି କଣ କରୁଛି" ବୋଲି କହି ସେଆଡ଼େ ଦୌଡ଼ିଲେ । ଶିବରାଶି ସେଠାରେ ଦଦା ଗୃଲୁକ୍ୟଙ୍କ ସହିତ କଥାବାର୍ତ୍ତା ହେଉଥିବା ସେ ଦେଖିଲେ । ହଠାତ୍ କୌଣସି ଅଘଟଣ ଘଟିଥିଲେ ସୁଦ୍ଧା, କଣ ହୋଇଛି ତାହା ସେ ଜାଣି ନାହାନ୍ତି ଓ ବୁଝି ପାରୁ ନାହାନ୍ତି । ଅବିଳମ୍ବେ ଏ ଘଟଣାର ପ୍ରଭାବ ପଡ଼ିଲା । ଜୁନାଗଡ଼ ଦ୍ୱାର ସମ୍ମୁଖରେ ଓ ଗଡ଼ଖାଇ ସେ ପାଖରେ ଥିବା ହମୀରର ସୈନ୍ୟ-ମାନେ ହଠାତ୍ ସକ୍ରିୟ ହୋଇଉଠିଲେ । ବାଦ୍ୟ ଓ ତୂରୀ ବାଜି ଉଠିଲା । ସେ ପର୍ଯ୍ୟନ୍ତ ଅଦୃଶ୍ୟ ଥିବା ହମୀର ହଠାତ୍ ଆସି ପହଞ୍ଚିଗଲା ।

ଶିବରାଶିଙ୍କ ସହିତ ଅଯଥା ଯୁକ୍ତି କରିବାରେ ଦଦାଙ୍କର ମୂଲ୍ୟବାନ୍ ସମୟ ନଷ୍ଟ ହେଲା । ସେ ସତର୍କତା ସୂଚକ ସଙ୍କେତ ଦେଇ ପାରିଲେ ନାହିଁ । ହମୀରର ସୈନ୍ୟମାନେ ଆକ୍ରମଣ କରିବାକୁ ଉଦ୍ୟତ ହେଉଥିବା ଦୂରରୁ ଦେଖି ଭୀମଦେବ ସଙ୍ଗେ ସଙ୍ଗେ ଜୁନାଗଡ଼ ଦ୍ୱାରକୁ ଗଲେ । ରନ୍ନାଦିତ୍ୟ ଶଙ୍ଖ ବଜାଇଲେ । ବିମଳ ଶଙ୍ଖ ବଜାଇବା ସଙ୍ଗେ ସଙ୍ଗେ ସବୁ ଅଞ୍ଚଳରୁ ଧନୁର୍ଦ୍ଧାରୀମାନଙ୍କୁ ଜୁନାଗଡ଼ ଦ୍ୱାରକୁ ପଠାଗଲା ।

ଚୌଲ ଉପରେ ପାଟିକରି ଉଠିଲା, "ମାଆ, ହଠାତ୍ ଏ କଣ ହେଲା ?" ଗଙ୍ଗା ଉପରେ ତାକୁ କୁଣ୍ଢାଇ ଧରିଲା । ଗୁରୁଦେବ ଏଭଳି ଭାବେ ଦୌଡ଼ୁଥାନ୍ତି ଯାହାକି ତାଙ୍କ ବୟସର ଲୋକ ପକ୍ଷେ କ୍ୱଚିତ୍ ସମ୍ଭବ ।

ତଳକୁ ଅନାଇ ଚୌଲା ପାଟିକରି କହିଲା, "ମାଆ, ଦେଖ, ଜୁନାଗଡ଼ ଦ୍ୱାରରେ ପ୍ରବଳ ଯୁଦ୍ଧ ଚାଲିଛି । ଦେଖ, କଚ୍ଛପୀମାନେ ଗଡ଼ ଖାଇ ଭିତରେ ପଶି-ଗଲେଣି । ମହାରାଜା ଏପର୍ଯ୍ୟନ୍ତ ଆସି ନାହାନ୍ତି ।"

ଗଡ଼ଖାଇ ଭିତରେ ବହୁ ସଂଖ୍ୟକ କଚ୍ଛପୀ ପହଁରୁଥାନ୍ତି । ଅପର ପାର୍ଶ୍ୱରୁ ଧନୁର୍ଦ୍ଧାରୀମାନେ ନିଜକୁ ରକ୍ଷା କରିବା ପାଇଁ ଶର ନିକ୍ଷେପ କରୁଥାନ୍ତି । ଦଦ୍ଧାଙ୍କ ସୈନ୍ୟ ସଂଖ୍ୟା ଅଳ୍ପ ଥିଲେ ସୁଦ୍ଧା ସେମାନେ ଅତି ସାହସର ସହିତ ଯୁଦ୍ଧ କରୁଥାନ୍ତି । ଅପର ପକ୍ଷରେ ଅପରିମିତ ସୈନ୍ୟ । ଦଦ୍ଧାଙ୍କର ସୈନ୍ୟ ସଂଖ୍ୟା ମଧ୍ୟ ଖୁବ୍ ଶୀଘ୍ର ଶୀଘ୍ର କମୁଥିଲା । ତାହାଛଡ଼ା ଦଦ୍ଧା ଶିବରାଶିଙ୍କ କବଳରୁ ମୁକ୍ତି ଲାଭ କରି ଅନ୍ୟମାନଙ୍କୁ ସତର୍କ କରାଇ ଦେବା ସମୟକୁ ଯଥେଷ୍ଟ ବିଳମ୍ବ ହୋଇ-ଯାଇଥିଲା ।

ଭୀମଦେବ, ରନ୍ନାଦିତ୍ୟ ଓ ବିମଳ ସେମାନଙ୍କ ସୈନ୍ୟ ସହ ଆସି ପହଞ୍ଚିଗଲେ । ଦଦ୍ଧା ନିଜ ଭୁଲ ବୁଝିପାରି ନୈରାଶ୍ୟ ଓ କ୍ରୋଧରେ ମୁଣ୍ଡ ବାଳ ଛିଣ୍ଡାଇବାକୁ ଲାଗିଲେ । ନିଜର ଧନୁଶର ଉଠାଇବାକୁ ମଧ୍ୟ ତାଙ୍କର ଶକ୍ତି ନ ଥିଲା ।

ଚୌଲା ଆନନ୍ଦରେ ତାଳମାରି ପାଟିକରି କହିଲା, "ମାଆ, ମହାରାଜ ଯୁଦ୍ଧ କ୍ଷେତ୍ରରେ ପହଞ୍ଚିଗଲେଣି ।"

ଭୀମଦେବଙ୍କ ଧନୁର୍ଦ୍ଧାରୀମାନେ ଶର ନିକ୍ଷେପ କରିବା ଆରମ୍ଭ କଲେ । ଶତ୍ରୁ ପକ୍ଷର ପ୍ରାୟ ପାଞ୍ଚହଜାର ସୈନ୍ୟ ଗଡ଼ ଖାଇରେ ପ୍ରବେଶ କଲେ ଏବଂ ସେମାନଙ୍କ ପଛେପଛେ ଏକ କଳା ଘୋଡାରେ ଚଢ଼ି ହମୀର ନିଜେ ମଧ୍ୟ ପ୍ରବେଶ କଲା । ଆକ୍ରମଣକାରୀମାନେ ଚାରିଆଡ଼ୁ ଜୁନାଗଡ଼ ଦ୍ୱାର ଉପରେ ଆକ୍ରମଣ କରୁଥାନ୍ତି ।

ରାଜପୁତ୍ ସୈନ୍ୟମାନେ ଯୁଦ୍ଧ ସ୍ଥାନରେ ପହଞ୍ଚିଗଲେ । ଭୀମଦେବ ଦଦ୍ଧାଙ୍କ ବେକ ଧରି "ବିଶ୍ୱାସଘାତକ" ବୋଲି ପାଟିକରି ତାଙ୍କୁ ଗଡ଼ ଖାଇ ଭିତରକୁ ପକାଇଦେଲେ । ରନ୍ନାଦିତ୍ୟଙ୍କ ସୈନ୍ୟମାନେ ବଧିବଦ୍ଧ ଭାବେ ଶତ୍ରୁର ପ୍ରତିରୋଧ କଲେ । ମନ୍ତ୍ରୀ ବିମଳ ବହୁ ସଂଖ୍ୟକ ପଥର ଯୋଗାଇଦେବା ବ୍ୟବସ୍ଥା କଲେ । ଉଭୟ ପକ୍ଷରୁ "ଜୟ ସୋମନାଥ" ଓ "ଆଲ୍ଲା ହୋ ଆକବର"

ଧ୍ୱନିରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହେଲା । ଏ ଯୁଦ୍ଧ ଦେଖି ଶୈଳୀ ଆତଙ୍କିତ ହୋଇ ଉଠିଲା ।

ଅକସ୍ମାତ୍ କୁନ୍ତକ ବଳ ଭଳି ଜୁନାଗଡ଼ ଦ୍ୱାରର କବାଟ ଖୋଲିଗଲା । ଦୁର୍ଗ ଉପରେ ଯୁଦ୍ଧ କରୁଥିବା ରାଜପୁତ୍ ସୈନ୍ୟମାନେ ଅବସ୍ଥା କଅଣ ବୁଝି ପାରିଲେ ନାହିଁ । କଚ୍ଛପୀମାନେ ସୁସଜ୍ଜିତ ସୈନ୍ୟବାହିନୀରେ ନିଜକୁ ପରିଣତ କରି ଦୁର୍ଗର ଖୋଲା ଦ୍ୱାର ବାଟେ ପ୍ରଚଣ୍ଡ ଦୁର୍ଗରେ ପ୍ରବେଶ କଲେ । ହମୀର ଓ ତାର ସୈନ୍ୟମାନେ ହାତୀମାନଙ୍କୁ ଗଡ଼ ଖାଇରେ ପୂରାଇଦେଲେ ।

ମହାରାଜ ପାଟିକରି କହିଲେ, "ଭିତର ଦୁର୍ଗକୁ ରକ୍ଷାକର ବିମଳ ! କିଛି ସୈନ୍ୟ ନେଇ ଭିତର ଦୁର୍ଗକୁ ରକ୍ଷାକର ।"

ମାଡ଼ି ଆସୁଥିବା ଶତ୍ରୁ ସୈନ୍ୟମାନଙ୍କୁ ଅଟକାଇବା ପାଇଁ ସେ ଆଗେଇ ଗଲେ । ହଜାର ହଜାର ରାଜପୁତ୍ ସୈନ୍ୟଙ୍କ ମୁହଁରୁ "ଭିତର ଦୁର୍ଗକୁ ରକ୍ଷାକର" ଧ୍ୱନି ଶୁଣାଗଲା । ରତ୍ନାଦିତ୍ୟ "ଜୟ ସୋମନାଥ" ଧ୍ୱନି ଦେଇ ଦୁର୍ଗ ଉପରୁ ଡେଇଁପଡ଼ିଲେ ଏବଂ ବହୁ ସଂଖ୍ୟକ ରାଜପୁତ୍ ସୈନ୍ୟ ତାଙ୍କ ପଛେ ପଛେ ଲମ୍ଫ ଦେଲେ ।

ଜୁନାଗଡ଼ ଦ୍ୱାର ସମ୍ମୁଖରେ ସୈନ୍ୟମାନଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ଚାଲିଲା । ତରବାରି ସହ ତରବାରି, କୁନ୍ତ ସହ କୁନ୍ତ ଓ ମଲ୍ଲ ଯୁଦ୍ଧ । ଗୁଜରାଟର ଯୋଦ୍ଧାମାନେ ଏପରି ବୀରତ୍ୱ ପ୍ରଦର୍ଶନ କଲେ ଯାହାକି କେବେ ଦେଖାନଥିଲା । ରତ୍ନାଦିତ୍ୟ ଯୁଦ୍ଧରେ ପାଗଳ ହେଲେ । କେତେକ ସମୟ ପାଇଁ ସେ ମୁସଲମାନ ସୈନ୍ୟମାନଙ୍କୁ ପଛକୁ ହଟାଇ ଦେବାରେ ସକ୍ଷମ ହେଲେ ।

ଅଳ୍ପ କ୍ଷଣ ପରେ ହମୀର ନିଜେ ମଧ୍ୟଏସିଆର ଭୟଙ୍କର ଅଶ୍ୱାରୋହୀ ମାନଙ୍କ ସହ ସେଠାରେ ପହଞ୍ଚିଗଲା । ସମଗ୍ର ମୁସଲମାନ ସୈନ୍ୟବାହିନୀ ଏଭଳି ଭୟଙ୍କର ଯୁଦ୍ଧରେ ଉନ୍ମତ୍ତ ହେଲା ଯେ, ସେମାନଙ୍କର ଅଗ୍ରଗତି ବନ୍ଦ କରି ହେଲା ନାହିଁ । ଗୋଟିଏ ପାଖରେ ରତ୍ନାଦିତ୍ୟ ଓ ଅନ୍ୟ ପାଖରେ ଭୀମଦେବ ମହାରାଜ ସିଂହପରି ଯୁଦ୍ଧ କଲେ । ଭୀମଦେବ ଏବଂ ତାଙ୍କ ସୈନ୍ୟମାନେ ତଳେ ଠିଆହୋଇ ଯୁଦ୍ଧ କରୁଥାନ୍ତି, ମାତ୍ର ଶତ୍ରୁପକ୍ଷର ସୈନ୍ୟମାନେ ଘୋଡ଼ା ଉପରୁ ଆକ୍ରମଣ କରୁଥାନ୍ତି ।

ଶୈଳୀ ନିଶ୍ଚେଷ୍ଟ ଓ ନିର୍ବାକ୍ ହୋଇଯାଇ ତା ମାଆର ବାହୁରେ ଆଶ୍ରୟ ନେଇଥାଏ । ସେ ଗୁରୁଦେବଙ୍କୁ ତଳେ ଆଉ ଦେଖିପାରିଲା ନାହିଁ । ପ୍ରଭୁ ଶଙ୍କରଙ୍କୁ ପ୍ରାର୍ଥନା କରିବା ଛଡ଼ା ତା'ପକ୍ଷରେ ଆଉ କି ଉପାୟ ଅଛି ?

ଜୁନାଗଡ଼ ଦ୍ୱାରରେ ପ୍ରାଣମୂର୍ଚ୍ଛା । ଯୁଦ୍ଧ କରିବାପାଇଁ ନିଷ୍ପତ୍ତି କରିବା ସଙ୍ଗେ ସଙ୍ଗେ ଭିତର ଦୁର୍ଗର ଫାଟକ ବନ୍ଦ କରିଦେବା ପାଇଁ ଖିମଦେବ ବିମଳଙ୍କୁ ଆଦେଶ ଦେଇଥିଲେ । ପାଖ ଦ୍ୱାରବାଟେ ଦୁର୍ଗରୁ ବାହାରିଯାଇ ବନ୍ଦରରୁ ବୋଇତରେ ପଳେଇ ଯିବା ବ୍ୟବସ୍ଥା କରିବା ପାଇଁ ବିମଳ ଖିମଦେବଙ୍କୁ ପ୍ରସ୍ତାବ ଦେଲେ । ଖିମଦେବ ଗର୍ଜିଉଠି କହିଲେ; "ବିମଳ ! କେମିତି ମରିବାକୁ ହୁଏ ମୁଁ ଜାଣେ । କିନ୍ତୁ ମୁଁ ପଛଘୁଞ୍ଚା ଦେଇ ପାରିବି ନାହିଁ ।"

ବିମଳ କହିଲେ—କିନ୍ତୁ ପାଟଣ ?

ଖିମଦେବ ହୁକୁମ ଦେଲେ, "ଶୀଘ୍ର ଯାଅ, ସୋମନାଥଙ୍କ ବିଗ୍ରହ ରକ୍ଷାକର ।" ମନ୍ତ୍ରୀ ବିମଳଙ୍କ ପକ୍ଷେ ତାଙ୍କ ଆଦେଶ ମାନିବା ଛଡ଼ା ଅନ୍ୟ କୌଣସି ପନ୍ଥା ନଥିଲା । ଯେତେ ପାରନ୍ତି ସେତେ ସୈନ୍ୟ ସଙ୍ଗରେ ନେଇ ସେ ଗଲେ ଏବଂ ଯିବା ପରେ ପରେ ଦୁର୍ଗର ଦ୍ୱାର ବନ୍ଦ କରିଦେଲେ ।

ରନ୍ନାଦିତ୍ୟ ଓ ଖିମଦେବ ଅତି ଅଦ୍ଭୁତ ବୀରତ୍ୱର ପରିଚୟ ଦେଲେ । ଶତ୍ରୁର ଖଣ୍ଡା ଚୋଟରେ ରନ୍ନାଦିତ୍ୟଙ୍କ ଡାହାଣ ବାହୁଟି କଟିଗଲା । ଜଣେ ସୈନ୍ୟ ସାହାଯ୍ୟରେ ସେ ଘୋଡ଼ା ଉପରେ ଚଢ଼ି ବାମହାତରେ ତରବାରି ଧରି ଯୁଦ୍ଧ କଲେ । ରକ୍ତହୀନତା ଜନିତ କ୍ଳାନ୍ତି ଅନୁଭବ କରି ସୁଦ୍ଧା, ତାଙ୍କର ଦୃଷ୍ଟିଶକ୍ତି ଥିବା ପର୍ଯ୍ୟନ୍ତ, ସେ ବହୁ ସଂଖ୍ୟକ ମୁସଲମାନ ସୈନ୍ୟଙ୍କୁ ହତ୍ୟା କଲେ । ଶେଷକୁ ସେ ଏକ ଶରର ଆଘାତରେ ଭୂପତିତ ହେଲେ । ସେ ଆଉ ଉଠି ପାରିଲେ ନାହିଁ ।

× × × ×

ତାଙ୍କ ଶିଷ୍ୟ ଏ ମହା ବିପର୍ଯ୍ୟୟର କାରଣ ବୋଲି ଜାଣିପାରି ଗଙ୍ଗସର୍ବଜ୍ଞ ଶିବରାଶିକୁ ଖୋଜିଲେ । ପୂର୍ବଦିନ ସନ୍ଧ୍ୟାରେ ସେ ପାଗଳଙ୍କ ପରି ବ୍ୟବହାର କରିଥିଲା । ଆଜି ସକାଳସାରା ସେ ଏକାକୀ ଗଣପତି ମନ୍ଦିରରେ ରହିଥିଲେ ସୁଦ୍ଧା ବର୍ତ୍ତମାନ ଦଦ୍ଦା ସହିତ କଥାବାର୍ତ୍ତା କରୁଥିଲା । ଏଥିରୁ ପରିଷ୍କାର ଜଣାପଡ଼ିଗଲା ଯେ ଏ ଆତ୍ମଘାତି କାର୍ଯ୍ୟ ଶିବରାଶିର ।

ଗଙ୍ଗସର୍ବଜ୍ଞ ଜୁନାଗଡ଼ ଦ୍ୱାରରେ ପହଞ୍ଚିଲାବେଳକୁ ଶିବରାଶି ଚାଲି-ଯାଉଥିବା ଏବଂ ଦୁର୍ଗର ଦ୍ୱାର ଖୋଲିଯିବା ସେ ଦେଖିଥିଲେ । ଏହା ଦେଖି ଶେଷ ସମୟ ଆସନ୍ନ ବୋଲି ସେ ବୁଝିନେଲେ । ସେ ଇତସ୍ତତଃ ହୋଇ ଚାରି-ଆଡ଼କୁ ଅନାଇ ମନକୁମନ କହିବାକୁ ଲାଗିଲେ, "ଭୋଳାନାଥ, ଏହି କଣ

ଶେଷ ? କାହିଁକି ଏହା କଲ ପ୍ରଭୁ ?" ସେ ସଙ୍ଗେ ସଙ୍ଗେ ଫେରିଲେ । ଗଙ୍ଗା ଓ ଶୈଳ ଯେପରି ମୁସଲମାନ ହାତରେ ନ ପଡ଼ନ୍ତି ତାହା ଦେଖିବା ତାଙ୍କର ପ୍ରଧାନ କାର୍ଯ୍ୟ । ସେମାନଙ୍କର ଉପଯୁକ୍ତ ସ୍ଥାନ ଦେବତା ପାଖରେ । ସେ ଏକ ସଙ୍କୀର୍ଣ୍ଣ ରାସ୍ତାରେ ସୈନ୍ୟମାନଙ୍କର ଦୃଷ୍ଟିକୁ ଏଡ଼ାଇ ଆସ୍ତେ ଆସ୍ତେ ଭିତର ଦୁର୍ଗର ଦ୍ୱାର ନିକଟକୁ ଗଲେ ।

ପ୍ରଭୁଙ୍କ ଇଚ୍ଛା ଜାଣିବା ନିମନ୍ତେ ସେ ନିରର୍ଥକ ଚେଷ୍ଟା କଲେ । ତାଙ୍କ ହୃଦୟରେ ଥିଲା ଦୈନ୍ୟ ଭାବ । ମଣିଷର ଚେଷ୍ଟା ନିରର୍ଥକ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ହେଲା । ତ୍ରିଶ ବର୍ଷ ଧରି ସେ ପ୍ରଭାସ କ୍ଷେତ୍ରର ପରିଚାଳନା କରିବା ସଙ୍ଗେ ସଙ୍ଗେ ପାଶୁପତ ସଂପ୍ରଦାୟର ଧର୍ମ ପ୍ରଚାର କରି ସମଗ୍ର ଭାରତକୁ ପ୍ରଭୁ ଶଙ୍କରଙ୍କର ଅନୁଗତ କରିପାରିଥିଲେ । ମୁହୂର୍ତ୍ତିକ ମଧ୍ୟରେ ଏ ସମସ୍ତ ଧୂଳିସାତ୍ ହୋଇଗଲା ।

ଭଗବାନଙ୍କ ଉପରେ ତାଙ୍କର ବିଶ୍ୱାସ ଇତସ୍ତତଃ ହେବାକୁ ଲାଗିଲା । କିନ୍ତୁ ପ୍ରଭୁଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତି ତାଙ୍କୁ ସ୍ଖଳନରୁ ନିବୃତ୍ତ କଲା । ତାଙ୍କ ପକ୍ଷରେ ଏପରି ସନ୍ଦେହ କରିବା ଉଚିତ ନୁହେଁ । ପ୍ରଭୁଙ୍କର ଇଚ୍ଛା ପୂର୍ଣ୍ଣ ହେଉ ।

ଯେଉଁଠାରେ ଚରିତ୍ରହୀନତାକୁ ପ୍ରଶ୍ରୟ ଦିଆଯାଉଥିଲା, ତ୍ରିପୁର-ସୁନ୍ଦରୀଙ୍କର ପୂଜା ନାମରେ, ଭୈରବୀଙ୍କ ପୂଜା ନାମରେ ଭୟଙ୍କର କୁକର୍ମମାନ କରାଯାଉଥିଲା, ତାଙ୍କ ପରି ଧାର୍ମିକ ବ୍ୟକ୍ତି ଅବସ୍ଥାକୁ ଠିକ୍ କରିବା ପାଇଁ ଦୀର୍ଘ ଦିନ ଉଦ୍ୟମ କରି ଯେଉଁଠାରେ ବିଫଳ ହୋଇଛନ୍ତି ଏବଂ ଯେଉଁଠାରେ ଉତ୍ତରାଧିକାରିତ୍ୱ ଦାବି କରି ଶିବରାଶି ସମସ୍ତ ପ୍ରକାର ଅନ୍ୟାୟ କାର୍ଯ୍ୟ କରିଛି, ସେହି ଅପବିତ୍ର ଭୂମି ତିଷ୍ଠି ରହିବାର କୌଣସି ଯଥାର୍ଥତା ନାହିଁ । ଯାହା ଘଟୁ ନା କାହିଁକି, ତାହା ପ୍ରଭୁ ଶଙ୍କରଙ୍କର ଇଚ୍ଛା—ଏହା ଗଙ୍ଗ ସର୍ବଜ୍ଞ ଶେଷକୁ ବୁଝି-ପାରିଲେ । ପ୍ରଭାସର ପତନ ସଙ୍ଗେ ସଙ୍ଗେ ସମସ୍ତ ପ୍ରକାର ଅନୀତିର ଅବସାନ ହେବ ଏବଂ ଯେଉଁମାନେ ସେହି ଅନୀତି ପାଇଁ ଦାୟୀ, ସେମାନଙ୍କର ମଧ୍ୟ ବିନାଶ ହେବ । ତାପରେ ପ୍ରଭୁଙ୍କ ସେବା ପୂଜା ନୂଆ କରି ଶୁଦ୍ଧ ପୂତ ଭାବେ ଆରମ୍ଭ ହେବ ଏହି ଅନୀତିମାନ ହେଉଥିବା ସେ ନିଜ ଆଖିରେ ଦେଖିଥିଲେ ସୁଦ୍ଧା, ରୋକି ପାରି ନାହାନ୍ତି । ସେଥିପାଇଁ ପ୍ରଭୁ ଶଙ୍କର ତାଙ୍କୁ ଡାକି ନେବାକୁ ଚାହୁଁଛନ୍ତି । ଆଉ ଅଳ୍ପ ସମୟର କଥା ।

ସେ ପାଟିକରି କହି ଉଠିଲେ, "ପ୍ରଭୁ, ଏହି ଯବନମାନଙ୍କ ହାତରେ ଆପଣ କଣ ଧ୍ୱଂସ ହେବେ ? ଆପଣଙ୍କର ଯେଉଁ ତୃତୀୟ ନୟନ ତ୍ରିପୁରାସୁର ପରି ଅସୁରଙ୍କୁ ଧ୍ୱଂସ କରିଥିଲା, ତାହା କାହିଁକି ବନ୍ଦ କରିଛନ୍ତି ? ଆମେ କଣ ଏହି ସାମାନ୍ୟ ଦୟାର ପାତ୍ର ନୋହୁଁ ।"

## ୪୮

## ଦେବସ୍ଥାନରେ ବିଷାଦର ଛାୟା

ଗଙ୍ଗ ସର୍ବଜ୍ଞ ପହଞ୍ଚିଲାବେଳକୁ ଭିତର ଦୁର୍ଗର ଦ୍ୱାର ବନ୍ଦ ହୋଇ ଯାଇଥିଲା । ପ୍ରଭୁଙ୍କର ଶେଷ ଦର୍ଶନରୁ ସେ କଣ ବଞ୍ଚିତ ହେବେ ? ଦ୍ୱାର ନିକଟର ଏକ ଉଚ୍ଚ ସ୍ଥାନରେ ସେ ବସିପଡ଼ିଲେ ଅର୍ଦ୍ଧମୁଦ୍ରିତ ଚକ୍ଷୁରେ । ଜଣେ ଆହତ ବ୍ୟକ୍ତି କ୍ଷୀଣ ସ୍ୱରରେ ପାଣି ମାଗୁଥିବା ସେ ଶୁଣିପାରିଲେ । ସର୍ବଜ୍ଞ ଦେଖିଲେ, ଧୀପ କୋଠାରୀ ମୃତ ପ୍ରାୟ । ସେ ପାଟି କରି କହିଲେ "ଧୀପ କୋଠାରୀ ?"

ଧୀପ କୋଠାରୀ କହିଲା, "ଗୁରୁଦେବ ! ମୁଁ ଭାଗ୍ୟବାନ୍—ମୋର ଏହି ଶେଷ ସମୟରେ ଆପଣଙ୍କ ଦର୍ଶନ ପାଇଲି । ମୋତେ ଟୋପେ ପାଣି ଦିଅନ୍ତୁ ।"

ଗୁରୁଦେବ କହିଲେ—"ଅପେକ୍ଷା କର, ମୁଁ ପାଣି ଆଣୁଛି ।" ଗୁରୁଦେବ ତା ପାଟିରେ କିଛି ପାଣି ଦେଇ ସେ କେଉଁଠାରେ ଏପରି ଆହତ ହେଲା ବୋଲି ପଚାରିଲେ ।

କୋଠାରୀ ଯନ୍ତ୍ରଣାକାତର ସ୍ୱରରେ କହିଲା, "ଯେତେବେଳେ ପୋଳ ଉପରେ ଯୁଦ୍ଧ ଚାଲିଥାଏ, ମୁଁ ଭିତରେ ଥାଇ ବଡ଼ ବଡ଼ ପଥରମାନ ଉପରକୁ ଆଣୁଥିଲି । ସୈନ୍ୟମାନଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ ହେଲାଣି କି ନାହିଁ ଦେଖିବାକୁ ଆସିବା ସମୟରେ ଗଣପତି ମନ୍ଦିରରୁ ଗୋଟିଏ କେତେକ ଶତ୍ରୁ ସୈନ୍ୟଙ୍କ ସହିତ ଆସୁଥିବା ଦେଖିଲି । ସେମାନେ କିଏ ବୋଲି ପଚାରିବାରୁ, ସେମାନଙ୍କ ଭିତରୁ ଜଣେ ମୋତେ ଛୁରୀ ଭୁଷି ରାସ୍ତାକୁ ପେଲିଦେଲା । ମୁଁ ବଞ୍ଚିବି ନାହିଁ ଗୁରୁଦେବ ! କିନ୍ତୁ ମୃତ୍ୟୁ ମଧ୍ୟ ଚଞ୍ଚଳ ଆସୁନାହିଁ ।"

ଗୁରୁଦେବ—କୋଠାରୀ, ପ୍ରଭୁ ଶଙ୍କର ଆମ ଉପରେ ପ୍ରସନ୍ନ ନୁହନ୍ତି।

କୋଠାରୀ—ଖେମଦେବ ମହାରାଜ କେଉଁଠି ?

ଗୁରୁଦେବ—ତାହା କେହି ଜାଣନ୍ତି ନାହିଁ। ଯଦି ତାଙ୍କର ମୃତ୍ୟୁ ନ ହୋଇଥାଏ, କେଉଁଠାରେ ଯୁଦ୍ଧ କରୁଥିବେ। ଭଗବାନଙ୍କ ଇଚ୍ଛା ପୂର୍ଣ୍ଣ ହେବ।

କୋଠାରୀ—ଏସବୁ କାହିଁକି ହେଲା ଗୁରୁଦେବ ?

ଗୁରୁଦେବ କୋଠାରୀଙ୍କୁ ଧୀରେ କହିଲେ, "ଭୋଳାନାଥଙ୍କ ଇଚ୍ଛାକୁ ମାନିଯିବା ଦରକାର। ପୃଥିବୀ ବର୍ତ୍ତମାନ ଧ୍ୱଂସାଭିମୁଖୀ।"

ଗୁରୁଦେବଙ୍କ କୋଳରେ ମଥା ରଖି କୋଠାରୀ ଶେଷ ନିଶ୍ୱାସ ତ୍ୟାଗ କଲା। ଗୁରୁଦେବ ଦୁଃଖ ମନରେ ସ୍ଥାନ ଛାଡ଼ି ଚାଲିଗଲେ। ମୁସଲମାନ ସୈନ୍ୟମାନେ ଦୁର୍ଗ ଭିତରକୁ ଆସିବାକୁ କିପରି ସମର୍ଥ ହେଲେ ତାହା ସେ ବର୍ତ୍ତମାନ ବୁଝିପାରିଲେ। ମାରୁତି ମଣ୍ଡପ ତଳେ ଯାଇଥିବା ସୁଡ଼ଙ୍ଗ କଥା ତାଙ୍କର ମନେପଡ଼ିଲା। ସେ ଭାବିଲେ—ଶିବରାଶି ଯେବେ ସେହି ବାଟେ ମୁସଲମାନ ସୈନ୍ୟମାନଙ୍କୁ ଆସିବା ପାଇଁ ବାଟ ଦେଖାଇଦେଲା, ତେବେ ସେ ନିଜେ କାହିଁକି ଭିତର ଦୁର୍ଗକୁ ସେହି ବାଟେ ନ ଗଲା ? ସେ ଦ୍ରୁତ ବେଗରେ ମନ୍ଦିର ଅଗଣାକୁ ଯାଇ ଦେଖନ୍ତି ତ ସେଠାରେ ଭୀଷଣ ଯୁଦ୍ଧ ଲାଗିଛି। ହମୀରର ଅଶ୍ୱାରୋହୀ ସୈନ୍ୟବାହିନୀର ଚିତ୍କାରରେ ଆକାଶ ଫାଟିପଡ଼ୁଥାଏ ଏବଂ ଗୁଜରାଟ୍ ସୈନ୍ୟବାହିନୀ ସେମାନଙ୍କୁ ଭୀଷଣଭାବେ ପ୍ରତିରୋଧ କରୁଥାନ୍ତି। ଗଣପତି ମନ୍ଦିରର ଛାତ ଉପରେ ବିରାଟ ପଥର ଖଣ୍ଡମାନ ଜମା କରି ସୈନ୍ୟମାନେ ନିଜକୁ ରକ୍ଷା କରିବା ଲାଗି ଏକ ପ୍ରାଚୀର ତିଆରି କରିଥାନ୍ତି ଓ ତା ପଛରୁ ଶର ମାରି ଶତ୍ରୁପକ୍ଷ ସୈନ୍ୟଙ୍କୁ ଧ୍ୱଂସ କରୁଥାନ୍ତି। ଏହି ଅଳ୍ପ ସଂଖ୍ୟକ ଗୁଜରାଟୀ ସୈନ୍ୟମାନଙ୍କର ବୀରତ୍ୱ ତଥା ଯୁଦ୍ଧ ନିପୁଣତା ଯୋଗୁ ହମୀରର ସୈନ୍ୟମାନେ ଭିତର ଦୁର୍ଗ ମଧ୍ୟରେ ପ୍ରବେଶ କରିପାରି ନ ଥାନ୍ତି। ଠିକ୍ ଏହି ସମୟରେ ଅନ୍ୟ ଏକ ଦିଗରୁ ତୁରୀ ବାଜି ଉଠିଲା ଏବଂ ସଙ୍ଗେ ସଙ୍ଗେ ମୁସଲମାନ ଅଶ୍ୱାରୋହୀ ସୈନ୍ୟମାନେ ସେହି ଦିଗକୁ ଚାଲିଲେ। ଗୁରୁଦେବ ଗଣପତି ମନ୍ଦିର ଅତିକ୍ରମ କରିବା ପରେ ତାଙ୍କୁ କେହି ଜଣେ ଡ଼ାକୁଥିବାର ଶୁଣିଲେ। ସେ ଆଶ୍ଚର୍ଯ୍ୟ ହୋଇ ସେ ଆଡ଼କୁ ଚାହିଁଲେ।

ଗୁରୁଦେବ ପଚାରିଲେ, "କିଏ ? ବୀର ଗୃଓଡ଼ା ?" ସଙ୍ଗେ ସଙ୍ଗେ ଦ୍ୱାର ଫିଟିଗଲା ଏବଂ ଗୁରୁଦେବଙ୍କୁ ଭିତରକୁ ନିଆଗଲା। ବୀର କାନ୍ଦୁଥିଲା।

ସେ କାନ୍ଦି କାନ୍ଦି କହିଲା, "ଗୁରୁଦେବ ! ମହାରାଜ ଭୀମଦେବ ଆଉ ନାହାନ୍ତି ।"

ଗୁରୁଦେବ— କଣ ହେଲା କୁହନା ବୀର ।

ବୀର "ସେ ସିଂହ ବିକ୍ରମରେ ଲଢ଼ୁଥିଲେ ଏବଂ ଶହ ଶହ ମୁସଲମାନ ସୈନ୍ୟଙ୍କୁ ମାରିଥିଲେ ସୁଦ୍ଧା ଶେଷରେ......।" ସେ ଆଉ କହି ପାରିଲା ନାହିଁ । କୋହ ଉଠି ତାର କଣ୍ଠ ରୁଦ୍ଧ ହୋଇଗଲା ।

ଗୁରୁଦେବ ନିଜକୁ ସମ୍ଭାଳି ନେଇ କହିଲେ, "ଭୋଳାନାଥଙ୍କର ଯାହା ଇଚ୍ଛା ତାହାହିଁ ହେବ । ମହାରାଜାଙ୍କର ଶବ କାହିଁ ?"

ବୀର—"ତାଙ୍କ ସହିତ ଆମେ ସାତଜଣ ଥିଲୁ । ମହାରାଜାଙ୍କର ମୃତ୍ୟୁ ହୋଇଛି ବୋଲି ଜାଣିଥିଲେ ଆମ ସୈନ୍ୟମାନେ ଭାଙ୍ଗିପଡ଼ନ୍ତେ । ତେଣୁ ତାଙ୍କ ଶବକୁ ଏଠାକୁ ନେଇଆସିଛୁ । ତା' ଛଡ଼ା ମୁସଲମାନ ସୈନ୍ୟମାନେ ଯେପରି ଭିତର ଦୁର୍ଗରେ ପ୍ରବେଶ ନ କରନ୍ତି ପ୍ରାଣ ପଣେ ତାହାର ପ୍ରତିରୋଧ କରୁଛୁ । ଆମ ସାତଜଣଙ୍କ ମୃତ୍ୟୁ ନ ହେବା ପର୍ଯ୍ୟନ୍ତ ମନ୍ଦିରର ପତନ ହେବ ନାହିଁ ଏବଂ ତାହା ପରେ କାହାର କେଉଁ ଶବ ସେ ସଂପର୍କରେ ଭାବିବାର କିଛି ନ ଥିବ ।" ଏହା କହି ବୀର ବୁକୁଫଟା ଦୁଃଖରେ କାନ୍ଦିଲାଗିଲା ।

ଗୁରୁଦେବ କହିଲେ, "ବୀର, ମହାରାଜାଙ୍କର ଶବ ଆମର ନୁହେଁ, ଏହା ପ୍ରକୃତରେ ଚୌଲର । ମୁଁ ତାଙ୍କୁ ଭିତରକୁ ନିଏ ।"

ବୀର—କିନ୍ତୁ ନେବେ କିପରି ?

ଗୁରୁଦେବ – ଯଦି ଏହି କୋଣରେ ହାତେ ଖୋଳିପାରିବୁ ତେବେ ଗୋଟିଏ ସୁଡ଼ଙ୍ଗ ମିଳିବ ଓ ସେଇ ବାଟେ ଭିତର ଦୁର୍ଗକୁ ଯାଇହେବ ।

"ଅପେକ୍ଷା କରନ୍ତୁ" କହି ବୀର ତାହାର ସାଥୀମାନଙ୍କୁ ଶତ୍ରୁର ପ୍ରତିରୋଧ ଅବ୍ୟାହତ ରଖିବାକୁ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ, ସେ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ରହିଲା । ତା ପରେ ଗୁରୁଦେବଙ୍କୁ ସାହାଯ୍ୟ କରିବାକୁ ଗଲା । ଅଳ୍ପ ସମୟ ମଧ୍ୟରେ ସୁଡ଼ଙ୍ଗ ବାଟଟି ଖୋଲିଗଲା । ତାହା ପରେ ଗୁରୁଦେବ ପଚାରିଲେ, "ବୀର, ତୁ ଏଠାରେ ରହିବୁ ?"

ବୀର କହିଲା, "ହଁ, ମୋର ମୁନିବ ଯେତେବେଳେ ଚାଲିଗଲେ ମୋର ଆଉ କଣ କହିବାର ଅଛି ? ଯେତେ ଶୀଘ୍ର ପାରେ ମୁଁ ମଧ୍ୟ ଚାଲିଯିବାକୁ ଚାହେଁ ।" ଏହା କହି ସେ ଗୁରୁଦେବଙ୍କ ଓ ଭୀମଦେବଙ୍କ ଶବକୁ ସାଷ୍ଟାଙ୍ଗ ପ୍ରଣାମ କଲା ଏବଂ ଆଖି ପୋଛି ପୋଛି ଛାତ ଉପରକୁ ଚାଲିଗଲା ।

ସୁଡ଼ଙ୍ଗ ରାସ୍ତାଟି ଗୁରୁଦେବଙ୍କୁ ଭଲ ରକମ ଜଣାଥିଲା । ଖ୍ରୀମଦେବଙ୍କ ଦେହକୁ ଏକାକୀ କାନ୍ଧରେ ଧରି ସେ ଆସ୍ତେ ଆସ୍ତେ ସୁଡ଼ଙ୍ଗରେ ପ୍ରବେଶ କଲେ । ଖ୍ରୀମଦେବଙ୍କ ଶରୀରର ଓଜନରେ ଟଳମଳ ଅବସ୍ଥାରେ ପାହାଚ ଓହ୍ଲାଇ ଶେଷରେ ଗଣେଶ ମନ୍ଦିରରେ ପହଞ୍ଚିଲେ । ସୁଡ଼ଙ୍ଗର ଅପର ମୁହଁ ଖୋଲିଥିଲା ।

ସେ ନିଜର କ୍ଳାନ୍ତି ଦୂର କରିବାକୁ ସାମାନ୍ୟ କେତେ ମୁହୂର୍ତ୍ତ ମାତ୍ର ବସିପଡ଼ି ମହାରାଜାଙ୍କର ଦେହ ପରୀକ୍ଷା କରିବାକୁ ଆରମ୍ଭ କଲେ । ଶରୀରର ବହୁ ସ୍ଥାନରେ ଆଘାତ ଲାଗିଥିଲେ ସୁଦ୍ଧା, ତାଙ୍କ ନାଡ଼ି ଚାଲୁଥାଏ । ସେ ଖ୍ରୀମଦେବଙ୍କ ପିନ୍ଧିଥିବା ବସ୍ତ୍ର ଚିରି ଆଘାତପ୍ରାପ୍ତ ଜାଗାମାନଙ୍କରେ ବାନ୍ଧିଦେଲେ । ତା'ପରେ ତାଙ୍କୁ ନେବାପାଇଁ ଉଠାଇଲେ । ଯିବା ପୂର୍ବରୁ ସେ ଦେଖିଲେ ଯେ ଗୁଜରାଟର ବୀରମାନେ ପ୍ରାଣମୂର୍ଚ୍ଛା ଲଢେଇ କରୁଛନ୍ତି । କି ସାହସ, କି କର୍ତ୍ତବ୍ୟ-ପରାୟଣତା ଓ ଆତ୍ମସମ୍ମାନଜ୍ଞାନ ! ଏହା ଦେଖି ସେହି ଧ୍ୱଂସର ମୁହୂର୍ତ୍ତରେ ମଧ୍ୟ ସର୍ବଜ୍ଞ ଗର୍ବ ଅନୁଭବ କଲେ ।

ଠିକ୍ ପର ମୁହୂର୍ତ୍ତରେ ସେ ଶୁଣିଲେ ଏକ ଉଦ୍ଦାମ ହସ । ତାଙ୍କ ଆଗରେ ଶିବରାଶି । "ହେଲା, ହା, ହା, ହା···ତୁମେମାନେ କୁକୁର ପରି ମରିବ ବୋଲି ମୁଁ କହି ନ ଥିଲି ?" ଶିବରାଶି ପୁଣି ଅଟ୍ଟହାସ୍ୟ କଲା ।

"ରାଶି ! ଯେଉଁଠାରେ ତୁମେ ମଣିଷ ହୋଇଥିଲ, ଯେଉଁଠାରେ ନୀତି ଶିକ୍ଷା ପାଇଥିଲ, ଯେଉଁଠାରେ ବେଦାଧ୍ୟୟନ କରିଥିଲ; ଯେଉଁଠାରେ ତୁମେ ଈଶ୍ୱରଙ୍କୁ ପୂଜା କରିଥିଲ, ସେହି ପବିତ୍ର ଦେବମନ୍ଦିରକୁ ମ୍ଳେଚ୍ଛକୁ ଡ଼ାକି ଆଣିଲ ? ତୁମର ବନ୍ଧୁ ଏବଂ ଗୁରୁଙ୍କୁ ହତ୍ୟା କଲ ? ନିଜର ଦେବତାଙ୍କୁ ଅପବିତ୍ର କଲ ? ଯେଉଁ ସ୍ଥାନକୁ ତୁମେ ଅପବିତ୍ର କରିଛ, ତାହାକୁ ଭୋଳାନାଥ ଧ୍ୱଂସ କରିବାକୁ ଚାହାନ୍ତି ବୋଲି ମୁଁ ଭଲଭାବେ ବୁଝିପାରୁଛି ।" ଏହା କହି ସର୍ବଜ୍ଞ ଖ୍ରୀମଦେବଙ୍କ ଦେହକୁ ବହନ କରି ଆଗେଇଗଲେ ।

ଗୁରୁଦେବ ଭିତର ଦୁର୍ଗରେ ପହଞ୍ଚିଲା କ୍ଷଣି ତାଙ୍କ ମନରେ ପୁଣି ଅଦ୍ଭୁତ ସାହସ ଦେଖାଦେଲା । ଏହି ପରିତ୍ୟକ୍ତ ମନ୍ଦିରରେ ତାଙ୍କର ଦୁର୍ବଳତା ଓ ଦୈନ୍ୟ ଉଭେଇଗଲା । ସେ ଚାଳିଶ ବର୍ଷ ଧରି ଏହି ପୀଠରୁ ନିର୍ବିବାଦରେ ପାଶୁପତ ସମ୍ପ୍ରଦାୟର ଲୋକମାନଙ୍କ ଉପରେ ଆଧ୍ୟାତ୍ମିକ ପ୍ରଭୁତ୍ୱ ବିସ୍ତାର କରିଆସିଥିଲେ । ଏହି ପୀଠରେ ସେ ବହୁ ଶ୍ରେଷ୍ଠ ବଡ଼ ଶାସକଙ୍କର ଅର୍ଘ୍ୟ ଓ ଶ୍ରଦ୍ଧାଞ୍ଜଳି ଗ୍ରହଣ କରିଛନ୍ତି । ଖ୍ରୀଷ୍ଟ ଜଗତର ଧର୍ମଗୁରୁ ପୋପ୍ ଖ୍ରୀଷ୍ଟିଆନ୍ ଜଗତରେ ଯେଉଁ

ଆସନ ଲାଭ କରିଛନ୍ତି, ସେ ତାଙ୍କ ଶିକ୍ଷା ଏବଂ ଭକ୍ତି ଯୋଗୁ ଭାରତବର୍ଷରେ ସେହି ଆସନ ଲାଭ କରିଥିଲେ । ପ୍ରଭୁ ଲକୁଳୀଶଙ୍କ ଦାୟାଦ ରୂପେ ସେ ବିଶ୍ୱକୁ ମୋକ୍ଷ ଲାଭ କରିବାର ଉପାୟ ଶିକ୍ଷା ଦେଇଥିଲେ ।

ଗୁରୁଦେବ ଆସୁଥିବାର ଗଙ୍ଗା ଦେଖିଲା । ଭୟରେ ଥରି ଥରି ଗଙ୍ଗା ଓ ଚୌଲା ଉଭୟେ ତାଙ୍କ ନିକଟକୁ ଗଲେ । ଭୀମଦେବଙ୍କ ଅଚେତ ଶରୀର ଦେଖି ତାଙ୍କର ମୃତ୍ୟୁ ହୋଇଥିବା ବିଶ୍ୱାସ କରି ଚୌଲା ତାଙ୍କ ଦେହ ଉପରେ ମୁଣ୍ଡ ରଖି ଉଚ୍ଚ ସ୍ୱରରେ କାନ୍ଦିଉଠିଲା । ଗୁରୁଦେବ ଏକ ଦୀର୍ଘନିଶ୍ୱାସ ନେଇ ଶାନ୍ତ ଓ ସ୍ଥିତ-ପ୍ରଜ୍ଞ ହୋଇ ସିଧା ଠିଆହେଲେ । କହିଲେ, "ଚୌଲା, ଭଗବାନ ଚାହାନ୍ତି ନାହିଁ, ତେଣୁ ଆମ ଇଚ୍ଛା ଅନ୍ୟଥାରେ ପରିଣତ ହୋଇଛି । ତୁ କାନ୍ଦନା ମା, ନିଜକୁ ପ୍ରସ୍ତୁତ କର । ଅତି ଶୀଘ୍ର ଦୁର୍ଗର ପତନ ହେବ ଏବଂ ମୁସଲମାନମାନେ ଏହାକୁ ଦଖଲ କରିପିବେ । ବର୍ତ୍ତମାନ ତୁ ଚୌଲା ନୁହଁ, ପାଟଣର ରାଣୀ । ତୋର ଜୀବିତାବସ୍ଥାରେ ଯେପରି କୌଣସି ମ୍ଳେଚ୍ଛ ତୋତେ ନ ଛୁଅଁନ୍ତି ସେଥିପାଇଁ ସତୀବ୍ରତ ପାଳନ କରିବା ତୋର ବର୍ତ୍ତମାନ କର୍ତ୍ତବ୍ୟ ।"

ଚୌଲା ଲୋତକାପ୍ଲୁତ ଚକ୍ଷୁରେ ଚାହିଁଲା । ଭୀମଦେବ ଚାଲିଯାଇଛନ୍ତି ଏବଂ ତାଙ୍କ ଯିବା ସଙ୍ଗେ ସଙ୍ଗେ ତା' ଜୀବନର ଆଲୋକ ମଧ୍ୟ ଲିଭି ଯାଇଛି । ସେ ପଚାରିଲା, "ମହାରାଜାଙ୍କ ଦେହାନ୍ତ କେତେବେଳେ ହେଲା ?"

ଗୁରୁଦେବ କହିଲେ—"ତାଙ୍କ ଶରୀରରେ ଏପର୍ଯ୍ୟନ୍ତ ମଧ୍ୟ ଜୀବନର ଅବଶେଷ ଅଛି । ତୋର ବ୍ୟବସ୍ଥା କରିସାରିବା ପରେ, ସେ ବଞ୍ଚି ପାରିବେ କି ନାହିଁ ତାହା ମୁଁ ଦେଖିବି । ଗଙ୍ଗା, ଚଞ୍ଚଳ ପ୍ରସ୍ତୁତ କର--ଅଗ୍ନିରେ ଝାସ ଦେବା ପାଇଁ ଚୌଲାକୁ ପ୍ରସ୍ତୁତ କର । ଚିତା ଲାଗି ମୁଁ କାଠ ସଂଗ୍ରହ କରୁଛି । ପରବର୍ତ୍ତୀ ଜଗତରେ ସୁଖୀ ହେବା ବୋଧେ ତା ଭାଗ୍ୟରେ ଅଛି । ତା'ଛଡ଼ା, ଗଙ୍ଗା ତୁ ନିଜେ ମଧ୍ୟ ମୃତ୍ୟୁ ପାଇଁ ପ୍ରସ୍ତୁତ ହୋଇଯା । ତୁ ମଧ୍ୟ ଯେପରି ମୁସଲମାନମାନଙ୍କ ହାତରେ ନ ପଡୁ ।"

ଗଙ୍ଗା କହିଲା, "ଗୁରୁଦେବ, ମୋର ମରିବା ପାଇଁ କୌଣସି ଚିତାର ଦରକାର ନାହିଁ । ମୋ ପାଇଁ ଚିନ୍ତା କରନ୍ତୁ ନାହିଁ ।"

ପ୍ରାଣ ଭୟରେ ଲୁଚିଥିବା କେତେକ ସାଧୁଙ୍କୁ ଯାଇ ଚିତା ପାଇଁ କାଠ ଆଣିବାକୁ ଗୁରୁଦେବ ଆଦେଶ ଦେଲେ । ତା' ପରେ ସେ ନିଜ ହାତରେ ଚିତା ତିଆରି କଲେ । ଗଙ୍ଗା ଚୌଲା ମୁଣ୍ଡରେ କୁଙ୍କୁମ ଓ ଚନ୍ଦନର ଟିକା ଦେଲା ।

ଶୈଳ ଯନ୍ତ୍ରଚାଳିତ ପରି ଗୁରୁଦେବଙ୍କ ଆଜ୍ଞା ପାଳନ କରୁଥାଏ । ସେ ପ୍ରଭୁ ସୋମନାଥଙ୍କ ନିକଟକୁ ଯାଇ ତାଙ୍କ ଆଗରେ ପ୍ରଣତ କଲା । ତା'ପରେ ଭୀମଦେବ ଅଚେତ ଅବସ୍ଥାରେ ପଡ଼ିଥିବା ସ୍ଥାନକୁ ଆସିଲା । ଭୀମଦେବଙ୍କ କପାଳରୁ ନିର୍ଗତ ରକ୍ତରେ ଆର୍ଦ୍ର ତାଙ୍କ କେଶରାଶିରେ ସେ ହାତ ବୁଲାଇଲା ଓ ତାଙ୍କ ମୁଖକୁ ଚାହିଁଲା । ତାର ଶରୀର ମୃତ ପ୍ରାୟ । ତା' ମୁଖରେ କୌଣସି ଭାବପ୍ରବଣତା ବା ଆଖିରେ କୌଣସି ଦୀପ୍ତି ନଥାଏ । ସେ ପ୍ରଥମେ ଭୀମଦେବଙ୍କ ଚରଣ ଛୁଇଁ ତା' ପରେ ମା ଗଙ୍ଗା ଓ ଗୁରୁଦେବଙ୍କୁ ପ୍ରଣାମ କଲା । ଗୁରୁଦେବ ଶାନ୍ତ-ନିର୍ବେଦ ହୋଇଯାଇଥାନ୍ତି । ସେ ଚିତାରେ ଅଗ୍ନି ସଂଯୋଗ କଲେ ।

ଠିକ୍ ଏତିକିବେଳେ ମନ୍ତ୍ରୀ ବିମଳ ଅଣନିଶ୍ୱାସୀ ହୋଇ ଦୌଡ଼ି ଆସି ପହଞ୍ଚିଲେ ।

## ୪୯

# ହିବାର ପବନ ମୂର୍ତ୍ତି

ମନ୍ତ୍ରୀ ବିମଳ ମଧ୍ୟ ଆହତ ହୋଇଥିଲେ । ସେ ଗୁରୁଦେବଙ୍କ ପାଖେ ପହଞ୍ଚିଯାଇ ଊର୍ଦ୍ଧ୍ୱଶ୍ୱାସରେ କହିଲେ, "ଗୁରୁଦେବ ! ଆପଣ ଏଠାରୁ ଚାଲିଯିବା ଦରକାର । ଯେ କୌଣସି ମୁହୂର୍ତ୍ତରେ ଭିତର ଦୁର୍ଗର ପତନ ହେବ । ତା'ପରେ ଶତ୍ରୁ ହାତରେ ପଡ଼ିବାକୁ ବେଶୀ ଡେରି ଲାଗିବ ନାହିଁ ।"

ଗୁରୁଦେବ କହିଲେ, "ମୁଁ ଜାଣେ ବିମଳ ! ଶୈଳକୁ ସତୀ କରି-ସାରିବା ପରେ ମୁଁ ହମୀର ସହିତ ଦେଖା କରିବାକୁ ପ୍ରସ୍ତୁତ ହେବି ।"

ବିମଳ—"ସର୍ବନାଶ ! ମହାରାଜ···ମୃତ ?" ଭୀମଦେବ ତଳେ ପଡ଼ିଥିବା ଦେଖି ବିମଳ ସ୍ତମ୍ଭିତ ହୋଇଗଲେ ।

ଗୁରୁଦେବ—"ନା, ସେ ଜୀବିତ ଅଛନ୍ତି । କିନ୍ତୁ ଯେ କୌଣସି ମୁହୂର୍ତ୍ତରେ ତାଙ୍କର ମୃତ୍ୟୁ ହୋଇପାରେ ।"

ବିମଳ ତାଙ୍କର ଦୁଇ ଓଠ ଚାପିଧରିଲେ । କିନ୍ତୁ ଏହା କାନ୍ଦିବାର ସମୟ ନୁହେଁ ବୋଲି ସେ ମଧ୍ୟ ବୁଝିଲେ ।

ବିମଳ ନିବେଦନ କଲେ—"କିନ୍ତୁ ଗୁରୁଦେବ, ଆପଣ ଚାଲିଯାନ୍ତୁ !"

ଗୁରୁଦେବ ଶାନ୍ତଭାବରେ କହିଲେ—"ଯେଉଁଠାରେ ଭୋଳାନାଥ ମୋର ସ୍ଥାନ ସେହିଠାରେ ବୋଲି ତୁମକୁ ଆଗରୁ କହିଛି ନା ?"

ବିମଳ ଆଶ୍ଚର୍ଯ୍ୟରେ ଗୁରୁଦେବଙ୍କୁ ଚାହିଁଲେ। ତାପରେ ତଳକୁ ମୁହଁ ପୋତି ଭୀମଦେବଙ୍କ ପାଦ ଉପରେ ନିଜର ମୁଣ୍ଡ ରଖିଲେ।

ଠିକ୍ ଏତିକିବେଳେ ସାମନ୍ତ ମଧ୍ୟ ସେଠାରେ ଦୌଡ଼ି ଦୌଡ଼ି ଆସି ପହଞ୍ଚିଲେ। ତାଙ୍କୁ ଦେଖି ଗୁରୁଦେବ କହିଲେ, "ବାପା ସାମନ୍ତ ! ଏ ବିପଦ ସମୟରେ ତୁ କେଉଁଠୁ ଆସିଲୁ ?"

ସାମନ୍ତ ଉତ୍ତର ଦେଲେ, "ପ୍ରଭାସର ପତନ ହୋଇଛି ବୋଲି ମୋର ସନ୍ଦେହ ହେବାରୁ ମୁଁ ଦୌଡ଼ି ଦୌଡ଼ି ଆସିଛି। ମୋ ସହିତ ଆପଣମାନଙ୍କୁ ଯିବାକୁ ହେବ। ସମୁଦ୍ର ରାସ୍ତା ଏପର୍ଯ୍ୟନ୍ତ ଖୋଲାଅଛି ଏବଂ ଆମକୁ ନେବା ପାଇଁ ଗୋଟିଏ ନୌକା ମଧ୍ୟ ଅପେକ୍ଷା କରି ରହିଛି। ଚାଞ୍ଚଲ ଚାଲନ୍ତୁ।"

ଗୁରୁଦେବ କହିଲେ—"ବତ୍ସ ! ତୋର ବୀରତ୍ୱ ଅଦ୍ୱିତୀୟ ! ଚୌଲା, ତୁ ବଞ୍ଚିବା ବୋଧେ ପ୍ରଭୁ ଶମ୍ଭୁଙ୍କର ଇଚ୍ଛା। ତୁ ସାମନ୍ତ ସହିତ ଯା। ସାମନ୍ତ ! ମହାରାଜାଙ୍କୁ ମଧ୍ୟ ସଙ୍ଗରେ ନେ। ଯେବେ ସେ ବଞ୍ଚନ୍ତି, ତାହେଲେ ସେ ପ୍ରଭୁଙ୍କୁ ପ୍ରଭାସରେ ପୁଣି ସ୍ଥାପନ କରିବେ।"

ସାମନ୍ତ—ଠିକ୍, ଚାଞ୍ଚଲ ଚାଲନ୍ତୁ ! ଆଉ ବିମଳ ତୁମେ ?

ବିମଳ— ମୋ ସ୍ଥାନ ଦୁର୍ଗ ଭିତରେ।

ସାମନ୍ତ—ନାଁ, ଭୀମଦେବ ଯେଉଁଠାରେ ତୁମ ସ୍ଥାନ ସେହିଠାରେ। ଏପରିକି ତାଙ୍କର ଯେବେ ମୃତ୍ୟୁ ହୁଏ, ତାହାହେଲେ ସେ ମରିଛନ୍ତିବୋଲି ମଧ୍ୟ କେହି ଜାଣିବା ଉଚିତ ନୁହେଁ। ତାଙ୍କ ନାମରେ ଆମେ ହମୀରକୁ ଧ୍ୱଂସ କରିବାକୁ ହେବ। ତାଙ୍କ ବିନା ଗୁଜରାଟର ଶକ୍ତି ଭାଙ୍ଗି ପଡ଼ିବ। ମୋ ସହିତ ଆସ।

ଗୁରୁଦେବ ସମର୍ଥନ କରି କହିଲେ, "ବିମଳ, ସାମନ୍ତ ଠିକ୍ କଥା କହୁଛି। ଯେ ପର୍ଯ୍ୟନ୍ତ ମହାରାଜ ଏବଂ ତୁମେ ଜୀବିତ, ସେ ପର୍ଯ୍ୟନ୍ତ ଗୁଜରାଟ୍ ଧ୍ୱଂସ ସ୍ତୂପରୁ ମଧ୍ୟ ପୁଣି ଜୀଇ ଉଠିବ। ତୁମେହିଁ ହମୀର ସହିତ ପ୍ରକୃତ ସମର କରିପାରିବ। ଯାଅ !"

"କିନ୍ତୁ"·····ଅନିଚ୍ଛା ପ୍ରକାଶ ସୂଚକ ସ୍ୱରରେ କହିଲେ ବିମଳ।

ଗୁରୁଦେବ—କୌଣସି କିନ୍ତୁ ନାହିଁ । ଏହା ମୋର ଆଜ୍ଞା । ତୁମକୁ ଯିବାକୁହିଁ ହେବ ।

ବିମଳ— କିନ୍ତୁ···ଗୁରୁଦେବ···ଆପଣ ?

ଗୁରୁଦେବ—ମୋ ବିଷୟ ଭାବ ନାହିଁ । ଅଯଥା ସମୟ ନଷ୍ଟ କରନାହିଁ । ମୁଁ ଏହିଠାରେ ପ୍ରଭୁଙ୍କ ପାଦତଳେ ରହିବି ।

ସଙ୍ଗେ ସଙ୍ଗେ ସାମନ୍ତ ଓ ବିମଳ ଭୀମଦେବଙ୍କ ଦେହକୁ ଉଠାଇ ନେଇ ଚୌକି ସହିତ ପାର୍ଶ୍ୱ ଦ୍ୱାର ବାଟେ ଚାଲିଗଲେ ।

ଏତେବେଳେ ଗଙ୍ଗା କହିଲା, "ଗୁରୁଦେବ, ଆପଣ ସମସ୍ତଙ୍କ ବ୍ୟବସ୍ଥା କଲେ । ଆଉ ମୋ ବ୍ୟବସ୍ଥା ?"

ସର୍ବଜ୍ଞ – ତୋ ବ୍ୟବସ୍ଥା ପୁଣି କଣ ?

ଗଙ୍ଗା ତାଙ୍କ ପାଦତଳେ ପଡ଼ି କହିଲା, "ଆପଣ ମୋର ଜୀବନ, ମୋର ଗୁରୁ ଏବଂ ମୋର ପ୍ରଭୁ । ଆପଣଙ୍କ ପାଦତଳେ ହିଁ ଏପର୍ଯ୍ୟନ୍ତ ମୁଁ ରହିଆସିଛି । ଏହିଠାରେ ମରିବାକୁ ମୁଁ ଚାହେଁ ।"

ହଠାତ୍ ସବୁ ଦିଗରୁ ଆକାଶ ବିଦୀର୍ଣ୍ଣ କରିଭଳି "ଅଲ୍ଲା ହୋ ଆକ୍‌ବର" ଧ୍ୱନି ଶୁଣାଗଲା ।

ଗଙ୍ଗା କହିଲା, "ସମୟ ନଷ୍ଟ କରିବାକୁ ଆଉ ସୁଯୋଗ ନାହିଁ । ମୋର ଗୋଟିଏ ଅନୁରୋଧ ଅଛି । ଆପଣ ଏପର୍ଯ୍ୟନ୍ତ ନିଜ ହାତରେ କାହାକୁ ମାରି ନାହାନ୍ତି । କିନ୍ତୁ ମୁଁ ଯେବେ ନିଜ ହାତରେ ମରି ନ ପାରେ, ତାହାହେଲେ ଆପଣଙ୍କୁ ମତେ ମାରିବାକୁପଡ଼ିବ ।"

ସର୍ବଜ୍ଞଙ୍କ ଆବେଗ ଉଚ୍ଛ୍ୱଳି ଉଠିଲା । ଗଙ୍ଗା ମୁହଁରେ ସେ ଦେଖିଲେ ସ୍ୱର୍ଗୀୟ ଭକ୍ତି ଏବଂ ଆନୁଗତ୍ୟ । ସେ ନଇଁପଡ଼ି ସ୍ନେହରେ ଗଙ୍ଗା ମୁଣ୍ଡରେ ହାତ ଦେଇ କଲ୍ୟାଣ କରି କହିଲେ, "ଗଙ୍ଗା, ତୋର କୈଳାସପ୍ରାପ୍ତି ହେଉ ।"

ବାହାରୁ ଭୀଷଣ ଶବ୍ଦ ଶୁଣାଗଲା । ଶତ୍ରୁ ମନ୍ଦିରର ଦ୍ୱାରରେ ଆସି ପହଞ୍ଚିଗଲଣି । "ଆଲ୍ଲା ହୋ ଆକବର" ଧ୍ୱନି ଅଧିକରୁ ଅଧିକ ନିକଟବର୍ତ୍ତୀ ହୋଇଉଠିଲା । ଗଙ୍ଗା ତା ମୁଣ୍ଡରୁ ସୁନାର କଙ୍କତକା ଆଣି ତାର ତୀକ୍ଷ୍ଣ ଦାନ୍ତ ନିଜ ଗଳାରେ ଦାବି ଦେଲା । ତା ମୁହଁରୁ ଏକ ବିକଟ ଚିତ୍କାର ବାହାରିବା ପରେ ପରେ ପ୍ରାଣ ପକ୍ଷୀ ଉଡ଼ିଗଲା ।

ପରବର୍ତ୍ତୀ କେତେ ସମୟ ପର୍ଯ୍ୟନ୍ତ ପ୍ରଭାସରେ ଧ୍ୱଂସର ତାଣ୍ଡବଲୀଳା ଚାଲିଲା । କେହି ପ୍ରାୟ ଜୀବିତ ରହିଲେ ନାହିଁ । ପ୍ରତ୍ୟେକ ଘର ଲୁଣ୍ଠିତ

ହେଲା । ବହୁ ସଂଖ୍ୟକ ଘର ଜାଳି ପୋଡ଼ି ଦିଆଗଲା । କିନ୍ତୁ ହମୀରର ଆଦେଶ ଅନୁଯାୟୀ ଭିତର ଦୁର୍ଗରେ କେହି ପ୍ରବେଶ କଲେ ନାହିଁ । ସନ୍ଧ୍ୟାବେଳେ ହମୀର ନିଜେ ଭିତରକୁ ଗଲା ଏବଂ ଅବଶିଷ୍ଟ ରାଜପୁତ୍ରମାନେ ତାର ତରବାରର ଶିକାର ହେଲେ । ଭିତର ଦୁର୍ଗର ମଣ୍ଡପ ଦ୍ୱାର ଭାଙ୍ଗି ଦେବାକୁ ହମୀର ଆଦେଶ ଦେଲା । କାମ ଅବଶ୍ୟ କଷ୍ଟକର । ଦ୍ୱାରରେ ଥିବା ଜଞ୍ଜିର ଛିଣ୍ଡାଇଦିଆଗଲା ।

ଜଣେ ସାଧୁ ତା'ର ବାଟ ବନ୍ଦ କରି ଦଣ୍ଡାୟମାନ ରହିଥିବା ଦେଖି ହମୀର ଆଶ୍ଚର୍ଯ୍ୟ ହୋଇଗଲା । ଦୁଇ ହାତ ମେଲି ଶିବରାଶି ଦ୍ୱାର ଜଗିଥାନ୍ତି । ଶିବରାଶି ଉଚ୍ଚ ସ୍ୱରରେ କହିଲେ, "ହମୀର, ଅପେକ୍ଷା କର । ମୁଁ ତୁମକୁ ଏଠାକୁ ଆଣିଛି ।" ଜଣେ ନିରସ୍ତ୍ର ସାଧୁ ତାର ଜୀବନର ସର୍ବଶ୍ରେଷ୍ଠ ଆକାଂକ୍ଷା ଏବଂ ତା ମଧ୍ୟରେ ପଥ ରୋଧ କରି ଠିଆହୋଇଛି । ହମୀର ତାଚ୍ଛଲ୍ୟରେ ହସି ଉଠିଲା ।

"ତିଲକ, ଏ କଣ କହୁଛି ?" ହମୀର ପଚାରିଲା ।

ତିଲକ୍ ଶିବରାଶିଙ୍କର ବକ୍ତବ୍ୟକୁ ଅନୁବାଦ କରି କହିଲା, "ଜାହାଁପନା ! ସେ କହୁଛି, ଆମ ଲୋକମାନଙ୍କୁ ସେ ସୁଡ଼ଙ୍ଗପଥ ଦେଖାଇ-ଦେଇଥିବାରୁ ତାର ଦେବତା ଓ ତା ନଗର କୌଣସି କ୍ଷତି ହେବ ନାହିଁ ବୋଲି ତାକୁ ଜବାବ୍ ଦିଆଯାଇଥିଲା । ଆପଣ ଯେତେ ପରିମାଣର ଅର୍ଥ ଚାହିଁବେ ସେ ତାହା ଦେବାକୁ ପ୍ରସ୍ତୁତ ଅଛି ।"

ହମୀର ଅଟ୍ଟହାସ୍ୟ କରି କହିଲା, "କାଫେର୍, ମହମ୍ମଦ ମୂର୍ତ୍ତି ବିକେ ନାହିଁ—ସେ ମୂର୍ତ୍ତି ଭାଙ୍ଗେ ।" ତରବାରିରେ ଶିବରାଶିଙ୍କୁ ଆଘାତ କରି ସେ ମନ୍ଦିରକୁ ପଶିଲା ।

ହମୀରର ସୈନ୍ୟମାନେ ଏ ଘଟଣା ଦେଖି ହମୀର ସହିତ ହସରେ ଯୋଗଦେଲେ ଓ ଭୂପତିତ ଶିବରାଶିର ଦେହକୁ ତାଚ୍ଛଲ୍ୟରେ ଥରେ ଚାହିଁଦେଇ ଆଗକୁ ଚାଲିଲେ ।

ହମୀର ମନ୍ଦିର ଭିତରେ ପ୍ରବେଶ କରି ଯାହା ଦେଖିଲା ସେଥିରେ ତାର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । କୌଣସି ମଣିଷ ନ ଥିଲେ ସୁଦ୍ଧା ମଣ୍ଡପର ସବୁଯାକ ଦୀପ ଜଳୁଛି ଏବଂ ଖମ୍ବମାନଙ୍କରେ ଥିବା ହୀରା ମାଳା ଝଲସି ଉଠୁଛି । ହମୀର ଅନେକ ମନ୍ଦିର ନଷ୍ଟ କରିଛି, କିନ୍ତୁ ଏପରି ଆଶ୍ଚର୍ଯ୍ୟଜନକ ଦୃଶ୍ୟ କେବେ ଦେଖିନାହିଁ ।

ଏହି ଚମତ୍କାର ଦୃଶ୍ୟରେ ସେ ମୁହୂର୍ତ୍ତକ ପାଇଁ ସ୍ତମ୍ଭୀଭୂତ ହୋଇଗଲା । ଅବଶେଷରେ ଗୁରୁଦେବ ଗଙ୍ଗସବଙ୍କଙ୍କ ଉପରେ ତାର ଆଖି ପଡ଼ିଲା । ଯେଉଁ ପ୍ରଭାସ ତୀର୍ଥ ହଜାର ହଜାର ବୀର ରାଜପୁତ୍ରଙ୍କ ତ୍ୟାଗରେ ପବିତ୍ର ହୋଇଥିଲା, ଯେଉଁ ଅପୂର୍ବ ମନ୍ଦିର ଶତାବ୍ଦୀ ଶତାବ୍ଦୀ ବ୍ୟାପୀ କେତେ ଝଡ଼ ଝଞ୍ଜାର ସମ୍ମୁଖୀନ ହୋଇ ରହିଆସିଥିଲା, ସେହି ମନ୍ଦିରରେ ଗୁରୁଦେବ ଏକାକୀ ପ୍ରଭୁଙ୍କ ଆରାଧନା କରୁଥାନ୍ତି । ସଂସାର ଧ୍ୱଂସ ହୋଇ ଯାଇ ପାରେ, କିନ୍ତୁ ତାଙ୍କ ପାଇଁ ତାଙ୍କର ପ୍ରଭୁହିଁ ସବୁକିଛି ।

ଏହି ବୃଦ୍ଧଙ୍କର ଶକ୍ତିଶାଳୀ ବ୍ୟକ୍ତିତ୍ୱରେ ହମୀର ପ୍ରଭାବିତ ନ ହୋଇ ରହି ପାରିଲା ନାହିଁ । ହମୀର ନୀରବରେ ଠିଆ ହୋଇ ଦେଖୁଥାଏ ।

ପୂଜା ଶେଷ ହେବା ପରେ ଗୁରୁଦେବ ଦୀପଟି ତଳକୁ ରଖିଲେ; ତା ପରେ ସେ ମଣ୍ଡପ ଦ୍ୱାରରେ ଦୃଢ଼ ଭାବରେ ଠିଆ ହେଲେ ।

ହମୀର କ୍ରୋଧରେ ଅଧର କାମୁଡ଼ି କହିଲା, "ବୁଢ଼ା, ଉଠ !" ତାର ହାତର ନିର୍ଦ୍ଦେଶରୁ ଗୁରୁଦେବ ତାର କହିବା କଥା ବୁଝିପାରିଲେ ।

ଗୁରୁଦେବ ନିଜ ସ୍ଥାନରୁ ତିଳେହେଁ ନ ଘୁଞ୍ଚି କହିଲେ, "ମ୍ଳେଚ୍ଛ, ମୋ ପ୍ରଭୁ ଭୋଳାନାଥ ଏବଂ ମୁଁ ସର୍ବଦା ଏକ ସ୍ଥାନରେ । ପ୍ରଳୟ କାଳରେ ମଧ୍ୟ ଏକ ହୋଇ ରହିଥିବୁ ।" ଗୁରୁଦେବ ତାଚ୍ଛଲ୍ୟରେ ହସିଲେ ।

ହମୀର କୌଣସି ବିଷୟ ଆଲୋଚନା କରିବା ଅବସ୍ଥାରେ ନ ଥିଲା । ତରବାରିର ଏକ ପ୍ରହାରରେ ସେ ଗୁରୁଦେବଙ୍କ ମୁଣ୍ଡକୁ ଶରୀରରୁ ଛିନ୍ନ କରିଦେଲା ।

ହମୀର କ୍ରୁଦ୍ଧ ପଡ଼ି ମଣ୍ଡପ ମଧ୍ୟକୁ ଯାଇ ଦୀର୍ଘ ନିଶ୍ୱାସ ଛାଡ଼ିଲା । ତା'ପରେ ପାଖରେ ଥିବା ସୈନ୍ୟଠାରୁ ଗୋଟିଏ ଗଦା ନେଇ ଓ ତାହାକୁ ବୁଲାଇ ଶିବଲିଙ୍ଗ ଉପରେ ସମସ୍ତ ଶକ୍ତି ସହ ପ୍ରହାର କଲା ।

ପରମ୍ପରା କ୍ରମେ ପୂଜାପାଉଥିବା ଶିବଲିଙ୍ଗ ଛିନ୍ନଖଣ୍ଡ ହୋଇଗଲେ ।

× × × ×

ଆକାଶରେ ଆସ୍ତେ ଆସ୍ତେ ଚନ୍ଦ୍ର ଉଠିଲେଣି । ରାତି ଅଧରୁ ବେଶୀ ହେଲାଣି । ପ୍ରଭାସରେ ପଡ଼ିଥିବା ଶବମାନଙ୍କ ଉପରେ ଶାଗୁଣା ବେଢ଼ିଛନ୍ତି । ଆହତ ଲୋକଙ୍କର ଆର୍ତ୍ତନାଦ ଏକ ଭୟାବହ ଦୃଶ୍ୟ ସୃଷ୍ଟି କରୁଥାଏ । ପ୍ରଭାସ ଶବ ଗନ୍ଧରେ ଭରିଯାଇଥାଏ ।

ମୃତ ଓ ଆହତ ବ୍ୟକ୍ତିଙ୍କ ସ୍ତୂପ ଭିତରୁ ଦୀର୍ଘ କେଶ ବିଶିଷ୍ଟ ଜଣେ ଲୋକ ଉଠିଲା । ତାର ଗୃହବାର ଠିକଣା ନ ଥାଏ । ତାକୁ କିଛି ଦେଖାଯାଉ ନଥାଏ । ଶବ ଉପର ଦେଇ ସେ ପଡ଼ି ଉଠି ମନ୍ଦିରର ମଣ୍ଡପରେ ପ୍ରବେଶ କଲା । ଅନ୍ଧକାରରେ ମୂର୍ତ୍ତି ଖୋଜିଲା । କିନ୍ତୁ ପାଇଲା ନାହିଁ । ବଡ଼ ବଡ଼ ଆଖି କରି ଚାରିଆଡ଼େ ଚାହିଁଲା । ଶେଷରେ ତା ହାତରେ ଶିବଲିଙ୍ଗର ଭଙ୍ଗା ଅଂଶ ଖଣ୍ଡେ ପଡ଼ିଲା ।

ସେ ବାହାରକୁ ପଳାଇ ଆସିଲା । ହଠାତ୍ ତାର ପାଦରେ କଣ ବାଜିଲା । ତାହାକୁ ଉଠାଇ କଣ ଜାଣିବା ପାଇଁ ଚନ୍ଦ୍ର କିରଣରେ ଦେଖିବାକୁ ଚେଷ୍ଟା କଲା । ଗୁରୁଙ୍କର ସେହି ଚକ୍ଷୁ, ମୁହଁ, ଶୁଭ୍ର ଦାଢ଼ି ଚିହ୍ନିପାରିଲା । "ଓଁ" କହି ସେ ଚିତ୍କାର କରିଉଠିଲା । ହାତରେ ଧରିଥିବା ମୁଣ୍ଡକୁ ପକାଇ ଦେଇ ଦୁଇ ହାତରେ ନିଜ ଆଖିକୁ ବୁଜି ଧରିଲା ।

ତା'ପରେ ସେ ଦରବୁଜା ଆଖିରେ ଉପରକୁ ଅନାଇଲା । ସେ କଳ୍ପନାରେ ଦେଖିଲା, ମଣି ମାଣିକ୍ୟ ଖଚିତ ମଣ୍ଡପରେ ବସି ଗୁରୁଦେବ ପୂଜା କରୁଛନ୍ତି । ତା' ପରେ ସେ ପ୍ରକୃତିସ୍ଥ ହୋଇ ଆଖି ଖୋଲି ଚାରିଆଡ଼କୁ ଚାହିଁଲା ଓ ବିକଳରେ କାନ୍ଦିଉଠିଲା । ସେ ଦୁଇ ହାତରେ ଗୋଟିଏ ଶିଳାସ୍ତମ୍ଭକୁ କୁଣ୍ଢାଇ ଧରି ନିଜ ମୁଣ୍ଡ ପିଟିବାରେ ଲାଗିଲା ।

ସେ ଭୂପତିତ ହେଲା ।

ତାର ଶବ ଉପରେ ମଧ୍ୟ ଶାଗୁଣା ବେଢ଼ିଗଲେ ।

୫୦

# ଭ୍ରାନ୍ତଧାରଣା ଦୂର ହେଲା

ସାମନ୍ତ ଏବଂ ମନ୍ତ୍ରୀ ବିମଳ ଖାଗ୍ର ଓ ନାଗ୍ର ସାହାଯ୍ୟରେ ଚେତନାହୀନ ଭୀମଦେବ ଓ ଚୌଳାକୁ ସେମାନଙ୍କୁ ନେବାକୁ ଅପେକ୍ଷା କରି ରହିଥିବା ବୋଇତ ନିକଟକୁ ଆଣିଲେ । ଭୀମଦେବଙ୍କ ଦେହର ବହୁ ସ୍ଥାନରେ କ୍ଷତ ହୋଇଥିଲା । କିନ୍ତୁ ଭଲଭାବରେ ଦେଖିବାରୁ କୌଣସି କ୍ଷତ ଜୀବନକୁ ବିପନ୍ନ

କରିବା ଭଳି ଗୁରୁତର ମନେହେଲା ନାହିଁ । ଏହା ଦେଖି ସମସ୍ତେ ଆଶ୍ୱସ୍ତ ହେଲେ ।

ରାଓ କାମାଲଖାମ୍, ସାମନ୍ତ ଏବଂ ବିମଳ ତିନିଜଣଯାକ ସବୁ ଦିଗରୁ ଅବସ୍ଥା ଆଲୋଚନା କଲେ । ନିଷ୍ପତ୍ତି ହେଲା, ମହାରାଜ ଭୀମଦେବ ଜୀବିତ ଥାଇ ହମୀର ସହିତ ଯୁଦ୍ଧ ଚଳାଇ ରଖିଛନ୍ତି ବୋଲି ଲୋକଙ୍କୁ ଜଣାଇ ଦିଆ ନ ଗଲେ ପାଟଣର ସାମରିକ ଶକ୍ତି ଉପରେ ବିଶେଷ ଆଞ୍ଚ ଆସିବ । ହୁଏତ ଏହା ବି ନଷ୍ଟ ହୋଇଯାଇ ପାରେ । ମହାରାଜ କୁଶଳରେ ରହି ଯୁଦ୍ଧ ଚଳାଇ ରଖିଛନ୍ତି ବୋଲି ଲୋକଙ୍କ ମନରେ ନିଃସନ୍ଦେହ ଧାରଣା ସୃଷ୍ଟି କରିବା ଉଦ୍ଦେଶ୍ୟରେ ରାଓ କାମା ଭୀମଦେବଙ୍କୁ ଗୁପ୍ତରେ ନେଇଯିବା ପାଇଁ ସ୍ଥିର ହେଲା । ଏହା ମଧ୍ୟରେ ସାମନ୍ତ ଓ ବିମଳ ଖମ୍ଭାତକୁ ଯାଇ ଚୌଳାକୁ ସେଠାରେ ଛାଡ଼ିବେ ଓ ଦାମୋଦର ମେହେତାଙ୍କ ନିକଟକୁ ଯାଇ ହମୀର ସହ ଯୁଦ୍ଧ ଚଳାଇ ରଖିବାରେ ସାହାଯ୍ୟ କରିବେ ।

ଚୌଳା ପ୍ରଭାସ ଛାଡ଼ିବା ଦିନଠାରୁ ଅଦ୍ଭୁତ ବ୍ୟବହାର କରୁଥାଏ । ତା'ର ଚାରିପାଖରେ ଘଟିଯାଉଥିବା ଘଟଣାମାନ ସେ କିଛି ଜାଣି ପାରୁ ନ ଥାଏ । ସେ ଯେଉଁଠି ବସିଛି ତ ବସିଛି । ଚାଲିଲାବେଳେ ଯନ୍ତ୍ରଚାଳିତଭଳି ଚାଲୁଛି । ସମୟେ ସମୟେ ଏକ ନିର୍ଜୀବ ପ୍ରାଣୀପରି ଭୀମଦେବଙ୍କ ପାଖରେ ଚୁପ୍‌ଚାପ୍ ବସୁଛି ।

ସେ ନିର୍ଜୀବ ପରି ବ୍ୟବହାର କରୁଥିଲେ ମଧ୍ୟ କେବଳ ପ୍ରଭୁ ସୋମନାଥଙ୍କ କଥା ପଡ଼ିଲେ ସେ ଆଗ୍ରହ ପ୍ରକାଶ କରି ସେଆଡ଼କୁ ମନ ଦେଉଛି । ସାମନ୍ତ ଛଡ଼ା ଅନ୍ୟ କେହି ତା' ପାଖରେ ରହିଲେ ତାକୁ ଭଲ ଲାଗୁନାହିଁ । ତାକୁ ଖମ୍ଭାତ ଯିବାକୁ କୁହାଯିବାରୁ ସେ କୌଣସି ଆପତ୍ତି କଲାନାହିଁ କିମ୍ବା ଭୀମଦେବଙ୍କୁ ଛାଡ଼ି କାନ୍ତାକୋଟକୁ ନିଆଯିବ ବୋଲି କୁହାଯିବାରୁ କିଛି ମତ ପ୍ରକାଶ କଲାନାହିଁ ।

ଅଶ୍ରୁବିହୀନା ଓ କେବଳ ହାହୁତାଶମୟୀ ଚୌଳାକୁ ଖମ୍ଭାତ୍ ରାଜ-ପ୍ରାସାଦରେ ରଖାଗଲା । ଭୀମଦେବ ମହାରାଜାଙ୍କ ରାଣୀଙ୍କର ଯେଉଁ ରାଜକୀୟ ଆଡ଼ମ୍ବର ଓ ସମ୍ମାନ ପ୍ରାପ୍ୟ ସେ ସବୁ ତାକୁ ଦିଆଗଲା । ତେବେ ସୁଦ୍ଧା ସେ କୌଣସିଥିରେ ଆଗ୍ରହ ପ୍ରକାଶ କଲା ନାହିଁ । ଯେତେବେଳେ ସେ ମନକୁମନ "ମୋର ପ୍ରଭୁ", "ମୋର ଭୋଳାନାଥ" ବୋଲି ଗୁଣୁ ଗୁଣୁ ହୁଏ, ସେତିକି-ବେଳେ କେବଳ ତାହା ମୁଖରେ କିଛି ଭାବ ପ୍ରକାଶର ଚିହ୍ନ ଦେଖାଦିଏ ।

ଗଗନ ରାଣୀ ତାଙ୍କୁ ଦେଖିବାକୁ ଆସିବାବେଳେ ମୁହୂର୍ତ୍ତିକ ଲାଗି ତାହାର ଆଖି ଉଜ୍ଜ୍ୱଳ ହୋଇଗଲା । ଗଗନରାଣୀ ଗୁରୁଦେବଙ୍କର ଜୀବନାବସାନ କଥା ଚୌଳାକୁ କହିଲେ ଏବଂ ତାହା ଶୁଣି ସେ ଦୁଃଖରେ ଭାଙ୍ଗିପଡ଼ି କାନ୍ଦିଉଠିଲା ।

ଚୌଳା ସାଧାରଣତଃ କଥା କହେ ନାହିଁ କି କାନ୍ଦେ ନାହିଁ । କେବଳ ଦିଗ୍‌ବଳୟକୁ ଏକ ଲୟରେ ଚାହିଁରହି ବସିଥାଏ ।

ସାମନ୍ତ ଓ ବିମଳ ତାହାଠାରୁ ବିଦାୟ ନେବାକୁ ଆସିବାରୁ ସେ ନୀରବରେ ସେମାନଙ୍କୁ ବିଦାୟ ଦେଲା । ଗଗନରାଣୀ ପ୍ରତି ଦୁଇ ତିନି ଦିନରେ ଥରେ ଚୌଳା ନିକଟକୁ ଆସୁଥିଲେ ଓ ତାହା ସହିତ କଥାବାର୍ତ୍ତା କଲାବେଳେ ତାଙ୍କର ମନେହୁଏ ଯେପରି ବର୍ତ୍ତମାନ ସେ ଦିବାସ୍ୱପ୍ନରୁ ଉଠିଛି ।

ପାଶୁପତ ସମ୍ପ୍ରଦାୟର କେନ୍ଦ୍ର ଖମ୍ଭାତ୍‌ରେ ସ୍ଥାପନ କରିବେ ଏବଂ ସେଠାରେ ପ୍ରଭୁ ସୋମନାଥଙ୍କ ମନ୍ଦିର ନିର୍ମାଣ କରିବେ ବୋଲି ଦିନେ ଗଗନରାଣୀ ଚୌଳାକୁ କହିଲେ । ଏହା ଶୁଣି ଚୌଳାର ମୁହଁ କ୍ରୋଧରେ ଲାଲ ହୋଇ ଉଠିଲା ଏବଂ ସେ ପ୍ରତିବାଦ କରି କହିଲା, "ଗଗନରାଣୀ ! ମୋର ଭୋଳାନାଥ ପ୍ରଭାସରେ ଅଛନ୍ତି । ଭୋଳାନାଥ ତ ଦୁଇ ନୁହନ୍ତି !" ଏହି ପ୍ରସ୍ତାବ ପ୍ରତି ଚୌଳାର ପ୍ରତିକ୍ରିୟା ଦେଖି ଗଗନରାଣୀ ବିସ୍ମିତ ହୋଇଗଲେ ଓ ସେହିଦିନଠାରୁ ସେ ବିଷୟ ଆଉ କେବେ ଉତ୍‌ଥାପନ କଲେ ନାହିଁ ।

ଆଉ ଥରେ ଗଗନରାଣି ନର୍ତ୍ତକୀ ବାଳିକାମାନଙ୍କ ବିଷୟରେ କଥାବାର୍ତ୍ତା କରିବାରେ ଚୌଳା ପଚାରିଲା, "ରାଣୀଜୀ, ମୁଁ ଯେଉଁଭଳି ଲୁଗାପଟା ଓ ଗହଣା ପିନ୍ଧୁଥିଲି ତାହା ଏଠାରେ ମିଳିବ ?"

ଗଗନରାଣି ଉତ୍ତର ଦେଲେ, "ନିଶ୍ଚୟ ମିଳିବ" । ତା ପରଦିନ ଚୌଳା ନିକଟରେ ସୁନ୍ଦର ସୁନ୍ଦର ବସ୍ତ୍ର ଓ ମୁକ୍ତା-ପଥରବସା ଅଳଙ୍କାର ଆସି ପହଞ୍ଚିବାରୁ ସେ ଖୁବ୍ ଖୁସି ହେଲା । ପ୍ରଥମ ଥର ପାଇଁ ରାଣୀ ଖୁସି ହେବା ଦେଖି ପ୍ରାସାଦର ଭୃତ୍ୟମାନେ ଆନନ୍ଦ ଅନୁଭବ କଲେ । କିନ୍ତୁ ଚୌଳାର ଏହି ଆନନ୍ଦ କ୍ଷଣକ ଲାଗି । ପରବର୍ତ୍ତୀ କିଛି ଦିନ ପର୍ଯ୍ୟନ୍ତ ଚୌଳା କାହାରି ସହିତ କିଛି କଥାବାର୍ତ୍ତା ନକରି ଏକ ଲୟରେ ଏକ ନିର୍ଜୀବ ମୂର୍ତ୍ତି ପରି ସମୁଦ୍ରକୁ ଚାହିଁ ରହିଥାଏ । ସନ୍ଧ୍ୟା ହେଲେ ବସ୍ତ୍ର ଓ ଅଳଙ୍କାର ବାହାର କରେ ଏବଂ ପଲଙ୍କଉପରେ ବିଛାଇ ଦେଖେ । ଯେପରି ସେ କାହାକୁ ଅପେକ୍ଷା କରୁଛି—ସେହିପରି ରାତି ଅଧ ପର୍ଯ୍ୟନ୍ତ ବସି ରହେ । ତାହାପରେ ଠିଆ ହୋଇ ଯାଇ ଏକ ଦୀର୍ଘ ନିଃଶ୍ୱାସ ନେଇ ସେଗୁଡ଼ିକୁ ସଜାଡ଼ି ବନ୍ଦ କରି ରଖେ । ଠିକ୍ ନିୟମ ଅନୁସାରେ ଏପରି କିଛିଦିନ ଚାଲିଲା ।

ପ୍ରାସାଦର ଭୃତ୍ୟମାନଙ୍କ ମଧ୍ୟରେ ଏହା ଅଦ୍ଭୁତ ଆଗ୍ରହ ସୃଷ୍ଟି କରି ଆଲୋଚନାର ବିଷୟ ହୋଇପଡ଼ିଲା ।

କାଳେ ଚୌଲ ମନରେ କୌଣସି ପରିବର୍ତ୍ତନ ଆସିପାରେ ସେହି ଆଶାରେ ଗଗନରାଣୀ ଏବଂ ଭୃତ୍ୟମାନେ ପ୍ରତିଦିନ ନୂତନ ପ୍ରସଙ୍ଗରେ କଥାବାର୍ତ୍ତା କରିବାକୁ ଚେଷ୍ଟା କରୁଥାନ୍ତି । ହମୀରର ସୈନ୍ୟବାହିନୀର ଆଗ୍ରହ ଓ ଉତ୍ସାହ ନଷ୍ଟ ହୋଇଗଲାଣି—ତାର ସୈନ୍ୟମାନେ ନିଜ ଘରକୁ ଫେରିଯିବା ପାଇଁ ବ୍ୟାକୁଳ ହେଲେଣି—ହମୀର ପାଟଣକୁ ପୁନର୍ବାର ଦଖଲ କରି ସେଠାରେ ସ୍ଥାୟୀ ଭାବେ ନିଜ ଆସ୍ଥାନ ଜମାଇବାକୁ ଠିକ୍ କରିଛି ; କିନ୍ତୁ ସୈନ୍ୟବାହିନୀ କାଳେ ବିଦ୍ରୋହ କରିଦେବେ ଏହି ଭୟରେ ପଡ଼ି କଣ କରିବ ତାହା ସେ ସ୍ଥିର କରିପାରୁ ନାହିଁ—ସେ ଫେରିଯିବାକୁ ବସିଲାଣି—ଇତ୍ୟାଦି କେତେ ପ୍ରସଙ୍ଗ ଉତ୍ଥାପନ କରି ଚୌଲକୁ କଥୋପକଥନ ପାଇଁ ଆକୃଷ୍ଟ କରିବାକୁ ଚେଷ୍ଟା କରାଗଲା ।

ଯେତେ ପ୍ରକାର ଜନରବ ଶୁଣାଯାଉଥାଏ ତାହା ମଧ୍ୟ ସେମାନେ ଚୌଲକୁ ଜଣାନ୍ତି । ସାମନ୍ତକୁ ପ୍ରଭୁ ସୋମନାଥ ଅଦ୍ଭୁତ ଶକ୍ତି ଦେଇଛନ୍ତି ବୋଲି ବିଶ୍ୱାସ କରାଯାଉଛି—ସେ ଦେଶର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ବୁଲୁଛି । ଘୋଘାବାପାଙ୍କର ବୀରତ୍ୱ କାହାଣୀ ଦେଶର ଘରିଆଡ଼େ ପ୍ରଚରିତ ହୋଇଛି, ତେଣୁ ସେ ଯେଉଁଠାକୁ ଯାଉଛି ସେଠାରେ ଲୋକଙ୍କ ମଧ୍ୟରେ ଅଦ୍ଭୁତ ଉତ୍ସାହ ସୃଷ୍ଟି ହେଉଛି—ପ୍ରଭୁ ସୋମନାଥଙ୍କ କୃପାରୁ ସାମନ୍ତକୁ ଦିନ ବା ରାତି, ଭୋକ ବା କ୍ଳାନ୍ତ ଜଣା ପଡ଼ୁ ନାହିଁ—ତାଙ୍କର ଏକମାତ୍ର ଲକ୍ଷ୍ୟ ହମୀରକୁ ଧ୍ୱଂସ କରିବା—ଏହିପରି ଲୋକ ମୁଖରେ ପ୍ରଚରିତ କଥାମାନ ଚୌଲ କାନରେ ପକାଗଲା ।

ତାହାପରେ କେତେଗୁଡ଼ିଏ ଘଟଣା ଘଟିଲା, ଯାହା ଫଳରେ କି ପ୍ରତି ଗୁଜରାଟୀ ପ୍ରାଣରେ ନୂତନ ଭାବରେ ଆଗ୍ରହ, ଉତ୍ସାହ ଓ ଆଶା ଦେଖାଦେଲା । ଉଜ୍ଜୟିନୀ ଓ ମାରୱାଡ଼ର ସୈନ୍ୟବାହିନୀ ସାହାଯ୍ୟ ଦେବାକୁ ଆସି ପହଞ୍ଚିଲେ । ସାମନ୍ତ ନିଜେ ଯୋଦ୍ଧାମାନଙ୍କୁ ଅନୁପ୍ରାଣିତ କରି ସାଙ୍ଗରେ ଆଣିଥିଲେ । ଅନ୍ୟ ରାଜପୁତ ଶାସକମାନେ ମଧ୍ୟ ଗୁଜରାଟକୁ ପୂର୍ଣ୍ଣ ପ୍ରାଣରେ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଲେ । ଏହା ଫଳରେ ପାଟଣଠାରୁ ନଳକଣ୍ଠା ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳ ଗୁଜରାଟ ବା ତାହାର ମିତ୍ର ସୈନ୍ୟବାହିନୀ ପୁନର୍ବାର ଦଖଲ କରି ନେଲେ ।

ଏସବୁ କଥା ଶୁଣି ମଧ୍ଧ ଗ୍ଭୈଲାର କୌଣସି ଆଗ୍ରହ ପ୍ରକାଶ ପାଇଲା ନାହିଁ । ସେ ତା' ପାଖକୁ ଯାଉଥିଲା ଚୌଳା ତାକୁ ଆବାକାବା ହୋଇ ଗୁହିଁ, ଆଗନ୍ତୁକର କଥା ଶୁଣୁଥିଲା । କଥା ସାରିବା ପରେ ପରେ ସେ ଏକ ଦୀର୍ଘ ନିଶ୍ୱାସ ମାରି ଏକ ଲୟରେ ସମୁଦ୍ର ଆଡ଼କୁ ପୁଣି ଗୁହିଁରହୁଥିଲା ।

ଏହିପରି ଗ୍ଭବେ ଦୁଇମାସ ବିତିଗଲା । ଦିନେ ଗ୍ଭୈଲା ଖାଇସାରିବା ପରେ ବାନ୍ତି କଲା । ପରବର୍ତ୍ତୀ ପନ୍ଦର ଦିନ ପର୍ଯ୍ୟନ୍ତ ଏହିପରି ବାନ୍ତି ହେଲା । ଅନ୍ତଃସତ୍ତ୍ୱା ହୋଇଥିବା ଅନୁଭବ କରିବାର ପରମୁହୂର୍ତ୍ତରେ ସେ ଚିତ୍କାର କରି ଅଜ୍ଞାନ ହୋଇ ପଡ଼ିଗଲା ।

ଜ୍ଞାନ ଆସିବା ପରେ ଗ୍ଭୈଲାର ଆଖିରୁ ଅନବରତ ଲୁହ ଝରିଲା । ସେ ଏବେ ବୁଝିଲା ଯେ ସେ ପାଣ୍ଡୁ ନୁହେ, କି ଭୀମଦେବ ପ୍ରଭୁ ସୋମନାଥ ନୁହନ୍ତି । ସେ ତାର ପ୍ରକୃତ ପ୍ରଭୁଙ୍କୁ ବିବାହ କରିନାହିଁ । ସାମୟିକ ଦୁର୍ବଳତାରେ ବଶବର୍ତ୍ତୀ ହୋଇ ସେ ନିଜ ପ୍ରଭୁଙ୍କ ପ୍ରତି ବିଶ୍ୱାସଘାତକତା କରିଛି ଓ ଜଣେ ସାମାନ୍ୟ ମନୁଷ୍ୟକୁ ବିବାହ କରି ଏବେ ସନ୍ତାନର ମାଆ ହେବାକୁ ଯାଉଛି ।

ନିଜର ଏହି ଭୁଲ କାର୍ଯ୍ୟ ଯୋଗୁଁ ଅନୁତପ୍ତା ହୋଇ ଗ୍ଭୈଲାର ଆଖିରୁ ଅନବରତ ଲୁହ ବହିବାକୁ ଲାଗିଲା । ଯେଉଁ ରାତିରେ ସେ ତାର ଜୀବନର ସର୍ବଶ୍ରେଷ୍ଠ ସୁଖ ପାଇଛି ବୋଲି ଅନୁଭବ କରିଥିଲା, ସେହି ରାତିର କଥା ତାର ମନକୁ ବାରମ୍ବାର ଆସିଲା । ସେ ଭ୍ରଷ୍ଟା, ସେ ନିଜକୁ ପ୍ରଭୁଙ୍କୁ ଉତ୍ସର୍ଗ କରିଥିଲେ ସୁଦ୍ଧା, ପୁଣି ଏକ ମନୁଷ୍ୟକୁ ପୁନର୍ବାର ଦେହ ଉତ୍ସର୍ଗ କରି ସବୁଠାରୁ ହୀନ ପ୍ରାଣୀରେ ପରିଣତ ହୋଇଛି ଓ ସେହି ଅସତ୍ କାର୍ଯ୍ୟର କଳଙ୍କ ସେ ନିଜ ଶରୀରରେ ଧରି ରଖିଛି । ଏହି ଚିନ୍ତାରେ ଗ୍ଭୈଲା ଅତ୍ୟନ୍ତ ବ୍ୟଥିତା ହେଲା ।

ସେ ଯେପରି ସବୁବେଳେ ସମୁଦ୍ର ଦେଖିପାରିବ ସେହି ଉଦ୍ଦେଶ୍ୟରେ ସମୁଦ୍ର ଦିଶୁଥିବା ଝିଡ଼କି ପାଖରେ ନିଜର ବିଛଣା ଆଣି ପକାଇଥାଏ । ପ୍ରତିଦିନ ସନ୍ଧ୍ୟାବେଳେ ଦାସୀମାନଙ୍କଠାରୁ ନର୍ତ୍ତକୀର ବେଶଭୂଷା ଆଣି ଦେଖେ ଓ ରାତି ଅଧ ପରେ ସେ ସବୁକୁ ପୁନର୍ବାର ସଜାଡ଼ି ରଖିଦିଏ ।

× × ×

ପ୍ରଭାସର ଯୁଦ୍ଧକ୍ଷେତ୍ରରେ ଅବସ୍ଥା କ୍ରମେ ବଦଳିଲା । ପ୍ରତିଦିନ ଉତ୍ସାହଜନକ ସମ୍ବାଦମାନ ଶୁଣାଗଲା । କିନ୍ତୁ ଏସବୁ କୌଣସି ଘଟଣାରେ ଚୌଳା ଆଗ୍ରହ ପ୍ରକାଶ କଲାନାହିଁ ।

ହିନ୍ଦୁ ଶାସକମାନଙ୍କର ସୈନ୍ୟବାହିନୀ ଅଗ୍ରଗତି କରିବାକୁ ଲାଗିଲେ । ଫଳରେ ହମୀର କଚ୍ଛ ବାଟ ଦେଇ ଗଜନୀକୁ ଫେରି ଯିବାକୁ ମନସ୍ଥ କଲା । ପ୍ରଭାସ କ୍ଷେତ୍ର ଧ୍ୱଂସକରି ଓ ପ୍ରଭୁ ସୋମନାଥଙ୍କ ମୂର୍ତ୍ତି ସେ ଭାଙ୍ଗି ଜୀବନର ଲକ୍ଷ୍ୟ ହାସଲ କରିଥିଲେ ସୁଦ୍ଧା, ପ୍ରକୃତରେ ତାର କଣ ଲାଭ ହୋଇଛି ? ଉଚ୍ଚ ଆଶା ପୋଷଣ କରି ସେ ଅଭିଯାନ ଚଳାଇଥିଲା, କିନ୍ତୁ ତାହା ନିଷ୍ଫଳ ମନେହେଉଛି । ଭୀମଦେବ ଓ ଗର୍ଓ କାମା ଲଖାନିଙ୍କ ନେତୃତ୍ୱରେ ହିନ୍ଦୁ ସୈନ୍ୟମାନେ ତା ପଛରେ ଲାଗିଛନ୍ତି ଓ ସେ ପଳାଇଯାଉଛି ।

ଦୀପାବଳୀ ଆସିବା ସଙ୍ଗେ ସଙ୍ଗେ ସେ ସମୟର ସର୍ବଶ୍ରେଷ୍ଠ ସମ୍ବାଦ ଆସି ପହଞ୍ଚିଲା—ମହାରାଜ ହମୀରକୁ କଚ୍ଛ ବାଟେ ବିତାଡ଼ିତ କରି ବିଜୟୀ ହୋଇ ପାଟଣ ଫେରୁଛନ୍ତି ।

ସବୁ ଅଞ୍ଚଳର ଲୋକେ ଆନନ୍ଦ ପ୍ରକାଶ କରିବା ପାଇଁ ଖମ୍ବାତ୍‌ରେ ଆସି ଠୁଳ ହେଲେ । ପ୍ରତି ଘରେ ଦୀପ ଜଳିବା ସଙ୍ଗେ ସଙ୍ଗେ ପ୍ରାସାଦରେ ବିଜୟ ସୂଚକ ନାଗରା ବାଜିଲା । ସମଗ୍ର ସହରରେ "ଭୀମଦେବ ମହାରାଜଙ୍କ ଜୟ" ଧ୍ୱନି ଶୁଣାଗଲା । ଗ୍ରାମ୍ୟଲୋକେ ତାଙ୍କର ନୂଆ ଚୌଲା ରାଣୀକୁ ଦେଖିବାକୁ ଧାଇଁଲେ । କିନ୍ତୁ ଏ ସବୁ ସତ୍ତ୍ୱେ ଚୌଲା ମନରେ କୌଣସି ଆଗ୍ରହ ପ୍ରକାଶ ପାଇଲା ନାହିଁ ।

ତା'ର ଗର୍ଭସ୍ଥ ସନ୍ତାନ ଦିନକୁ ଦିନ ବଢ଼ିଲା ଓ ଗର୍ଭ ଉଚ୍ଚ ଦିଶିଲା । ଦିନ ଯେତିକି ଗଡ଼ୁଥାଏ ଚୌଲାର ଦୁଃଖ ସେହି ପରିମାଣରେ ବଢ଼ୁଥାଏ, କାରଣ ତା'ର ଆରାଧ୍ୟ ଦେବତାଙ୍କଠାରୁ ସେ କ୍ରମେ ଅଧିକରୁ ଅଧିକ ଦୂରେଇ ଯାଉଥିବା କଥା ଏହା ସ୍ମରଣ କରାଇ ଦେଉଥାଏ । ଅନବରତ କାନ୍ଦିବା ଫଳରେ ତା' ଆଖି ନାଲି ପଡ଼ିଯାଉଥାଏ ଓ ଗଗନରାଶିଙ୍କ ଔଷଧ କୌଣସି କାମ ଦିଏନାହିଁ ।

ବିଜୟୀ ଯୋଦ୍ଧାଙ୍କର ନୂତନ ରାଣୀଭାବେ ଚୌଲାପ୍ରତି ଲୋକଙ୍କର ସମ୍ମାନ ଦିନକୁ ଦିନ ବଢ଼ିବାକୁ ଲାଗିଲା । ରାଜପ୍ରାସାଦ ନୂତନ ଭାବରେ ସଜ୍ଜିତ ହେଲା ଏବଂ ଏହି କାର୍ଯ୍ୟରେ କର୍ମଚାରୀମାନେ ଅନବରତ କାର୍ଯ୍ୟରତ ରହିଲେ । ନାଚ ଗୀତ ସାହାଯ୍ୟରେ ଚୌଲାର ମନକୁ ଖୁସି କରିବାକୁ ଚେଷ୍ଟା କରାଯାଉଥିଲେ ସୁଦ୍ଧା ତାହାର ମନ ଉପରେ ଏ ସବୁର କୌଣସି ପ୍ରଭାବ ପଡ଼ୁନ ଥିଲା । ତାହାର କୌଣସିଥିରେ ଆଗ୍ରହ ନ ଥାଏ ବା କୌଣସି ଆମୋଦ ତାହାର ଲୁହ ଶୁଖାଇ ପାରୁ ନଥାଏ ।

ଭୀମଦେବ ପାଟଣରେ ପହଞ୍ଚିବା ପରେ ସମଗ୍ର ଦେଶର ଶାସକ ଗୋଷ୍ଠୀ ତାଙ୍କୁ ଅଭିନନ୍ଦିତ କଲେ । ବହୁ ଶାସକ ସ୍ୱେଚ୍ଛାରେ ତାଙ୍କର ଆନୁଗତ୍ୟ ଗ୍ରହଣ କଲେ ଓ ସମଗ୍ର ଦେଶର ଯୋଦ୍ଧାବୃନ୍ଦ ତାଙ୍କର ପ୍ରଶଂସା ଗାନ କଲେ । ପାଟଣ ଦୁର୍ଗର ପୁନର୍ଗଠନ କାର୍ଯ୍ୟ ଆରମ୍ଭ ହେଲା । ସୋମନାଥଙ୍କ ମନ୍ଦିର ପୁନର୍ବାର ନିର୍ମାଣ କରାଇ ତନ୍ମଧ୍ୟରେ ପ୍ରଭୁଙ୍କର ଲିଙ୍ଗ ସ୍ଥାପନ କରିବା ପାଇଁ ମହାରାଜ ଆଦେଶ ଦେଲେ । ଗଗନରାଶିଙ୍କୁ ନୂତନ ଗୁରୁ ପଦରେ ଅଭିଷିକ୍ତ କରାଯାଇ ମନ୍ଦିର କାର୍ଯ୍ୟ ସମ୍ପନ୍ନ କରିବା ଦାୟିତ୍ୱ ତାଙ୍କୁ ଦିଆଗଲା । ନୂତନ ଗୁରୁଦେବ ତତ୍ପରେ ପ୍ରଭାସ ଯାତ୍ରା କଲେ ।

ଏହି ଶେଷ ସମ୍ବାଦ ପାଇ ଚୌଲର ମନରେ ଆନନ୍ଦ ସଞ୍ଚରିତ ହେଲା । ସେ ତା ବିଛଣାରେ ଉଠି ବସିଲା ଓ ତାର ଆଖିରେ ପୂର୍ବର ଜ୍ୟୋତି ପୁନର୍ବାର ଦେଖାଦେଲା ।

ଗଗନରାଶି ପ୍ରଭାସ ଯିବା ପୂର୍ବରୁ ଚୌଲ ତାଙ୍କୁ ପଚାରିଲା, "ନୂତନ ମନ୍ଦିର ତିଆରି କରି ପ୍ରଭୁଙ୍କ ଲିଙ୍ଗ ସ୍ଥାପନ କରିବାକୁ କେତେ ସମୟ ଲାଗିବ ?"

ଗଗନରାଶି—ପ୍ରାୟ ଏକବର୍ଷ ।

ଚୌଲା—ତାହାହେଲେ ମୁଁ ଏତିକ ଦିନ ବଞ୍ଚି ରହିବି । ପ୍ରଭୁ, ସେ ପର୍ଯ୍ୟନ୍ତ ମୋତେ ବଞ୍ଚିବାକୁ ଦିଅ ! ମୋ ଜୀବନ ତୁମ ପାଖରେ ଅର୍ପଣ କଲି ।"

ଏହି ସାମାନ୍ୟ କଥାବାର୍ତ୍ତା ତାହା ପକ୍ଷରେ ଯଥେଷ୍ଟ ଥିଲା । ସେ ପୁଣି ଅଚେତ ହୋଇ ପଡ଼ିଗଲା ।

## ୫୧

## ନିଃସଙ୍ଗ ହୃଦୟ

ପରଦିନଠାରୁ ଚୌଲା ଚେଷ୍ଟାକରି ଉଠା ବସା କଲା । ତାହାର ଚକ୍ଷୁ ଦୁଇଟିର ପର୍ବ ଜ୍ୟୋତି କେତେକ ପରିମାଣରେ ଫେରିଆସିଲା । ସେ ବର୍ତ୍ତମାନ ମରିବାକୁ ଚାହେଁ ନାହିଁ—କିଛିଦିନ ଲାଗି ସେ ଅନ୍ତତଃ ବଞ୍ଚିବ ।

ସମୁଦ୍ର ଦେଖିବା ପାଇଁ ସେ ପୂର୍ବେ ଯେଉଁ ଝିଡ଼କି ନିକଟରେ ବସୁଥିଲି ପୁଣିଥରେ ସେହିଠାରେ ବସିଲି। ତା'ର ଦାସୀକୁ ବସ୍ତ୍ର ଭୂଷଣ ଆଣିବାକୁ ଆଉ ନ କହି ସେ ନିଜେ ଆଣିବାକୁ ଲାଗିଲା।

ଗର୍ଭର ସମୟ ପୂର୍ଣ୍ଣ ଆସିଲାଣି। ମହାରାଜ ଭୀମଦେବ ରାଣୀ ଚୌଲାଙ୍କୁ ଦେଖିବା ନିମନ୍ତେ ଶୀଘ୍ର ଆସିବେ ବୋଲି ଜନରବ ଶୁଣାଗଲି। ଦେଶସାରା ତାଙ୍କର ଯଶଗାନ ହେଉଛି ଏବଂ ସମଗ୍ର ଗୁଜରାଟ୍ ତାଙ୍କ ପ୍ରଶଂସାରେ ପାଗଳ ହୋଇଯାଇଛି। ସମସ୍ତେ ତାଙ୍କର ସ୍ତୁତି ଗାନ କରୁଛନ୍ତି। ସେ ହମୀରକୁ ତଡ଼ିଦେଇ ଗୁଜରାଟ୍‌କୁ ମହାନ୍ କରି ତୋଳିଛନ୍ତି। ପାଟଣ ଓ ପ୍ରଭାସ ଉଭୟ ସହର ନିର୍ମିତ ହେଉଛି। ତାଙ୍କର ବୀରତ୍ୱ କେବଳ ଯୁଦ୍ଧ-ଦେବତା କାର୍ତ୍ତିକେୟଙ୍କ ବୀରତ୍ୱ ସହିତ ତୁଳନା କରାଯାଇପାରେ। ସୂର୍ଯ୍ୟଙ୍କ କିରଣ ପରି ତାଙ୍କର ସୁଖ୍ୟାତି ଚତୁର୍ଦ୍ଦିଗରେ ପ୍ରସାର ଲାଭ କରିଛି। ଋଷି ଓ ଦେବତାମାନେ ମଧ୍ୟ ତାଙ୍କର ପ୍ରଶଂସା ଗାନ କରୁଛନ୍ତି।

ଭୀମଦେବ ଚୌଲକୁ ଦେଖିବା ନିମନ୍ତେ ତାଙ୍କ ବଡ଼ରାଣୀ ଉଦୟମତୀଙ୍କ ସହିତ ଖମ୍ଭାତ୍‌କୁ ଆସିବେ। ସେଥିପାଇଁ ପ୍ରତ୍ୟେକ ଘର ସୁସଜ୍ଜିତ ହୋଇଛି ଏବଂ ପ୍ରତ୍ୟେକ ଗଳି କନ୍ଦିରେ ବିଜୟ ଦୁନ୍ଦୁଭି ବାଜିଉଠୁଛି। ରାଜପ୍ରାସାଦ ଜୀବନ୍ତ ହୋଇ ଉଠିଛି। ଗୁଜରାଟ୍‌ର ଚଳନ୍ତି ପ୍ରଭୁ ତଥା ଯବନର ଧ୍ୱଂସକାରୀ ମହାନ୍ ଯୋଦ୍ଧା ଭୀମଦେବଙ୍କୁ ସ୍ୱାଗତ କରିବା ଉଦ୍ଦେଶ୍ୟରେ ପ୍ରତି ସ୍ଥାନରେ ବିଜୟୀ ଯୋଦ୍ଧାମାନେ ଏକତ୍ର ହୋଇଛନ୍ତି।

ଭୀମଦେବ ଖମ୍ଭାତ୍‌ରେ ପହଞ୍ଚିବାର ପୂର୍ବ ରାତିରେ ଚୌଳି ବିଶେଷ ଅସ୍ୱସ୍ତି ବୋଧ କଲି। ସ୍ୱପ୍ନରେ ସେ ଦେଖିଲି ପ୍ରଭାସ ତୀର୍ଥ ଓ ପୂଜାରତ ସମ୍ମାନାସ୍ପଦ ବୃଦ୍ଧ ଗୁରୁଦେବଙ୍କୁ,ତାହାର ମାଆ ଗଙ୍ଗା ମନ୍ଦିର ନର୍ତ୍ତକୀମାନଙ୍କୁ ଆଦେଶ ଦେଉଛି ଏବଂ ସେ ନିଜେ ସେହି ଶୁକ୍ଳ ଏକାଦଶୀ ଦିନ ଯେଉଁ ଅବିସ୍ମରଣୀୟ ନୃତ୍ୟ କରିଥିଲି, ସେହିପରି ନୃତ୍ୟ କରୁଛି।

ସେହି ସ୍ୱପ୍ନରେ ଚୌଳି ପ୍ରଭୁଙ୍କ ସହିତ ନିଜର ସମ୍ପର୍କ ପୁନର୍ବାର ପ୍ରତିଷ୍ଠା କଲି। ସେ ତାଙ୍କର ଦାସୀ ଭାବରେ ମନ୍ଦିରର ପାହାଚ ଉପରେ ବସି ପ୍ରଭୁଙ୍କର ଭଜନ ଗାନ କରି ବେଲପତ୍ରରେ ତାଙ୍କୁ ପୂଜାକଲି ଓ ଶେଷରେ ତାଙ୍କର କୃପା ଲାଭକରି ତାଙ୍କ ଗଳାରେ ନିଜର ବାହୁଚ୍ଛନ୍ଦି ରାତି କଟାଇଲି।

ଚୌଳିର ନିଦ୍ରା ହଠାତ୍ ଭାଙ୍ଗିଗଲି। କିନ୍ତୁ ସ୍ୱପ୍ନର ଯଥେଷ୍ଟ ପ୍ରଭାବ ତା ଉପରେ ପଡ଼ିଲି। ତାର ଶିରା ପ୍ରଶିରାରେ ରକ୍ତ କ୍ଷିପ୍ର ଗତିରେ ପ୍ରବାହିତ

ହେବାକୁ ଲଗିଲା । ତାର ମନରେ ପୁନରାୟ ପୂର୍ବବତ୍ ଆଗ୍ରହ ଓ ଉତ୍ସାହ ଖେଳିଗଲା । ପ୍ରଭୁଙ୍କୁ ଦେଖିବାକୁ ତାର ଯେଉଁ ଅଦମ୍ୟ ଆକାଙ୍‌କ୍ଷା ତାହା ତାର ନିଦ ଭାଙ୍ଗିଦେଲା । ପ୍ରଭୁଙ୍କୁ ଦେଖିବାକୁ ଉଦ୍‌ବଗ୍ନା ହୋଇ ଉଷାର ସ୍ୱାଗତ ସୂଚକ ମଧୁର ସଙ୍ଗୀତ ସେ ଏକଲୟରେ ଶୁଣିବାକୁ ଲଗିଲା । ତାର ନୟନରେ ପୂର୍ବର ଜ୍ୟୋତି ଦେଖାଦେଲା । ସେ ଦାସୀମାନଙ୍କୁ ଡାକି ସେମାନଙ୍କ ସାହାଯ୍ୟରେ ନିଜକୁ ସଜାଇଲା ।

ପ୍ରାୟ ଦ୍ୱିପ୍ରହର ସମୟରେ ପାଞ୍ଚଶତ ଯୋଦ୍ଧାଙ୍କ ସହିତ ଭୀମଦେବ ଖମ୍ଭାତ୍‌ରେ ପହଞ୍ଚିଲେ । ସହରର ପ୍ରତ୍ୟେକ ନାଗରିକ ଉତ୍ତମ ପୋଷାକ ପରିଧାନ କରି ବିଜେତାଙ୍କୁ କୁଙ୍କୁମ ଦେଇ ସ୍ୱାଗତ କରିବା ନିମନ୍ତେ ଏକତ୍ର ହେଲେ । ଦାସୀମାନେ ଅନେକ ଚେଷ୍ଟା କରି ଚୌଲା ରାଣୀଙ୍କୁ ମୂଲ୍ୟବାନ୍ ବେଶଭୂଷା ପିନ୍ଧାଇ, ପ୍ରାସାଦ ଛାତରେ ହୀରାମାଳା ଖଚିତ ଆସନରେ ଆଣି ବସାଇଲେ । ଚୌଲା ଏବେ ମଧ୍ୟ ରୁଗ୍‌ଣ ଓ ଦୁର୍ବଳ ଦେଖାଯାଉଥାଏ । ସେ ତା'ର ଦୃଷ୍ଟିକୁ ରାଜପଥ ଉପରେ ରଖିଥାଏ ସତ, କିନ୍ତୁ ତାର ମାନସ ଦୃଷ୍ଟି ତ୍ରିପୁରସୁର ବିଜୟ ଲଗି ଯୁଦ୍ଧ କରୁଥିବା ଶଙ୍କରଙ୍କୁ ଖୋଜୁଥାଏ । ତାର ଶୁଷ୍କ କପୋଳରେ ରକ୍ତିମା ଦେଖାଦେଲା ଓ ଶ୍ୱାସ ପ୍ରଖରହେଲା ।

ଦୁର୍ଗର ପ୍ରଧାନ ଦ୍ୱାରରେ ଭୀମଦେବ ମହାରାଜଙ୍କୁ ଆଡ଼ମ୍ବର ସହକାରେ ସମ୍ବର୍ଦ୍ଧନା କରାଗଲା । ପ୍ରଥମେ ଅଶ୍ୱାରୋହୀ ସୈନ୍ୟବାହିନୀ ଆସିଲେ । ତାହା ପରେ ବାଦ୍ୟ ସହ ବିଭିନ୍ନ ରଙ୍ଗର ବେଶରେ ଉଷ୍ଟ୍ରାରୋହୀମାନେ ଆସିଲେ । ସେମାନଙ୍କ ପଛରେ ଗୋଟିଏ ସୁସଜ୍ଜିତ ହାତୀ ଉପରେ ହୀରା ମାଳା ଖଚିତ ହାଉଦାରେ ବସି ଆସୁଥାନ୍ତି ଭୀମଦେବ ମହାରାଜ । ଶରୀରରେ ସୂକ୍ଷ୍ମ ସୂଚୀକାର୍ଯ୍ୟପୂର୍ଣ୍ଣ ଓ ବହୁ ରତ୍ନଖଚିତ ଲମ୍ବ ପୋଷାକ ଏବଂ ସ୍କନ୍ଧରେ ଝୁଲୁଥାଏ ମ୍ଳେଚ୍ଛ ପ୍ରାଣରେ ଆତଙ୍କ ସୃଷ୍ଟିକାରୀ ତାଙ୍କର ଧନୁ । କର୍ଣ୍ଣରେ କୁଣ୍ଡଳ ଏବଂ କପାଳରେ ଶୁଭସୂଚକ ବାସନ୍ତୀ ଚିହ୍ନ । ମସ୍ତକର ମୁକୁଟ ନାନା ମଣି ମୁକ୍ତାରେ ବିମଣ୍ଡିତ ହୋଇ ମଧ୍ୟାହ୍ନ ସୂର୍ଯ୍ୟ ରଶ୍ମିରେ ଦର୍ଶକମାନଙ୍କର ଆଖି ଝଲସାଇ ଦେଉଥାଏ । "ଆମର ଭୀମଦେବ ମହାରାଜ, ଆମର ରକ୍ଷାକର୍ତ୍ତା" ଏହି ରବରେ ଜନତାର ହୃଦୟ ଗର୍ବରେ ଫାଟିପଡ଼ୁଥାଏ ।

ହାତୀର ହାଉଦା ଉପରେ ଆସୀନ ଗୁଜରାତର କର୍ତ୍ତାଙ୍କୁ ଚୌଲା ଦେଖିଲା । ପବନରେ ଆନ୍ଦୋଳିତ ତାଙ୍କର ଘନକେଶ ଭିତରେ ସୁନ୍ଦର ଓ ତେଜସ୍ୱୀନ୍ ମୁଖ ଯେମିତି ଇନ୍ଦ୍ରଙ୍କ ଭଳି ସେ ଚିର ତରୁଣ ଦେଖାଯାଉଥାନ୍ତି ।

ଚୌଲ ତାଙ୍କ ଆଖିରେ ଲକ୍ଷ୍ୟକରୁଥିଲା ବିଜେତାର ଗର୍ବ ଓ ଓଠରେ ଶାସକ ସୁଲଭ ହସ । ଖିମଦେବଙ୍କୁ ଥରେ ଦେଖିଦେବା ପରେ ଚୌଲର ତାଙ୍କଠାରେ ଆଉ ଆଗ୍ରହ ରହିଲା ନାହିଁ । ତା' ଆଖିରେ ପୁଣି ବିଷାଦଭାବ ଦେଖାଦେଲା ଏବଂ ଓଠ ଥରିବାକୁ ଲାଗିଲା । ସେ "ମାଆ" ବୋଲି ପାଟିକରି ଉଠି ଦୁଇ ହାତରେ ମୁହଁକୁ ଆଚ୍ଛାଦିତ କରିଦେଲା । ତାର ସମଗ୍ର ଶରୀର ଥରି ଉଠିବାରୁ ସେ ନିଜକୁ ସଂଯତ କରିପାରିଲା ନାହିଁ ।

ଶୋଭାଯାତ୍ରା ପ୍ରାସାଦ ଦ୍ୱାରରେ ପହଞ୍ଚିବା କ୍ଷଣି ଖିମଦେବ ମହାରାଜ ହାତୀ ଉପରୁ ଓହ୍ଲାଇ ପାଗଳ ପ୍ରେମିକ ପରି ନିଜର ପ୍ରେମିକାଙ୍କ ସହିତ ଦେଖାକରିବାକୁ ରାଣୀହଂସପୁରକୁ ସିଧା ଚାଲିଗଲେ । ସେ ପ୍ରାସାଦ ଭିତର ଦେଇ ଯିବା ରାସ୍ତାର ଦୁଇ ପାର୍ଶ୍ୱରେ ପ୍ରାସାଦବାସୀମାନେ ଠିଆହୋଇ ତାଙ୍କୁ ସମ୍ମାନ ଦେଖାଇ ନତମସ୍ତକ ହେଉଥାନ୍ତି ।

ଖିମଦେବ ଚୌଲର ପଲଙ୍କ ପାଖକୁ ଯାଇ ଆଦରରେ "ଚୌଲ,ଚୌଲ" ବୋଲି ଡାକିଲେ । ତାଙ୍କ ସମ୍ବୋଧନର ଉତ୍ତରରେ ଚୌଲ ଖିନ୍ନବସ୍ତ୍ର ଆଖିରେ ନିଜର ସ୍ୱାମୀଙ୍କୁ ଅନାଇ ମୃଦୁ ସ୍ୱରରେ "ମହାରାଜ" ବୋଲି ପ୍ରତିସମ୍ବୋଧନ କଲା ।

ମହାରାଜ କହିଲେ, "ତମର କଣ ହୋଇଛି ? ତମ ଦେହ ଯେ ଖରାପ ହୋଇଛି, ମୁଁ ବା କିପରି ଜାଣିବି ? ତମେ ଶୀଘ୍ର ଭଲ ହୋଇଯିବ । ତୁମ ସ୍ୱାସ୍ଥ୍ୟ ଭଲ ଥିଲେ ମୁଁ ତୁମକୁ ପାଟଣ ନେଇଯାଇଥାନ୍ତି । କିନ୍ତୁ ମୁଁ ବର୍ତ୍ତମାନ ଯାହା ଦେଖୁଛି, ତୁମେ ଏତେ ବାଟ ଯାଇ ପାରିବ ନାହିଁ । ମନେପଡୁଛି ଚୌଲ, ଗତ ବର୍ଷ କିପରି ବିଚିତ୍ର ଥିଲା ! ଆମର ଯେତେବେଳେ ବିବାହ ହେଲା, ସେ ଦୁର୍ଯୋଗର ସମସ୍ତ କଥା ମନେଅଛି ? ବର୍ତ୍ତମାନ ଆମେ ସୁଖୀ । ମୁଁ ହମୀରକୁ ବିତାଡ଼ିତ କରି ଦେଇଛି ଚୌଲ ! ତୁମେ ଜାଣ, ବର୍ତ୍ତମାନ ସପାଲଦକ୍ଷ, ମାରଓ୍ୱାଡ଼ ଆଉ ସ୍ଥାନକର ଶାସକବର୍ଗ ମୋର ଅଧୀନତା ସ୍ୱୀକାର କରିଛନ୍ତି । ପାଟଣ ଗୋଟିଏ ସୁନ୍ଦର ସହରରେ ପରିଣତ ହେବ ଏବଂ ତହିଁରେ ମୁଁ ଗୋଟିଏ ସୁନ୍ଦର ପ୍ରାସାଦ ନିର୍ମାଣ କରିବି, ଯାହାକି ତୁମର ପସନ୍ଦ ଯୋଗ୍ୟ ହେବ । ମୁଁ ବିଭିନ୍ନ ଦେଶରୁ ଭଲ ଭଲ ବସନ ଭୂଷଣ ତୁମ ପାଇଁ ମଗାଇଛି ।"

ଆନନ୍ଦମିଶ୍ରିତ ଉତ୍କଣ୍ଠାରେ ଖିମଦେବ ମହାରାଜ କହି ଚାଲିଥାନ୍ତି । ଚୌଲ ଏକଲୟରେ ତାଙ୍କ ମୁହଁକୁ ଅନାଇ ଜଳସ୍ରୋତ ପରି ଅବାରିତ ରୂପେ ବାହାରୁଥିବା କଥା ଶୁଣୁଥାଏ ।

ମହାରାଜ ପୁଣି କହିଲେ, "ଚୌଲ୍, ପନ୍ଦରଦିନ ଭିତରେ ତୁମେ ମାଆ ହେବ । ଯେବେ ପୁତ୍ର ସନ୍ତାନ ହୁଏ ତେବେ ଅତି ଆନନ୍ଦର କଥା ହେବ । ମୋର ଶେଷ ଇଚ୍ଛା ପୂର୍ଣ୍ଣ ହେବ । ତା ପରେ ତୁମେ ନିଶ୍ଚୟ ପାଟଣ ଆସିବ । ମୁଁ ନିଜେ ତୁମକୁ ନେବାକୁ ଆସିବି, ନଚେତ୍ ବିମଳ ଆସିବ । ବିମଳ ତୁମକୁ ଖୁବ୍ ଶ୍ରଦ୍ଧା କରେ । ହୁଏତ ମୁଁ ନିଜେ ଆସି ନପାରେ, କାରଣ ମାଳବର ଭୋଜରାଜା ଗୋଳମାଳ କରୁଥିବାରୁ ମୋତେ ମାଳବ ଆକ୍ରମଣ କରିବାକୁ ପଡ଼ିପାରେ । ତାକୁ ଉଚିତ ଶିକ୍ଷା ଦେବାକୁ ପଡ଼ିବ ।"

ପ୍ରେମ-ପାଗଳ ଭୀମଦେବ, ତାଙ୍କ ବକ୍ତବ୍ୟର ପ୍ରତ୍ୟେକ ଶବ୍ଦ ଯେ ତାଙ୍କର ପ୍ରେମିକାକୁ ଆଘାତ ଦେଉଥିଲା ତାହା ବୁଝି ପାରୁ ନଥିଲେ । ସେ କହୁ କହୁ ଏପରି ଭାବପ୍ରବଣ ହୋଇଗଲେ ଯେ, ଘୁଞ୍ଚି ଘୁଞ୍ଚି ଯାଇ ଚୌଲର ନିକଟବର୍ତ୍ତୀ ହୋଇ ଓ ତା ମୁଖକୁ ଟେକିଧରି ଏକ ଗାଢ଼ ଚୁମ୍ବନ ଦେଲେ ।

ଏ ଚୁମ୍ବନ ଚୌଲକୁ ଅସହ୍ୟ ବୋଧ ହେଲା—ସତେ ଯେପରି ପୃଥିବୀଟା ଫାଟି ପଡ଼ୁଛି ! ତାହା ପକ୍ଷରେ ଭୀମଦେବଙ୍କ ମୁଖ, ତାଙ୍କ ଶରୀରର ସୁଗନ୍ଧ, ତାଙ୍କ ସୁବାସିତ ଶ୍ମଶ୍ରୁର ସୂକ୍ଷ୍ମ ସ୍ପର୍ଶ ଏବଂ ଆଖିର ଦୀପ୍ତି, ସତେ ଯେପରି କୌଣସି ଏକ ଘୃଣ୍ୟ ଅଜଣା ଲୋକର ଭଳି ମନେହେଲା । ସେ ତାର ଆଖି ବନ୍ଦ କରିଦେଲା । ତାର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ଅସ୍ଥିର ହୋଇଉଠିଲା । ସେ ନୀରବରେ ପ୍ରାର୍ଥନା କଲା, "ପ୍ରଭୁ ସୋମନାଥ, ତୁମେ ମୋତେ ଛାଡ଼ିଦେଲ ? ତୁମେ ମୋତେ କାହିଁକି ଭୁଲିଗଲ ?"

ରାଣୀ ଚୌଲ୍ ସହ କଥାବାର୍ତ୍ତା କରିବାଲାଗି ଭୀମଦେବଙ୍କର ପ୍ରବଳ ଉତ୍କଣ୍ଠା ବଢ଼ିଲା । ସେ କହିଚାଲିଲେ, "ଚୌଲ୍ ! ତୁମେ ଜାଣିଛ, କାଲି ସାମନ୍ତ ଚୌହାନ ଏଠାକୁ ଆସିବ ? ଅତି ଅଦ୍ଭୁତ ଲୋକ ! ସେ ମୋ ସାଙ୍ଗରେ ରାଜଗହଣରେ ଆସିବା ପରିବର୍ତ୍ତେ ରାତିରେ ଏକାକୀ ଆସିବାକୁ ପସନ୍ଦ କଲା । କିନ୍ତୁ ଚୌଲ୍— ଗୋଟିଏ କଥା କହିବି—ତୁମେ କାହାକୁ କହିବ ନାହିଁ । ହମୀର ଯେବେ ଏ ଦେଶ ଛାଡ଼ି ପଳାଇଯାଇଥାଏ ସେ ମୋ ଯୋଗୁଁ ଯାଇନାହିଁ, ଯାଇଛି ସାମନ୍ତ ଯୋଗୁଁ । ସେ ଦିନ ରାତି ପ୍ରାଣପାତ ପରିଶ୍ରମ କରି, ପ୍ରତି ରାଜ୍ୟକୁ ଯାଇ ମୋତେ ସାହାଯ୍ୟ କରିବାକୁ ଶାସକମାନଙ୍କୁ ପ୍ରବର୍ତ୍ତାଇଛି । ଦାମୋଦର ମେହେତା ତାର ପ୍ରଶଂସା ଗାନରେ ଶତମୁଖ । ଯେବେ ସାମନ୍ତ ଆମକୁ ସାହାଯ୍ୟ କରିନଥାନ୍ତା, ତା ହେଲେ ପାଟଣରେ ଆମେ କେବେଠାରୁ ଶେଷ ହୋଇଯାଇଥାନ୍ତେ ।"

"ପ୍ରିୟ ଚୌଲା, ସାମନ୍ତ ଯୋଗୁ ହିଁ ଆମେ ଦୁହେଁ ଆଜି ଜୀବନରେ ଅଛେ । ସେହି ସଙ୍କଟାଛନ୍ନ ମୁହୂର୍ତ୍ତରେ ସେ ଯେବେ ପ୍ରଭାସରେ ପହଞ୍ଚିନଥାନ୍ତା, ତାହାହେଲେ ଆମକୁ ଏଠାକୁ କିଏ ଆଣିଥାନ୍ତା ? ତେବେ, ସେ ମଧ୍ୟ ନିର୍ବୋଧ ବୋଲି ମୁଁ କହିବି । ତାହାକୁ ସୌରାଷ୍ଟ୍ରର ଦଣ୍ଡନାୟକ ଭାବେ ନିଯୁକ୍ତ କରିବାକୁ ମୁଁ କହିଥିଲି । ଗୋଟିଏ ରାଜ୍ୟ ମଧ୍ୟ ମୁଁ ତାକୁ ଯାଚିଥିଲି । ସେ କିନ୍ତୁ ଏସବୁ ପ୍ରସ୍ତାବ ଦୃଢ଼ଭାବେ ପ୍ରତ୍ୟାଖ୍ୟାନ କଲା । କହିଲା, "ମୁଁ ମୋର କର୍ତ୍ତବ୍ୟ ଶେଷ କରିଛି । ମୁଁ ଏଣିକି ଘୋଘାଗଡ଼ ଫେରିଯିବି ।" ମାତ୍ର ଘୋଘାଗଡ଼ରେ କିଏ ଅଛି ? ସବୁ ସରିଛି । ମୁଁ ତାକୁ ତୁମ ପାଖକୁ ପଠାଇବି । ତୁମେ ଚେଷ୍ଟା କରି ତାକୁ ରାଜି କରାଅ । ସେ ଯଦି ଆମ ପାଖରେ ରହିବ, ତାହାହେଲେ ଗୁଜରାଟର ଗୌରବ ଯଥେଷ୍ଟ ବୃଦ୍ଧିପାଇବ ।"

ଯେଉଁ ପ୍ରଶ୍ନ ପଚାରିବାକୁ ଚୌଲା ବହୁ ସମୟରୁ ଚାହୁଁଥିଲେ ସୁଦ୍ଧା ପଚାରିବାକୁ ସାହସ କରୁନଥିଲା, ଶେଷକୁ ସାହସ କରି ସେହି ପ୍ରଶ୍ନଟି ପଚାରିଲା—"ମହାରାଜ ! ପ୍ରଭାସର ପୁନର୍ଗଠନ କାର୍ଯ୍ୟ କେବେ ଶେଷ ହେବ ?"

ମହାରାଜ କହିଲେ—ପ୍ରାୟ ଆଠମାସ ଭିତରେ ।

ଚୌଳା—ମୁଁ ଏଥିରୁ ମୁକ୍ତ ହେଲେ ସେଠାକୁ ଯିବି ?

ମହାରାଜ—ଅସମ୍ଭବ—ତୁମେ ପାଟଣ ଆସିବ ନାହିଁ ? କିଛିଦିନ ସେଠାରେ ଆନନ୍ଦରେ ରହିବା ।

ଚୌଳା—କିନ୍ତୁ ମୋର ହୃଦୟ ପ୍ରଭାସରେ । ସେଠାରେ ମୋର ପ୍ରଭୁ ସୋମନାଥଙ୍କୁ ପୂଜା କରିବି ।

ମହାରାଜ—ମୁଁ ପ୍ରଭୁଙ୍କ ପାଇଁ ଗୋଟିଏ ସୁନ୍ଦର ମନ୍ଦିର ତିଆରି କରୁଛି । ଆମେ ପାଟଣରୁ ଯାଇ ସେଠାରେ ପ୍ରଭୁଙ୍କର ନୂତନ ମୂର୍ତ୍ତି ସ୍ଥାପନ କରିବା ।

ଚୌଲା ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ ପଚାରିଲା—ନୂଆ ମୂର୍ତ୍ତି ? ଆଉ ପ୍ରଭୁଙ୍କ ମୂର୍ତ୍ତି ?

ମହାରାଜ—ତୁମେ ଜାଣନା ? ସେ ମୂର୍ତ୍ତି ପରା ହମୀର ଭାଙ୍ଗିଦେଇଛି ! ମୂର୍ତ୍ତିର ଭଗ୍ନଖଣ୍ଡମାନ ସେ ଗଜନୀକୁ ନେଇଯାଇଛି ।

ଏହା ଶୁଣି ଚୌଲାର ହଠାତ୍ ପରିବର୍ତ୍ତନ ଘଟିଲା । ଏକ ପୋଷା ଜୀବ ପରି ସେ ଚାରିଆଡ଼କୁ ବ୍ୟାକୁଳ ହୋଇ ଅନାଇଲା । ମହାରାଜ ଚୌଲାର

ଏପରି ଅବସ୍ଥା ଦେଖି ବିଚଳିତ ହୋଇ ଦାସୀମାନଙ୍କୁ ପାଟିକରି ଡାକିଲେ । ସେମାନେ ପହଞ୍ଚିବା ବେଳକୁ ଚୈଳି ସଜ୍ଞାହୀନା ହୋଇଯାଇଥିଲି ।

ପରଦିନ ସାମନ୍ତ ଚୈଳିଙ୍କୁ ଦେଖିବାକୁ ଆସିଲେ । ତାଙ୍କର ଶରୀର ଶୁଷ୍କ, କ୍ଷୀଣ ଓ ଚର୍ମ କଠିନ ହୋଇଯାଇଥିଲା । ଦେହସାରା ନାନା ସ୍ଥାନରେ କ୍ଷତ ଚିହ୍ନ । ଗର୍ବିତବଦନଧାରୀ ଦାରୁଣ ଚିନ୍ତାକୁଳ ରହି ମୁଖରେ ସୌନ୍ଦର୍ଯ୍ୟ ବୋଲି ଆଉ କିଛି ନଥିଲା । ସାମନ୍ତ ଘର ଭିତରେ ପଶି କିଛି ସମୟ ପାଇଁ ନିଶ୍ଚଳ ହୋଇ ଚୈଳିଙ୍କୁ ଚାହିଁରହିଲେ ।

କିଛି ଦୂରରେ ରହି, "ମହାଦେବୀ, ନମସ୍କାର !" କହି ସାମନ୍ତ ଚୈଳିଙ୍କୁ ବିନୀତଭାବେ ପ୍ରଣାମ କଲେ ।

ଚୈଳିର ଆଖିରୁ ଲୁହଧାର ବହି ଯାଉଥାଏ । ସେ ଅତି କଷ୍ଟରେ କହିଲି "ଚୈହାନ, ତୁମେ ମଧ......"

ସାମନ୍ତ କହିଲେ—କାହିଁକି, କଣ ହେଲି ?

ଚୈଳା ବିବ୍ରତ ହୋଇ ଉତ୍ତର ଦେଲା, "ନାଁ, କିଛି ନୁହେ ! ବୀର ଚୈହାନ, ତୁମେ ମଧ ଚୈଳି ନାମକୁ ଭୁଲିଗଲ ?"

ସାମନ୍ତର ମୁହଁରେ ଏବେ ସରଳତା ଫୁଟି ଉଠିଲା । ସେ ଚୌଳା ନିକଟକୁ ଆସି ଦୁଇ ହାତ ଯୋଡ଼ି କହିଲେ, "ମୁଁ ତୋତେ କପରି ଭୁଲିବି ଭଉଣୀ ? କିନ୍ତୁ ଆମର ଗତଥରର ଦେଖା ସାକ୍ଷାତ ପରଠାରୁ ସମଗ୍ର ପୃଥିବୀ ପରିବର୍ତ୍ତିତ ହୋଇଯାଇଛି । ମୁଁ କଣ କରିବ ?"

ଚୈଳା ବିକଳ ହୋଇ କାନ୍ଦି କାନ୍ଦି କହିଲା, "ଭାଇ ସାମନ୍ତ, ଯାହା କରିଛ ଠିକ୍ କରିଛ । ପ୍ରଭାସ ଧ୍ୱଂସ ହୋଇଛି । ମୋ ମା ଗଙ୍ଗା ଯାଇଛି, ଗୁରୁଦେବଙ୍କର ମଧ ମୃତ୍ୟୁ ହୋଇଛି । ପ୍ରଭୁ ସୋମନାଥଙ୍କର ମୂର୍ତ୍ତି ଖଣ୍ଡ ଖଣ୍ଡ ହୋଇ ଭଙ୍ଗା ହୋଇଛି । ଭଗବାନଙ୍କର ଦାସୀ ମୁଁ......ମୁଁ ଏବେ ବି ବଞ୍ଚି ରହିଛି !"

ଚୌଳିର ଅକୃତ୍ରିମ ଦୁଃଖ ସାମନ୍ତଙ୍କ ହୃଦୟକୁ ସ୍ପର୍ଶ କଲା । ସେ ଧୀରେ କହିଲେ, "ମୁଁ ସବୁ ବୁଝିଛି, ଚୌଳା ! ମୋର ମଧ ଯାହା କିଛି ଥିଲା ସବୁ ଯାଇଛି । ମୋର ସମଗ୍ର ପରିବାର ଏବଂ ଶେଷରେ ଗୁରୁଦେବ—ସମସ୍ତେ ଯାଇଛନ୍ତି......କେହି ଆଉ ନାହାନ୍ତି ।"

ଯେଉଁମାନେ ଦୁଃଖ ଭୋଗ କରିଛନ୍ତି, କେବଳ ସେମାନଙ୍କ ପକ୍ଷରେ ଦୁଃଖର କଷାଘାତ ଅନୁମାନ କରିବା ସମ୍ଭବ । ସାମନ୍ତ ଏବଂ ଚୌଲା ପରସ୍ପରର ଦୁଃଖ ଭଲଭାବେ ବୁଝିଛନ୍ତି ।

ଚୌଲା କାନ୍ଦି କାନ୍ଦି କହିଲା, "ଭାଇ ସାମନ୍ତ, ତୁମେ ମଧ୍ୟ ମୋତେ ଛାଡ଼ି ଚାଲିଯିବ ?"

ସାମନ୍ତ କହିଲେ—ମୋର ଏଠାରେ ଆଉ କି ଆବଶ୍ୟକତା ଅଛି ? ଘୋଘାବାପା ଏବଂ ଗୁରୁଦେବଙ୍କ ସମୟର ପୁରୁଣା ଲୋକ ମୁଁ । ମୋ ଚାରିପାଖରେ ଯେଉଁ ନୂଆ ସଂସାର ଦେଖୁଛି, ତହିଁରେ ମୁଁ ଜଣେ ବାହାରର ଅଜଣା ଲୋକ ମାତ୍ର । ମୋତେ କେହି ବୁଝିପାରୁନାହାନ୍ତି ।

ଚୌଲା—ଚୌହାନ, ମୁଁ ମଧ୍ୟ ଏ ସଂସାରର ନୁହେଁ । ଥରେ ପୂର୍ବ ଜନ୍ମରେ ତମ କପାଳରେ ବିଜୟର ଟିକା ଦେବାକୁ ମୋତେ କହିଥିଲ । ତା' ବଦଳରେ ମୋତେ ଗୋଟିଏ ଭିକ୍ଷା ଦେଇପାରିବ ?

ଚୌହାନ—ନିଶ୍ଚୟ ଭଉଣୀ, ଦେବି ! କଣ କହ ?

ଚୌଲା—ପ୍ରଭାସ କ୍ଷେତ୍ରରେ ମୋ ପ୍ରଭୁଙ୍କର ପୁନଃପ୍ରତିଷ୍ଠା ପର୍ଯ୍ୟନ୍ତ ତୁମେ ଏଠାରେ ରହିବ—ଅବଶ୍ୟ ମୁଁ ଯେବେ ବଞ୍ଚିଥାଏ ।

ସୋମନାଥଙ୍କ ମନ୍ଦିରରେ ଯେଉଁଦିନ ସାମନ୍ତର ମୁଣ୍ଡରେ ଚୌଲା ବିଜୟର ଟିକା ଦେଇଥିଲା ଏବଂ ସେହି ରାତିରେ ସେ ଉଭୟଙ୍କର ଯେଉଁ ମଧୁର ବାକ୍ୟାଳାପ ହୋଇଥିଲା, ତାହା ସାମନ୍ତର ମନେପଡ଼ିଲା । ପରେ ଭାଇରୂପେ କପରି ସେ ଚୌଲାକୁ ଭୀମଦେବଙ୍କ ସହିତ ବିବାହ ଦେଇଥିଲା, ତାହା ମଧ୍ୟ ମନେପଡ଼ିଲା ।

ସାମନ୍ତ କହିଲେ—ମୁଁ ରହିବି, ଚୌଲା ! ତତେ କଥା ଦେଲି ।

ଚୌଲା ଆନନ୍ଦରେ କହିଲା—ଯୁଗ ଯୁଗ ବଞ୍ଚିରହ ଭାଇ !

ଚୌଲାର ମୁହଁରେ ମନ୍ଦହାସ ଦେଖାଦେଲା । ଯେଉଁ ସାମନ୍ତ ମାସ ମାସ ଧରି ଶାନ୍ତି ଓ ଆନନ୍ଦ କଣ ଜାଣି ନଥିଲେ, ଚୌଲାର ଆନନ୍ଦ ଦେଖି ତାଙ୍କ ମୁହଁରେ ମଧ୍ୟ ହସ ପ୍ରତିଫଳିତ ହେଲା । ସଂସାରରେ ନିଜକୁ ଏକାକୀ ବୋଲି ଅନୁଭବ କରୁଥିବା ଦୁଇଜଣ ସେମାନଙ୍କ ଦୁଃଖର ଲାଘବ ହୋଇଛି ବୋଲି ହୃଦୟଙ୍ଗମ କଲେ ।

## ୫୨

# ଧ୍ୱଂସ ଭିତରୁ

ମାସକ ପରେ ଶୈଲ ଦେବୀଙ୍କର ଗୋଟିଏ ପୁତ୍ର ସନ୍ତାନ ଜନ୍ମ ହେଲା— ଭୀମଦେବଙ୍କ ରାଜଗାଦିର ଭାବୀ ଉତ୍ତରାଧିକାରୀ । ଖମ୍ବାତ, ପାଟଣ ଏବଂ ସମଗ୍ର ଗୁଜରାଟରେ ବିପୁଳ ଆନନ୍ଦର ଲହରୀ ଖେଳିଗଲା । ମହାରାଜା ନବଜାତ ପୁତ୍ରକୁ ଦେଖିବାକୁ ସିଧା ଖମ୍ବାତ୍‌କୁ ଆସିଲେ ଓ ପୁତ୍ରକୁ ସ୍ନେହ କରିବା ସଙ୍ଗେ ସଙ୍ଗେ ଯେଉଁମାନେ ଶୈଲର ସେବା କରିଥିଲେ, ସେମାନଙ୍କୁ ବହୁତ ଉପହାର ଦେଲେ ଶୈଲ ତାଙ୍କର ସର୍ବାଧିକ ପ୍ରିୟ ସ୍ତ୍ରୀ ଓ ରାଣୀ । ତା'ର ଗର୍ଭରୁ ଜାତ ହୋଇଛି ଯୁବରାଜ । ଭୀମଦେବଙ୍କ ଆନନ୍ଦର ସୀମା ରହିଲା ନାହିଁ ।

କିନ୍ତୁ ବିସ୍ମୟର କଥା, ପୁତ୍ର ଜନ୍ମ ହେବା ପରେ ଶୈଲ ପୁଅକୁ ଦେଖିବାକୁ ମଧ୍ୟ ଆଗ୍ରହ ପ୍ରକାଶ କରି ନ ଥିଲା । ସେ ଯେତେବେଳେ ଶିଶୁକୁ ଦେଖିଲା, ତା'ର ହୃଦୟ କମ୍ପି ଉଠିଲା । ଠିକ୍ ଭୀମଦେବଙ୍କ ପରି ପ୍ରଶସ୍ତ ବକ୍ଷ ଓ ବଡ଼ ବଡ଼ ଆଖି । ତା'ର କଳ୍ପନାଚକ୍ଷୁରେ ସେ ଦେଖିଲା ଠିକ୍ ସେହି ରୂପ, କିନ୍ତୁ ଅଧିକ ପ୍ରଶସ୍ତ ଓ ଅଧିକ ବିଶାଳ । ସେ ନିଜକୁ ଦିନେ ଦେବଦେବ ମହାଦେବଙ୍କଠାରେ ଉତ୍ସର୍ଗ କରିଥିଲା । କିନ୍ତୁ ତାର ଅଧଃପତନ ହୋଇଛି ଓ ସେହି ପତନର ନିଦର୍ଶନ ଏହି ସନ୍ତାନ ।

ଦୁଇ ମାସ ପରେ ମନ୍ତ୍ରୀ ବିମଳ ଆସିଲେ ଶୈଲକୁ ପାଟଣ ନେବାକୁ । ତା'ର ଆଉ ସେଠାକୁ ନ ଯିବା ପାଇଁ କୌଣସି ଯୁକ୍ତିଯୁକ୍ତ କାରଣ ନ ଥିଲା । ତେଣୁ ସେ ଯିବା ପାଇଁ ପ୍ରସ୍ତୁତ ହେଲା । ପାଲିଙ୍କିରେ ବସାଇ ରାଣୀଙ୍କୁ ନିଆଗଲା । ରାଜଧାନୀ ପାଟଣରେ ପହଞ୍ଚିବା ପରେ ରାଜପ୍ରାସାଦରେ ରାଣୀଙ୍କ ପାଇଁ ନିର୍ମିତ ସ୍ୱତନ୍ତ୍ର ପ୍ରକୋଷ୍ଠରେ ତାକୁ ରଖାଗଲା । ରାଜା ଭୀମଦେବଙ୍କର ଅନ୍ୟତମା ଅର୍ଦ୍ଧାଙ୍ଗିନୀ ରୂପବତୀ ରାଣୀ ଉଦୟମତୀ ତାକୁ ଦେଖିବାକୁ ଆସିଲେ । ଶୈଲର ପ୍ରତ୍ୟେକ ସୁବିଧା ଅସୁବିଧା ପ୍ରତି ଦୃଷ୍ଟି ଦେଇ ତା'ର ସମସ୍ତ ଇଚ୍ଛା ପୂରଣ କରିବା ନିମନ୍ତେ ପ୍ରତ୍ୟେକେ ତତ୍ପର ରହିଲେ । ଶୈଲର ସ୍ୱାସ୍ଥ୍ୟରେ କ୍ରମେ କ୍ରମେ ଉନ୍ନତି ହେଲା ସତ, କିନ୍ତୁ ରାଜଧାନୀର ଏହି ଆଡ଼ମ୍ବର ପୂର୍ଣ୍ଣ ଜୀବନ ତାକୁ ଖମ୍ବାତ୍ ଜୀବନ ଅପେକ୍ଷା ମଧ୍ୟ ଅଧିକ ଅସ୍ୱସ୍ତିକର ବୋଧହେଲା ।

ସେଠାରେ ଆଉ କିଛି ନ ଥାଉ ପଛକେ, ଥିଲା ସମୁଦ୍ର ଓ ସୁଦୂର ଦିଗ୍‌ବଳୟ, ଯାହା ଦେଖି ସେ ତା'ର ପ୍ରଭୁଙ୍କର ବାସସ୍ଥଳୀ ପ୍ରଭାସର କଳ୍ପନା କରି କିଛି ସାନ୍ତ୍ୱନା ପାଉଥିଲା । ତାର ସେବା ପାଇଁ ସେଠାରେ ଏତେ ଅଧିକ ସଂଖ୍ୟକ ଦାସ ଦାସୀ ନ ଥିଲେ ସତ୍ୟ, କିନ୍ତୁ ଆଉ ଜଣେ ମହାରାଣୀ ମଧ୍ୟ ନ ଥିଲେ । ରାଜପ୍ରାସାଦରେ ସେ ଥିଲା ଏକମାତ୍ର ରାଣୀ । ପାଟଣରେ ପହଞ୍ଚିବାର ପ୍ରଥମ ଦିନରୁ ସମସ୍ତେ ତାକୁ ଯଥୋଚିତ ସମ୍ମାନ ଦେଖାଉଥିଲେ ସୁଦ୍ଧା ସେ ସେଥିରେ ଆନ୍ତରିକତାର ଅଭାବ ଅନୁଭବ କରୁଥିଲା ଓ ତାର ଜନ୍ମ ଉଚ୍ଚକୁଳରେ ନୁହେ ବୋଲି ସମସ୍ତଙ୍କ ମନରେ ଧାରଣା ଥିବା କଥା ସେ ବୁଝିପାରୁଥିଲା । ତଥାପି ଏଥିପାଇଁ ସେ କାହାକୁ ଦୋଷୀ ଭାବୁ ନ ଥିଲା—କାରଣ ତାର ମନ କହୁଥିଲା ଯେ ସେମାନଙ୍କର ଧାରଣା ଭୁଲ ନୁହେଁ । ସେ ରାଜକନ୍ୟା ନୁହେ ବା ରାଜପୁତ ରମଣୀ ନୁହେ—ମନ୍ଦିରର ଜଣେ ନର୍ତ୍ତକୀ ମାତ୍ର । ତେବେ ସେହି ରାଜପ୍ରାସାଦରେ ରାଣୀଭାବେ ରହିବାର ତାର କି ଅଧିକାର ଅଛି ? ଏହି ସବୁ ଭାବନା ଚୈଳାର ମନରେ ସ୍ଥାନ ପାଇ ହୃଦୟକୁ ଅସ୍ଥିର କଲା ।

ଭୀମଦେବ ଚୈଳାର ଆଗମନକୁ ଚାହିଁ ରହିଥିଲେ । ସେ ସେ ଦିନର ରାଜକାର୍ଯ୍ୟ ଶୀଘ୍ର ଶୀଘ୍ର ଶେଷ କରିଦେଲେ । ତାଙ୍କର ପ୍ରତ୍ୟେକ ରୋମରେ ପୁଲକ ଫୁଟିଥାଏ । ସେହି ଭୟାବହ ଅଥଚ ଆନନ୍ଦଦାୟକ ରାତିରେ, ସ୍ନିଗ୍ଧ ଚନ୍ଦ୍ରକିରଣ ତଳେ ଯେଉଁ ଶ୍ରେଷ୍ଠ କୋଠରୀର ଅପ୍ରଶସ୍ତ ବିଛଣାରେ ସେ ଓ ଚୈଳା ଏକତ୍ର ହୋଇଥିଲେ, ସେ କଥା ତାଙ୍କ କଳ୍ପନାକୁ ଆସିଲା । ସେହି ରାତିରେ ତାଙ୍କର ସାମନ୍ତ ସହିତ ଯେଉଁ କଥାବାର୍ତ୍ତା ହୋଇ ତାହା ପରେ ପରେ ତାଙ୍କର ବିବାହ ହେଲା, ତାହା ସେ ସ୍ମରଣ କଲେ । ଏହି ବିରାଟ ଘଟଣାର କେନ୍ଦ୍ର ଥିଲା ଚୈଳା ।

ଭୀମଦେବ ଅନ୍ତରରେ ଏହିପରି ମଧୁର ସ୍ମୃତିବିଜଡ଼ିତ କେତେକ ଘଟଣା ଭାବି ଭାବି ରାଣୀ ଚୈଳାର ଶୟନ କକ୍ଷରେ ପ୍ରବେଶ କରି ଦେଖିଲେ, ଚୌଲା ବସି ତାର ନର୍ତ୍ତକୀ ପୋଷାକରେ ମୋତି ଲଗାଉଛି ।

ମହାରାଜ ବିସ୍ମୟରେ ପଚାରିଲେ—ଚୈଳା, ଏ କଣ କରୁଛ ?

ଚୌଳା ଉପରକୁ ଅନାଇ ଏବଂ ମହାରାଜାଙ୍କୁ ଏକ ଲୟରେ ଚାହିଁ ଉତ୍ତର ଦେଲା, "ମୋ ଲୁଗାରେ ମୁକ୍ତା ଲଗାଉଛି ।"

ମହାରାଜ—ତମେ······କାହିଁକି ? ଆଉ ଦାସୀମାନେ ? ଆଉ ଏ ସବୁ ପୋଷାକ···?

ଚୌଲ—ଏହା ମୋର ନର୍ତ୍ତକୀର ଭୂଷଣ । ଦାସୀମାନେ ଛୁଇଁଲେ ଏହା ଅପବିତ୍ର ହୋଇଯିବ ।

ମହାରାଜ ହସିକରି କହିଲେ, "ଓଃ ! ମୁଁ ଶୁଣିଲି ତୁମେ ପ୍ରତିଦିନ ନୂଆ ପୋଷାକ ତିଆରି କରି ପିନ୍ଧ । ଏ କଣ ସେଇ···?"

ଚୌଲା ସମ୍ମତି ଜଣାଇଲା ।

ମହାରାଜ କହିଲେ—କିନ୍ତୁ ତୁମେ ତ ପାଟଣର ରାଣୀ ! ତୁମର ଏ ନର୍ତ୍ତକୀର ବେଶ ଦରକାର କଣ ?

ଚୌଲା ଉଠିପଡ଼ିଲା ଓ ତାର ମୁହଁ ଫିକା ପଡ଼ିଗଲା । "ମହାରାଜ, ମୁଁ ଥିଲି ଭଗବାନଙ୍କୁ ସମର୍ପିତା ନର୍ତ୍ତକୀ ଏବଂ ମୁଁ ସବୁଦିନେ ତାହାହିଁ ରହିବି ।" —କହୁ କହୁ ତାର ଓଠ ଥରଉଠୁଥିଲା ।

ଅଯଥା କଳହ କରି ସୁନ୍ଦର ସନ୍ଧ୍ୟାଟି ନଷ୍ଟ କରିବା ଭୀମଦେବଙ୍କର ଇଚ୍ଛା ନ ଥିଲା । ତେଣୁ ସେ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, "ଚୌଲା ! ମୋର ଭୁଲ ହୋଇଛି । ଏହି ମନ୍ଦିର ନର୍ତ୍ତକୀ ମୋର ରାଜସିଂହାସନର ସୌନ୍ଦର୍ଯ୍ୟ ଓ ସମ୍ମାନ ବଢ଼ାଇଛି । ମୋ ପାଖକୁ ଆସ ।" ଏହା କହି ଭୀମଦେବ ଟିକିଏ ଘୁଞ୍ଚିଯାଇ ଓ ହାତ ବଢ଼ାଇ ଚୌଲାକୁ ତାଙ୍କ ନିକଟକୁ ଆଣିବାକୁ ଚେଷ୍ଟା କଲେ ।

ମହାରାଜ ପ୍ରେମାସକ୍ତ ହୋଇ ତା ଆଡ଼କୁ ଆସୁଥିବା ଲକ୍ଷ୍ୟକରି ଚୌଲା ତାଙ୍କୁ କ୍ରୋଧପୂର୍ଣ୍ଣ ଦୃଷ୍ଟିରେ ଚାହିଁଲା । ମହାରାଜାଙ୍କ ହସ୍ତ ତାର ଶରୀର ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ତା'ର ମୁଖର ଭାବ ପରିବର୍ତ୍ତିତ ହୋଇଗଲା । ସେହି ହାତ ତାକୁ ସର୍ପତୁଲ୍ୟ ମନେହେଲା ଓ ତାର ଲୋମ ଟାଙ୍କୁରି ଉଠିଲା । ସେ ବାରଣ କରିବା ଭଙ୍ଗିରେ ତା'ର ଦୁଇ ହାତ ହଲାଇ ଚିତ୍କାର କରି ଉଠିଲା, "ନାଁ, ନାଁ ।"

କଣ ହେଲା ବୁଝି ନପାରି ଭୀମଦେବ ପଚାରି ଉଠିଲେ, "କଣ ହେଲା ଚୌଲା ?"

ଚୌଲା ତାର ମନର କଥା ପ୍ରକାଶ କରି କହିଲା, "ନାଁ, ଆପଣ ମତେ ଛୁଅନ୍ତୁ ନାହିଁ ।"

ଚୌଲାର ଏପରି ବ୍ୟବହାରର କାରଣ କିଛି ବୁଝି ନପାରି ବିସ୍ମିତ ହୋଇ ଭୀମଦେବ ପଚାରିଲେ, "କଣ ହେଲା ? କାହିଁକି ?"

ଚୌଲା ହାତ ଯୋଡ଼ି ଅଶ୍ରୁଭରା ଆଖିରେ ଓ ରୁଦ୍ଧ ଗଳାରେ କହିଲା, "ମହାରାଜ ! ନାଁ, ନାଁ, ଆଜ ରାତିରେ ନୁହେଁ—ଅନ୍ତତଃ ଏତିକ ଅନୁଗ୍ରହ କରନ୍ତୁ ।"

ମହାରାଜା ପଚାରିଲେ—କାହିଁକି, ଆଜ ତୁମର କଣ ହୋଇଛି ?

"ପ୍ରଭୁ ସୋମନାଥ··· ।" ଏତିକି ମାତ୍ର କହି ଚୌଲା ଆଉ କିଛି କହି ପାରିଲା ନାହିଁ ଏବଂ ତାର ଆଖିରୁ ଲୁହ ଗଡ଼ିବାକୁ ଲାଗିଲା ।

ମହାରାଜା ପୁଣି ପଚାରିଲେ—ତୁମେ କଣ କିଛି ପ୍ରତିଜ୍ଞା କରିଛ ?

ମହାରାଜାଙ୍କର ଏହି ପ୍ରଶ୍ନର ସୁଯୋଗ ନେଇ ଚୌଲା କହିଲା, "ହଁ, ଯେ ପର୍ଯ୍ୟନ୍ତ ପ୍ରଭୁ ସୋମନାଥଙ୍କର ମୂର୍ତ୍ତି ସ୍ଥାପିତ ହୋଇ ନାହିଁ······"

ଭୀମଦେବ ହସି ହସି ଉତ୍ତର ଦେଲେ, "ଓଃ, ବୁଝିଲି ! ତୁମେ କାହିଁକି ପ୍ରତିଜ୍ଞା କଲ ଚୌଲା ? ମୋ କଥା ଟିକିଏ ଭାବିଲ ନାହିଁ ? ମୋତେ ଟିକିଏ ପଚାରିଲ ନାହିଁ ?"

ଚୌଳ ନିଜର ଭାବାବେଗ ସମ୍ଭାଳି ନପାରି କାନ୍ଦି କାନ୍ଦି କହିଲା, "ମହାରାଜ, ପ୍ରଭୁ ସୋମନାଥଙ୍କ ମନ୍ଦିରରେ ଆମର ମିଳନ ହୋଇଥିଲା । ତାଙ୍କର ମୂର୍ତ୍ତି ଖଣ୍ଡିତ ହୋଇଛି ··"

ମହାରାଜା କହିଲେ—"ଚୌଳ ! ନିଜକୁ ଆଉ କଷ୍ଟ ଦିଅନା । ଅପେକ୍ଷା କର । ମୁଁ ଗୋଟିଏ ଅତୀବ ସୁନ୍ଦର ଏବଂ ବିଚିତ୍ର ମନ୍ଦିର ନିର୍ମାଣ କରିବି । ତହିଁରେ ପ୍ରଭୁଙ୍କର ଏପରି ମନୋରମ ମୂର୍ତ୍ତି ସ୍ଥାପନ କରିବି ଯାହା ଦେଖି ତୁମେ ନିଶ୍ଚୟ ପ୍ରସନ୍ନ ହେବ । ଏହି ଉତ୍ସବକୁ ଦେଶର ଚାରିଆଡ଼ୁ ରାଜାମାନଙ୍କୁ ନିମନ୍ତ୍ରଣ କରିବି ।"

ଚୌଳ—ଏହି ଉତ୍ସବ କେବେ ହେବ ?

ଭୀମଦେବ—ମନ୍ଦିର ତିଆରି ପୂରାପୂରି ସରିଲେ ତ !

ଚୌଳ—ମହାରାଜ ! ମତେ ସେଠାକୁ ପଠାନ୍ତୁ । ମୁଁ ସେହି କାର୍ଯ୍ୟରେ ଲାଗିପଡ଼ିବି ।

ଭୀମଦେବ—ତୁମେ ଯିବ ?

ଚୌଳ ଉତ୍କଣ୍ଠିତ ଭାବରେ କହିଲା, "ହଁ, ମୁଁ ମନ୍ଦିର-ନର୍ତ୍ତକୀ !"

ଭୀମଦେବ—ପାଗଳୀ ! ତୁମେ ଯେ ଗୁଜରାଟର ରାଣୀ ! ଏ ପର୍ଯ୍ୟନ୍ତ ନିଜକୁ ସେହି ନର୍ତ୍ତକୀ ବୋଲି ଭାବୁଛ ?

ଭୀମଦେବ କୌତୁକରେ ଏହା କହିଥିଲେ ସୁଦ୍ଧା ଚୌଳଠାରେ ଅଦ୍ଭୁତ ପ୍ରତିକ୍ରିୟା ହେଲା । ସତେ ଯେପରି ସର୍ବସମକ୍ଷରେ ତାକୁ କିଏ ପାଦୁକାରେ ପ୍ରହାର

କରିଛି ସେ ସେହିପରି ଅପମାନିତ ତଥା ମର୍ମାହତ ହୋଇ କହିଲା, "ନା, ମୋତେ ଦୟାକରି ପ୍ରଭାସକୁ ପଠାଇଦିଅନ୍ତୁ ।"

ଭୀମଦେବ ବ୍ୟସ୍ତ ହୋଇ କହିଲେ—"କିନ୍ତୁ ଚୌଲା, ତୁମେ ଚାଲିଗଲେ ମତେ ଏକା ରହିବାକୁ କିପରି ଭଲ ଲାଗିବ ?"

ଚୌଲା ଉଦ୍‌ବିଗ୍ନ ହୋଇ ହାତଯୋଡ଼ି କହିଲା, "ଆପଣ ମୋ ପ୍ରତିଜ୍ଞା କଥା ଭାବନ୍ତୁ ।"

ଭୀମଦେବ ଚୌଲା ପ୍ରତି ସଂପୂର୍ଣ୍ଣ ଆସକ୍ତ ଥିଲେ । ତେଣୁ ତାଙ୍କର ଏହି ଶିରୀଷ କୋମଳାଙ୍ଗୀ ନର୍ତ୍ତକୀର ଇଚ୍ଛା ପୂର୍ଣ୍ଣ ନକରିବା ତାଙ୍କ ପକ୍ଷରେ ସମ୍ଭବ ହେଲାନାହିଁ । ଉଦାର ଭାବରେ ସେ କହିଲେ, "ପ୍ରିୟେ ! ତୁମର କଥା ମୁଁ କିପରି ନରଖିବି ! ଯାଅ, ତୁମର ପ୍ରତିଜ୍ଞା ପୂରଣ କର । ସେଦିନ ଶତ୍ରୁ ଉପରେ ବିଜୟ ଲାଭ ପରେ ଆମର ମିଳନ ହୋଇଥିଲା । ଏହି ଦେଶର ସମସ୍ତ ଶାସକଙ୍କ ଉପସ୍ଥିତିରେ ଯେଉଁଦିନ ପ୍ରଭୁ ସୋମନାଥଙ୍କ ମୂର୍ତ୍ତି ପ୍ରତିଷ୍ଠା ହେବ, ସେଦିନ ପୁଣି ହେବ ଆମର ପୁନର୍ମିଳନ । ଏତେ ଦିନର ବିଚ୍ଛେଦ ସେଦିନ ପୂର୍ଣ୍ଣ ହେବ ।"

ଚୌଲା ନଇଁପଡ଼ି ଭୀମଦେବଙ୍କ ଚରଣ ଛୁଇଁ କହିଲା, "ମହାରାଜ, ଆପଣଙ୍କର ଦୟା ଅସୀମ ! ଆପଣ ଯେତେ ଦୟା ଦେଖାଇଛନ୍ତି ତାହା ମୁଁ କିପରି ସୁଝିବି ? ଉତ୍‌କ୍ଷିପ୍ତ ସମୁଦ୍ରର ତରଙ୍ଗ କୂଳରେ ଫିଙ୍ଗିଦେଇ ଯାଇଥିବା ଗୋଟିଏ ବାଲିଗରଡ଼ା ଛଡ଼ା ମୁଁ ଆଉ କିଛି ନୁହେଁ ।" ତାର ଆଖିରେ ଲୁହ ପୂରି ରହିଥିଲେ ସୁଦ୍ଧା ସେ ନିଜକୁ ସମ୍ଭାଳିନେଲା ।

ସୋମନାଥଙ୍କ ମନ୍ଦିରର ପୁନର୍ନିର୍ମାଣ କାର୍ଯ୍ୟ ନିଜେ ଦେଖିବା ପାଇଁ ଭୀମଦେବ ମହାରାଜାଙ୍କ ପ୍ରିୟତମା ମହାରାଣୀ ପ୍ରଭାସ ଗଲେ । ତାଙ୍କ ସାଙ୍ଗରେ ବହୁ ସଂଖ୍ୟକ ଦାସଦାସୀ ମଧ୍ୟ ଯାତ୍ରା କଲେ । ତାଙ୍କର ଶିଶୁପୁତ୍ର କ୍ଷେମରାଜଙ୍କର ଯତ୍ନ ନେବାପାଇଁ ସାଙ୍ଗରେ ରାଜବୈଦ୍ୟଙ୍କୁ ପଠାଗଲା । ଅଧାବାଟ ପର୍ଯ୍ୟନ୍ତ ନିଜେ ଭୀମଦେବ ମହାରାଜା ତାଙ୍କ ସାଙ୍ଗରେ ଗଲେ । ପ୍ରଭୁ ସୋମନାଥଙ୍କର ପରମଭକ୍ତ ଦାମୋଦର ମେହେତାଙ୍କୁ ପ୍ରଭାସ ପର୍ଯ୍ୟନ୍ତ ତାଙ୍କ ସହିତ ପଠାଗଲା । ମନ୍ଦିର ନିର୍ମାଣ କାର୍ଯ୍ୟ ଶୀଘ୍ର ଶେଷ କରିବା ପାଇଁ ଏହି ପରମଭକ୍ତ ବ୍ରାହ୍ମଣ ମନ୍ତ୍ରୀଙ୍କର ମଧ୍ୟ ପ୍ରବଳ ବ୍ୟଗ୍ରତା ଥିଲା ।

ପ୍ରଭାସ ଯାତ୍ରା କରିବା ସମୟରେ ଚୌଲା ମନରେ ଖୁବ୍ ଆଗ୍ରହ ଓ ଉତ୍ସାହ ଥିଲେ ସୁଦ୍ଧା ତାହା ବେଶୀ ଦିନ ରହିପାରିଲା ନାହିଁ । ପ୍ରଭାସରେ ପହଞ୍ଚି ସେ

ଦେଖିଲା ଗୋଟିଏ ବିରାଟ ନୂତନ ଦୁର୍ଗ ନିର୍ମିତ ହେଉଛି । ନୂତନ ରାସ୍ତାମାନ ତିଆରି ହେଉଛି, କୂଅମାନ ଖୋଳା ହେଉଛି ଓ ନୂତନ ବଜାରମାନ ଗଢ଼ି ଉଠୁଛି । ସର୍ବାଧୁନିକ ପ୍ରଣାଳୀରେ ମନ୍ଦିରମାନ ଗଢ଼ାଯାଉଛି । ଗଗନରାଶିଙ୍କ ଆଶ୍ରମ—ଆଶ୍ରମ ନୁହେଁ ବରଂ ପ୍ରାସାଦ ପରି ତିଆରି ହେଉଛି । ପାଟଣରେ ରାଜପ୍ରାସାଦ ଗୁମ୍ଫରେ ଶ୍ରେଷ୍ଠ ଏକ ରାଜମହଲ ତିଆରି ହେଉଛି ଓ ଯେଉଁଠାରେ ପୂର୍ବେ ମନ୍ଦିର ନର୍ତ୍ତକୀମାନଙ୍କର ବସ୍ତି ଥିଲା ସେଠାରେ ବ୍ରାହ୍ମଣମାନଙ୍କ ପାଇଁ ଘର ନିର୍ମିତ ହୋଇଛି ।

ପ୍ରଭୁ ସୋମନାଥଙ୍କ ମନ୍ଦିରର ନିର୍ମାଣ କାର୍ଯ୍ୟ ଯଥେଷ୍ଟ ଅଗ୍ରଗତି କରିଛି । ଏହାର ବିରାଟ ଶିଖର ତିଆରି ହୋଇଛି ପୂର୍ବ ଅପେକ୍ଷା ସ୍ୱତନ୍ତ୍ର ଢାଞ୍ଚାରେ । ଯେଉଁ ଗୁଡ଼ରେ ବସି ଚୌଳା ନାନାପ୍ରକାର ଚିନ୍ତାରେ ବିଭୋର ରହି ଆନନ୍ଦ ଅନୁଭବ କରୁଥିଲା, ସେସବୁ ଆଉ ସେପରି ତିଆରି ହେଉନାହିଁ ।

ନୂତନ ଶିଳ୍ପୀମାନେ ଏହି ସୁନ୍ଦର ମନ୍ଦିର ଓ ନଗର ଗଢ଼ୁଥିଲେ ସୁଦ୍ଧା, ପ୍ରଭୁ ସୋମନାଥଙ୍କର ପୀଠ ପୂର୍ବେ ଯେପରି ଥିବା ସେ ଦେଖିଛି ତାହା ଆଉ ସେପରି ହେଉ ନାହିଁ । ତା ନିଜ ପାଇଁ ଯେଉଁ ନୂତନ ପ୍ରାସାଦ ନିର୍ମିତ ହୋଇଥିଲା ଚୌଳା 'ତହିଁରେ ପ୍ରବେଶ କଲାକ୍ଷଣି ପ୍ରାସାଦର ଅପରିଚିତ ବାତାବରଣରେ ଏକ ବନ୍ଦୀଶାଳାରେ ପ୍ରବେଶ କଲା ଭଳି ତାକୁ ମନେହେଲା । ସେ ନିଜକୁ ଅତ୍ୟନ୍ତ ଦୁଃଖିନୀ ଓ ଏକାକିନୀ ମନେକଲା । ଧରଣୀକୁ କୁହୁଡ଼ି ଆଚ୍ଛନ୍ନ କଲା ଭଳି ତାର ହୃଦୟ ବେଦନାଚ୍ଛନ୍ନ ହୋଇଥାଏ । ପ୍ରଭାସରେ ତାର କାର୍ଯ୍ୟ ତଥା ଚିନ୍ତାକୁ ତାର ଏହି ମାନସିକ ଦୁଃଖ ସବୁବେଳେ ପ୍ରଭାବିତ କରୁଥିଲା । ମନୁଷ୍ୟ-ଜନ୍ମର ଅପୂର୍ଣ୍ଣ କାମନାକୁ ପୂରଣ କରିବାକୁ ବ୍ୟାକୁଳ ଏକ ପ୍ରେତ ପରି ଚୌଳା ମହାରାଣୀର ମର୍ଯ୍ୟାଦା ଗୁଡ଼ି ପ୍ରଭାସ ଦୁର୍ଗର ପଥରଗଦା, ଅସମ୍ପୂର୍ଣ୍ଣ କାନ୍ଥ, କାରିଗର ଓ ଶ୍ରମିକମାନଙ୍କ ଭିତରେ ବୁଲିଲଗିଲା ।

ଏହି ଅପରିଚିତ ଓ ନୂତନ ନିର୍ମିତ କୋଠାବାଡ଼ିର ଦୃଶ୍ୟ ଦେଖି ଦେଖି ସେ ତାର ନିଜ ହୃଦୟରେ ଅଙ୍କିତ ହୋଇଥିବା ପୂର୍ବ ଚିତ୍ରର ସ୍ମୃତି ମନେ ପକାଇବାକୁ ଚେଷ୍ଟା କଲା । ଏହିଠାରେ ସେ ପିଲାଦିନେ ଖେଳିଥିଲା । ତାର ନୃତ୍ୟରେ ଭୁଲ ହେଲେ ତାର ମା ଗଙ୍ଗା ସେଠାରେ ତାକୁ ଦଣ୍ଡ ଦେଉଥିଲା । ଏଇଠି ସେ ତାଳ ଅନୁସାରେ ନାଚିଥିଲା ଓ ଗୁରୁଦେବ ତାକୁ ନାଚ ଶିଖାଇ ଦେଇଥିଲେ । ସେଠାରେ ସେ କୁଣ୍ଡଳା ସହିତ ଝଗଡ଼ା କରିଥିଲା । ଯେଉଁଠି ଘାପ-

ସ୍ତମ୍ଭମାନ ତିଆରି ହେଉଛି ସେଠାରେ ଭୀମଦେବଙ୍କ ସହିତ ତା'ର ପ୍ରଥମ ସାକ୍ଷାତ ହୋଇଥିଲା ।

ପୂର୍ବେ ତ୍ରିପୁରସୁନ୍ଦରୀଙ୍କର ମନ୍ଦିର ଶ୍ରେଷ୍ଠ ଥିଲା ଓ ତାର ଗୃହପାଖରେ ପାଚେରି ଥିଲା । ବର୍ତ୍ତମାନ ସେହି ସ୍ଥାନରେ ମହାମାୟାଙ୍କର ଗୋଟିଏ ବିରାଟ ମନ୍ଦିର ତିଆରିହୋଇଛି । ବାହାର ଦୁର୍ଗର ଖୋଲା ସ୍ଥାନରେ ଯେଉଁଠି ଗଗନରାଶି ଓ ତାଙ୍କ ଶିଷ୍ୟମାନଙ୍କ ପାଇଁ ମଠ ତିଆରିହେଉଛି, ଠିକ୍ ସେହି ସ୍ଥାନରେ ଆଗେ ଥିବା ଗୃହର ସ୍ତୁପ ଉପରେ ସେ ଭଗବାନ ସୋମନାଥଙ୍କୁ ବରଣମାଳା ଦେଉଛି ଭବି ନିଜକୁ ପାଟଣର ମହାରାଜାଙ୍କୁ ସମର୍ପଣ କରିଥିଲା ।

ଯେଉଁ ଗର୍ଭ-ଗୃହରେ ପ୍ରଭୁ ସୋମନାଥଙ୍କର ବିଗ୍ରହ ପ୍ରତିଷ୍ଠା ହେବା କଥା ଶେଷକୁ ସେଠାକୁ ଆସି ଚୌଲା ଭାବପ୍ରବଣା ହୋଇ ଅଚେତ ହୋଇ ପଡ଼ିଲା । ଇଟା, ପଥର ତାକୁ ଦେଖାଯାଉନଥାଏ । ଯେଉଁ ବିରାଟ ମନ୍ଦିର ଅଗଣାରେ ତାକୁ ସଜ୍ଜ କରିବା ପାଇଁ ତାର ମା ଓ ଗୁରୁଦେବ ଚିତା ଲଗାଉଥିଲେ, ତାହା ତାର ଭାବନାକୁ ଆସିଲା ।

ମନ୍ଦିରର ଭିତର ବେଢ଼ା ତିଆରି ଚାଲିଛି । ଚୌଲା ଦେଖିଲା ଯେଉଁ ସ୍ଥାନରେ ତାର ନାଥ ପ୍ରଭୁ ସୋମନାଥଙ୍କର ମୂର୍ତ୍ତି ଏକ ସମୟରେ ବିରାଜମାନଥିଲା, ସେ ସ୍ଥାନ ଖାଲିପଡ଼ିଛି । ସୃଷ୍ଟିର ପ୍ରାରମ୍ଭରେ ବ୍ରହ୍ମା ଓ ବିଷ୍ଣୁଙ୍କ ମଧ୍ୟରେ ସଂଘଟିତ ଯୁଦ୍ଧର ଅବସାନକର୍ତ୍ତା ପ୍ରଭୁ ସୋମନାଥ ସେଠାରେ ନାହାନ୍ତି । ପ୍ରଳୟକାଳୀନ ଏ ପୃଥିବୀରେ ସେ ଯେପରି ଏକମାତ୍ର ପ୍ରାଣୀ ! ନିଃସହାୟ ହୃଦୟରେ ଚୌଲା ବ୍ୟାକୁଳ ହୋଇ କାନ୍ଦିବାକୁ ଲାଗିଲା ।

## ୪୩

## "ଆଜି ରାତି, ହଁ, ଆଜି ରାତି"

ସୂର୍ଯ୍ୟ ଉଦିତ ହୋଇ ଅସ୍ତ ହୁଅନ୍ତି । ପଥର ଉପରେ ପଥର ଖଞ୍ଜା ହୋଇ ମନ୍ଦିର ଓ ଘରମାନ ଦିନକୁ ଦିନ ଉଚ୍ଚ ହେଲା । ହାଟ ବଜାରରେ ଲୋକ ଗହଳି ହୋଇ ସେସବୁ ଧୀରେ ଧୀରେ ଜୀବନ୍ତ ହୋଇ ଉଠିଲା । କିନ୍ତୁ ଏ ସବୁ ସତ୍ତ୍ୱେ

ଚୌଲା ଏକ ପ୍ରେତ ରାଜ୍ୟରେ ଥିବା ଭଳି ମନେକରୁଥାଏ । ସେ ଭାବୁଥାଏ, ତାହାର ଚତୁଃପାର୍ଶ୍ୱର କୌଣସି ଜିନିଷ ବାସ୍ତବ ନୁହେଁ, କୌଣସି ଲୋକ ବା କୋଠାବାଡ଼ି ନଜରର ନୁହେଁ । ଏହି ପ୍ରଭାସ ପ୍ରଭୁଙ୍କ ପୀଠସ୍ଥଳୀ ପଟ୍ଟନର ପ୍ରାସାଦ ନୁହେଁ—ଗୁରୁଦେବ ନାହାନ୍ତି—ବର୍ତ୍ତମାନର ଗୁରୁ ସର୍ବଜ୍ଞ ଗଗନରାଶି ରେଶମ ବସ୍ତ୍ର ଆଚ୍ଛାଦିତ ଏକ ସାଧୁ ଛଡ଼ା ଆଉ କିଛି ନୁହନ୍ତି ।

ଚୌଲାର କଳ୍ପନା ଜଗତରେ ସୋମନାଥଙ୍କ ମନ୍ଦିରରେ ଘଣ୍ଟା ବାଜୁଥିଲା—ଗୁରୁଦେବ ଗଙ୍ଗ ସର୍ବଜ୍ଞ ଆରାଧନା କରୁଥିଲେ – ମା ଗଙ୍ଗା ନର୍ତ୍ତକୀମାନଙ୍କୁ ନୃତ୍ୟ ଓ ଗୀତ ଶିଖାଉଥିଲା—ପ୍ରଭୁ ସୋମନାଥଙ୍କୁ ଖୁସି କରିବା ପାଇଁ ସେ ଗୀତ ଗାଇ ନାଚିବା ସଙ୍ଗେ ସଙ୍ଗେ ତାଙ୍କୁ ବେଲପତ୍ରରେ ପୂଜା କରୁଥିଲା । ସେହି ଜଗତରେ ତାର ଅନ୍ତର ଉତ୍‌ଫୁଲ୍ଲ ହୋଇ ନାଚିଉଠୁଥିଲା ।

କିନ୍ତୁ ଏହି ନୂତନ ଜଗତରେ ଚୌଲା ଯନ୍ତ୍ର ଭଳି ଖାଏ, ଶୁଏ ଓ ବୁଲେ । ହୀରା ନୀଳା ଖଚିତ ଶିଳ୍ପନୈପୁଣ୍ୟଭରା ନର୍ତ୍ତକୀର ସୂକ୍ଷ୍ମ ବସ୍ତ୍ର ଯେତେବେଳେ ସେ ପରିଧାନ କରେ, କେବଳ ସେତିକିବେଳେ ହିଁ ସେ କିଞ୍ଚିତ୍ ଆନନ୍ଦ ଅନୁଭବ କରେ; ଏହା ଛଡ଼ା ଆଉ କୌଣସି ବିଷୟରେ ତାର ଆଗ୍ରହ ନଥାଏ ।

ଚୌଲାର ଏପରି ମାନସିକ ଅବସ୍ଥା ଦେଖି କିଛି ଦିନ ପରେ ଦାସୀମାନେ ମଧ୍ୟ ତାର କୌଣସି ବିଶେଷ ଯତ୍ନ ନେଲେ ନାହିଁ । ତାର ମୁଣ୍ଡ ଖରାପ ହୋଇଛି କି କଣ ସେମାନେ କିଛି ବୁଝିପାରୁ ନ ଥିଲେ ଓ ତାକୁ ମନେ ମନେ ଭୟକରୁଥିଲେ—ସେ ଯେପରି ଏକ ବିଚିତ୍ର ଓ ଭୟଙ୍କର ଜୀବ ।

ସନ୍ଧ୍ୟାବେଳେ ପ୍ରଭୁଙ୍କର ପୂଜା ସମୟ ହୋଇଗଲେ ଚୌଲା ତାର ଗୃହପାଖକୁ ଯାଏ । ତାହା ପରେ ସେ ଦିନସାରା ପରିଶ୍ରମ କରି ତିଆରି କରିଥିବା ନର୍ତ୍ତକୀର ପରିଧାନ ତଳେ ବିଛେଇ ବହୁ ସମୟ ଧରି ତାକୁ ଚାହିଁରହେ ଓ କଣ ଭାବି ଲାଗେ । ଏହି ସୁନ୍ଦର ଆଭରଣ ପିନ୍ଧି ସେ କେବେ ତାର ପ୍ରେମିକଙ୍କୁ ସନ୍ତୁଷ୍ଟ କରିବ ଏହି ଚିନ୍ତା ଯେପରି କରୁଥାଏ । ଯେଉଁ ଶୁକ୍ଳ ଏକାଦଶୀ ଦିନ ସେ ପ୍ରଥମ କରି ପ୍ରଭୁ ସୋମନାଥଙ୍କ ନିକଟରେ ନାଚିଥିଲା ଏବଂ ଦେବତା ତାକୁ ଆପଣାର କରିଥିଲେ, ସେହି ଅଭୁଲା ସ୍ମୃତି ତା ମନକୁ ଆସେ । ସତେ କଣ ଆଉ ଏପରି ଦିନ ଆସିବ, ଯେଉଁଦିନ ଗଙ୍ଗସର୍ବଜ୍ଞ ତାକୁ ପ୍ରଭୁଙ୍କଠାରେ ସମର୍ପଣ କରି-ଦେବେ ?

କେବେ କେବେ ଦୂରରୁ ଏକ ସମୟରେ ଶଙ୍ଖଧ୍ୱନି ସହ ବଳଦ ବେକର ଘଣ୍ଟି ଶବ୍ଦ ଶୁଣାଗଲେ ତାର ହୃଦୟ ଆନନ୍ଦରେ ନାଚି ଉଠେ । ପ୍ରେମିକର

ଅପେକ୍ଷାରେ ଥିବା ଏକ ବାଳିକା ପରି ସେ ଝିରକାରେ ଉଙ୍କିମାରି ଦେଖେ । ମାତ୍ର ପରେ ତାର କଳ୍ପନାର ଅବାସ୍ତବତା ଅନୁଭବ କରି ସେ ଭଗ୍ନହୃଦୟରେ ବସି କାନ୍ଦେ । "ନା, ନା, ସେ ଫେରିବେ ନାହିଁ ! ମୋ ପ୍ରଭୁ ମୋ ପାଖକୁ ଆସିବେ ନାହିଁ !" ଏହି ନୈରାଶ୍ୟପୂର୍ଣ୍ଣ ବାକ୍ୟ କହିକହି ଚୈଲ୍ ତଳେ ଲୋଟି ମୁଣ୍ଡରୁ ବାଳ ଛିଣ୍ଡାଏ । ସେ ଅପବିତ୍ର ହୋଇଯାଇଛି । ସେ ତାର ପ୍ରକୃତ ପ୍ରେମିକଙ୍କୁ ଭୁଲି ଘୃର ମଣିଷର ସ୍ତ୍ରୀରେ ପରିଣତ ହୋଇଛି । ତାର ପ୍ରଭୁ ତା ଉପରେ ରାଗିଛନ୍ତି । ସେ କେବେ-ହେଲେ ତାହା ପାଖକୁ ଆସିବେ ନାହିଁ ବା ତାକୁ କ୍ଷମା ଦେବେ ନାହିଁ । ସେ ନିରାଶ ହୁଏ । ସମୟେ ସମୟେ ସେ ଅଚେତ ହୋଇଯାଏ । ଏହାହିଁ ଥିଲା ଚୈଲାର ଦୈନନ୍ଦିନ ଜୀବନ ।

ଚୈଲା ଯେତେବେଳେ ତାର ଶିଶୁ ପୁତ୍ର ଯୁବରାଜ କ୍ଷେମରାଜକୁ କୋଳକୁ ନିଏ, ସେତେବେଳେ ତାର ପୁରୁଣା ଅଶୁଖା ଘାରେ କିଏ ଲୁଣ ଛିଟା ଲଗାଇଲାଭଳି ତାକୁ ଲାଗେ । ଦିନକୁ ଦିନ ଏହି ଶିଶୁ ଭୀମଦେବଙ୍କ ପରି ଅଧିକରୁ ଅଧିକ ଦେଖାଯିବାରେ ଲାଗିଥାଏ ।

ଦିନ ପରେ ଦିନ ଏହିପରି ବିତିଗଲା । ଚୌଲା ସେହି ମୁହୂର୍ତ୍ତକୁ ଗୁହିଁ ବସିଥାଏ ଯେତେବେଳେ ତାର ପ୍ରଭୁ ତା ନିକଟକୁ ଫେରିଆସିବେ ଓ ତାକୁ କ୍ଷମାକରି ତାଙ୍କ ନିକଟକୁ ନେଇଯିବେ । କିନ୍ତୁ ମାସ ପରେ ମାସ ବିତିଗଲା ସିନା ସେ ଶୁଭମୁହୂର୍ତ୍ତ ଆସିଲା ନାହିଁ । ତାହାର ଧୈର୍ଯ୍ୟ ଶେଷ ହୋଇ ଆସିଲା । ପ୍ରତିଦିନ ସେ ତାର ଆଭରଣମାନ ବଛାଇ ବସେ । କେଉଁ ମୁହୂର୍ତ୍ତରେ ତାର ପ୍ରଭୁ ଆସି ପହଞ୍ଚିବେ ପରା ? କିନ୍ତୁ କାହାନ୍ତି ପ୍ରଭୁ ? ତାର ଆଶା ଆଶାରେ ହିଁ ରହେ ।

ତାହାପରେ ଚନ୍ଦ୍ରମାନ ବର୍ଷର ଶେଷ ମାସ ଆଶ୍ୱିନ ଆସିଲା । ସେହି ମାସର ପୂର୍ଣ୍ଣିମା ଦିନ ନୂତନ ମନ୍ଦିରରେ ପ୍ରଭୁ ସୋମନାଥଙ୍କ ମୂର୍ତ୍ତି ପ୍ରତିଷ୍ଠା କରିବା ପାଇଁ ସ୍ଥିର କରାଗଲା । ଦେଶର ସ୍ୱରଆଡ଼ୁ ରାଜାମାନଙ୍କୁ ଏହି ଉତ୍ସବରେ ଯୋଗ ଦେବାପାଇଁ ନିମନ୍ତ୍ରଣ କରାଗଲା । ବିଭିନ୍ନ ରାଜ୍ୟରୁ ଶାସକ-ମାନେ ପ୍ରଭାସ କ୍ଷେତ୍ରରେ ଆସି ପହଞ୍ଚିବାକୁ ଆରମ୍ଭ କଲେ । ପ୍ରଭାସ ତୀର୍ଥର ରାସ୍ତାମାନଙ୍କରେ ଜନଗହଳି ବଢ଼ିବାକୁ ଲାଗିଲା ଓ ତାହା ଜୀବନ୍ତ ରୂପ ଧାରଣ କଲା । ବ୍ୟବସାୟୀଙ୍କ ବିପଣୀମାନଙ୍କରେ ଅଧିକ ପରିମାଣରେ କଣା ବିକା ହେଲା । ପ୍ରତି ବ୍ରାହ୍ମଣ ଘରୁ ମନ୍ତ୍ର ପାଠ ଧ୍ୱନି ଶୁଣାଗଲା । ଦେଶର ସ୍ୱରଆଡ଼ୁ ଭକ୍ତମାନେ ଦଳ ଦଳ ହୋଇ ପ୍ରଭାସକୁ ଆସିଲେ ।

ଲକୁଲେଶ ସମ୍ପ୍ରଦାୟର ପ୍ରଧାନ ଆଚାର୍ଯ୍ୟ ଗଗନ ସର୍ବଜ୍ଞଙ୍କ ପୌରୋହିତ୍ୟରେ ମହାରୁଦ୍ର ଯଜ୍ଞ ଆରମ୍ଭ ହେଲା । ଶଙ୍ଖ ଓ ମାଦଳ ବାଜିବା ସଙ୍ଗେ ସଙ୍ଗେ ପ୍ରଭାସ ଦୁର୍ଗର ଶିଖର ଦେଶରେ ପତାକା ଉଡ଼ିଲା । ଶତ୍ରୁ ବିତାଡ଼ନକାରୀ ମହାକୀର୍ତ୍ତିବାନ୍ ଭୀମଦେବଙ୍କ ଉଦ୍ୟମ ଫଳରେ ପ୍ରଭାସ ପୂର୍ବାପେକ୍ଷା ଅଧିକ ମହାନ୍ ତୀର୍ଥକ୍ଷେତ୍ରରେ ପରିଣତ ହେଲା ।

ଚୌଲା ନିଜ ପ୍ରାସାଦର ଛାତ ଉପରେ ଠିଆହୋଇ ଦୂର ସମୁଦ୍ରର ଉତ୍ତାଳ ଲହରୀମାଳା ଆଡ଼କୁ ଅନାଉଥାଏ । ଚାରିଆଡ଼ୁ ଶୁଣାଯାଉଥିବା "ଜୟ ସୋମନାଥ" ଧ୍ୱନି ତାହା ପକ୍ଷରେ ଆନନ୍ଦଦାୟକ ହେଲା । ତା'ର ଅତୀତର ଦିବାସ୍ୱପ୍ନମାନ ବର୍ତ୍ତମାନ ବାସ୍ତବରେ ପରିଣତ ହେଉଥିବାପରି ତାକୁ ଜଣାଗଲା ।

ସାମନ୍ତ ରାଜନ୍ୟମଣ୍ଡଳୀ, ମନ୍ତ୍ରିଗଣ ତଥା ବାଦକଗୋଷ୍ଠୀଙ୍କ ସହ ଶୋଭାଯାତ୍ରାରେ ଆସି ପହଞ୍ଚିଲେ ଭୀମଦେବ ମହାରାଜା । ସମଗ୍ର ପ୍ରଭାସ ତୀର୍ଥ ତାଙ୍କୁ ଆନନ୍ଦରେ ସ୍ୱାଗତ କଲା । ମହାବିଜେତାଙ୍କୁ ଯେଉଁଭଳି ଅଭ୍ୟର୍ଥନା କରାଯିବା କଥା ଗୁରୁ ଗଗନ ସର୍ବଜ୍ଞ ତାଙ୍କୁ ସେହିଭଳି ସ୍ୱାଗତ କଲେ । ଚାଲୁକ୍ୟ ବଂଶର ମୁଖ୍ୟ ଭୀମଦେବ ମୁକ୍ତ ହସ୍ତରେ ଦାନ ବିତରଣ କଲେ । କିନ୍ତୁ ଚୌଲାର କଳ୍ପନା ଏପର୍ଯ୍ୟନ୍ତ ସ୍ୱପ୍ନରେହିଁ ରହିଥାଏ ।

ପ୍ରଭାସର ରାଜପ୍ରାସାଦରେ ବସି ଭୀମଦେବଙ୍କ ଛାତି ଗର୍ବରେ ଫୁଲି ଉଠୁଥାଏ । ଆଜି ତାଙ୍କର ଗୌରବ ଉନ୍ନତିର ଚରମ ସୀମାରେ ପହଞ୍ଚିଛି । ଅତୁଳନୀୟ ବୀରତ୍ୱ ଦେଖାଇ ସେ ମ୍ଲେଚ୍ଛ ସଂହାର କରିଥିବାରୁ କବିମାନେ ତାଙ୍କ ଯଶ ଗାଉଛନ୍ତି । ସମୁଦ୍ରର ବେଳାଭୂମିରେ ଠିକ୍ ଏକ ମୁକ୍ତା ଭଳି ଗଢ଼ି ଉଠିଥିବା ମନ୍ଦିର ଯୋଗୁଁ ସେମାନେ ତାଙ୍କ ଦେବଭକ୍ତିର ମଧ୍ୟ ଭୂୟସୀ ପ୍ରଶଂସା କରୁଛନ୍ତି ।

ଏହି ମହାନ୍ ମନ୍ଦିରକୁ ସତ୍ୟ ଯୁଗରେ ସୋମ ପ୍ରତିଷ୍ଠା କରିଥିଲେ । ତ୍ରେତୟା ଯୁଗରେ ରାବଣ ଏବଂ ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ଏହାକୁ ପୁନର୍ନିର୍ମାଣ କରିଥିଲେ । ବର୍ତ୍ତମାନ କଳିଯୁଗରେ ଚାଲୁକ୍ୟ ବଂଶର ଏହି ମହାନ୍ ବୀର ଏହାକୁ ପୁଣି ତିଆରି କରିଛନ୍ତି ।

ଭୀମଦେବ ମହାରାଜା ନିଜର କୃତିତ୍ୱ ପାଇଁ ଗର୍ବ ଅନୁଭବ କରି ହୀରାମାଳା ଖଚିତ ମହାର୍ଘ ପୋଷାକ ପିନ୍ଧି ରାଣୀ ମହଲକୁ ଗଲେ । ଅଳ୍ପ କ୍ଷଣ ପରେ ପ୍ରଭୁ ସୋମନାଥଙ୍କର ମୂର୍ତ୍ତି ପ୍ରତିଷ୍ଠା ହେବା ପରେ ପରେ ତାଙ୍କର ପ୍ରେୟସୀ ଚୌଲାର ପ୍ରତିଜ୍ଞା ପୂରଣ ହେବ. ଏହି ଆନନ୍ଦଦାୟକ ଘଟଣା ନେଇ ସେ ଚୌଳା ପାଖରେ

ପଡ଼ିଥିଲେ । କିନ୍ତୁ ତାଙ୍କ ପ୍ରେୟସୀର ରୂପରେ ଜଣେ ନିର୍ଜୀବ ନାରୀର ଆକୃତି ପ୍ରକୃତି ଦେଖି ସେ ବିସ୍ମିତ ହେଲେ ।

ଚେଷ୍ଟା କରି ହସି ଭୀମଦେବ କହିଲେ, "ଚୌଲା, ଆଜି ଆମ ଜୀବନର ସର୍ବଶ୍ରେଷ୍ଠ ଦିନ । ପ୍ରଭୁ ସୋମନାଥଙ୍କର ମୂର୍ତ୍ତି ମୁଁ ଆଜି ପୁନଃପ୍ରତିଷ୍ଠା କରିବି । ସମଗ୍ର ଭାରତ ମୋର ଜୟଗାନ କରିବ । ଚନ୍ଦ୍ରଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା ଏହି ପୁରାତନ ମନ୍ଦିରର ମୁଁ ଆଜି ପୁନଃପ୍ରତିଷ୍ଠା କରିବି ।"

ଚୌଲା ଦୁଃଖପୂର୍ଣ୍ଣ କଣ୍ଠରେ, କ୍ଷୀଣ ସ୍ୱରରେ କହିଲା, "ମହାରାଜ, ମୁଁ ମଧ୍ୟ ଏହି ମୁହୂର୍ତ୍ତଟିକୁ ଅପେକ୍ଷା କରି ରହିଛି । ପ୍ରଭୁ ସୋମନାଥ ତାଙ୍କର ପୀଠରେ ପୁନର୍ବାର ପ୍ରତିଷ୍ଠିତ ହୋଇ ତାଙ୍କର ପୂଜା ଆରମ୍ଭ ହେବା ସଙ୍ଗେ ସଙ୍ଗେ ଠାକୁରଙ୍କ ସମ୍ମୁଖରେ ନୃତ୍ୟ କରି ମୁଁ ଜୀବନର ସର୍ବଶ୍ରେଷ୍ଠ ଆନନ୍ଦ ଲାଭ କରିବି ।"

ଭୀମଦେବ ଏହି ପ୍ରସ୍ତାବ ଶୁଣି ଆଶ୍ଚର୍ଯ୍ୟ ତଥା ମର୍ମାହତ ହୋଇ କହିଲେ, "ନୃତ୍ୟ ! ତୁମେ ବୋଧହୁଏ ଭୁଲିଯାଉଛ ଯେ, ତୁମେ ପାଟଣର ରାଣୀ ! ତୁମେ କାହିଁକି ନୃତ୍ୟ କରିବ ?"

ଭୀମଦେବଙ୍କ କଥା ଶୁଣି ଚୌଲାର ଆଖିରେ ଭୟର ସଙ୍କେତ ଦେଖା ଦେଲା । ମହାରାଜା ଖମ୍ଭାତ୍ ଯାଇ ଚୌଲାର ଯେଉଁ ଭୟାତୁର ଆଖି ଦେଖିଥିଲେ ପୁଣି ତାହା ଦେଖି ସେ ମଧ୍ୟ ବିଚଳିତ ହେଲେ ।

ଭୀମଦେବଙ୍କର ଯଥେଷ୍ଟ କାର୍ଯ୍ୟ କରିବାକୁ ବାକି ଥିଲା । ମୂର୍ତ୍ତି ପ୍ରତିଷ୍ଠା ମୁହୂର୍ତ୍ତ ଆଗତପ୍ରାୟ । ତାଙ୍କ ମନରେ ଯେଉଁ ଆନନ୍ଦ ଦେଖାଦେଇଛି ତହିଁରେ ବାଧା ସୃଷ୍ଟି ହୋଇ ସେ ନିରୁତ୍ସାହିତ ହେବା ଭଳି କୌଣସି ଘଟଣା ଘଟିବା ସେ ସ୍ପୃହଣୀୟ ନାହିଁ । ନିଜର ଆଗ୍ରହ ଓ ଉତ୍ସାହକୁ ଅକ୍ଷୁଣ୍ଣ ରଖିବା ଉଦ୍ଦେଶ୍ୟରେ ସେ ଉଚ୍ଚ ହାସ୍ୟ କରି କହିଲେ, "ଚୌଲା, ଅପେକ୍ଷା କର ! ଏଭଳି ତରତର ହୋଇ କିଛି ଲାଭ ନାହିଁ । ଆଜି ରାତିରେ ତୁମର ପ୍ରତିଜ୍ଞା ପୂରଣ ହେବା ପରେ ମୁଁ ତୁମକୁ ସ୍ୱାଗତ କରିବାକୁ ଆସିବି । ପୂର୍ବର ସେଇ ଅଭୁଲା ରାତି ପରି ଶେଯ ସଜାଇ ରଖ, ଚୌଲା !" ନିଜ ହୃଦୟରେ ଦେଖାଦେଇଥିବା କ୍ଷୋଭକୁ ଲୁଚାଇବା ଉଦ୍ଦେଶ୍ୟରେ ସେ ପୁଣି ହସିଲେ ।

ଅସହ୍ୟ ବେଦନାରୁ ରକ୍ଷା ପାଇବା ଲାଗି ଚୌଲା ନିଜର ଗଳା ଚାପି ଧରିଲା । ସେ ମାନସିକ ଯନ୍ତ୍ରଣାରେ ଅଥୟ ହୋଇ ଚିତ୍କାର କଲା, "ଆଜି ରାତି,

ଆଜ ରାତି, ହଁ, ଆଜ ରାତି !" କିନ୍ତୁ ଧ୍ରୁମଦେବ ଏହି କଥାର ତାତ୍ପର୍ଯ୍ୟ ବୁଝି ପାରିଲେ ନାହିଁ ।

୫୪

# ଶେଷ ନୃତ୍ୟ

ସୂର୍ଯ୍ୟ ଅସ୍ତପ୍ରାୟ । ଚୌଲ ଓ ସାମନ୍ତ ପରସ୍ପର ମୁହଁାମୁହିଁ ହୋଇ ଅନ୍ଦର ମହଲରେ ବସିଛନ୍ତି । ଉଭୟେ ବାହାର ଦୃଶ୍ୟ ଦେଖୁଥାନ୍ତି ।

ଚୌଲ ତାର ମନ କଥା ସାମନ୍ତଙ୍କୁ କହୁଥାଏ । ସେ କ୍ଷୀଣ ସ୍ୱରରେ କହିଲା, "ନାନା ପ୍ରକାର ଦୁଃଖ ଓ ଆଶଙ୍କାରେ ମୋର ହୃଦୟ ବିଦୀର୍ଣ୍ଣ ହେଉଛି । ନାନା ପ୍ରକାର ଶବ୍ଦ ମୋ କାନକୁ ଶୁଭୁଛି । ଆଜ ସକାଳୁ ମାଆ ଓ ଗୁରୁଦେବ ମୋ ସହିତ କଥାବାର୍ତ୍ତା ହେଉଛନ୍ତି । ମୋର ପ୍ରଭୁ ମୋତେ ଅନାଥ କରିବେ ନାହିଁ ବୋଲି ସେମାନେ ମୋତେ ବାରମ୍ବାର ଜଣାଇଦେଉଛନ୍ତି । ମୁଁ ଯେପରି ଭାବେ ଅଛି ସେହିପରି ଭାବେ ମୋର ଦେବତା ମୋତେ ନେଇଯିବେ । ମୁଁ ଏକ ନଗହା ବାଳିକା ମାତ୍ର । ମୋର ଭୋଳାନାଥ ମୋତେ ଭୁଲି ନାହାନ୍ତି କି ଭୁଲିବେ ନାହିଁ । ସେ ଜାଣନ୍ତି ଯେ ମୁଁ ତାଙ୍କର—ତାଙ୍କ ପାଦର ରେଣୁ ମାତ୍ର । ମୁଁ ଯେତେ ଅପବିତ୍ର ହେଲେ ବି ତାଙ୍କର । ଭାଇ ଚୌହାନ, ଆଜ ଗୋଟିଏ ନୂତନ ଆଶା ମୋର ହୃଦୟକୁ ଆଲୋଡ଼ିତ କରୁଛି । ଆଜ ସକାଳୁ ମନ୍ଦିରି ବେଳର ଘଣ୍ଟି ଶବ୍ଦ ମୋତେ ଶୁଭୁଛି······। ସେ ଆଜ ମୋତେ କ୍ଷମା ଦେଇ ତାଙ୍କ ପାଖକୁ ନେଇଯିବେ ।"

ଚୌଲର ଆଖିରୁ ଲୁହ ଗଡ଼ି ଚାଲିଥାଏ ଏବଂ ସେହି ଅବସ୍ଥାରେ ସେ କହୁଥାଏ, "ପ୍ରଭୁ ମୋତେ ଅନାଦର କଲାଭଳି ମୁଁ କୌଣସି ଦୋଷ କରିନାହିଁ । ଭାଇ, ଦୟାର ଅବତାର ସେ—ମୁଁ ଗୋଟିଏ ଶୁଦ୍ର ପ୍ରାଣୀ ମାତ୍ର । ସେ ଯେବେ ମୋତେ ଦୟା ନ କରିବେ, ଆଉ ଦୟା କରିବ କିଏ ?"

ଚୌହାନ କହିଲେ, "ଚୌଲା, ମୁଁ ମଧ୍ୟ ମୋ ଆଖି ଆଗରେ ମୋର ସେହି ପ୍ରିୟ ଘୋଡାଗଡ଼ି ଦେଖିପାରୁଛି ।"

ଚୌଲ କହିଲ, "ବୀର ଚୌହାନ, ମୋତେ ସାହାଯ୍ୟ କଲେ ମୁଁ ଇହଲୋକ ଓ ପରଲୋକରେ ତୁମ ନିକଟରେ ଗଭୀର କୃତଜ୍ଞ ରହିବି ।

ଚୌଳା ନୈରାଶ୍ୟରେ ଆଖିରୁ ଲୁହ ଗଡ଼ାଉଥିବା ସାମନ୍ତ ନୀରବରେ ଦେଖୁଥାନ୍ତି । କିଛି କ୍ଷଣ ପରେ ସାମନ୍ତଙ୍କମୁହଁରୁ ବିଷାଦର ରେଖା ଦୂର ହୋଇଗଲା । ତାହା ପରିବର୍ତ୍ତେ ଦେଖାଦେଲା ତାଙ୍କ ମୁଣ୍ଡରେ ବିଜୟ ଟିକା ଲଗାଇବାକୁ ଆସିଥିବା ସେହି କିଶୋରୀ ନର୍ତ୍ତକୀର ସୁନ୍ଦର ଓ କୋମଳ ମୁଖମଣ୍ଡଳ । ସେ ବିଜୟ ହାସଲ କରିଛି, ଦେଶକୁ ରକ୍ଷା କରିଛି । କିନ୍ତୁ ସେଥି ସଙ୍ଗେ ସଙ୍ଗେ ନିଜର ସମସ୍ତ ଚାଲିଯାଇଛି । ଯାହାର ପ୍ରେରଣାରେ ସେ ଏହି ଅସାଧ୍ୟ ସାଧନ କରିପାରିଛି ସେ ବର୍ତ୍ତମାନ ତାକୁ ସାହାଯ୍ୟ ମାଗୁଛି । ତାହା ସେ କିପରି ଅସ୍ୱୀକାର କରିପାରିବ ?

ସାମନ୍ତ ଭାବିଚାଲିଥାନ୍ତି—ଏହି ଦୁନିଆରେ ଆଜି ସେ ଏକା । ତାର ଜୀବନରେ ପ୍ରେରଣାର ପ୍ରଧାନ ଉତ୍ସ ଥିଲି ଚୌଲି ପ୍ରତି ପ୍ରେମ । ତେବେ ସେ ଅନ୍ୟ ଲୋକଙ୍କ ମତ ପ୍ରତି କାହିଁକି ଭ୍ରୂକ୍ଷେପ କରିବ ? ମାନ ସମ୍ମାନରେ ତାର ଅଛି କଣ ? ଗ୍ରାମଦେବ ବା ତାର କଣ ? ଯଶ, ସମ୍ପଦ ଓ ସିଂହାସନରେ ତାର ବା କି ପ୍ରୟୋଜନ ଅଛି ? ସେ ମରୁଭୂମିର ବାଳକଣା ମାତ୍ର । ସୋମନାଥଙ୍କ ଦୟାରୁ ସେ ତା ରାଜ୍ୟ ଧ୍ୱଂସକାରୀ ବିଦେଶୀ ଆକ୍ରମଣକାରୀ ସଙ୍ଗେ ଯୁଦ୍ଧ କରିବାରେ ତାଙ୍କର ଆୟୁଧ ହୋଇଥିଲି । ପ୍ରଭୁ ସୋମନାଥ ଏବେ ପୁନର୍ବାର ନିଜ ପୀଠରେ ପ୍ରତିଷ୍ଠିତ ହୋଇଛନ୍ତି । ତାର କାର୍ଯ୍ୟ ଶେଷ ହୋଇଛି । ସେ ପୂର୍ବେ ଯାହାଥିଲା, ସେହି ବାଳିକଣାରେ ପରିଣତ ହୋଇଛି । ତାର ଓଟମାନେ ପ୍ରସ୍ତୁତ ହୋଇ ରହିଛନ୍ତି । ସନ୍ଧ୍ୟାର ପୂଜା ପରେ ପରେ ସେ ମରୁଭୂମି ଅଭିମୁଖେ ଯାତ୍ରା କରିବ । ତାର ପୂର୍ବପୁରୁଷମାନେ ଯେଉଁ ରାସ୍ତାରେ ଯାଇଥିଲେ ସେଇ ରାସ୍ତାରେ ସେ ଯିବ । ତେବେ ଏପରି ଅବସ୍ଥାରେ ଚୌଲିର ଅନୁରୋଧ ସେ କାହିଁକି ରକ୍ଷା ନକରିବ ?

ସାମନ୍ତ ନିଜର ମନ ସ୍ଥିର କରିନେଇ ଉଠି ଠିଆହୋଇପଡ଼ିଲେ ଓ ନିଜର ଅଣ୍ଟା କସିନେଲେ । "ଭଉଣୀ ଚୌଲି !" ସାମନ୍ତଙ୍କ ସ୍ୱରରେ ତାଙ୍କର ସାରା ଜୀବନର ପ୍ରେମ ପରିସ୍ଫୁଟ ହେଉଥାଏ, "ମୁଁ ତୋର ଦାସ । ଯାହା କହିବୁ ତା କରିବି । ଆଜି ସନ୍ଧ୍ୟା ଆରମ୍ଭ ବେଳେ ଉପସ୍ଥିତ ଥିବି ।"

ଚୌଲିର ମୁହଁରେ ଆନନ୍ଦ ଦେଖାଦେଲା । ସେ କହିଲା, "ଚୌହାନ, ମୁଁ ପ୍ରସ୍ତୁତଥିବି ।"

ସନ୍ଧ୍ୟା ପୂଜା ସମୟ ଆଗତ ପ୍ରାୟ । ଭିତର ମନ୍ଦିର ସମ୍ମୁଖସ୍ଥ ସଭା ମଣ୍ଡପରେ ହଜାର ହଜାର ପ୍ରଦୀପ ଜଳୁଛି ଓ ତାହାର ଆଲୋକ ହୀରା, ମାଳା ଖଚିତ ଶହ ଶହ ଖୁଣ୍ଟରେ ପ୍ରତିଫଳିତ ହେଉଛି ।

ମନ୍ଦିରର ବେଢ଼ା ପୂର୍ବାପେକ୍ଷା ଅଧିକ ସୁନ୍ଦର ଦେଖାଯାଉଛି । ପୂର୍ବ ବେଢ଼ା ଅପେକ୍ଷା ଏହା ପ୍ରଶସ୍ତତର ହୋଇଥିବାରୁ ବାହାର ବେଢ଼ାରୁ ପ୍ରଭୁ ଶଙ୍କରଙ୍କୁ ଭଲରୂପେ ଦେଖିହେଉଛି । ଦେବତାଙ୍କ ମୂର୍ତ୍ତି ପୂର୍ବାପେକ୍ଷା ଆହୁରି ଅଧିକ ସୁନ୍ଦର ଦେଖାଯାଉଛନ୍ତି । ଶିବଲିଙ୍ଗଙ୍କ ଉପରେ ସୁବର୍ଣ୍ଣ ଅଭିଷେକ ପାତ୍ରରୁ ବିନ୍ଦୁ ବିନ୍ଦୁ ହୋଇ ଜଳ ପଡ଼ୁଛି । ବେଢ଼ାର ଚତୁଃପାର୍ଶ୍ୱରେ ସ୍ୱର୍ଣ୍ଣପ୍ରଦୀପମାନ ଜଳି ଚତୁର୍ଦ୍ଦିଗକୁ ଝଲସାଇ ଦେଉଛି ।

ସଭାମଣ୍ଡପରେ ନିମନ୍ତ୍ରିତ ଶାସକବର୍ଗଙ୍କ ପାଇଁ ବସିବା ସ୍ଥାନ ନିରୂପଣ କରାଯାଇଛି । ପ୍ରବେଶଦ୍ୱାରର ଡାହାଣରେ ବେଢ଼ା ପାଖକୁ ବସିଛନ୍ତି ଭୀମଦେବ ମହାରାଜା । ତାଙ୍କ ପାର୍ଶ୍ୱରେ ତାଙ୍କ ଧଳା ନିଶକୁ ଯୁବକସୁଲଭ ଢଙ୍ଗରେ ମୋଡ଼ି ଝାଲୋରର ଶାସକ ବାକ୍‌ପତିରାଜ ବସିଛନ୍ତି । ତାଙ୍କ ପାଖକୁ ବସିଛନ୍ତି ବହୁ ଯୁଦ୍ଧରେ ନିଜ ବୀରତ୍ୱର ପରିଚୟ ଦେଇଥିବା ସାପାଲଦକ୍ଷର ଶାସକ ବଳଦେବ ଚୌହାନ, ଆବୁର ଧୃନ୍ଧୁରାଜ ଏବଂ ସ୍ଥାନକର ମୁକୁନ୍ଦଦେବ । ସେମାନଙ୍କ ପଛରେ ବସିଛନ୍ତି କଚ୍ଛ ଓ ସୌରାଷ୍ଟ୍ରର ଶାସକବର୍ଗ ଏବଂ ଉଚ୍ଚପଦସ୍ଥ ରାଜକର୍ମଚାରୀ ବୃନ୍ଦ ।

ହମ୍ମୀରକୁ ବିତାଡ଼ିତ କରିବାକୁ ଯାଇ ରାଜନ୍ୟବର୍ଗ ଯେଉଁ ତ୍ୟାଗ ସ୍ୱୀକାର କରିଛନ୍ତି ସେଥିପାଇଁ ଆଜି ସେମାନେ ପୁରସ୍କୃତ ହେଉଛନ୍ତି । ସେମାନେ ଶତ୍ରୁ ସହ ଯୁଦ୍ଧ କରି ବହୁ ଦୁଃଖ କଷ୍ଟ ସହ୍ୟ କରିଛନ୍ତି । ଆଜି ଦେବାଦିଦେବ ତାଙ୍କ ନିଜ ମନ୍ଦିରରେ ପୁନଃପ୍ରତିଷ୍ଠିତ ହେବାକୁ ଯାଉଛନ୍ତି । ତେଣୁ ଅତୀତର ଦୁଃଖ ସ୍ମୃତି ଆଜି ସୁଖଦ ହୋଇପାରିଛି ।

ଶଙ୍ଖ ବାଜିବା ସଙ୍ଗେ ସଙ୍ଗେ ସମସ୍ତେ ଦଣ୍ଡାୟମାନ ହେଲେ । ଗଗନ ସର୍ବଜ୍ଞ କଠାଉମାଡ଼ ପ୍ରବେଶ କଲେ । ନିଜ ଶରୀରକୁ ସେ ବ୍ୟାଘ୍ର ଚର୍ମାବୃତ କରିଛନ୍ତି ଓ ଲମ୍ବ କଳା ଦାଢ଼ି ଉପରେ ଧୀରେ ହସ୍ତ ଚାଳନ କରି ସେ ତାଙ୍କ ପୂର୍ବବର୍ତ୍ତୀ ଗୁରୁଦେବଙ୍କ ଚାଲିଚଳଣି ଓ ବାକ୍ୟାଳାପର ଯଥେଷ୍ଟ ସାମଞ୍ଜସ୍ୟ ରକ୍ଷାକରିଛନ୍ତି । ସେ ପୂଜା କରିବା ପାଇଁ ଗର୍ଭଗୃହ ଭିତରକୁ ଯିବା ସମୟରେ ତାଙ୍କୁ ପ୍ରଣାମ କରୁଥିବା ଭକ୍ତମାନଙ୍କୁ ହସି ହସି "ନମଃ ଶିବାୟ" କହି କହି ଚାଲିଥାନ୍ତି ।

ପ୍ରଭୁ ଶଙ୍କରଙ୍କ ପୂଜା ପାଇଁ କାଶ୍ମୀରର ଶାସକ ଦେଇଥିବା ମଣି ମୁକ୍ତା ଖଚିତ ଆରତି ଦୀପ ଗଗନ ସର୍ବଜ୍ଞ ହାତରେ ଉଠାଇଲେ । ସମବେତ ଭକ୍ତ ମଣ୍ଡଳୀ ଠିଆହୋଇ ମିଳିତ କଣ୍ଠରେ ସନ୍ଧ୍ୟା ପ୍ରାର୍ଥନା ଗାନ କଲେ ।

ପ୍ରାର୍ଥନା ଗାନ ଶେଷ ହେବା ସଙ୍ଗେ ସଙ୍ଗେ ଗଗନ ସର୍ବଜ୍ଞ "ଜୟ ସୋମନାଥ" ଧ୍ୱନି ଦେଲେ । ଉପସ୍ଥିତ ରାଜନ୍ୟ ଓ ସଜ୍ଜନ ମଣ୍ଡଳୀ ଏବଂ ମନ୍ଦିରର ବାହାରେ ସମବେତ ଜନତା ସମସ୍ୱରରେ "ଜୟ ସୋମନାଥ" ଧ୍ୱନି କଲେ । ପ୍ରତ୍ୟେକ ଦିଗରୁ ଏହାର ପ୍ରତିଧ୍ୱନି ଶୁଣାଗଲା । ମନେହେଲା ଯେପରି ସମଗ୍ର ପ୍ରଭାସ ଗୋଟିଏ ବିରାଟ ମନ୍ଦିରରେ ପରିଣତ ହୋଇଛି ।

ଆରତୀ ଫେରିବା ପରେ ଗଗନ ସର୍ବଜ୍ଞ ବସିପଡ଼ି ନିର୍ଦ୍ଦେଶ ଦେଲେ "ପାରମ୍ପରିକ ନୃତ୍ୟ ଆରମ୍ଭ ହେଉ ।" ଉପସ୍ଥିତ ଭକ୍ତମାନେ "ନୃତ୍ୟ ଆରମ୍ଭ କରାଯାଉ" ବୋଲି ପରସ୍ପରକୁ କୁହାକୁହି ହେଲେ । କେହି ଜଣେ ପାଟି କରି କହିଲେ, "ନର୍ତ୍ତକୀ ପ୍ରସ୍ତୁତ ନାହାନ୍ତି ଓ ବାଦ୍ୟକାର ବି ନାହାନ୍ତି ।"

କିଛି ସମୟ ଅତୀତ ହେଲା । ରାଜନ୍ୟମଣ୍ଡଳୀ ଆଶ୍ଚର୍ଯ୍ୟ ହୋଇ ପରସ୍ପରକୁ ଚାହିଁଲେ । ଗଗନ ସର୍ବଜ୍ଞଙ୍କ କପାଳରେ ବିରକ୍ତିର ଚିହ୍ନ ଦେଖାଦେଲା ।

ହଠାତ୍ ନର୍ତ୍ତକୀ ପାଦର ମୃଦୁ ଗୁଞ୍ଜନ ଏବଂ ତାହା ପଛରେ ବାଦ୍ୟକାର-ମାନଙ୍କର ପଦଶବ୍ଦ ଶୁଣାଗଲା । ପାର୍ଶ୍ୱ ଦ୍ୱାର ଦେଇ ନର୍ତ୍ତକୀ ନୃତ୍ୟ ମଣ୍ଡପରେ ପ୍ରବେଶ କଲା । ମଣି ମୁକ୍ତା ଓ ମୂଲ୍ୟବାନ୍ ପଥର ଖଚିତ ଆଭରଣର ତେଜରେ ନୃତ୍ୟମଣ୍ଡପ ସମୁଜ୍ଜଳ ହୋଇଉଠିଲା । ଯେପରି ଚାଲିବାକୁ କଷ୍ଟ ହେଉଛି, ସେହିପରି ଧୀରେ ଧୀରେ ସେ ଆସିଲା । ସୁନା ଜରିର ସୂକ୍ଷ୍ମ କାରୁକାର୍ଯ୍ୟ ମଣ୍ଡିତ ବସ୍ତ୍ରରେ ନିଜର ମୁଖକୁ ସେ ସମ୍ପୂର୍ଣ୍ଣରୂପେ ଘୋଡ଼ାଇଥିଲା ।

ଗଗନ ସର୍ବଜ୍ଞ ପୁଣି କହିଲେ; "ନୃତ୍ୟ ଆରମ୍ଭ ହେଉ ।"

ତାହା ପରେ ନର୍ତ୍ତକୀର ପାଦ ଦ୍ରୁତତାର ସହିତ ପଡ଼ିବାକୁ ଲାଗିଲା । ଅଳ୍ପ କ୍ଷଣ ପରେ ସଙ୍ଗୀତର ମୂର୍ଚ୍ଛନା ଚଞ୍ଚଳ ହେବା ଫଳରେ ତାହା ସହିତ ତାଳର ସମତା ରଖି ନର୍ତ୍ତକୀ ତାର ପଦଚାଳନା ମଧ୍ୟ ଚଞ୍ଚଳ କଲା । ପୁରାଣବର୍ଣ୍ଣିତ ପାର୍ବତୀଙ୍କ ଶିବ ଆରାଧନା ସଙ୍ଗୀତ ଗାୟକମାନେ ଗାନ କଲେ । ନର୍ତ୍ତକୀ ସେମାନଙ୍କ ସହିତ ସ୍ୱର ମିଳାଇ ଗୀତ ଗାଉଥିଲେ ସୁଦ୍ଧା ଆସ୍ତେ ଆସ୍ତେ କମ୍ପିତ ସ୍ୱରରେ ଗାଉଥିବାରୁ କାହାକୁ ଶୁଭୁନଥାଏ ।

କ୍ରମେ ସଙ୍ଗୀତର ମୂର୍ଚ୍ଛନା ସହିତ ନୃତ୍ୟର ଗତି ମଧ୍ୟ ବୃଦ୍ଧି ପାଇବାକୁ ଲାଗିଲା । ନର୍ତ୍ତକୀ ନାଚି ନାଚି ତାର ହସ୍ତମୁଦ୍ରାରେ ଫୁଲ ତୋଳିବା, ମାଳ ତିଆରି କରିବା ଓ ପ୍ରଭୁଙ୍କୁ ବେଲପତ୍ରରେ ମଣ୍ଡନ କରିବା ଦେଖାଉଥାଏ ।

ନର୍ତ୍ତକୀ ଦ୍ରୁତ ପଦରେ ନାଚି ନାଚି ନିଜେ ପୂଜା କରିବା ପାଇଁ ଗର୍ଭଗୃହର ଦ୍ୱାରଦେଶକୁ ଗଲା । ସେ ଦୁଇ ହାତ ଯୋଡ଼ି ମୁଣ୍ଡ ନୁଆଇଁ ଦେବତାଙ୍କ ଆଗରେ ସାଷ୍ଟାଙ୍ଗ ପ୍ରଣିପାତ ହେଲା ଓ ହସ୍ତର ମୁଦ୍ରା ଚାଳନା କରି ପ୍ରଭୁଙ୍କର ପୂଜା କରିବାକୁ ଲାଗିଲା ।

ଉପସ୍ଥିତ ରାଜନ୍ୟ ମଣ୍ଡଳୀ ମଧ୍ୟରେ ନର୍ତ୍ତକୀର ମୁଖ ଦର୍ଶନ ପାଇଁ ବ୍ୟଗ୍ରତା ପ୍ରକାଶ ପାଇଲା । ସହଚରୀ ବାଳିକାମାନେ ଗୀତ ଗାଇବା ବନ୍ଦ କଲେ କି ପ୍ରକାର ଅଦ୍ଭୁତ ନୃତ୍ୟ ହେଉଛି ତାହା ସେମାନେ ବୁଝି ପାରିଲେ ନାହିଁ । କେବଳ ମୃଦଙ୍ଗ ବାଜୁଥାଏ । ତାହାର ତାଳ ସାଙ୍ଗରେ କେବଳ ନର୍ତ୍ତକୀର ନୂପୁରହିଁ ତାଳ ଦେଉଥାଏ । କ୍ରମେ ନୃତ୍ୟ ଏତେ ଅଦ୍ଭୁତ ହୋଇଉଠିଲା ଯେ ଦର୍ଶକମଣ୍ଡଳୀ ନିଜନିଜର ଅସ୍ତିତ୍ୱ ଭୁଲିଯାଇ ମନ୍ତ୍ରମୁଗ୍ଧ ଭଳି ବୋଧ କଲେ । ନର୍ତ୍ତକୀର ପଦଚାଳନାର ଦ୍ରୁତତାରେ ସମସ୍ତେ ସ୍ତମ୍ଭୀଭୂତ ହୋଇଯାଇ ଥାନ୍ତି ।

ନର୍ତ୍ତକୀ ନୃତ୍ୟରେ ପୂଜା କରିବାରେ ଲାଗିଥାଏ । ନିଜର ଭାବ ଭଙ୍ଗୀରେ ପ୍ରଭୁ ଶିବଙ୍କୁ ସେ ବାରମ୍ବାର ଆରାଧନା କରୁଥାଏ । ତାର ସୁଠାମ ଶରୀରରେ ପ୍ରକାଶପାଉଥାଏ ଅପୂର୍ବ ତେଜ ତଥା ଲାଳିତ୍ୟ ।

ନର୍ତ୍ତକୀ ଯେଉଁପରି ପ୍ରଣୋଦିତ ହୋଇ କ୍ଷୀଣ ସ୍ୱରରେ ବେଦନାଭରା ସଙ୍ଗୀତ ଗାଇଲା, ତାହାର ନୂପୁର ସେହି ଗୀତର ସ୍ୱର ଗାଇବାକୁ ଲାଗିଲା । ସଙ୍ଗୀତରେ ସେ ପ୍ରଭୁ ଶଙ୍କରଙ୍କୁ ଆପଣାର କରି ହସାଇ କ୍ଷମା ଯାଚଜ୍ଞା କରୁଥାଏ । ଦେବତା ପ୍ରାର୍ଥନା ଶୁଣୁନଥାନ୍ତି । ତେଣୁ ସେ ବିବଶ ହୋଇ ତାର ପାଦ ଫେରାଇ ଅଣୁଥାଏ ।

ଭୀମଦେବ ତାଙ୍କ ଆସନରେ ଦୃଢ଼ହୋଇ ବସିଥାନ୍ତି ଓ ତାଙ୍କର ପରିଚିତ ବୋଲି ମନେହେଉଥିବା ଏହି ଅଦ୍ଭୁତ କ୍ଷୀଣାଙ୍ଗୀ ନର୍ତ୍ତକୀ ବାଳିକାଟିକୁ ବିସ୍ଫାରିତ ନେତ୍ରରେ ଦେଖୁଥାନ୍ତି । ଗଗନ ସର୍ବଜ୍ଞ ଏହି ନୃତ୍ୟ ପସନ୍ଦ କରୁଥିବାର ଲକ୍ଷଣ ତାଙ୍କ ଭାବରୁ ଜଣାପଡୁଥିଲା ।

ପ୍ରଭୁ ଶଙ୍କରଙ୍କୁ ସନ୍ତୁଷ୍ଟ କରିବା ପ୍ରୟାସରେ ନର୍ତ୍ତକୀ ତାର ନୃତ୍ୟ କରି ଚାଲିଥାଏ । ସେ ପୁଣି ଗୋଟିଏ ନୂତନ ଉଦ୍ୟମ କଲା । ତାର ନୃତ୍ୟ ସଙ୍ଗେ ସଙ୍ଗେ ନିଜ ହୃଦୟର ବେଦନା ପ୍ରକାଶ ପାଇଲା । ତାର ନୂପୁରରୁ କ୍ରନ୍ଦନର ଶବ୍ଦ ଶୁଣାଗଲା । ଏହି ଶବ୍ଦ ବାଦ୍ୟଯନ୍ତ୍ରରୁ ଆସୁଛି କି ନର୍ତ୍ତକୀର କଣ୍ଠ ସ୍ୱରରୁ ଆସୁଛି ତାହା କେହି ବୁଝିପାରୁ ନଥାନ୍ତି । ଦର୍ଶକମାନଙ୍କ ହୃଦୟ ମଧ୍ୟ କାନ୍ଦିଉଠିଲା ।

ନର୍ତ୍ତକୀ ଗର୍ଭଗୃହର ଦ୍ୱାରଦେଶକୁ ଆସିଲା । ଶିବଙ୍କୁ ତୁଷ୍ଟ କରିବା ପାଇଁ ଏହା ତାର ଶେଷ ଉଦ୍ୟମ । ଅନ୍ତିମରେ ନୈରାଶ୍ୟରେ ସେ ତଳେ ମୁଣ୍ଡ ପିଟିଲା । ପ୍ରଭୁ ଶଙ୍କରଙ୍କ ନିକଟରେ ସତେ ଯେପରି ସେ ତାର ସର୍ବସ୍ୱ ଅର୍ପଣ କରିଦେଉଛି ।

ନୃତ୍ୟର ମୂର୍ଚ୍ଛନା ଶିଥିଳ ହୋଇଗଲା । ସଙ୍ଗୀତ ଝଙ୍କାର ମୃଦୁ ହୋଇ ବନ୍ଦହୋଇଗଲା ।

ତାପରେ ନର୍ତ୍ତକୀ ହଠାତ୍ ଉଠିପଡ଼ିଲା । ତାର ଅଙ୍ଗ ପ୍ରତ୍ୟଙ୍ଗର ଚାଳନା ନୃତ୍ୟ ଓ ଭଙ୍ଗୀ ଦେଖି ସତେ ଯେପରି ପ୍ରଭୁ ଶିବ ତାହା ଉପରେ ସନ୍ତୁଷ୍ଟ ହୋଇଛନ୍ତି, ସେହିପରି ଜଣାଗଲା । ସେ ଆନନ୍ଦରେ ନାଚିବାକୁ ଲାଗିଲା । ତାର ଭାବଭଙ୍ଗୀ ତଥା ଦ୍ରୁତ ପଦଚାଳନା ଦେଖି ତାର ବିଜୟ ହୋଇଛି ବୋଲି ମନେହେଲା । ସଙ୍ଗୀତ ପୁଣି ଆରମ୍ଭ ହେଲା । ଉପସ୍ଥିତ ଦର୍ଶକମଣ୍ଡଳୀ ସମ୍ପୂର୍ଣ୍ଣ ନୀରବରେ ପ୍ରତ୍ୟେକ ଅବସ୍ଥା ଲକ୍ଷ୍ୟ କରୁଥାନ୍ତି ।

ନର୍ତ୍ତକୀ ତାର ବିଜୟ ନୃତ୍ୟ ଆରମ୍ଭ କଲା । ଅକସ୍ମାତ୍ ତାର ମୁଖ ମଣ୍ଡଳରୁ ଓଢ଼ଣାଟି ଖସିପଡ଼ିଲା । ମ୍ଳାନ ଅଥଚ ସୁନ୍ଦର ମୁଖମଣ୍ଡଳରେ ଆନନ୍ଦର ଚିହ୍ନ ଫୁଟି ଉଠିବା ସଙ୍ଗେ ସଙ୍ଗେ ଆଖି ଦୁଇଟି ଉଜ୍ଜ୍ୱଳ ହୋଇଉଠିଲା ।

ଏହି ନୃତ୍ୟ ଶେଷ ହେବା ପୂର୍ବରୁ ନର୍ତ୍ତକୀ ଗର୍ଭଗୃହ ଆଡ଼କୁ ଦୌଡ଼ିଗଲା ଏବଂ ସିଂହାସନରେ ମୁଣ୍ଡ ପିଟିଦେଲା ।

ମୃଦଙ୍ଗର ଶବ୍ଦ ବନ୍ଦହୋଇଗଲା । ନୂପୁରର ଧ୍ୱନି ମଧ୍ୟ ବନ୍ଦହେଲା ।

ନର୍ତ୍ତକୀ ତାଙ୍କ ପ୍ରିୟ ରାଣୀ ଚୌଳା ବୋଲି ଜାଣିପାରି ଭୀମଦେବ କ୍ରୋଧ ଜର୍ଜରିତ ହୋଇ ଉଠିଲେ । ନିଜ ବଂଶର ସମ୍ମାନ ରକ୍ଷା ପାଇଁ ସେ ଖୋଳରୁ ଖଣ୍ଡା ବାହାର କରିବାକୁ ଉଦ୍ୟତ ହେଲେ । ଗଗନ ସର୍ବଜ୍ଞ ଠିଆହୋଇ ହାତ ଉଠାଇ ତାହା ବନ୍ଦ କରିବାକୁ ସଙ୍କେତ ଦେଲେ ଏବଂ ନର୍ତ୍ତକୀ ନିକଟକୁ ଦୌଡ଼ିଗଲେ ।

ଦେଖାଗଲା ଏହି ଶୁଭ ମୁହୂର୍ତ୍ତରେ ପ୍ରଭୁ ସୋମନାଥଙ୍କ ସମ୍ମୁଖରେ ଚୌଲା ତାର ଜୀବନର ସର୍ବଶ୍ରେଷ୍ଠ ତ୍ୟାଗ କରିସାରିଛି ।

ଅଖଣ୍ଡ ନୀରବତା ମଧ୍ୟରେ ଶୁଣାଗଲା ଏକ ସମ୍ମିଳିତ ଦୀର୍ଘନିଃଶ୍ୱାସର ଶବ୍ଦ । ଏତିକିବେଳେ ଜଣେ କ୍ଷୀଣକାୟ ଯୋଦ୍ଧା ସମସ୍ତଙ୍କୁ ଧସାଇ ଅନ୍ଧକାରରେ ଅନ୍ତର୍ଦ୍ଧାନ ହୋଇଯିବା ଦେଖାଗଲା ।

---